# ଆଧୁନିକ ଭାରତୀୟ ସାହିତ୍ୟ

ଅଧ୍ୟାପକ ଡକ୍ଟର ଜାନକୀବଲ୍ଲଭ ମହାନ୍ତି



ଆଧୁନିକ

# ଭାରତୀୟ ସାହିତ୍ୟ

ଅଧ୍ୟାପକ ଡକ୍ଟର ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ)



ଫ୍ରେଣ୍ଡସ୍ ପବ୍ଲିଶର୍ସ
ପୁସ୍ତକ ପ୍ରକାଶକ ଓ ବିକ୍ରେତା
ବିନୋଦ ବିହାରୀ, କଟକ - ୨

# ।। ଆଧୁନିକ ଜାତୀୟ ସାହିତ୍ୟ ।।

ରଚନା :

ଡକ୍‌ଟର ଜାନକୀବଲ୍ଲଭ ମହାନ୍ତି (କଗଦ୍ର ଭ)
ଅଧ୍ୟାପକ, ରେଭେନ୍‌ସା କଲେଜ
କଟକ

ପ୍ରକାଶକ :

ସହଦେବ ପ୍ରଧାନ
ଫ୍ରେଣ୍ଡସ୍ ପବ୍ଲିଶର୍ସ
ବିନୋଦବିହାରୀ,
କଟକ-୨

ପ୍ରଥମ ପ୍ରକାଶ :

ରଜ. ସଂକ୍ରାନ୍ତି
ତା ୧୪ । ୬ । ୭୯



ମୁଦ୍ରାକର :
ସଞ୍ଜରେଖା ପ୍ରିଣ୍ଟର୍ସ
କାଜିବଜାର,
କଟକ-୯

ମୂଲ୍ୟ :
ଆଠଟଙ୍କା ମାତ୍ର

# ଭୂମିକା

ଆଧୁନିକ ଭାରତୀୟ ଭାଷାମାନଙ୍କୁ ମୂଳତଃ ଆର୍ଯ୍ୟଭାଷାଗୋଷ୍ଠୀ ଓ ଦ୍ରାବିଡ଼ ଭାଷା ଗୋଷ୍ଠୀ ଭେଦରେ ଦୁଇ ଭାଗରେ ବିଭକ୍ତ କରାଯାଇଥାଏ । ଆସାମୀ, ବଙ୍ଗଳା, ହିନ୍ଦୀ, ପଞ୍ଜାବୀ ପ୍ରଭୃତି ଭାଷା ପ୍ରାକୃତ ଓ ଅପଭ୍ରଂଶ ମଧ୍ୟ ଦେଇ ଆଧୁନିକ ରୂପ ପରିଗ୍ରହ କରିଅଛି । ଆନୁମାନିକ ପ୍ରାୟ ୧୩ଶ । ୧୪ଶ ଶତାବ୍ଦୀରୁ ଏହିସବୁ ଭାଷାରେ ସାହିତ୍ୟ ସୃଷ୍ଟି ହୋଇଅଛି । ମାତ୍ର ଦ୍ରାବିଡ଼ ଭାଷାଗୋଷ୍ଠୀ ବା ତେଲୁଗୁ, ତାମିଲ, ମାଲୟାଲମ୍, କନ୍ନଡ଼ ପ୍ରଭୃତି ଦକ୍ଷିଣଭାରତୀୟ ଭାଷାଗୁଡ଼ିକ ଅପେକ୍ଷାକୃତ ପ୍ରାଚୀନତର । ତଥାପି ଏହି ଦକ୍ଷିଣଭାରତୀୟ ଭାଷାଗୁଡ଼ିକ ମଧ୍ୟ ସଂସ୍କୃତ ଓ ପ୍ରାକୃତଭାଷା ପ୍ରଭାବରେ ପ୍ରଭାବିତ ହୋଇଅଛି ଓ ସଂସ୍କୃତ ଭାଷା ମଧ୍ୟ ଦକ୍ଷିଣ ଭାରତୀୟ ଭାଷାରୁ ବହୁ ଶବ୍ଦ ଆହରଣ କରିଅଛି ।

ଦକ୍ଷିଣଭାରତୀୟ ତଥା ଉତ୍ତରଭାରତୀୟ ଭାଷା ଓ ସାହିତ୍ୟର ବିକାଶ ଧାରା ସମ୍ପର୍କରେ ଯତ୍‌ସାମାନ୍ୟ ପରିଚୟ ପ୍ରଦାନ କରିବା ଏହି ଗ୍ରନ୍ଥର ଉଦ୍ଦେଶ୍ୟ । ବିଗତ ଛଅ ଶହ ବର୍ଷ ମଧ୍ୟରେ ଆଧୁନିକ ଭାରତୀୟ ସାହିତ୍ୟ ସମୂହର ବିକାଶଧାରାରେ ଏକ ନିବିଡ଼ ସାମଞ୍ଜସ୍ୟ ଦେଖିବାକୁ ମିଳେ । ଅତୀତରେ ସଂସ୍କୃତ ସାହିତ୍ୟ ତାହାର କାବ୍ୟ, ପୁରାଣ, ସ୍ମୃତିଶାସ୍ତ୍ର ମାଧ୍ୟମରେ ଏକ ସର୍ବଭାରତୀୟ ସଂସ୍କୃତି ଗଠନ କରିଥିଲା । ଇଂରାଜୀ ଅଧିକାର କାଳରେ ମଧ୍ୟ ଊଣା-ଅଧିକେ ସବୁ ଭାରତୀୟ ଭାଷା ଏକ ଇଂରାଜୀ ଭାଷା ଓ ଏକ ରାଜନୈତିକ ପ୍ରଭାବରେ ପ୍ରଭାବିତ ହୋଇଥିଲା । ଏଣୁ ଲିପିର ଭିନ୍ନତା ସତ୍ତ୍ୱେ ଆଧୁନିକ ଭାରତୀୟ ଭାଷାମାନଙ୍କ ମଧ୍ୟରେ ସମଧର୍ମିତା ସୁସ୍ପଷ୍ଟ । ଇଂରାଜୀ ଶିକ୍ଷା ପ୍ରସାରର ପରବର୍ତ୍ତୀ କାଳୀନ ପ୍ରାନ୍ତୀୟ ଭାଷା-ମାନଙ୍କର ବିକାଶ-ବିବରଣୀକୁ ଅପେକ୍ଷାକୃତ ବିସ୍ତୃତ ଭାବରେ ଏହି ଗ୍ରନ୍ଥରେ ଦେବାଲାଗି ଉଦ୍ୟମ କରାଯାଇଅଛି ।

ମୋଟ ବାରଗୋଟି ସାହିତ୍ୟର ଆଲୋଚନା ଏଥିରେ ସନ୍ନିବିଷ୍ଟ । ଆଧୁନିକ ଓଡ଼ିଆ ସାହିତ୍ୟ ସମ୍ପର୍କରେ 'ଆଧୁନିକ ଓଡ଼ିଆ ସାହିତ୍ୟ' ପୁସ୍ତକରେ ସ୍ୱତନ୍ତ୍ର ଭାବରେ ଆଲୋଚନା କରିଥିବାରୁ ଏହି ଗ୍ରନ୍ଥରେ 'ଓଡ଼ିଆ ସାହିତ୍ୟ'କୁ ଅନ୍ତର୍ଭୁକ୍ତ କରାଯାଇନାହିଁ ।

ପ୍ରାୟ ଚାରି ବର୍ଷ ପୂର୍ବେ ଉତ୍କଳ ବିଶ୍ୱବିଦ୍ୟାଳୟ ପକ୍ଷରୁ ପ୍ରସ୍ତାବିତ 'ଜ୍ଞାନକୋଷ' ଲାଗି ଭାରତର କେତେଗୋଟି ଭାଷାର ଇତିହାସ ସଂପର୍କରେ ମୋତେ ପ୍ରବନ୍ଧ ରଚନା

କରିବାକୁ ପଡ଼ିଥିଲା । ସେହି ଅବକାଶରେ ଏହିପରି ଏକ ପୁସ୍ତକ ରଚନା କରିବାଲାଗି ଆଗ୍ରହ ଜନ୍ମିଥିଲା । ଏହାପରେ ପଞ୍ଚମ ନିଖିଳ ଭାରତ ଲେଖକ ସମ୍ମିଳନୀରେ ପ୍ରତିନିଧି ଭାବରେ ଯୋଗ ଦେଇ ଏତାଦୃଶ ଗ୍ରନ୍ଥ ରଚନାର ଆବଶ୍ୟକତା ବିଶେଷ ଭାବରେ ଅନୁଭବ କଲି । ୧୯୬୫ ମସିହା ଡିସେମ୍ବର ମାସ ଶେଷ ସପ୍ତାହରେ କେରଳର କୋଟାୟାମ ନିକଟବର୍ତ୍ତୀ ଉଦ୍ୟୋଗ ମଣ୍ଡଳରେ ଏହି ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଏହି ଲେଖକ ସମ୍ମିଳନୀରେ ସର୍ବଭାରତୀୟ ସ୍ତରରେ ଆଞ୍ଚଳିକ ସାହିତ୍ୟର ପ୍ରଗତି ବିଷୟ ଆଲୋଚିତ ହୋଇଥିଲା । ବିଭିନ୍ନ ପ୍ରାନ୍ତୀୟ ଭାଷାର ଲେଖକମାନଙ୍କର ସାଂପ୍ରତିକ ସାହିତ୍ୟ ସମ୍ପର୍କୀୟ ପ୍ରବନ୍ଧକୁ ଭିତ୍ତିକରି ଏକ ନିର୍ଦ୍ଧାରଣ ମଧ୍ୟ ପ୍ରସ୍ତୁତ କରାଯାଇଥିଲା । ଏହା ଉଣାଅଧିକେ ଭାରତୀୟ ସବୁ ଆଧୁନିକ ସାହିତ୍ୟ ପ୍ରତି ପ୍ରଯୋଜ୍ୟ । ଏଣୁ ତାହାର ସାରମର୍ମ ଏଠାରେ ଉଲ୍ଲେଖ କରିବା ପ୍ରାସଙ୍ଗିକ ବୋଧକରୁଛି ।

ଆଧୁନିକ ଭାରତୀୟ ସାହିତ୍ୟର ବିବିଧ ବିଭାବ ମଧ୍ୟରୁ କ୍ଷୁଦ୍ରଗଳ୍ପ ଓ କବିତା କ୍ଷେତ୍ରରେ ଅଧିକ ପ୍ରଗତି ଓ ବିକାଶ ସାଧିତ ହୋଇଅଛି । ମାତ୍ର ଆଧୁନିକ ଭାରତୀୟ ଆଞ୍ଚଳିକ ସାହିତ୍ୟରେ ଗଳ୍ପ, ଉପନ୍ୟାସ, ନାଟକ, ସାହିତ୍ୟ ଆଲୋଚନା ପ୍ରଭୃତି ଆଶାନୁରୂପ ବିକାଶ ଲାଭ କରିପାରି ନାହିଁ । ବିଶେଷତଃ ବିଗତ ୧୫ ବର୍ଷ ମଧ୍ୟରେ ଏ କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ ଅଗ୍ରଗତି ହୋଇପାରିନାହିଁ । ଆଧୁନିକ ଭାରତୀୟ ପ୍ରାନ୍ତୀୟ ସାହିତ୍ୟମାନଙ୍କରେ ନାଟ୍ୟସାହିତ୍ୟର ଅନଗ୍ରସରତା ସମ୍ପର୍କରେ ଯଥାର୍ଥତଃ କୁହାଯାଇଅଛି ଯେ—'Inspite of sporadic and spasmodic experiments in the direction of serious literary drama the melodrama and the farce seem to dominate the stage'.

ଆଜିର ନୂତନ କବିତାରେ ଅଲଙ୍କାରପୂର୍ଣ୍ଣ ବିଶଦ ବର୍ଣ୍ଣନା, ଆବେଗୋଚ୍ଛ୍ୱାସ, ଭାବପ୍ରବଣତା ଓ ରୋମାଣ୍ଟିକ ଭାବନାର ଆତିଶଯ୍ୟକୁ ପରିହାର କରାଯାଇଅଛି । ଗଭୀର ଓ ସୁଜଟିଳ ହୃଦୟାବେଗକୁ ବ୍ୟଞ୍ଜନା ଓ ସଙ୍କେତ ମାଧ୍ୟମରେ ଅଭିବ୍ୟକ୍ତ କରିବା ବିଷୟରେ ଆଧୁନିକ କବି ବିଶେଷଭାବରେ ନିୟୋଜିତ । ବାସ୍ତବତାର ସ୍ପର୍ଶରେ କବିର ରୋମାଣ୍ଟିକ ଦୃଷ୍ଟିକୋଣ ଆଜି ସଂଯତ । ଛନ୍ଦବନ୍ଧନର କଠୋର ଅନୁଶାସନ ମଧ୍ୟ ଆଜି କବିତାରେ ପ୍ରତିପାଳିତ ହେଉନାହିଁ । ପ୍ରତୀକ ଓ ଇନ୍ଦ୍ରିୟଗ୍ରାହ୍ୟ ରୂପକଳ୍ପ ମାଧ୍ୟମରେ ଭାବ ଅଭିବ୍ୟକ୍ତିର ପ୍ରୟାସ ଏବଂ ତହିଁରେ ନାଟକୀୟତାର ସଂଯୋଜନା ପ୍ରଭୃତିକୁ ଆଧୁନିକ କବିତାର କେତେକ ବୈଶିଷ୍ଟ୍ୟ ଭାବରେ ଗ୍ରହଣ କରାଯାଇପାରେ । ବିଗତ ପ୍ରାୟ ୧୫ ବର୍ଷ ମଧ୍ୟରେ ଭାରତର ସମସ୍ତ ପ୍ରାନ୍ତୀୟ ସାହିତ୍ୟର କବିତା କ୍ଷେତ୍ରରେ ଏହି ଧରଣର ନୂତନ ପରୀକ୍ଷା ଚାଲୁଅଛି । ଏହି ଦୃଷ୍ଟିରୁ ପାରଂପରିକ କାବ୍ୟଧାରାର

ସମ୍ପର୍କକୁ ଅବ୍ୟାହତ ରଖି ନୂତନ କବିତାର ସଫଳ ପରୀକ୍ଷା ଓ ପ୍ରୟୋଗ ଆଧୁନିକ କବି ନିକଟରେ ଏକ ସମସ୍ୟା ରୂପେ ଦଣ୍ଡାୟମାନ ।

ଅଧୁନିକ ବା ସାମ୍ପ୍ରତିକ କଥା-ସାହିତ୍ୟରେ ସୁକଳ୍ପିତ କଥାବସ୍ତୁ-ଆଧାରିତ ରୂପକୁ ଆଉ ଗୁରୁତ୍ୱ ପ୍ରଦାନ କରାଯାଉ ନାହିଁ । ପରନ୍ତୁ ନୂତନ ଦୃଷ୍ଟିକୋଣକୁ ରୂପଦେବା ଲାଗି ନୂତନ ଆଙ୍ଗିକ ନିୟୋଜିତ ହେଉଅଛି । ତଥାପି କ୍ଷୁଦ୍ର ଗଳ୍ପ ଓ କ୍ଷୁଦ୍ର ଉପନ୍ୟାସ ରଚନାରେ କେତେକ ବୈଚିତ୍ର୍ୟ ପ୍ରକଟିତ ହୋଇପାରିଅଛି ଓ ସମୃଦ୍ଧି ମଧ୍ୟ ସାଧିତ ହୋଇଅଛି । ବହୁଖଣ୍ଡରେ ବିଭକ୍ତ ଉପନ୍ୟାସ ଓ ସାହିତ୍ୟ ପତ୍ରିକାମାନଙ୍କରେ ପ୍ରକାଶିତ କ୍ଷୁଦ୍ର ଗଳ୍ପ କଥାସାହିତ୍ୟର ଗୁଣଗତ ବିକାଶରେ ସହାୟତା କରିପାରୁ ନାହିଁ ।

ଆଧୁନିକ ଭାରତୀୟ ସାହିତ୍ୟମାନଙ୍କରେ ଚିନ୍ତାଶୀଳ ସାହିତ୍ୟ ଆଲୋଚନାର ଘୋର ଅଭାବ ଅନୁଭୂତ ହେଉଅଛି । ଯଥାର୍ଥ ଆଲୋଚକଙ୍କ ସଂଖ୍ୟା ଅତୀବ ଅଳ୍ପ । ମୌଳିକ ସାହିତ୍ୟ ଆଲୋଚନା ପରିବର୍ତ୍ତେ ବେଶି ପରିମାଣରେ 'ଶଭହ' ହିଁ ଲିଖିତ ହେଉଅଛି । ସାହିତ୍ୟର ମୂଳତତ୍ତ୍ୱ ଓ ଉପାଦାନ ସମ୍ପର୍କରେ ମୌଳିକ ଚର୍ଚ୍ଚାର ଘୋର ଅଭାବ । ନିର୍ଦ୍ଦିଷ୍ଟ ଗ୍ରନ୍ଥ ସମ୍ପର୍କରେ ବିଶ୍ଳେଷଣାତ୍ମକ ଆଲୋଚନା, କ୍ଲାସିକ ସାହିତ୍ୟର ନୂତନ ମୂଲ୍ୟାଙ୍କନ ପ୍ରଭୃତିରେ ନିୟୋଜିତ ଲେଖକଙ୍କ ସଂଖ୍ୟା ଏକପ୍ରକାର ନୈରାଶ୍ୟ-ଜନକ । ଲେଖକ ତଥା ପାଠକ ଉଭୟ ଗୋଷ୍ଠୀଙ୍କୁ ଉପକୃତ କରୁଥିବାରୁ ଯେଉଁ ସାହିତ୍ୟ ଆଲୋଚନାକୁ ଗୁରୁତ୍ୱ ଦିଆଯାଇଥାଏ, ଆଧୁନିକ ଭାରତୀୟ ସାହିତ୍ୟରେ ତାହାର ଏକାନ୍ତ ଅଭାବ ।

କେରଳ ସାହିତ୍ୟ ସମ୍ମିଳନୀର ଏହିସବୁ ସିଦ୍ଧାନ୍ତରୁ ଆଧୁନିକ ଭାରତୀୟ ସାହିତ୍ୟର ସାମଞ୍ଜସ୍ୟ ମଧ୍ୟ ସହଜରେ ଅନୁମେୟ । ଏ ସମ୍ପର୍କରେ ଏହା ମଧ୍ୟ ସ୍ୱୀକାର୍ଯ୍ୟ ଯେ 'ପ୍ରଗତିଶୀଳ ସାହିତ୍ୟ', 'ସାମ୍ୟବାଦୀ ବାସ୍ତବତା' ପ୍ରଭୃତି ଆଦର୍ଶବାଦ ବିଷୟ ଏବେ ଆଉ ସାହିତ୍ୟକ୍ଷେତ୍ରରେ ଶୁଣିବାକୁ ମିଳୁ ନାହିଁ । ପକ୍ଷାନ୍ତରରେ ଲେଖକର ସ୍ୱାଧୀନତା, ସ୍ୱତନ୍ତ୍ର ଶୈଳୀ ଓ ମୂଲ୍ୟବୋଧ ପ୍ରତି ଆସ୍ଥା ଅଧୁନା ଗଭୀରତର ହୋଇଅଛି ।

ଅତୀତର ପରମ୍ପରା ସହ ଆଧୁନିକତାର ଦ୍ୱନ୍ଦ୍ୱ ଏକ ଚିରନ୍ତନ ବିଷୟ । ଏହି ଦ୍ୱନ୍ଦ୍ୱ ହିଁ ସମନ୍ୱିତ ରୂପଲାଭକରି ନୂତନ ପରମ୍ପରା ସୃଷ୍ଟି କରିଥାଏ । ରକ୍ଷଣଶୀଳତା ଆଣେ ପଙ୍ଗୁତ୍ୱ, ଆଣେ ଶିଥିଳ ଗତାନୁଗତିକତା । ରକ୍ଷଣଶୀଳତା ଓ ସମନ୍ୱୟବାଦିତା ଭାରତୀୟ ସଂସ୍କୃତିର ପ୍ରଧାନ ବୈଶିଷ୍ଟ୍ୟ । ବିଶାଳ ଏଇ ଭାରତବର୍ଷରେ ବହୁ ଜାତି, ସଭ୍ୟତା ଓ ସଂସ୍କୃତିର ସମାବେଶ ଘଟିଛି । ଖ୍ରୀ. ପୂ. ୨୫୦୦ ବର୍ଷ ପୂର୍ବର

ମହେଞ୍ଜୋଦାରୋ ହରପ୍ପାର ସଭ୍ୟତା ପରେ ବୈଦିକ ସଭ୍ୟତା ସଂସ୍କୃତି ସାହିତ୍ୟ ମାଧ୍ୟମରେ କେତେକ ପରିମାଣରେ ଏକ ସର୍ବଭାରତୀୟ ସଂସ୍କୃତି ପ୍ରତିଷ୍ଠା କରିବାକୁ ସମର୍ଥ ହୋଇଥିଲା । ସେହି ସୁପ୍ରାଚୀନ କାଳରୁ ଭାରତରେ ଆର୍ଯ୍ୟ ଓ ଦ୍ରାବିଡ଼ ସଂସ୍କୃତିର ସମନ୍ୱୟ ଲାଗି ଉଦ୍ୟମ ହୋଇଛି । ଭାରତ ପୂର୍ବପ୍ରାନ୍ତରେ ମଙ୍ଗୋଲୀୟ ଓ ଉତ୍ତର-ପଶ୍ଚିମରେ ଗ୍ରୀସୀୟ-ଆରବୀୟ ସଂସ୍କୃତିକୁ ଆତ୍ମସ୍ଥ କରିଛି । ଏହାପରେ ଦୀର୍ଘକାଳ ଧରି ମୋଗଲ ଓ ଇଂରେଜ ସଭ୍ୟତା, ସଂସ୍କୃତି ଓ ଭାଷାର ପ୍ରଭାବ ଫଳରେ ଭାରତୀୟ ସାହିତ୍ୟ କମ୍ ପ୍ରଭାବିତ ହୋଇନାହିଁ । ତଥାପି ଭାରତୀୟ ସମାଜ ଓ ସାହିତ୍ୟ ତାହାର ପୂର୍ବ ପରମ୍ପରାକୁ ଛାଡ଼ିପାରି ନାହିଁ ।

ଭାରତର ଏହି ପରମ୍ପରା ମୁଖ୍ୟତଃ ହିନ୍ଦୁଧର୍ମ ଧାରଣା ଉପରେ ହିଁ ପ୍ରତିଷ୍ଠିତ । ପ୍ରାଚୀନ ଓ ମଧ୍ୟଯୁଗୀୟ ଭାରତୀୟ ସାହିତ୍ୟ ଏହି ଧାରଣାରେ ପୁଷ୍ଟ, ପ୍ରତିଷ୍ଠିତ ଓ ପରିବର୍ଦ୍ଧିତ । ଏଣୁ ଏହି ସାହିତ୍ୟକୁ କଦାପି ଆଧୁନିକ ସାହିତ୍ୟ କୁହାଯାଇ ପାରିବ ନାହିଁ । କାରଣ ଏହି ସାହିତ୍ୟରେ ପରମ୍ପରା ହିଁ ଅନୁସୃତ ହୋଇଛି । ପରମ୍ପରାକୁ ପରିହାର କରିବା ହିଁ ଆଧୁନିକତାର ପ୍ରଧାନ ଲକ୍ଷଣ । ଇଂରାଜୀ ଶିକ୍ଷା ବିସ୍ତାର, ବୈଜ୍ଞାନିକ ଶିକ୍ଷା ଓ ଦୃଷ୍ଟିକୋଣର ପ୍ରସାର ଫଳରେ ହିଁ ଯଥାର୍ଥ ଆଧୁନିକତାର ତଥା ଆଧୁନିକ ସାହିତ୍ୟର ଦ୍ୱାର ଉଦ୍‌ଘାଟିତ ହେଲା । ଏହାର ସୂତ୍ରପାତ ହୋଇଥିଲା ୧୯ ବିଗତ ଶତାବ୍ଦୀରେ । ରାଜା ରାମମୋହନ ରାୟଙ୍କୁ ଏହାର ଅଗ୍ରଦୂତ ଭାବରେ ଗ୍ରହଣ କରାଯାଇପାରେ । ସେ ଆଧୁନିକ ଶିକ୍ଷାପ୍ରସାର ପାଇଁ ତଥା ସତୀଦାହ ଭଳି ବହୁ ପାଶବିକ କୁସଂସ୍କାରପୂର୍ଣ୍ଣ ସାମାଜିକ କୁସଂସ୍କାରକୁ ଦୂର କରିବାକୁ ଉଦ୍ୟମ କରିଥିଲେ । ନୈଷ୍ଠିକ ସଂସ୍କୃତ ପଣ୍ଡିତ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ବିଧବା ବିବାହ ଲାଗି ସଚେଷ୍ଟ ହୋଇଥିଲେ । ବ୍ରାହ୍ମସମାଜ, ଆର୍ଯ୍ୟସମାଜଠାରୁ ଆରମ୍ଭ କରି ଗାନ୍ଧୀଜୀଙ୍କ ଅସ୍ପୃଶ୍ୟତା ନିରାକରଣ ଆନ୍ଦୋଳନ ଓ ଆମ୍ବେଦକରଙ୍କ ଜାତିଗତ ବିଦ୍ୱେଷ ବର୍ଜନ ଆନ୍ଦୋଳନ ପର୍ଯ୍ୟନ୍ତ ବହୁ ସଙ୍ଗଠନ ମାଧ୍ୟମରେ ବହୁ ସଂସ୍କାରକ ଭାରତର ପ୍ରାଚୀନ ପରମ୍ପରାକୁ ଭାଙ୍ଗିବାକୁ ଉଦ୍ୟମ କରିଯାଇ ଅଛନ୍ତି । ଏଥିରୁ ହିଁ ସୃଷ୍ଟିଲାଭ କରିଛି ଆଧୁନିକ ଭାରତୀୟ ସାହିତ୍ୟ ।

ଏଣୁ ଆଧୁନିକ ସାହିତ୍ୟ ହେଉଛି ପ୍ରାଚୀନ ସଂସ୍କାର ଓ ଧାରଣାର ପ୍ରତିବାଦ । ଏହା ଏକ ନୂତନ ଦୃଷ୍ଟିକୋଣର, ବିଦ୍ରୋହ ଓ ବିପ୍ଳବର ସାହିତ୍ୟ । ଏହା ହେଉଛି ଭାରତୀୟ ସାହିତ୍ୟର ପୁନର୍ଜାଗରଣ, 'ରେନାସାଁ'ର ଆବାହନ । ଏବେ ମଧ୍ୟ ତାହା ଚାଲିଛି । ତଥାପି ଭାରତୀୟ ପରମ୍ପରା ଓ ଆଧୁନିକତା ମଧ୍ୟରେ ଯଥେଷ୍ଟ ବ୍ୟବଧାନ ରହିଯାଇଛି । ଏହାକୁ ଦକ୍ଷତାର ସହିତ ସଂଯୁକ୍ତ କରି ଏକ ବଳିଷ୍ଠ ଭାରତୀୟ ସାହିତ୍ୟ ଗଠନରେ ଭାରତର ଲେଖକଗୋଷ୍ଠୀ

ଆଜି ଯେ ଜାଗ୍ରତ ଓ ସଚେତନ, ଏ ବିଷୟରେ ସନ୍ଦେହ ନାହିଁ । ଆଜି ଭାରତୀୟ ଜନଚିତ୍ତରେ ଆଶାନୁରୂପ ସାଂସ୍କୃତିକ ଜାଗରଣ ହୋଇପାରି ନ ଥିବାରୁ କେହି କେହି କ୍ଷୋଭପ୍ରକାଶ କରିଆସନ୍ତି । ଏବେ ଭାରତର ବୁଦ୍ଧିଜୀବୀ ତଥା ଲେଖକଗୋଷ୍ଠୀ ମଧ୍ୟରେ ଏକ ନୈରାଶ୍ୟ ଓ ବ୍ୟର୍ଥତାର ରୁଗ୍ଣ ମନୋଭାବ ଦେଖା ଦେଇଛି । ଆଧୁନିକ ଭାରତୀୟ ସାହିତ୍ୟ ଆତ୍ମବିଶ୍ୱାସୀ, ଆତ୍ମନିର୍ଭରଶୀଳ, ନିର୍ଭୀକ, ସତ୍ୟ ସନ୍ଧାନୀ ଓ ସତ୍ୟବାଦୀ ହେବା ଆବଶ୍ୟକ । ଅହେତୁକ ପାଶ୍ଚାତ୍ୟ ଅନୁକରଣ ପ୍ରବଣତା ଆଧୁନିକ ଭାରତୀୟ ସାହିତ୍ୟିକ ପକ୍ଷେ ଶୁଭଲକ୍ଷଣ ନୁହେଁ ବୋଲି ମଧ୍ୟ ଅନେକେ ମତବ୍ୟକ୍ତ କରିଆସନ୍ତି । ବାସ୍ତବିକ ଅନୁକରଣ ପ୍ରବଣତା ଏକ ଦୈନ୍ୟର ଚିହ୍ନ । ଆନ୍ତର୍ଜାତିକ ଅର୍ଥନୀତି କ୍ଷେତ୍ରରେ ଭାରତ ଯେପରି କେବଳ 'ନେବା' ବିଷୟରେ ଉତ୍କଣ୍ଠିତ 'ଦେବା' ବିଷୟରେ ସେହିପରି ସାମର୍ଥ୍ୟ ଲାଭ କରିପାରି ନାହିଁ । ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ସେହିପରି ଆମେ କଣ କେବଳ ଅନ୍ୟଠାରୁ ଆହରଣ ହିଁ କରୁଥିବା ? ଆଜିର ଆଧୁନିକ ଭାରତୀୟ ସାହିତ୍ୟକାର ତଥା ସାହିତ୍ୟ ଅନୁଶୀଳନକାରୀଙ୍କ ପକ୍ଷରେ ଏହା ଏକ ଗଭୀର ପ୍ରଣିଧାନଯୋଗ୍ୟ ବିଷୟ ।

ଏହି ଗ୍ରନ୍ଥରୁ ପାଠକ ଆଧୁନିକ ଭାରତୀୟ ସାହିତ୍ୟ ସଂପର୍କରେ ହୁଏତ ଏକ ଧାରଣା ହିଁ ପୋଷଣ କରିବେ । ଅନେକ ପ୍ରାନ୍ତୀୟ ଭାଷା ସଂପର୍କରେ ମୋର ପ୍ରତ୍ୟକ୍ଷ ଜ୍ଞାନ ନାହିଁ ; ଏଣୁ ଅନ୍ୟାନ୍ୟ ଲେଖକଙ୍କ ଇଂରାଜୀ ଗ୍ରନ୍ଥ ଓ ପ୍ରବନ୍ଧକୁ ହିଁ ମୋତେ ଏଥିପାଇଁ ଗ୍ରହଣ କରିବାକୁ ହୋଇଅଛି । ସଂକ୍ଷେପରେ ପରିଚୟ ପ୍ରଦାନ କରିବାକୁ ପଡୁଥିବାରୁ ଏବଂ ଆବଶ୍ୟକ ତଥ୍ୟ ଅଭାବରୁ ଏହା କେତେକ ସ୍ଥାନରେ ନାମବହୁଳ ହୋଇଛି । ଯେଉଁ ଗ୍ରନ୍ଥ ଓ ପ୍ରବନ୍ଧଗୁଡ଼ିକର ସାହାଯ୍ୟ ନେବାକୁ ପଡ଼ିଛି ତାହାର ଏକ ତାଲିକା ଏହି ପୁସ୍ତକର ଯଥାସ୍ଥାନରେ ସନ୍ନିବିଷ୍ଟ । ଏହି ଗ୍ରନ୍ଥକାର ଓ ପ୍ରବନ୍ଧକଙ୍କ ନିକଟରେ ଲେଖକ ଯେ କୃତଜ୍ଞ, ଏହା କହିବା ଅନାବଶ୍ୟକ ।

ପରିଶେଷରେ ଏହି ଗ୍ରନ୍ଥ ରଚନା ଲାଗି ଯେଉଁମାନଙ୍କଦ୍ୱାରା ମୁଁ ଉପକୃତ, ସେମାନଙ୍କୁ କୃତଜ୍ଞତାର ସହିତ ସ୍ମରଣ କରିବା ମୋର ଏକ ନୈତିକ ଦାୟିତ୍ୱ । ଆଗ୍ରହର ସହିତ କେତେକ ଉପକରଣ ଯୋଗାଇଛନ୍ତି ଓ ଧୈର୍ଯ୍ୟର ସହିତ କେତେକ ପ୍ରବନ୍ଧପାଠ କରି ସୁପରାମର୍ଶ ଦେଇଛନ୍ତି ବନ୍ଧୁ ଶ୍ରୀଯୁକ୍ତ ବିବେକାନନ୍ଦ ମୁଖାର୍ଜୀ, ଶ୍ରୀଯୁକ୍ତ ବନମାଳୀ ଦାସ, ଶ୍ରୀ ସୁରେଶ ଚନ୍ଦ୍ର ନନ୍ଦ, ଶ୍ରୀଯୁକ୍ତ ତାରିଣୀ ଚରଣ ଦାସ, ଶ୍ରୀଯୁକ୍ତ କେରାମତ୍ ଅଲ୍ଲୀ ଓ ଶ୍ରୀମତୀ ଶୈଳବାଳା ପଟ୍ଟନାୟକ । ଏମାନଙ୍କୁ ମୋର ବିନମ୍ର କୃତଜ୍ଞତା ଜଣାଉଅଛି । ପାଣ୍ଡୁଲିପି ପ୍ରସ୍ତୁତ କରିବାରେ ଶ୍ରୀମାନ୍ ପଦ୍ମଲୋଚନ

ତ୍ରିପାଠୀ ଓ ଶ୍ରୀ ସୁରେଶ ଚନ୍ଦ୍ର ମହାପାତ୍ର ସହଯୋଗ କରିଥିବାରୁ ,ସେମାନଙ୍କୁ ଧନ୍ୟବାଦ । ଓଡ଼ିଆ ଉପାଧ୍ୟୁତ୍ତର ଶ୍ରେଣୀର ବହୁ ଛାତ୍ରଙ୍କ ଆଗ୍ରହ ମଧ୍ୟ ମୋତେ ଏହି କାର୍ଯ୍ୟରେ କମ ଉତ୍ସାହିତ କରିନାହିଁ

ଏହି ପୁସ୍ତକ ସାହିତ୍ୟାନୁରାଗୀ ଜିଜ୍ଞାସୁ ପାଠକ ଓ ବିଦ୍ୟାର୍ଥୀମାନଙ୍କୁ ଆଧୁନିକ ଭାରତୀୟ ସାହିତ୍ୟ ସଂପର୍କରେ ସତ୍‌ସାମାନ୍ୟ ଅବହିତ କରାଇଲେ ଆନନ୍ଦିତ ହେବି ।

ରେଭେନ୍‌ସା କଲେଜ,
ପୂର୍ବଛାତ୍ରାବାସ
କଟକ

ଜାନକୀବଲ୍ଲଭ ମହାନ୍ତି
ତା ୮-୭-୭୧

# ଲେଖକଙ୍କ ଅନ୍ୟାନ୍ୟ ରଚନା

## || କବିତା ||

ଝର୍ଣ୍ଣନ
ସ୍ନେହରୁ ବଡ଼

## || ଗଳ୍ପ, କାହାଣୀ ଓ ଅନୁବାଦ ||

କଥା ଓ କଥାକାର
ସେ ଦେଶର ଗଳ୍ପ
କାହାଣୀ ସଙ୍ଗ୍ରହ
ଭାରତର ଗ୍ରାମ୍ୟଗଳ୍ପ

## || ସମ୍ପାଦନା ||

ଫକୀରମୋହନ ପରିକ୍ରମା
ଭକ୍ତମାଳ
ଓଡ଼ିଆ ପ୍ରେମ କବିତା
ସୁଭାଷିତ ପଦାବଳୀ
ସୋମନାଥ ବ୍ରତ କଥା

## || ସାହିତ୍ୟ-ଆଲୋଚନା ||

କଳା ଓ କଳାକାର
ଓଡ଼ିଆ ସାହିତ୍ୟ ପରିକ୍ରମା
ଓଡ଼ିଆ ଗୀତି କାବ୍ୟ
ଓଡ଼ିଆ ଛନ୍ଦ ପରିଚୟ
ଓଡ଼ିଆ ଛନ୍ଦର ବିକାଶ
ସୃଷ୍ଟି ଓ ସମୀକ୍ଷା
କବି ଅଭିମନ୍ୟୁ

# ସୂଚୀ

# ଆସାମୀ ସାହିତ୍ୟ

ଆଧୁନିକ ଭାରତୀୟ ଆର୍ଯ୍ୟଭାଷାମାନଙ୍କ ମଧ୍ୟରୁ ଆସାମୀ ଭାଷା ଅନ୍ୟତମ । ବଙ୍ଗଳା, ମୈଥିଳୀ, ଓଡ଼ିଆ ଭାଷା ଭଳି ଆସାମୀଭାଷା ପ୍ରାଚ୍ୟ ଅପଭ୍ରଂଶରୁ ଉଦ୍ଭୂତ ହୋଇଅଛି । ଭାରତର ଉତ୍ତର-ପୂର୍ବ କୋଣରେ ବ୍ରହ୍ମପୁତ୍ର ଉପତ୍ୟକା ଓ ତନ୍ନିକଟ-ବର୍ତ୍ତୀ ଅଞ୍ଚଳରେ ଆସାମୀ ଭାଷା ପ୍ରଚଳିତ । ଆସାମ ଓ ବଙ୍ଗଳା ଭାଷାର ଲିପି ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । ଉଭୟ ଲିପିର 'ବ' ଓ 'ର' ମଧ୍ୟରେ କେବଳ ପାର୍ଥକ୍ୟ ପରିଲକ୍ଷିତ ହୁଏ । ଆସାମୀ ଭାଷାରେ 'ଚ' ଓ 'ଛ' 'ସ' ରୂପରେ ଏବଂ 'ଦ' 'ଶ' 'ସ' 'ହ' ରୂପରେ ଉଚ୍ଚାରିତ ହୋଇଥାଏ । ବଙ୍ଗଳା ଓ ନାଗା, ଗାରୋ, ଖାସିଆ ପ୍ରଭୃତି ବହୁ ଆଦିବାସୀ ଭାଷାର ପ୍ରଭାବରେ ଆସାମୀ ଭାଷା ପ୍ରଭାବିତ ହୋଇଅଛି ।

•

ତ୍ରୟୋଦଶ ଶତାବ୍ଦୀଠାରୁ ୧୬ଶ ଶତାବ୍ଦୀର ଶେଷଭାଗ ପର୍ଯ୍ୟନ୍ତ ସମୟକୁ ଆସାମୀ ସାହିତ୍ୟର ଆଦିଯୁଗ ବା ପ୍ରାଚୀନଯୁଗ ଭାବରେ ଗ୍ରହଣ କରାଯାଇଥାଏ । କେହି କେହି ଏହାକୁ ପ୍ରାକ୍‌ବୈଷ୍ଣବଯୁଗ ଭାବରେ ମଧ୍ୟ ଗ୍ରହଣ କରିଅଛନ୍ତି ।

ସବୁ ସାହିତ୍ୟ ପରି ଆସାମୀ ଲୋକସାହିତ୍ୟର ସମ୍ପଦ ମଧ୍ୟ ସ୍ୱଳ୍ପ ନୁହେଁ । ବହୁ ଗାନ, ନାଉରିଆ ଗାନ, ମଣା ନିବାରଣୀ ଗାନ, ଡଗରମାଳ, ମନ୍ତ୍ର ଗୀତ ପ୍ରଭୃତି ଆସାମରେ ପ୍ରଚଳିତ । ଆସାମୀ ଗଦ୍ୟର ନମୁନା ସ୍ୱରୂପ ଏଠାରେ ରଘୁନାଥ ଦାସଙ୍କ 'କଥା ରାମାୟଣରୁ' କିଞ୍ଚିତ ଉଦ୍ଧୃତ ହେଲା ।

"ନାରଦେ କହନ୍ତ, ତଦନନ୍ତରେ ପାତ୍ରମନ୍ତ୍ରୀଗଣେ ଭରତକ ରାଜା ହଇତେ ବୁଝିଲ, ଭରତେ ବୋଲନ୍ତ ଜ୍ୟେଷ୍ଠଭାଇ ଥାକୁ ଥାକତେ କେବେ ରାଜା ହୁଇବୋ । କିନ୍ତୁ ଶ୍ରୀରାମର ଚରଣ ଦେଖିତେ ବନେ ଚଲିବୋ, ଏଖନ ସୈନ୍ୟ ଜଡ଼ାବ । ହେନ ଶୁଣି ପାତ୍ରମନ୍ତ୍ରୀଗଣେ, ମହା ରଙ୍ଗାମନ ହୁଇ ସେନା ଜଡ଼ାଇଲ । ବଶିଷ୍ଠେ ବୋଲନ୍ତ, ପିତୃସତ୍ୟ ପାଲି ଶ୍ରୀରାମ ବନେ ଗୈଲ, ଦୈବ ବିୟୋଗ ରାଜ୍ୟଭୋଗ ନାହିଁପାରେ, ଏବେ ରାଜା ହୁୟ୍ୟା ରାଜଧର୍ମ ଆଚରା ।"

ସପ୍ତୋଦଶ ଶତାବ୍ଦୀରୁ ଆସାମୀ ସାହିତ୍ୟର ପ୍ରାଚୀନତମ ନିଦର୍ଶନ ମିଳିଥାଏ । ତାହା ଧର୍ମମୂଳକ ଅଥବା ସଂସ୍କୃତ ସାହିତ୍ୟକୁ ଅବଲମ୍ବନ କରି ରଚିତ ହେଉଥିଲା । ଚତୁର୍ଦ୍ଦଶ ଶତାବ୍ଦୀରେ ଆସାମୀ ସାହିତ୍ୟ ରାଜା ଓ ସମସ୍ତଙ୍କର ପୃଷ୍ଠପୋଷକତା ଲାଭ କରିଥିଲା । କଛାରର ରାଜା ମହାମାଣିକ୍ୟଙ୍କ ଅନୁରୋଧରେ ଏହି ଶତାବ୍ଦୀରେ ମାଧବ କନ୍ଦାଲୀ ସଂସ୍କୃତ ରାମାୟଣକୁ ଆସାମୀ ଭାଷାରେ ଅନୁବାଦ କରିଥିଲେ । ସଂସ୍କୃତ ମହାଭାରତର କେତେକ ଉପାଖ୍ୟାନ ମଧ୍ୟ ଆସାମୀ ଭାଷାରେ ଲିଖିତ ହୋଇଥିଲା । ଏତଦ୍‌ବ୍ୟତୀତ ସର୍ପଦେବୀ ମନସାଙ୍କ ସ୍ତୁତି ଓ ବନ୍ଦନାମୂଳକ କେତେକ ଗୀତିକାବ୍ୟ ଏହି ଯୁଗରେ ରଚିତ ହୋଇଥିବା ଜଣାଯାଏ ।

ହେମସରସ୍ୱତୀ 'ପ୍ରହ୍ଲାଦ ଚରିତ', 'ହରଗୌରୀ ସମ୍ବାଦ', କାବ୍ୟ ରଚନା କରିଥିଲେ । କବିରତ୍ନ ସରସ୍ୱତୀ, ସହଜ ସରଳ ଓ ଲୌକିକ ଭଙ୍ଗୀରେ ମହାଭାରତର 'ଦ୍ରୋଣପର୍ବ' ରଚନା କରିଥିଲେ । ଏହି ଯୁଗରେ ମନକର, ଦୁର୍ଗାବର ଓ ପୀତାମ୍ବର ପ୍ରଭୃତି କବି 'ଓଜାପାଲି' କାବ୍ୟସମୂହ ରଚନା କରିଥିଲେ । ଏହା ଓଡ଼ିଆ ପାଲି ସଦୃଶ ଏବଂ ଏଥିରେ ଗାୟକ ଓ ପାଲିଆମାନଙ୍କ ସହାୟତାରେ ବିଭିନ୍ନ ପ୍ରଶ୍ନ ଓ ଉତ୍ତର ଛଳରେ ବିଭିନ୍ନ ରସ ପରିବେଷଣ ହୋଇଥାଏ । ପୀତାମ୍ବର କବି 'ଭାଗବତ ପୁରାଣ', 'ଊଷା ପରିଚୟ', 'ମାର୍କଣ୍ଡେୟ ପୁରାଣ' ରଚନା କରିଥିଲେ । କବି ଦୁର୍ଗାବର 'ପଦ୍ମପୁରାଣ' ଓ 'ଗୀତ ରାମାୟଣ' ରଚୟିତା ଭାବରେ ପ୍ରଖ୍ୟାତ ଆସାମୀ ପଦ୍ୟର ନମୁନା ସ୍ୱରୂପ କେଶବ ଦାସଙ୍କ ଭାଗବତ ୯ମ ସ୍କନ୍ଧରୁ କିଛିତ ଏଠାରେ ଉଦ୍ଧୃତ ହେଲା ।

**ଭାଗବତ—୯ମ ସ୍କନ୍ଧ**

ଶୁକ ନିଗଦତି ରାଜା ଶୁନା ମହାଶୟ
ନାଭାଗର ଅମ୍ବରୀଷ ଭୈଲନ୍ତ ତନୟ
ତାହାର ମହିମା ମଇ କି କରିବୋ ତାତ
ଋଷିର ସାପେ ଓ କ୍ଷମା ନଭୈଲେକ ଘାତ ।
ହେନ ଶୁନି ରାଜା ପାଛେ ପୁଚ୍ଛିଲ ଶୁକତ
କୈସ୍ତୋ କଥା କୁରୁ ଇତୋ କଥା ଅଦଭୁତ ।

(କେଶବ ଦାସ—ପୃ. ୮୭୭)

ପଞ୍ଚଦଶ ଶତାବ୍ଦୀର ଶେଷଭାଗରେ ଶଙ୍କରଦେବ ଭାରତର ବିଭିନ୍ନ ତୀର୍ଥସ୍ଥାନ ପରିଦର୍ଶନ କାଳରେ ଉତ୍କଳର ଶ୍ରୀକ୍ଷେତ୍ରକୁ ଆଗମନ କରିଥିଲେ । ତାହାଙ୍କ ରଚନାରେ ଉତ୍କଳବର୍ଣ୍ଣନା ଓ ଜଗନ୍ନାଥ-ବନ୍ଦନା ଦେଖିବାକୁ ମିଳେ । ସରଳ

ଲୋକପ୍ରଚଳିତ ଭାଷାରେ ସେ ବୈଷ୍ଣବଧର୍ମ ତତ୍ତ୍ୱକୁ ପରିବେଷଣ କରିଯାଇ ଅଛନ୍ତି । ତାହାଙ୍କ ରଚିତ 'ନାମ ଘୋଷା' (ନାମ ଘୋଷା) ଆସାମରେ ଏକାନ୍ତ ଜନପ୍ରିୟ ଓ ଜଗନ୍ନାଥ ଦାସଙ୍କ ଭାଗବତ ପରି ଆସାମର ଗ୍ରାମେ ଗ୍ରାମେ 'ନାମଘର'ମାନଙ୍କରେ ପୂଜିତ ହୋଇଥାଏ । ତାହାଙ୍କ ଧର୍ମ 'ଏକ ଶରଣ ଧର୍ମ' ନାମରେ ପରିଚିତ । ତାହାଙ୍କ ରଚିତ ନିମିନବ ସମ୍ବାଦ, ଭକ୍ତିପ୍ରଦୀପରେ ବୈଷ୍ଣବଧର୍ମତତ୍ତ୍ୱ ବର୍ଣ୍ଣିତ । 'ସ୍ୟମନ୍ତକ ହରଣ', 'କଂସବଧ', 'ନାରଦ କୃଷ୍ଣ ଦର୍ଶନ' 'ରୁକ୍ମିଣୀ ହରଣ' ପ୍ରଭୃତି ରଚନା ମଧ୍ୟ ତାହାଙ୍କ ଅତୁଳନୀୟ ସୃଷ୍ଟି ଭାବରେ ଗୃହୀତ ହୁଏ । ବହୁ 'ଅଙ୍କିଆ ନାଟ' ଓ 'ବରଗୀତ' ବ୍ୟତୀତ ସେ କେତେକ 'ଚୌପଦୀ' (ଚଉପଦୀ) ମଧ୍ୟ ରଚନା କରିଯାଇ ଅଛନ୍ତି । ପୌରାଣିକ କଥାବସ୍ତୁ ଅବଲମ୍ବନ କରି ସେ 'କାଳୀ ଦମନ' 'ପତ୍ନୀ ପ୍ରସାଦ','ରାସକ୍ରୀଡ଼ା', 'କେଳି ଗୋପାଳ' 'ରୁକ୍ମିଣୀ ହରଣ', 'ପାରିଜାତ ହରଣ' 'ରାମ ବିଜୟ' ପ୍ରଭୃତି 'ଅଙ୍କିଆ ନାଟ' ରଚନା କରିଥିଲେ ।

'ଅଙ୍କିଆ ନାଟ' ଆସାମୀ ସାହିତ୍ୟର ଗୌରବମୟ ସମ୍ପଦ । ଏହି ନାଟକ-ଗୁଡ଼ିକରେ ସଙ୍ଗୀତର ପ୍ରାଧାନ୍ୟ ପରିଲକ୍ଷିତ ହୁଏ । ସୂତ୍ରଧର ସର୍ବଦା ରଙ୍ଗମଞ୍ଚରେ ଉପସ୍ଥିତ ରହି ତାହାଙ୍କ ଗଦ୍ୟ ଭାଷଣ ଦ୍ୱାରା ନାଟକୀୟ କଥାବସ୍ତୁ ଓ ଚରିତ୍ରମାନଙ୍କ ଆଗମନ-ପ୍ରସ୍ଥାନ ସମ୍ପର୍କରେ ଦର୍ଶକମାନଙ୍କୁ ଅବହିତ କରାନ୍ତି । ପରବର୍ତ୍ତୀ କାଳରେ ଶଙ୍କରଦେବଙ୍କ ଅଂକିଆ ନାଟ ସଦୃଶ ବହୁ ରଚନା କବି ମାଧବଦେବ, ଦାମୋଦର ଦେବ, ରାମ•ସରସ୍ୱତୀ ଅନନ୍ତ କନ୍ଦାଲୀ ପ୍ରଭୃତି ରଚନା କରି ଆସାମୀ ସାହିତ୍ୟକୁ ସମୃଦ୍ଧ କରିଯାଇଅଛନ୍ତି ।

ମାଧବ ଦେବ ( ୧୪୮୯—୧୫୯୬ ) 'ଅମୂଲ୍ୟ ରତ୍ନ ଘୁପ୍ତମଣି', 'ଜନ୍ମ ରହସ୍ୟ', 'ଭକ୍ତିରତ୍ନାବଳୀ', 'ରାଜସୂୟଯଜ୍ଞ' ପ୍ରଭୃତି କାବ୍ୟର ପ୍ରଣେତା ଭାବେ ଆସାମୀ ସାହିତ୍ୟରେ ସୁପ୍ରସିଦ୍ଧ । ଏହାଙ୍କ ସମସାମୟିକ କବି ଭାବରେ ଅନନ୍ତ କନ୍ଦାଲୀ 'କୁମାର ହରଣ' ରଚନା କରିଥିଲେ । ରାମ ସରସ୍ୱତୀ ଆସାମୀ ଭାଷାରେ ପ୍ରଥମେ ମହାଭାରତ ରଚନା କରିଥିଲେ । ଶଙ୍କରଦେବଙ୍କ ସମସାମୟିକ ଭଟ୍ଟଦେବ (୧୫୬୯ – ୧୬୩୮)କୁ ପ୍ରାଚୀନ ଆସାମୀ ଗଦ୍ୟସାହିତ୍ୟର ପ୍ରଥମ ଓ ବଶିଷ୍ଟ ରଚୟିତା ଭାବରେ ଗଣନା କରାଯାଏ । ସେ ଗଦ୍ୟରେ 'କଥା ଭାଗବତ' ଓ 'କଥା ଗୀତା' ରଚନା କରିଅଛନ୍ତି ।

ଓଡ଼ିଶାର ରାଜା ଗଜପତି ପୁରୁଷୋତ୍ତମଦେବ ଆସାମୀ ଭାଷାରେ କେତେକ ପଦ୍ୟ ରଚନା କରିଥିବା ଜଣାଯାଏ । ଶଙ୍କରଦେବଙ୍କ ପ୍ରଶସ୍ତି ତନ୍ମଧ୍ୟରୁ ଅନ୍ୟତମ ।

ପଞ୍ଚଦଶ ଶତାବ୍ଦୀରେ ବୈଷ୍ଣବକବି ଶଙ୍କରଦେବଙ୍କ ଧର୍ମପ୍ରଚାର ଓ ସାହିତ୍ୟସୃଷ୍ଟିଦ୍ୱାରା ଆସାମୀ ସାହିତ୍ୟ ବିକଶିତ ହେବାକୁ ସୁଯୋଗଲାଭ କରିଥିଲା । ମଧ୍ୟଯୁଗରେ ଶଙ୍କରଦେବ ଆସାମରେ ସଂସ୍କୃତ ଓ ଆଧ୍ୟାତ୍ମିକ କ୍ଷେତ୍ରରେ ଦେବତୁଲ୍ୟ ସମ୍ମାନ ଲାଭ କରିଥିଲେ । ଶଙ୍କରଦେବ (୧୪୪୯ – ୧୫୬୯) ଓ ତାହାଙ୍କ ଅନୁଗାମୀ-ବର୍ଗଙ୍କ କୃତ କେବଳ ଧର୍ମପ୍ରଚାର ଶିଷ୍ୟବୃଦ୍ଧିରେ ସୀମିତ ନ ଥିଲା । ଆସାମର ଶିକ୍ଷାବିସ୍ତାର, ଆସାମୀ ସାହିତ୍ୟର ସମୃଦ୍ଧି ଓ ସମାଜରେ ନୈତିକଜ୍ଞାନର ବିକାଶ ଲାଗି ସେମାନଙ୍କ ମହତ୍ତ୍ୱପୂର୍ଣ୍ଣଦାନ ଅବିସ୍ମରଣୀୟ । ଶଙ୍କରଦେବ ଓ ତାହାଙ୍କ ଅନୁଗାମୀଗଣ ମହାଭାରତ, ରାମାୟଣ, ଭାଗବତ, ପୁରାଣ ଓ ବରଗୀତ ନାମରେ ପରିଚିତ ବହୁ ବୈଷ୍ଣବ ଭାବାଶ୍ରିତ ଭକ୍ତିସଙ୍ଗୀତ, ନାଟକ ପ୍ରଭୃତି ରଚନା କରି ପଞ୍ଚଦଶ ଓ ଷୋଡ଼ଶ ଶତାବ୍ଦୀରେ ଆସାମୀ ସାହିତ୍ୟରେ ଏକ ଯୁଗପ୍ରବର୍ତ୍ତନ କରିବାକୁ ସମର୍ଥ ହୋଇଥିଲେ ।

ସପ୍ତଦଶ ଶତାବ୍ଦୀରେ ଅହୋମ ରାଜବଂଶୀୟ ରାଜାମାନଙ୍କ ପୃଷ୍ଠପୋଷକତା ଲାଭ କରି ଆସାମୀ ସାହିତ୍ୟ ବିକଶିତ ହୋଇଥିଲା । ବୁରୁଞ୍ଜିକୁ ଏହି ଶତାବ୍ଦୀର ଆସାମୀ ସାହିତ୍ୟର ସର୍ବଶ୍ରେଷ୍ଠ ରଚନା ଭାବରେ ଗ୍ରହଣ କରାଯାଏ । ଅହୋମ ରାଜ-ଦରବାରର ବିବରଣୀକୁ ହିଁ ବୁରୁଞ୍ଜି କୁହାଯାଏ । ଏହା ମୁଖ୍ୟତଃ ଗଦ୍ୟରେ ରଚିତ ହୋଇଥାଏ । ଏ ଯୁଗର ଏହି ମନୋରମ ଐତିହାସିକ ସାହିତ୍ୟ ସମ୍ପର୍କରେ ଅଭିମତ ଦେଇ ସାର୍ ଗ୍ରିୟର୍ସନ ଯଥାର୍ଥତଃ ଲେଖିଥିଲେ –

The Assamese are justly proud of their national literature. In no department have they been more successful than in a branch of study in which India as a rule, is curiously deficient. The historical works of the 'Buranjis' are numerous and voluminous. A knowledge of 'Buranjis' was indispensable qualification to an Assamese gentleman. *

ରାଜକୀୟ ପୃଷ୍ଠପୋଷକତା ଲାଭ କରି ଚିକିତ୍ସା, ଜ୍ୟୋତିଷ, ଗଣିତ, କଳା, ସ୍ଥାପତ୍ୟ ପ୍ରଭୃତି ସମ୍ପର୍କରେ ଗଦ୍ୟ ଓ ପଦ୍ୟରେ ମଧ୍ୟ ଏହି ସମୟରେ ବହୁ ଗ୍ରନ୍ଥ

---

* Linguishtic. Survey of India, vol. v. Sir G A. Grierson

ପ୍ରଣୀତ ହୋଇଥିଲା । ଏହାଛଡ଼ା ବହୁ ଆଦିରସାତ୍ମକ ସଙ୍ଗୀତ ଓ ଗୀତଗୋବିନ୍ଦର କେତେକ ଅନୁବାଦ ମଧ୍ୟ ଏହି ସମୟର ଉଲ୍ଲେଖଯୋଗ୍ୟ କୃତି । ରାଜକୀୟ ପୃଷ୍ଠ-ପୋଷକତାରେ ଏତାଦୃଶ ବ୍ୟାବହାରିକ ରଚନାବଳୀ ପ୍ରଣୀତ ହେବା ଅବକାଶରେ ବୈଷ୍ଣବୀୟ ଆଦର୍ଶରେ ଏକ ନୂତନ ଧରଣର ସାହିତ୍ୟ ପ୍ରଣୀତ ହୋଇଥିଲା । ତାହା 'ଚରିତ ପୁଥି' ନାମରେ ପରିଚିତ । ବୈଷ୍ଣବ ସନ୍ଥ-ଭକ୍ତମାନଙ୍କ ଜୀବନଚରିତକୁ ଅବଲମ୍ବନ କରି ଏହି ଚରିତ ପୁଥିସମୂହ ରଚିତ । ଦେବଦେବୀଙ୍କୁ ଉପଜୀବ୍ୟ କରି ରଚିତ ହେଉଥିବା ଆସାମୀ ସାହିତ୍ୟର ଆଦିପର୍ବରେ ହିଁ ସମ୍ପୂର୍ଣ୍ଣ ମାନବଜୀବନକୁ ଅବଲମ୍ବନ କରି 'ବୁରୁଞ୍ଜି' ଓ 'ଚରିତ ପୁଥି' ସମୂହ ପ୍ରଣୀତ ହେବା ଆସାମୀ ସାହିତ୍ୟର ଏକ ଉଲ୍ଲେଖଯୋଗ୍ୟ ବୈଶିଷ୍ଟ୍ୟ ।

ସ୍ଥୂଳତଃ ସପ୍ତଦଶ ଶତାବ୍ଦୀରୁ ଊନବିଂଶ ଶତାବ୍ଦୀର ପ୍ରଥମ ଭାଗ ଅର୍ଥାତ୍ ଇଂରେଜମାନଙ୍କ ଆଗମନ ପର୍ଯ୍ୟନ୍ତ ସମୟକୁ ଆସାମୀ ସାହିତ୍ୟର ମଧ୍ୟଯୁଗ ଭାବରେ ଗ୍ରହଣ କରାଯାଇପାରେ ।

ଷୋଡ଼ଶରୁ ଊନବିଂଶ ଶତାବ୍ଦୀ ମଧ୍ୟରେ ଆସାମରେ ଅସମ ବୁରୁଞ୍ଜି, ପଦସାହି ବୁରୁଞ୍ଜି, କାଛାର ବୁରୁଞ୍ଜି, ଜୟନ୍ତୀଆ ବୁରୁଞ୍ଜି, ତ୍ରିପୁରା ବୁରୁଞ୍ଜି, ପୁରଣୀ ଅସମ ବୁରୁଞ୍ଜି ପ୍ରଭୃତି ବହୁ ସଂଖ୍ୟକ ବୁରୁଞ୍ଜି ରଚିତ ହୋଇଥିଲା । ଏତଦ୍‌ବ୍ୟତୀତ ସପ୍ତଦଶ ଓ ଅଷ୍ଟାଦଶ ଶତାବ୍ଦୀରେ ଆସାମର ବିଭିନ୍ନ 'ସତ୍ର' ବା ମଠମାନଙ୍କରେ ମହନ୍ତମାନଙ୍କ ଜୀବନଚରିତକୁ ଗଦ୍ୟରେ ଲିପିବଦ୍ଧ କରାଯାଇଥିଲା । ସେଗୁଡ଼ିକ 'ଚରିତ ପୁଁଥି' (ପୋଥି) ନାମରେ ପରିଚିତ । ସାଧାରଣତଃ କଥୋପକଥନ ଛଳରେ ଏହା ରଚିତ ହୋଇଥାଏ । ମଧ୍ୟକାଳୀନ ଆସାମୀ ଗଦ୍ୟସାହିତ୍ୟର ଏହା ଅନ୍ୟତମ ଉଜ୍ଜ୍ୱଳ ଦୃଷ୍ଟାନ୍ତ ।

## ଆସାମୀ ସାହିତ୍ୟରେ ନବଯୁଗ—

ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗ ଓ ଊନବିଂଶ ଶତାବ୍ଦୀର ପ୍ରଥମ ଭାଗକୁ ଆସାମୀ ସାହିତ୍ୟରେ ଅନ୍ଧକାର ଯୁଗ କୁହାଯାଇଥାଏ । ଅନ୍ତର୍ବିପ୍ଳବ, ବୈଷ୍ଣବଧର୍ମ ସଂପ୍ରଦାୟ ମଧ୍ୟରେ ଦ୍ୱନ୍ଦ୍ୱ, ବିରୋଧ ଓ ଆକ୍ରମଣରେ ଏହା ପର୍ଯ୍ୟବସିତ । ସର୍ବୋପରି ବର୍ମୀୟମାନଙ୍କର ବାରମ୍ବାର ଆକ୍ରମଣ (୧୮୧୭-୧୮୧୯, ୧୮୨୪) ଫଳରେ ଆସାମ ତାହାର ସ୍ୱାଧୀନତା ହରାଇଥିଲା । ଖ୍ରୀ: ୧୮୨୬ରେ ଆସାମ ଇଂରେଜ ଶାସନାଧୀନ ହେଲା । ଇଂରେଜ ରାଜତ୍ୱର ପ୍ରାରମ୍ଭରେ ଆସାମୀ ଭାଷାର କୌଳିନ୍ୟ ସ୍ୱୀକୃତିଲାଭ କରିପାରି ନ ଥିଲା । ଶିକ୍ଷାନୁଷ୍ଠାନ ଅଥବା ବିଚାରାଳୟରେ ଆସାମୀ ଭାଷା ଉପେକ୍ଷିତ ହୋଇଥିଲା । ଏଣୁ ଏହି ସମୟରେ ଆସାମୀ ସାହିତ୍ୟର ଅନୁଶୀଳନ

ଓ ବିକାଶ ସମ୍ଭବପର ହୋଇପାରି ନ ଥିଲା । ମାତ୍ର ଯେଉଁ ବର୍ଷ ଆସାମୀ ଭାଷା ଶିକ୍ଷାନୁଷ୍ଠାନ ଓ ବିଚାରାଳୟରେ ସ୍ୱୀକୃତ ଲାଭରୁ ବଞ୍ଚିତ ହେଲା, ସେହି ବର୍ଷ (୧୮୩୬) ଆମେରିକା ବ୍ୟାପ୍‌ଟିଷ୍ଟ ମିଶନର ଏକ ଗୋଷ୍ଠୀ ଆସାମରେ ଉପସ୍ଥିତ ହୋଇ ତାହାଙ୍କର ପ୍ରଚାରକାର୍ଯ୍ୟ ଆରମ୍ଭ କରିଥିଲେ । ସେହିମାନେ ହିଁ ଆସାମରେ ସର୍ବପ୍ରଥମ ମୁଦ୍ରଣଯନ୍ତ୍ର ପ୍ରତିଷ୍ଠା କରିଥିଲେ ଓ ସେହିମାନେ ୧୮୪୬ ମସିହାରେ ଶିବସାଗରରୁ ଆସାମୀ ଭାଷାରେ ଖ୍ରୀଷ୍ଟଧର୍ମ ପ୍ରଚାରମୂଳକ ଏକ ମାସିକ ପତ୍ର 'ଅରୁଣୋଦୟ' ସମ୍ପାଦନା କରିଥିଲେ । ଧର୍ମମୂଳକ କେତେକ ପ୍ରଚାରପତ୍ର ବ୍ୟତୀତ ବିବିଧ ବିଷୟକ କେତେକ ସ୍କୁଲ ପାଠ୍ୟପୁସ୍ତକ ମଧ୍ୟ ସେମାନେ ପ୍ରଣୟନ କରିଥିଲେ । ଏହି ଧର୍ମପ୍ରଚାରକଗଣ ଓ ଆସାମର କେତେକ ମୁଖ୍ୟବ୍ୟକ୍ତିଙ୍କ ଉଦ୍ୟମ ଫଳରେ ଖ୍ରୀ: ୧୮୮୨ରେ ଆସାମୀ ଭାଷା ତାହାର ଯଥାଯୋଗ୍ୟ ସ୍ଥାନ ଫେରିପାଇଥିଲା ।

ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ଆସାମର ଖ୍ରୀଷ୍ଟୀୟ ସାହିତ୍ୟ ସୃଷ୍ଟି କ୍ଷେତ୍ରରେ ଯେଉଁ ତିନି ଜଣ ବିଶିଷ୍ଟ ବ୍ୟକ୍ତି ସ୍ୱନାମଧନ୍ୟ ହୋଇପାରିଥିଲେ, ସେମାନେ ହେଉଛନ୍ତି ବ୍ରାଉନ୍, ବ୍ରନ୍‌ସନ୍ ଓ ନିଧି ଲେଭି । ବ୍ରନ୍‌ସନ୍ ଖ୍ରୀ: ୧୮୬୮ରେ ଆସାମୀ-ଇଂରାଜୀ ଅଭିଧାନ ପ୍ରକାଶ କରିଥିଲେ । ବ୍ରାଉନ୍ ଓ କଟର୍ ଖ୍ରୀ: ୧୮୩୬ରେ ସର୍ବପ୍ରଥମେ 'ଅସମିଆ ପ୍ରେସ' ସ୍ଥାପନ କରିଥିଲେ । ଖ୍ରୀଷ୍ଟଧର୍ମ ପ୍ରଚାରକ, ଭାଷାତତ୍ତ୍ୱବିତ୍ ସୁପଣ୍ଡିତ ପି. ଏଚ. ମୁର ଖ୍ରୀ: ୧୯୦୭ରେ ଯଥାର୍ଥତଃ ଲେଖିଯାଇଅଛନ୍ତି ଯେ— ଖ୍ରୀଷ୍ଟୀୟ ହେଉ ଅଖ୍ରୀଷ୍ଟୀୟ ହେଉ, ଆଧୁନିକ ଆସାମୀ ସାହିତ୍ୟ ଊନବିଂଶ ଶତାବ୍ଦୀର ଶେଷ ଷାଠିଏ ବର୍ଷରେ ହିଁ ଜନ୍ମପରିଗ୍ରହ କରିଅଛି । ✻

ବିଂଶ ଶତାବ୍ଦୀର ପ୍ରାରମ୍ଭରୁ ଆସାମୀ ଭାଷାରେ ହିଁ ପ୍ରକୃତ ଆଧୁନିକ ସାହିତ୍ୟ ରଚିତ ହୋଇଥିଲା । କଲିକତାର କଲେଜମାନଙ୍କରେ ଶିକ୍ଷାଲାଭ କରିଥିବା ତତ୍‌କାଳୀନ ଆସାମର ତରୁଣ ବ୍ୟକ୍ତିମାନଙ୍କ ପ୍ରଚେଷ୍ଟାରେ ହିଁ ଏହା ସମ୍ଭବପର ହୋଇଥିଲା । କଲିକତାରେ ଅଧ୍ୟୟନ କରୁଥିବା ସମୟରେ ଚନ୍ଦ୍ରକୁମାର ଅଗରୱାଲ (୧୮୫୮—୧୯୩୮), ଲକ୍ଷ୍ମୀନାଥ ବେଜବରୁଆ (୧୮୬୮—୧୯୩୮ ), ହେମଚନ୍ଦ୍ର ଗୋସ୍ୱାମୀ (୧୮୭୨—୧୯୨୮), ପଦ୍ମନାଥ ଗୋହାଇଁ ବରୁଆ (୧୮୭୧—୧୯୪୬) ପ୍ରମୁଖ ବନ୍ଧୁଗଣ 'ଜୋନାକୀ' ( ଜୁଳୁଜୁଳିଆ ପୋକ ) ନାମକ ଏକ ମାସିକପତ୍ର

---

✻'The modern literature in Assamese, wheather Christian or non-Christian, may be said to be the product of the last sixty years of the nineteenth century.

ସମ୍ପାଦନା କରିଥିଲେ । ଇଂରାଜୀ ରୋମାଣ୍ଟିକ ଭାବଧାରାକୁ ଏହି ପତ୍ରିକା ମାଧ୍ୟମରେ ଅନ୍ତର୍ବ୍ୟକ୍ତ ଦିଆଯାଇଥିଲେ ହେଁ ଆସାମରେ ଜାତୀୟ ଚେତନା ଓ ପୁନର୍ଜାଗରଣର ଏହି ପତ୍ରିକା ମୁଖପତ୍ର ଥିଲା । ଏହି ଲେଖକମଣ୍ଡଳୀ ହିଁ ଏହି ଭାବାଦର୍ଶକୁ ଆସାମୀ ସାହିତ୍ୟରେ ଅନୁପ୍ରବିଷ୍ଟ କରାଇଥିଲେ । ଏହିମାନେ ବହୁ ସୁଲଳିତ ଗୀତିକାବ୍ୟ, ଉଦ୍ଦୀପନାମୟ ଜାତୀୟ ଭାବୋଦ୍ଦୀପକ କବିତା, ବର୍ଣ୍ଣନା ସମ୍ବଳିତ କାବ୍ୟ, ସାହିତ୍ୟ, ସମାଜ, ଧର୍ମସମ୍ପର୍କୀୟ ବହୁ ପ୍ରବନ୍ଧ, କ୍ଷୁଦ୍ର ଗଳ୍ପ, ନାଟକ, ଉପନ୍ୟାସ ପ୍ରଭୃତି ରଚନା କରିଥିଲେ । ଏତଦ୍‌ବ୍ୟତୀତ ଆସାମର ଲୋକସଙ୍ଗୀତ ଓ କାହାଣୀମାନଙ୍କୁ ସଂଗ୍ରହ କରିବା ସଙ୍ଗେ ସଙ୍ଗେ ଐତିହାସିକ ଗବେଷଣା ପ୍ରଭୃତି କାର୍ଯ୍ୟରେ ମଧ୍ୟ ସେମାନେ ଆତ୍ମନିୟୋଗ କରିଥିଲେ ।

## ନବୀନ ରୋମାଣ୍ଟିକ୍ ସାହିତ୍ୟଗୋଷ୍ଠୀ—

ପୂର୍ବୋକ୍ତ ଲେଖକଗୋଷ୍ଠୀ ଇଂରାଜୀ ସାହିତ୍ୟରୁ ଯେ ପ୍ରେରଣା ଲାଭ କରିଥିଲେ, ଏହା କହିବା ଅନାବଶ୍ୟକ । ଏମାନେ ଥିଲେ ମୁଖ୍ୟତଃ ଗୀତିକବି । ପ୍ରେମ ଓ ସୌନ୍ଦର୍ଯ୍ୟକୁ ଉପଜୀବ୍ୟ କରି ସେମାନେ ବହୁ ଗୀତିକବିତା ରଚନା କରିଥିଲେ । ଏମାନଙ୍କ ମଧ୍ୟରୁ ସାହିତ୍ୟର ବହୁ ବିଭାଗକୁ ପରିପୁଷ୍ଟ କରିବାରେ ଲକ୍ଷ୍ମୀନାଥ ବେଜବରୁଆ ଥିଲେ ଅଗ୍ରଣୀ । ଏକାଧାରରେ କବି, ପ୍ରାବନ୍ଧିକ ଓ ସାମ୍ବାଦିକ ଭାବରେ ତାହାଙ୍କର କୃତିତ୍ୱ ଅପରିସୀମ । କବିତାର ସମସ୍ତ ପ୍ରାଚୀନ ପରଂପରାକୁ ଭାଙ୍ଗି ସେ ନୂତନ କାବ୍ୟରୂପ ଓ ଛନ୍ଦକୁ ପ୍ରତିଷ୍ଠିତ କରିଥିଲେ । ପ୍ରେମଗୀତିକା ପ୍ରକୃତିମୂଳକ ଓ ବର୍ଣ୍ଣନାତ୍ମକ କବିତା ଏବଂ ଗାଥା କବିତାକୁ ତାହାଙ୍କର ମହତ୍ତ୍ୱପୂର୍ଣ୍ଣ ରଚନା ଭାବରେ ଗ୍ରହଣ କରାଯାଇଥାଏ । ତାହାଙ୍କର ଦେଶାତ୍ମବୋଧକ ସଙ୍ଗୀତ ଓ କବିତାରେ ସେ ଆସାମର ସଂସ୍କୃତି ଓ ଇତିହାସ ଗୌରବ ଓ ମହତ୍ତ୍ୱକୁ ପ୍ରଖ୍ୟାପନ କରିଯାଇଅଛନ୍ତି । ଅତୀତର ରୋମାଣ୍ଟିକ ଆଦର୍ଶୀକରଣ କବି ବେଜବରୁଆଙ୍କ ଜାତୀୟ ମନୋଭାବକୁ ଉଦ୍ଦୀପିତ କରିଥିଲା । ତାହାଙ୍କ କବିତାବଳୀରେ ଆସାମର ଉଜ୍ଜ୍ୱଳ ଭବିଷ୍ୟତ ଓ ବିକାଶ ଲାଗି ଅସୀମ ଆଶା ଓ ବିଶ୍ୱାସ ମଧ୍ୟ ପ୍ରକଟିତ । ତାହାଙ୍କ ରଚିତ 'ଅମର ଜନ୍ମଭୂମି' 'ମୋର ଦେଶ', 'ଅସମ ସଙ୍ଗୀତ' 'ବନ ବରଗି' କବିତାଗୁଡ଼ିକ ତାହାର ପ୍ରକୃଷ୍ଟ ଉଦାହରଣ । କେବଳ ସ୍ୱଦେଶର ରାଜନୈତିକ ବା ଭୌତିକ ବିକାଶ ନୁହେଁ, ନୈତିକ ଓ ରମ୍ୟବୋଧାତ୍ମକ ବିକାଶ ମଧ୍ୟ ତାଙ୍କର କାମ୍ୟ ଥିଲା ।

ଦେଶପ୍ରୀତିମୂଳକ କବିତା ରଚୟିତା ଭାବରେ କମଳାକାନ୍ତ ଭଟ୍ଟାଚାର୍ଯ୍ୟଙ୍କ ନାମ ମଧ୍ୟ ଆଧୁନିକ ଆସାମୀ ସାହିତ୍ୟରେ ସ୍ମରଣୀୟ । କମଳାକାନ୍ତଙ୍କ ଦେଶପ୍ରୀତି ଏକ ସୁପ୍ତ ଆତ୍ମବିସ୍ମୃତ ଜାତିରୁ ତାହାର ଗୌରବମୟ ଅତୀତ ବିଷୟରେ ସଚେତନ

କରାଇବାରେ କେବଳ ସୀମାବଦ୍ଧ ନ ଥିଲା । ଏକ ଗଣତାନ୍ତ୍ରିକ ସମାଜ ଓ ଶାସନ ପ୍ରତିଷ୍ଠାର ଗୁରୁତ୍ୱ ହୃଦୟଙ୍ଗମ କରାଇବା ହିଁ କମଲାକାନ୍ତଙ୍କ ସ୍ୱଦେଶପ୍ରୀତିର ଆଦର୍ଶ ଥିଲା । ସ୍ୱାଧୀନତାର ଅଭାବ ଓ ତଜ୍ଜନିତ କୁପରିଣାମ ପ୍ରଭୃତି କମଲାକାନ୍ତଙ୍କ ଦୁଇଟି ବିଖ୍ୟାତ କବିତା ସଂକଳନ 'ଚିନ୍ତା' ଓ 'ଚିନ୍ତା ତରଙ୍ଗ'ରୁ ପ୍ରତିପନ୍ନ ହୋଇଥାଏ । ତାହାଙ୍କ 'ପାହରନା'ରେ ଆସାମର ଅତୀତର ଗୌରବ ଓ ତତ୍‌କାଳୀନ ବିପର୍ଯ୍ୟୟ ସରସ ଭାବରେ ବର୍ଣ୍ଣିତ ।

'ପ୍ରତିମା', 'ବୀଣ ବରାଗୀ' (ବନ୍ଦୀର ବୀଣା) କବିତା ସଂକଳନର ରଚୟିତା ଚନ୍ଦ୍ରକାନ୍ତ ଅଗ୍ରୱାଲ୍ ମଧ୍ୟ ବହୁ ସ୍ୱଦେଶୀ କବିତା ରଚନା କରିଯାଇଅଛନ୍ତି ।

ସମକାଳରେ ଦାର୍ଶନିକ ତତ୍ତ୍ୱ ପ୍ରଧାନ କବିତା ରଚନା କରିବାରେ ଦୁର୍ଗେଶ୍ୱର ଶର୍ମା ଓ ନୀଳମଣି ଫୁକନଙ୍କ ନାମ ଉଲ୍ଲେଖଯୋଗ୍ୟ । ନୀଳମଣି ଫୁକନଙ୍କ କବିତା-ବଳିରେ ('ମାନସୀ', 'ସନ୍ଧାନୀ') ସତ୍ୟ ଓ ସୌନ୍ଦର୍ଯ୍ୟ ଲାଗି ହୃଦୟର ଶାଶ୍ୱତ ଆକାଂକ୍ଷା ପ୍ରତିଫଳିତ । ଏ ଯୁଗର ଅନ୍ୟତମ କବି ହିତେଶ୍ୱର ବେଜବରୁଆ ଇଂରାଜୀ ସାହିତ୍ୟରେ ସୁପଣ୍ଡିତ ଥିଲେ ଓ ଇଂରାଜ କବି ସେକ୍‌ସପିଅର, ଓ୍ୱାର୍ଡ଼ସ୍ ଓ୍ୱାର୍ଥ, ମିଲଟନ୍‌ଙ୍କ ଦ୍ୱାରା ବିଶେଷଭାବରେ ପ୍ରଭାବିତ ହୋଇଥିଲେ । କବିତାରେ ଅମିତ୍ରାକ୍ଷର ଛନ୍ଦ ଯୋଜନା, ଚତୁର୍ଦ୍ଦଶପଦୀ କବିତା ଓ ଶୋକ ଗୀତ ରଚନାକାରୀ ଭାବରେ ଆସାମୀ ସାହିତ୍ୟରେ ବେଜବରୁଆ ଚିରସ୍ମରଣୀୟ । ତାହାଙ୍କ କାବ୍ୟ-ମାନଙ୍କ ମଧ୍ୟରୁ ଐତିହାସିକ ଓ ବୀରରସାତ୍ମକ କାବ୍ୟ 'କମତପୁର ଧ୍ୱଂସ' (୧୯୧୬) ଯୁଦ୍ଧକ୍ଷେତ୍ରରେ ଅହୋମ ରମଣୀ ଆସାମର ଅତୀତ କାମ୍ୟବନ୍ତୀଙ୍କୁ ଉପଜୀବ୍ୟ କରି ରଚିତ । ଆସାମରେ ଏହି ରଚନା ବହୁ ଜନପ୍ରିୟ ଓ ବେଜବରୁଆଙ୍କ କାବ୍ୟର ବହୁ ପଦ ଏବେ ପ୍ରବଚନ ଭାବରେ ବ୍ୟବହୃତ ହୋଇଥାଏ । ସେହିପରି ତାଙ୍କର ଆଖ୍ୟାସରେ ବୀରନାରୀଙ୍କ ମହତ୍ତ୍ୱ ବର୍ଣ୍ଣନା ।

ଏ ଯୁଗର ଅନ୍ୟତମ କବି ଭାବରେ ଅମ୍ବିକା ଗିରି ରାୟଚୌଧୁରୀ ସୁପରିଚିତ । ଗାୟକ, ସଙ୍ଗୀତ ରଚୟିତା, ସାମ୍ବାଦିକ, 'ବିପ୍ଳବୀ ରାଜନୈତିକ କର୍ମୀ ଓ ଦେଶଭକ୍ତ ଭାବରେ ମଧ୍ୟ ସେ ପ୍ରଶଂସା ଅର୍ଜନ କରିଅଛନ୍ତି । ତରୁଣ ବୟସରେ ସେ ସୁଲଳିତ ପ୍ରେମକବିତା ରଚନା କରୁଥିଲେ । ତାହାଙ୍କ ପ୍ରତୀକ ଧର୍ମୀ କାବ୍ୟ 'ତୁମି' (ପ୍ର: ସ: ୧୯୧୫) ଏକ ଅନୁପମ ସୃଷ୍ଟିଭାବରେ ପରିଗଣିତ ହୋଇଥାଏ । ପରବର୍ତ୍ତୀ କାଳରେ ସ୍ୱାଧୀନତା ଆନ୍ଦୋଳନ ସହ ସଂପର୍କ ଓ କାରାବରଣ ଫଳରେ ଜୀବନ ଓ କାବ୍ୟସୃଷ୍ଟି ସଂପର୍କରେ ତାହାଙ୍କ ଦୃଷ୍ଟିକୋଣ ବହୁଳ ଭାବରେ ପରିବର୍ତ୍ତିତ ହୋଇଥିଲା ।

'ବହ୍ନଗୀ କବି' ନାମରେ ପରିଚିତ ରଘୁନାଥ ଚୌଧୁରୀ ମଧ୍ୟ ଏହି ଗୋଷ୍ଠୀର ଅନ୍ୟତମ ବିଶିଷ୍ଟ କବି । ପକ୍ଷୀ ଓ ଫୁଲମାନଙ୍କୁ ମୁଖ୍ୟତଃ ଉପଜୀବ୍ୟ କରି ସେ କବିତା ରଚନା କରିଅଛନ୍ତି । 'ସଦଙ୍ଗ', 'କେତକୀ', 'ଦହି କଟର' ପ୍ରଭୃତି କବିତା ସଂକଳନଗୁଡ଼ିକ ତାହାଙ୍କର ସ୍ମରଣୀୟ କୃତି । ତାହାଙ୍କ ପ୍ରକୃତି ବର୍ଣ୍ଣନା କାଳିଦାସଙ୍କ ଦ୍ୱାରା ପ୍ରଭାବିତ । ଯତୀନ୍ଦ୍ର ନାଥ ଦୁଅରଙ୍କ କବିତାବଳୀରେ ରୋମାଣ୍ଟିକ ଭାବାକୁଳତାପୂର୍ଣ୍ଣ କାରୁଣ୍ୟର ପୂର୍ଣ୍ଣ ଅଭିବ୍ୟକ୍ତି ଦେଖିବାକୁ ମିଳିଥାଏ । ସ୍ୱାଧୀନତା ପରବର୍ତ୍ତୀ ଶ୍ରେଷ୍ଠ ଆସାମୀ ସାହିତ୍ୟ ଭାବରେ ତାହାଙ୍କ ରଚିତ ବନଫୁଲ କବିତା ସଂକଳନଟି ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଅଛି । ବ୍ୟକ୍ତିଗତ ଅନୁଭୂତି, ଦ୍ୱନ୍ଦ୍ୱାତ୍ମକ ମାନସିକ ସ୍ଥିତି, ଗୋପନ ପ୍ରଣୟ ଓ ଭାବାକୁଳତାପୂର୍ଣ୍ଣ ନୈରାଶ୍ୟକୁ ଉପଜୀବ୍ୟ କରି ତାହାଙ୍କ କବିତାବଳୀ ରଚିତ । ଆସାମୀ କବିତାକୁ ଶବ୍ଦ ଓ ଛନ୍ଦର କମନୀୟତା ଏବଂ ଉପମାର ସ୍ୱାଭାବିକତାରେ ସମୃଦ୍ଧ କରିଛନ୍ତି କବି ଯତୀନ୍ଦ୍ରନାଥ । ତାହାଙ୍କର ବହୁ ଉପମା ନଦୀ, ନୌକା ଓ ନାଉରି ସଂପର୍କୀୟ । ଓମାରଖୈୟାମଙ୍କ ରୁବେୟାତ୍ (ଚତୁଷ୍ପଦବିଶିଷ୍ଟ ଗୀତ)ର ଏକ ସରସ ଅନୁବାଦ ଓମର ତୀର୍ଥ (୧୯୨୬) ନାମରେ ସେ କରିଅଛନ୍ତି । ମୁକ୍ତ କବିତାର ସାର୍ଥକ ପ୍ରୟୋଗକାରୀ ଭାବରେ ମଧ୍ୟ ସେ ସୁବିଦିତ । ତାହାଙ୍କ 'କଥା କବିତା' ଆସାମୀ ମୁକ୍ତକବିତାର ଶ୍ରେଷ୍ଠନିଦର୍ଶନ ଭାବରେ ଗୃହୀତ ହୁଏ ।

ରତ୍ନାକର ବରକାକତିଙ୍କ କବିତାବଳୀରେ, ପାର୍ଥିବ ପ୍ରେମର କମନୀୟ ରୂପ ଉଦ୍ଭାସିତ । ରବୀନ୍ଦ୍ରନାଥଙ୍କ ଛନ୍ଦ ଦ୍ୱାରା ସେ ବହୁ ପରିମାଣରେ ପ୍ରଭାବିତ ହୋଇଥିବା ଜଣାଯାଏ । ଆସାମୀ କବିତାରେ ନୂତନ ଛନ୍ଦର ପ୍ରୟୋଗକାରୀ ଭାବରେ ଦେବକାନ୍ତ ବରୁଆଙ୍କୁ ଶ୍ରେଷ୍ଠସ୍ଥାନ ପ୍ରଦାନ କରାଯାଇଥାଏ । ନାଟକୀୟ ଆତ୍ମକଥନ **Dramatic Manologue** ରୀତିରେ ସେ ବହୁ ସରସ ପ୍ରେମକବିତା ରଚନା କରିଯାଇଅଛନ୍ତି । ଡମ୍ବେଶ୍ୱର ନିୟୋଗ, ବିନନ୍ଦଚନ୍ଦ୍ର ବରୁଆ, ପ୍ରସନ୍ନଲାଲ ଚୌଧୁରୀ ଓଜସ୍ୱିନୀ ଦେଶାତ୍ମବୋଧକ କବିତା ରଚୟିତା ଭାବରେ ସୁପରିଚିତ । ଆସାମର ଅତୀତ ଗୌରବ ସହ ଅଧୁନାତନ ଦୁର୍ଗତିର ବୈପରୀତ୍ୟ ପ୍ରଦର୍ଶନ ଏହି ସବୁ କବିତାର ମୁଖ୍ୟ ଉପଜୀବ୍ୟ ବିଷୟ । ଅତୀତର ଉଦ୍‌ବୋଧନ ବର୍ତ୍ତମାନ ଓ ଭବିଷ୍ୟତ ପାଇଁ ସାହସ, ପ୍ରେରଣା ଓ ଆଲୋକର ଉତ୍ସ ସ୍ୱରୂପ । ଅତୀତର ବୀର ସନ୍ତାନ-ମାନଙ୍କ ବିଷୟ ସ୍ମରଣ କରି ବର୍ତ୍ତମାନ ଆସାମର ନାଗରିକ ଦୁଃଖ ଓ ଦାସତ୍ୱର ବନ୍ଧନକୁ ଛିନ୍ନ କରି ସୁସମୃଦ୍ଧ ଆସାମ ଗଠନ କରିବେ, ଏହା ହିଁ ଏହି କବିଙ୍କର ସେମାନଙ୍କ ବହୁ କବିତାରେ ବର୍ଣ୍ଣନା କରିଯାଇ ଅଛନ୍ତି ।

ବିଗତ ଅର୍ଦ୍ଧ ଶତାବ୍ଦୀ ମଧ୍ୟରେ ବହୁ ନାରୀକବିଙ୍କର ଆବିର୍ଭାବ ଆସାମୀ ସାହିତ୍ୟରେ ଦେଖିବାକୁ ମିଳିଥାଏ । ସେମାନଙ୍କ ମଧ୍ୟରୁ ନଳିନୀବାଳା ଦେବୀଙ୍କୁ ସର୍ବଶ୍ରେଷ୍ଠ ଭାବରେ

ଗ୍ରହଣ କରାଯାଇଥାଏ । ତାହାଙ୍କ ରଚନାବଳୀରୁ ଅଜ୍ଞାତ ଓ ଅଲଭ୍ୟଲାଗି ବ୍ୟାକୁଳ ପିପାସା, ଏକ ଅସ୍ଥିର ଚିତ୍ତଚାଞ୍ଚଲ୍ୟ ଓ ରହସ୍ୟବାଦିତାର ପରିଚୟ ମିଳିଥାଏ । ସନ୍ଧ୍ୟାର ସୁର, ସୋପନର ସୁର (ସ୍ୱପ୍ନର ସ୍ୱର), ପରଶମଣି ପ୍ରଭୃତି ତାହାଙ୍କର ଏହି ତିନିଗୋଟି କାବ୍ୟସଂକଳନରୁ ଉକ୍ତ ଭାବାଦର୍ଶର ପ୍ରତିଫଳନ ଦେଖିବାକୁ ମିଳିଥାଏ । ତାହାଙ୍କ ସମସ୍ତ କବିତାରେ ଏକ କରୁଣତାର ସ୍ୱର ଧ୍ୱନିତ ହୋଇ ଥିବାର ଅନୁଭୂତ ହୁଏ । ଧରମେଶ୍ୱରୀ ଦେବୀ ବରୁଆନୀ ଭକ୍ତକବି ଭାବରେ ପରିଚିତ । ତାହାଙ୍କର ଦୁଇଟି କବିତା ସଂକଳନ 'ଫୁଲର ସରାଇ' (ଗୁଙ୍ଗୁଡ଼ି) 'ପ୍ରାଣର ପରଶ'ରେ ତାହାଙ୍କର ଗଭୀର ଈଶ୍ୱରବିଶ୍ୱାସ, ଆତ୍ମାର ପରମାତ୍ମାଙ୍କ ସହ ମିଳନ ଲାଗି ଗଭୀର ଉତ୍କଣ୍ଠା ପ୍ରତିଫଳିତ । ଅଧୁନାତନ ଆସାମର ତରୁଣ ନାରୀ-କବି ଭାବରେ ସୁପ୍ରଭା ଗୋସ୍ୱାମୀ, ପ୍ରୀତି ବରୁଆ, ଲକ୍ଷହୀରା ଦାସ, ସୁଚିବ୍ରତା ରାୟଚୌଧୁରୀଙ୍କ ନାମ ଉଲ୍ଲେଖଯୋଗ୍ୟ ।

## ଆସାମୀ ସାହିତ୍ୟର ଯୁଦ୍ଧୋତ୍ତର କବିତା—

ବିଗତ ବିଶ୍ୱଯୁଦ୍ଧ ପର୍ଯ୍ୟନ୍ତ ମାନବିକ ତଥା ସ୍ୱର୍ଗୀୟ ପ୍ରେମ, ଦେଶାତ୍ମବୋଧ ଓ ପ୍ରକୃତି ହିଁ କବିତାର ମୁଖ୍ୟ ଉପଜୀବ୍ୟ ବିଷୟ ଥିଲା । ମାତ୍ର ବିଶ୍ୱଯୁଦ୍ଧ କବିଳରୁ ଆସାମର କବିଗଣ ମୁଖ୍ୟତଃ ସାମ୍ୟବାଦୀ ଓ ମାର୍କସୀୟ ଭାବଧାରାରେ ଅନୁପ୍ରାଣିତ ହୋଇ କାବ୍ୟକବିତା ରଚନାରେ ବ୍ରତୀ ହୋଇଅଛନ୍ତି । ସେମାନେ ଜୀବନକୁ ସହଜ ଓ ସରଳ ଭାବରେ ଗ୍ରହଣ ନ କରି ଜଟିଳ ସମସ୍ୟାସଂକୁଳ ଭାବରେ ଗ୍ରହଣ କରିଅଛନ୍ତି । ଏଣୁ ସେମାନଙ୍କ କବିତାରେ ଅସଂଗତ, ବ୍ୟଙ୍ଗ ବିଦ୍ରୂପାଦି ରୂପଲାଭ କରିଅଛି । ଏହି ତରୁଣ କବିଗଣ ସେମାନଙ୍କ ଉଦ୍ଦେଶ୍ୟ ପୂରଣ ଲାଗି ୟୁରୋପୀୟ ପ୍ରତୀକବାଦୀ କବିମାନଙ୍କ ପଦ୍ଧତି ଅନୁକରଣ କରିବାକୁ ଶ୍ରେୟସ୍କର ମଣିଅଛନ୍ତି ; କେତେକ ଇଂରେଜୀ କବି ଟି. ଏସ୍. ଏଲିଅଟ୍ ଓ ଆଧୁନିକ ବଙ୍ଗକବି ବୁଦ୍ଧଦେବ ବସୁ, ବିବେକାନନ୍ଦ ଦାସ, ଅମିୟ ଚକ୍ରବର୍ତ୍ତୀ ପ୍ରଭୃତିଙ୍କୁ ମଧ୍ୟ ଅନୁସରଣ କରୁଅଛନ୍ତି । ଆସାମର ବହୁ ତରୁଣକବି କଲିକତାରେ ଶିକ୍ଷାପ୍ରାପ୍ତ ଅଥବା ବଙ୍ଗଳା କବିତାକୁ ଅନୁରାଗର ସହିତ ପାଠ କରିଥିବା ଯୋଗୁଁ ବଙ୍ଗକବିମାନଙ୍କ ଅନୁକରଣ ଲାଗି ଆଗ୍ରହୀ ହେବା ସ୍ୱାଭାବିକ । ଏହି କବିମାନେ ସେମାନଙ୍କ କବିତାରେ ଶ୍ରେଣୀ-ସଂଘର୍ଷ, ପୁଞ୍ଜିବାଦୀ ଶୋଷଣ, ସମାଜ ବ୍ୟବସ୍ଥାର ଆଶୁ ପରିବର୍ତ୍ତନ, ନୂତନ ସମାଜ ବ୍ୟବସ୍ଥା ଯୋଗୁଁ ଜଟିଳ ଯୌନଜୀବନ ; ଅବଚେତନ ମନର ଜଟିଳତା ପ୍ରଭୃତି ବିଷୟ ସମୂହ ବିଚିତ୍ର ଛନ୍ଦ ଓ ଅଭିନବ ଶବ୍ଦଯୋଜନା ଭିତରେ ପ୍ରକାଶ କରୁଅଛନ୍ତି । ଏଥିପାଇଁ ବିଜ୍ଞାନ ଓ ମନସ୍ତତ୍ତ୍ୱରୁ ଶବ୍ଦାବଳୀ ଚୟନ କରି କବିତାରେ ପ୍ରୟୋଗ କରିବାରେ ମଧ୍ୟ ସେମାନେ ଯଥେଷ୍ଟ ଆଗ୍ରହୀ । ଏହି ସବୁ ଦୃଷ୍ଟିକୋଣରୁ

ଆସାମର ଏହି ନୂତନ କବିତାର ବିଷୟ ବସ୍ତୁ ତଥା ରୂପ ଆସାମର ପାରଂପରିକ କବିତା ଠାରୁ ବହୁ ପରିମାଣରେ ଭିନ୍ନ ହୋଇପଡ଼ିଅଛି । ଅଧୁନା ମୁକ୍ତଛନ୍ଦରେ ହିଁ ମୁଖ୍ୟତଃ ଆସାମୀ କବିତା ରଚିତ ହେଉଅଛି ।

ଏତାଦୃଶ ପ୍ରତୀକାତ୍ମକ କବିତା ରଚନାରେ ହେମ ବରୁଆଙ୍କୁ ଉଚ୍ଚ ସ୍ଥାନ ଦିଆଯାଇଥାଏ । ନୂତନ ରୂପକଳ୍ପ ବ୍ୟଙ୍ଗଧର୍ମୀ ବୈଶିଷ୍ଟ୍ୟ ତାହାଙ୍କ କବିତାରେ ଉପଲବ୍‌ଧ ହୁଏ । ନବକାନ୍ତ ବରୁଆ ମଧ୍ୟ ଏହି ଷ୍ଟାଇଲରେ ବହୁ ପ୍ରୟୋଗବାଦୀ କବିତା ରଚନା କରିଅଛନ୍ତି । ତାହାଙ୍କର "ହେ ଅରଣ୍ୟ", "ହେ ମହାନଗର" କବିତା ଜଟିଳ ସଂସ୍କୃତ ଶବ୍ଦ ଓ ସରଳତମ କଥ୍ୟ ଭାଷାର ବିଚିତ୍ର ସଂଯୋଗରେ ; ଏବଂ ଜଟିଳ ରୂପକଳ୍ପର ସମାବେଶ ଯୋଗୁଁ ଅଭିନବତ୍ୱ ଲାଭ କରିଅଛି । ଉଭୟଙ୍କ କବିତାରେ ଇଂରାଜୀ, ସଂସ୍କୃତ, ଆସାମୀ ଓ ବହୁ ଅଜ୍ଞାତ ବିଷୟରୁ ବହୁ ଉଦ୍ଧୃତି ପରିଲକ୍ଷିତ ହୁଏ ।

ସାମ୍ବାଦିକତା ଯେ ବହୁ ପରିମାଣରେ ଏତାଦୃଶ କବିତାର ବିକାଶରେ ସହାୟତା କରିଅଛି ; ଏହା ମଧ୍ୟ ସ୍ୱୀକାର୍ଯ୍ୟ । ଏ ସମ୍ପର୍କରେ "ରାମଧନୁ" ପତ୍ରିକାର ନାମ ଉଲ୍ଲେଖଯୋଗ୍ୟ । ଏହି ପତ୍ରିକାକୁ କେନ୍ଦ୍ର କରି ବହୁ ତରୁଣକବି ସେମାନଙ୍କର ସାହିତ୍ୟ ସାଧନା କରିଅଛନ୍ତି । ସାହିତ୍ୟକୁ ରାଜନୀତି ଓ ସମାଜ ସମସ୍ୟାର ବାହନ ଭାବରେ ବ୍ୟବହାର କରିବା ଯୋଗୁଁ ଏବଂ ଏକ ଅବ୍ୟବସ୍ଥିତ ଓ ବିଶୃଙ୍ଖଳ କାବ୍ୟ-ରୂପକୁ ସ୍ୱୀକାର କରିବା ଯୋଗୁଁ ଆଧୁନିକତମ ଆସାମୀ କବିତାଗୁଡ଼ିକ ସାମ୍ବାଦିକତାର ଊର୍ଦ୍ଧ୍ୱକୁ ଉଠିପାରିନାହିଁ । ଏଣୁ ଅତ୍ୟାଧୁନିକ ଆସାମୀ କବିତା ଏକ ପ୍ରୟୋଗ ଓ ପରୀକ୍ଷାତ୍ମକ ସ୍ଥଳରେ ଏବେ ମଧ୍ୟ ପଡ଼ିରହିଅଛି ।

## ଆଧୁନିକ ଆସାମୀ ନାଟ୍ୟ-ସାହିତ୍ୟ—

ନାଟକ ଓ ରଙ୍ଗମଞ୍ଚ କ୍ଷେତ୍ରରେ ଆସାମର ଐତିହ୍ୟ ମହତ୍ତ୍ୱପୂର୍ଣ୍ଣ । ମଧ୍ୟ-ଯୁଗର "ଅଙ୍କିଆ ନାଟ" ଏବେ ମଧ୍ୟ ଆସାମର ଗ୍ରାମାଞ୍ଚଳରେ ଚିତ୍ତବିନୋଦନ ପ୍ରଧାନ ମାଧ୍ୟମ ରୂପେ ପ୍ରଚଳିତ । ମାତ୍ର ଆଧୁନିକ ନାଟକ ଯଥାର୍ଥତଃ ପାଶ୍ଚାତ୍ୟର ଏକ ଦାନ । ଆଧୁନିକ ଆସାମୀ ନାଟ୍ୟସାହିତ୍ୟର ଆଦ୍ୟଯୁଗରେ ଗୁଣାଭିରାମ ବରୁଆ, ହେମଚନ୍ଦ୍ର ବରୁଆ, ରୁଦ୍ରରାମ ବର୍ଦ୍ଦଲୋଇ ପ୍ରଭୃତି ନାଟକ ରଚୟିତା ଭାବରେ ସ୍ମରଣୀୟ । ମାତ୍ର ନାଟକ ରଚନା ଲକ୍ଷ୍ମୀନାଥ ବେଜବରୁଆ ଓ ପଦ୍ମନାଥ ଗୋହାଁଇ ବରୁଆଙ୍କ ଦ୍ୱାରା ପରିପୂର୍ଣ୍ଣତା ଲାଭ କରିଥିଲା । ବେଜବରୁଆଙ୍କ ନାଟକମାନଙ୍କରେ ଦେଶାତ୍ମବୋଧ ମୁଖ୍ୟସ୍ଥାନ ଲାଭ କରିଅଛି । ଆସାମ ଇତିହାସର ଏକ ଗୌରବଜନକ

ଘଟଣାକୁ ଉପଜୀବ୍ୟ କରି ତାହାଙ୍କ 'ଚକ୍ରଧ୍ୱଜ ସିଂହ' ନାଟକ ଲିଖିତ ଅହୋମ ରାଜା ଚକ୍ରଧ୍ୱଜ ସିଂହଙ୍କ ( ୧୬୬୩—୧୬୬୯ ) ରାଜତ୍ୱ କାଳରେ କିପରି ଲଚିତ୍‌ବାର ଫୁକନଙ୍କ ସୁଦକ୍ଷ ନେତୃତ୍ୱ ଫଳରେ ବହୁବାର ମୁସଲମାନ ଆକ୍ରମଣକୁ ପ୍ରତିହତ କରାଯାଇ ପାରିଥିଲା, ତାହା ହିଁ ଏହି ନାଟକରେ ବର୍ଣ୍ଣିତ । ବେଲିମାର (ସୂର୍ଯ୍ୟାସ୍ତ) ନାଟକରେ ବର୍ମି ସୈନ୍ୟମାନଙ୍କ ଦ୍ୱାରା ଆସାମ ଆକ୍ରମଣ (୧୮୧୭), ଅହୋମ ରାଜବଂଶର ପତନ ଓ ଆସାମର ସ୍ୱାଧୀନତା ବିଲୋପ ପ୍ରଭୃତି ବର୍ଣ୍ଣିତ ହୋଇଅଛି । ତାହାଙ୍କ ଅନ୍ୟ ଏକ ଐତିହାସିକ ନାଟକ 'ଜୟମତି' ଡାଲିମି ନାମକ ଏକ ସରଳା ନାଗା ରମଣୀର ଜୀବନ ଚରିତକୁ କେନ୍ଦ୍ର କରି ଲିଖିତ । ଏତଦ୍‌ବ୍ୟତୀତ ସେ କିଛି ହାସ୍ୟ ଓ ବ୍ୟଙ୍ଗାତ୍ମକ ପ୍ରହସନ ମଧ୍ୟ ରଚନା କରିଅଛନ୍ତି ।

ପଦ୍ମନାଥ ଗୋହାଁଇ ବରୁଆ ଗଦ୍ୟ ଓ ପଦ୍ୟ ଉଭୟବିଧ ରଚନାକ୍ଷେତ୍ରରେ ସୁବିଖ୍ୟାତ । ସେ ଚାରିଗୋଟି ଐତିହାସିକ ନାଟକ ଓ ତିନିଗୋଟି ପ୍ରହସନ ରଚନା କରିଅଛନ୍ତି । ଅହୋମ ଇତିହାସକୁ ଭିତ୍ତିକରି ତାହାଙ୍କ 'ଜୟମତି' (୧୯୦୦), 'ଗଦାଧର' (୧୯୦୭), 'ସାଧନ' (୧୯୧୧) ଓ 'ଲଚିତ ଫୁକନ' (୧୯୧୫) ନାଟକଗୁଡ଼ିକ ରଚିତ । ଏହି ସବୁ ନାଟକଗୁଡ଼ିକରେ ଅନାବଶ୍ୟକ ଭାବାଳୁତା, ଅଲୌକିକତା, ପ୍ରକୃତି ପ୍ରୀତି, ଉଦ୍ଦେଶ୍ୟହୀନ ସଂଳାପ, ଅନାବଶ୍ୟକ ହାସ୍ୟରସାତ୍ମକ ଦୃଶ୍ୟ ପ୍ରଭୃତିର ଯୋଜନା ଯୋଗୁଁ କଥାବସ୍ତୁର ବିକାଶ ଓ ମହତ୍ତ୍ୱ ସମ୍ପାଦିତ ହୋଇପାରି ନାହିଁ । ମାତ୍ର ହାସ୍ୟରସାତ୍ମକ 'ଗାଓଁ ବୁଢ଼ା' (ଗ୍ରାମର ମୁଖ୍ୟ) ନାଟକରେ ତାହାଙ୍କର କୃତିତ୍ୱ ପରିଦୃଷ୍ଟ ହୋଇଥାଏ । ଜନସାଧାରଣଙ୍କ ଜୀବନ ଓ ପଲ୍ଲୀଚିତ୍ର ଚିତ୍ରଣରେ ତାହାଙ୍କର ଦକ୍ଷତା ଏହି ନାଟକକୁ ସାର୍ଥକତା ପ୍ରଦାନ କରିଅଛି । ଊନବିଂଶ ଶତାବ୍ଦୀର ଶେଷ ଦଶକରେ ଇଂରେଜ ରାଜତ୍ୱର ବାସ୍ତବ ଚିତ୍ର ଏହି ନାଟକରେ ପ୍ରତିଫଳିତ । ଇଂରେଜ ଶାସନକାଳରେ ଏକ ଅବୈତନିକ କର୍ମଚାରୀ ରୂପରେ ଗ୍ରାମର ଜନୈକ ମୁଖ୍ୟବ୍ୟକ୍ତି କିପରି ସରକାରୀ କାର୍ଯ୍ୟ ପରିଚାଳନା କରିବା ଯୋଗୁଁ ଆପଣାର ବହୁକ୍ଷତି ସାଧନ କରିଛି ଓ ପରିଣାମରେ ପୁରସ୍କାର ପରିବର୍ତ୍ତେ ଅନ୍ୟାନ୍ୟ ସରକାରୀ ପରିଦର୍ଶନକାରୀ କର୍ମଚାରୀ ଦ୍ୱାରା ଲାଞ୍ଛିତ, ନିଗୃହୀତ ହୋଇଅଛି, ତାହା ହିଁ ଏଥିରେ ଜୀବନ୍ତ ଭାବରେ ଚିତ୍ରିତ ।

ଅନ୍ୟତମ ବିଶିଷ୍ଟ ନାଟ୍ୟକାର ଭାବରେ ଚନ୍ଦ୍ରଧର ବରୁଆ ସୁପରିଚିତ । ଅମିତ୍ରାକ୍ଷର ଛନ୍ଦରେ ସେ 'ମେଘନାଦ ବଧ' ( ୧୯୦୪ ) ଓ 'ତିଲୋତ୍ତମା ସମ୍ଭବ' ନାମକ ଦୁଇଟି ପୌରାଣିକ ନାଟକ ରଚନା କରିଅଛନ୍ତି । ମାଇକେଲ ମଧୁସୂଦନ ଦତ୍ତଙ୍କ ଦ୍ୱାରା ନାଟ୍ୟକାରଙ୍କ ଚନ୍ଦ୍ରଧର ପ୍ରଭାବିତ ହୋଇଥିବା ଜଣାଯାଏ । ତାହାଙ୍କ 'ଭାଗ୍ୟପରୀକ୍ଷା' ପ୍ରହସନରେ ସେ ସହଜ ସରଳ ଗ୍ରାମ୍ୟଭାଷା ପ୍ରୟୋଗ କରି ପଲ୍ଲୀ

ଜୀବନର ଚିତ୍ର ଅଙ୍କନ କରିବାରେ ଦକ୍ଷତା ପ୍ରଦର୍ଶନ କରିଅଛନ୍ତି । ଏ ଯୁଗର ବହୁ ନାଟ୍ୟକାର ଗୁରୁତ୍ୱପୂର୍ଣ୍ଣ ନାଟକ ରଚନା କରିବା ପରିବର୍ତ୍ତେ ପ୍ରହସନ ରଚନାରେ ହିଁ ସେମାନଙ୍କର କୃତିତ୍ୱ ଦର୍ଶାଇଅଛନ୍ତି । ଏହି ପ୍ରହସନମାନଙ୍କ ମଧ୍ୟରୁ ମିତ୍ରଦେବ ମହନ୍ତଙ୍କ ବିପର୍ଯ୍ୟୟ, 'କୁକୁରିକଟା' 'ଅଠମଙ୍ଗଳା' ପ୍ରଭୃତି ତାହାର କୌତୁହଳ-ଉଦ୍ଦୀପକ କାହାଣୀ, ଉପଭୋଗ୍ୟ ସଂଳାପ, ହାସ୍ୟରସାତ୍ମକ ଦୃଶ୍ୟ ଯୋଗୁଁ ସଫଳତା ଲାଭ କରିଅଛି ।

ଚଳିତ ଶତାବ୍ଦୀର ପ୍ରଥମ ପାଦରେ ମଧ୍ୟ ଜାତୀୟ ଭାବନାରେ ଉଦ୍‌ବୁଦ୍ଧ ହୋଇ ନକୁଲଚନ୍ଦ୍ର ଭୂୟାଁ, ଦଦନବର ଫୁକନ, ପ୍ରସନ୍ନଲାଲ ଚୌଧୁରୀ, ନୀଳାମ୍ବର ଶୈଳଧର ରାଜଖୋଆଙ୍କ ('ସ୍ୱର୍ଗଦେଓ ପ୍ରତାପସିଂହ, ଦୈବଚନ୍ଦ୍ର ତାଲୁକଦାର 'ଭାସ୍କର ବର୍ମା') ପ୍ରଭୃତି ନାଟକ ରଚନା କରିଥିଲେ । ବହୁ ପୌରାଣିକ ନାଟକ ଲେଖି ସୁଖ୍ୟାତି ଅର୍ଜନ କରିଥିବା ଅତୁଲଚନ୍ଦ୍ର ହାଜାରିକା ଭାରତ ଇତିହାସର ଘଟଣାବଳୀକୁ ଅବଲମ୍ବନ କରି 'କନୌଜ କୁଆରୀ', 'ଛତ୍ରପତି ଶିବାଜି' 'କୁରୁକ୍ଷେତ୍ର' ପ୍ରଭୃତି ନାଟକ ଲେଖି ସ୍ମରଣୀୟ ହୋଇଅଛନ୍ତି । ପୂର୍ବରୁ ବଙ୍ଗଳା ନାଟକ ଆସାମର ରଙ୍ଗମଞ୍ଚମାନଙ୍କରେ ଅଭିନୀତ ହେଉଥିଲା । ଏହି ହାଜାରିକା ହିଁ ଆସାମୀ ସାହିତ୍ୟକୁ ମଞ୍ଚସ୍ଥ କରାଇବାରେ ନେତୃତ୍ୱ ନେଇଥିଲେ । ପୌରାଣିକ ବିଷୟବସ୍ତୁକୁ ଭିତ୍ତି କରି ମଧ୍ୟ ସେ ରୁକ୍ମଣୀ ହରଣ, ନରକାସୁର, ଶକୁନ୍ତଳା, ଶ୍ରୀ ରାମଚନ୍ଦ୍ର ପ୍ରଭୃତି ନାଟକ ରଚନା କରିଅଛନ୍ତି ।

ସ୍ୱାଧୀନତା ଲାଭ ପରେ ବିପ୍ଳବାତ୍ମକ ଐତିହାସିକ ନାଟକ ରଚନାକ୍ଷେତ୍ରରେ କ୍ରମବିକାଶ ପରିଲକ୍ଷିତ ହେଲା । ଚନ୍ଦ୍ରକାନ୍ତ ଫୁକନଙ୍କ 'ପିଆଲି ଫୁକନ' ଏବଂ ପ୍ରବୀଣ ଫୁକନଙ୍କ 'ମଣିରାମ ଦେଓ୍ୱାନ' ନାଟକ ତାହାର ପ୍ରକୃଷ୍ଟ ଉଦାହରଣ । ଊନବିଂଶ ଶତାବ୍ଦୀର ଦୁଇଜଣ ଦେଶପ୍ରେମୀ କିପରି ଜନ୍ମଭୂମିକୁ ସ୍ୱାଧୀନ କରାଇବା ଉଦ୍ଦେଶ୍ୟରେ ଗୋପନ ଷଡ଼ଯନ୍ତ୍ର କରିଥିଲେ ଓ ଦୁର୍ଭାଗ୍ୟବଶତଃ କିପରି ବ୍ରିଟିଶ-ମାନଙ୍କ ଦ୍ୱାରା ଧୃତ ହୋଇ ବିନା ବିଚାରରେ ଫାଶି ପାଇଥିଲେ, ତାହା ହିଁ ଏଇ ଦୁଇ ନାଟକରେ ବର୍ଣ୍ଣିତ ହୋଇଅଛି । ସୁରେନ୍ଦ୍ରନାଥ ସଇକିଆଙ୍କ କୁଶଲ କୋଆର ନାମ-ଧାରୀ ୧୯୪୨ ଆନ୍ଦୋଳନର ଜନୈକ ଶହୀଦଙ୍କ ଜୀବନକୁ ଉପଜୀବ୍ୟ କରି ଲିଖିତ ଏକ ନାଟକର ନାମ ମଧ୍ୟ ଏ ସମ୍ପର୍କରେ ଉଲ୍ଲେଖଯୋଗ୍ୟ ।

ପ୍ରଣୟ ପ୍ରଧାନ କାଳ୍ପନିକ (ରୋମାଣ୍ଟିକ୍) ନାଟକ ରଚୟିତା ଭାବରେ କମଳାନନ୍ଦ ଭଟ୍ଟାଚାର୍ଯ୍ୟ ଓ ଜ୍ୟୋତିପ୍ରସାଦ ଅଗରଓ୍ୱାଲଙ୍କ ନାମ ସୁବିଖ୍ୟାତ । କମଳାନନ୍ଦଙ୍କ "ନାଗା କୋଆର" ଓ ଜ୍ୟୋତି ପ୍ରସାଦଙ୍କ 'ସୋନିତ କୋଆରୀ' ଓ

କରେଙ୍ଗର ଲଗିରି ନାଟକଗୁଡ଼ିକ ତାହାର ପ୍ରକୃଷ୍ଟ ଉଦାହରଣ । ଜ୍ୟୋତି ପ୍ରସାଦଙ୍କୁ ଆଧୁନିକ ଆସାମୀ ନାଟକ ଓ ରଙ୍ଗମଞ୍ଚର ବଶିଷ୍ଟତମ ବ୍ୟକ୍ତି ଭାବରେ ଗ୍ରହଣ କରାଯାଏ । ଏକାଧାରରେ ଜାତୀୟତାବାଦୀ କବି ଓ ଗୀତଧର୍ମୀ ନାଟକ ରଚୟିତା ଭାବରେ ସେ ପ୍ରଖ୍ୟାତ । ୟୁରୋପରେ ଶିକ୍ଷାଲାଭ କରିଥିବା ଫଳରେ ତାହାଙ୍କ ସଙ୍ଗୀତର ରୂପ, ତାହାଙ୍କ ସ୍ୱରଯୋଜନା ଓ ନାଟ୍ୟକଳାରେ ବୈଦେଶିକ ପ୍ରଭାବ ଅନୁଭୂତ ହେବା ଏକାନ୍ତ ସ୍ୱାଭାବିକ ।

ଏତଦ୍‌ବ୍ୟତୀତ ସାମାଜିକ ନାଟକ ରଚୟିତା ଭାବରେ ଦେଖୁ 'ରାଜଖୋଆ, ମିତ୍ରଦେବ ମହନ୍ତଙ୍କୁ ମଧ୍ୟ ଆସାମୀନାଟ୍ୟ ସାହିତ୍ୟର ବଶିଷ୍ଟ ନାଟ୍ୟକାର ଭାବରେ ଗ୍ରହଣ କରାଯାଇଥାଏ । ଦେଖୁଧର ଯେଭଟକରଣ, ଉରୁଭଙ୍ଗ, କୁରଶଙ୍କେର ସଭ୍ୟତା, ଟନ ଘନ (ଟନ ସ୍ତ୍ରୀ ), ଅଶିକ୍ଷିତା ଘନ, ତପନର ପରଣାମ, ଗୋଚର ପ୍ରଭୃତ ନାଟକ ଓ ମିତ୍ରଦେବ, ବବାହ ବପର୍ଯ୍ୟୟ, କୁକଶ କନାର ଆଠମଙ୍ଗଲା, ଏ ଟା ଚୁରୁଟ, ଟେଙ୍ଗାର ଭଙ୍ଗାର, ଲେଛ୍ଲୀଭଲମ, ଲେଖ୍ଆଜ୍ୱର, ଆଚକଥାର ଥୋର, ବୋମ ଫୁଟକା ପ୍ରଭୃତ ନାଟକ ରଚନା କରିଥିଲେ । ମିତ୍ରଦେବଙ୍କ ହାସ୍ୟରସାତ୍ମକ ସାମାଜିକ ନାଟକ ଗୁଡ଼ିକ ଆସାମର ବହୁ ଜନପ୍ରିୟ ।

## ଆଧୁନିକ ଆସାମୀ ଉପନ୍ୟାସ—

ବିଂଶ ଶତାବ୍ଦୀ ପୂର୍ବରୁ ଆସାମୀ ସାହିତ୍ୟରେ ପ୍ରକୃତ ଉପନ୍ୟାସ ପଦବାଚ୍ୟ ରଚନା ଏକାନ୍ତ ବରଳ ଥିଲା । ଗଦ୍ୟରେ ରଚିତ ଏକ ଦୃଷ୍ଟିଶୀଳ କଳ୍ପନାପ୍ରଧାନ ସୃଷ୍ଟିଙ୍କ ରଚନା ଭାବରେ ଉପନ୍ୟାସ ରଚନାରେ ରଜନୀକାନ୍ତ ବର୍ଦ୍ଦୋଲୋଇ ଅଗ୍ରଣୀ । ତାହାଙ୍କୁ ଆସାମୀ ଉପନ୍ୟାସର ପ୍ରଥମ ରଚୟିତା ଭାବରେ ଗ୍ରହଣ କରାଯାଇ ଥାଏ । ※ ମୁଖ୍ୟତଃ ବୁରୁଞ୍ଜିମାନଙ୍କରୁ କଥାବସ୍ତୁ ଆହରଣ କରି ସେ ଐତିହାସିକ ଉପନ୍ୟାସ ରଚନା କରିଯାଇଅଛନ୍ତି । ମାତ୍ର ୧୮୯୫ ମସିହାରେ ରଚିତ ତାହାଙ୍କ ପ୍ରଥମ ଉପନ୍ୟାସ 'ମିରିଜିୟାରୀ' (ମିଶ୍ରି କନ୍ୟା) ଏକ ସାମାଜିକ ଉପନ୍ୟାସ । ଏହି ଉପନ୍ୟାସରେ ସୁବନଶିରୀ ନଦୀକୂଳ ମିରଜାତୀୟ ତରୁଣତରୁଣୀଙ୍କ ପ୍ରେମଲୀଳା ବର୍ଣ୍ଣିତ ହୋଇଅଛି । ଏଥିରୁ ଆଧୁନିକ ଆସାମୀ ସାହିତ୍ୟର ଆଦିପର୍ବରେ ଆଦିବାସୀ ଜୀବନକୁ କେନ୍ଦ୍ର କରି ଉପନ୍ୟାସ ରଚନାର ଅଭିନବତ୍ୱ ସହଜରେ ସ୍ୱୀକାର୍ଯ୍ୟ । ବର୍ଦ୍ଦୋଲୋଇଙ୍କ ଅନ୍ୟ ଦୁଇଟି ପ୍ରଣୟପ୍ରଧାନ ଉପନ୍ୟାସ ହେଉଛି 'ମନୋମତୀ'

---

※କେହି କେହି ଖ୍ରୀଃ ୧୮୭୬ରେ ପ୍ରକାଶିତ 'କାମିନୀକାନ୍ତ' ଉପନ୍ୟାସକୁ ପ୍ରଥମ ଉପନ୍ୟାସ ଭାବରେ ଗ୍ରହଣ କରିଥାନ୍ତି ।

(୧୯୦୦) ଓ 'ଚନ୍ଦ୍ରକାନ୍ତ ଲିପିର ( ୧୯୩୦ ) ବର୍ମୀୟମାନଙ୍କର ଆସାମ ଅଭିଯାନର ପୃଷ୍ଠଭୂମିରେ ଏହି ଉପନ୍ୟାସ ଦୁଇଟି ଲିଖିତ । ତାହାଙ୍କ ତୃତୀୟ ଉପନ୍ୟାସ ଜଣ୍ଡ୍‌ଆ ଦ୍ରୋହ (୧୯୦୯) ଅଷ୍ଟାଦଶ ଶତାବ୍ଦୀର ଏକ ରାଜନୈତିକ ଆନ୍ଦୋଳନକୁ କେନ୍ଦ୍ର କରି ଲିଖିତ । ଓ୍ୱାଲଟର୍‌ ସ୍କଟ ଓ ବଙ୍କିମଚନ୍ଦ୍ରଙ୍କ ରଚନା-ରୀତି ଦ୍ୱାରା ପ୍ରଭାବିତ ହୋଇ ସ୍ୱଦେଶର ଇତିହାସ ଓ ପ୍ରକୃତିକୁ ଉପଜୀବ୍ୟ କରି ଉପନ୍ୟାସ ରଚନାରେ ସେ ବ୍ରତୀ ହୋଇଥିବା କଥାସ୍ୱ ଏହି ଉପନ୍ୟାସର ଭୂମିକାରେ ସ୍ୱୀକାର କରିଅଛନ୍ତି । ଏତଦ୍‌ବ୍ୟତୀତ ସେ 'ନିର୍ମଳ ଭକ୍ତ' 'ରଙ୍ଗିଲୀ' 'ରାଦାଇ ଲିଗିର ପ୍ରଭୃତି ଉପନ୍ୟାସ ମଧ୍ୟ ରଚନା କରିଅଛନ୍ତି ।

ପଦ୍ମନାଭ ଗୋହାଁଇ ବରୁଆଙ୍କ 'ଲହରୀ' ଓ 'ଭାନୁମତୀ' ଉପନ୍ୟାସ ଦୁଇଟି ଅହୋମ ରାଜ ଯୁଗର ଏକ ପ୍ରଣୟ-ପ୍ରଧାନ କଥାବସ୍ତୁକୁ ଉପଜୀବ୍ୟ କରି ଲିଖିତ । ଦୈବଚନ୍ଦ୍ର ତାଲୁକଦାର ଓ ଦଣ୍ଡିନାଥ କଳିତା ତାହାଙ୍କ ଉପନ୍ୟାସରେ ନରନାରୀଙ୍କ ଜଟିଳ ସମ୍ପର୍କ ଓ ତାହାର ରହସ୍ୟ ଉଦ୍‌ଘାଟନ କରିବାକୁ ଉଦ୍ୟମ କରିଅଛନ୍ତି । ତାଲୁକଦାର 'ଆଦର୍ଶ ପୀଠ' (ଆଦର୍ଶ ଭୂମି) ଉପନ୍ୟାସରେ ଓ କଳିତାଙ୍କ 'ସାଧନା' ଉପନ୍ୟାସରେ ଗାନ୍ଧୀବାଦକୁ ଉପସ୍ଥାପିତ କରିଅଛନ୍ତି ।

ତଥାପି ବିଗତ ଶତାବ୍ଦୀ ପର୍ଯ୍ୟନ୍ତ ଅସାମୀ ସାହିତ୍ୟରେ ଉପନ୍ୟାସ ରଚନା କଳାସ୍ୱତା ଲଭ କରିପାରି ନ ଥିଲା । ସମ୍ପ୍ରତି ଉପନ୍ୟାସର ମାନବୃଦ୍ଧି ଲଭ କରିଅଛି ଓ ଏଥିରେ ବିବିଧ ନୂତନ ପ୍ରବୃତ୍ତି ସ୍ପଷ୍ଟତର ହୋଇ ଉଠିଛି । ପୁରାତନ ରୋମାଣ୍ଟଧର୍ମୀ କାଳ୍ପନିକ ଭାବପ୍ରଧାନ ( Romantic ) ଉପନ୍ୟାସ ପରିବର୍ତ୍ତେ ବାସ୍ତବତା-ମୂଳକ, ମନସ୍ତାତ୍ତ୍ୱିକ ଉପନ୍ୟାସସମୂହ ଅଧୁନା ରଚିତ ହେଉଅଛି । ସମାଜର ଅବଜ୍ଞାତ, ଅବହେଳିତ ବ୍ୟକ୍ତିମାନଙ୍କୁ ଉପଜୀବ୍ୟ କରି ଓ ସେମାନଙ୍କ ସାମାଜିକ ମୂଲ୍ୟବୋଧକୁ ନିର୍ଦ୍ଧାରଣ କରି ଆଧୁନିକ ଆସାମୀ ଔପନ୍ୟାସିକଗଣ ଉପନ୍ୟାସ ରଚନା କରୁଅଛନ୍ତି । ଏହିପରି ଆସାମର ବାସ୍ତବ ଗ୍ରାମ୍ୟଜୀବନକୁ ଉପଜୀବ୍ୟ କରି ବହୁ ଜନପ୍ରିୟ ଜୀବନର ନାଟକ (ଜୀବନର ବାଟକ) ଉପନ୍ୟାସଟି ଲିଖିତ । ହିତେଶ ଡେକାଙ୍କ 'ଆଦର ମାନୁହ' ( ଆଦର ମଣିଷ ) ଆଦିନାଥ ଶର୍ମାଙ୍କ 'ଜୀବନର ତିନି ଅଧ୍ୟାୟ' ଚନ୍ଦ୍ରକାନ୍ତ ଗୋଗୋଇଙ୍କ 'ସୋନାର ନଙ୍ଗଲ' (ସୁନାର ଲଙ୍ଗଳ), ଗୋବିନ୍ଦ ମହାନ୍ତଙ୍କ 'କୃଷକର ନାତି' ପ୍ରଭୃତି ଏତାଦୃଶ ଉତ୍କୃଷ୍ଟ ସାମାଜିକ ଉପନ୍ୟାସ ଭାବରେ ପରିଚିତ ହୋଇଥାଏ ।

ନଭକାନ୍ତ ବରୁଆଙ୍କ 'କପିଲ ପରିୟ ସାଧୁ' ଉପନ୍ୟାସରେ ସବୁ ବର୍ଷ ଆପଣାର ଗତିପଥ ପରିବର୍ତ୍ତନ କରୁଥିବା କପିଲ ନଦୀ କୂଳରେ ରହୁଥିବା ଅଧିବାସୀ-ମାନଙ୍କ କରୁଣ ଜୀବନବୃତ୍ତାନ୍ତ ଓ ପ୍ରଣୟ ଚିତ୍ରିତ ହୋଇଅଛି । ଯୋଗେଶ ଦାସଙ୍କ

'ଦର୍ଦ୍ୟାରଅରୁ ନାଦି' (ମେଘ ଆଉ ନୁହେଁ) ଉପନ୍ୟାସରେ ସୁଶୀଘ୍ରବୋଧ ଓ ସାମାଜିକ ଚଳଣୀରେ ଦ୍ୱିଧାଗ୍ରସ୍ତ ମହାପୁରୁଷର କୁପ୍ରଭାବର ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି । ବୀରେନ୍ଦ୍ର କୁମାର ଭଟ୍ଟାଚାର୍ଯ୍ୟ ଗଳ୍ପରଚନାରେ ଧୁରନ୍ଧର । ସେ ତାହାଙ୍କ 'ରାଜପଥେ ରିଙ୍ଗିୟାଇ' ( ରାଜପଥର ଡାକ ) ଉପନ୍ୟାସରେ ସମାଜର ଦୋଷଦୁର୍ବଳତାକୁ ଦୂର କରିବାକୁ ବ୍ରତୀ ଥିବା ଏକ ବିପ୍ଳବୀ ଯୁବକର ଜୀବନ ଚରିତ ବର୍ଣ୍ଣନା କରିଅଛନ୍ତି । ସମସ୍ତ ଉପନ୍ୟାସଟିରେ ଲେଖକ ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଓ ପାଣ୍ଡିତ୍ୟ ଅନୁଭୂତ ହୋଇଥାଏ । ସମସାମୟିକ ମନସ୍ତାତ୍ତ୍ୱିକ ଉପନ୍ୟାସ ରଚୟିତା ଭାବରେ ପ୍ରଫୁଲ୍ଲ ଦତ୍ତ ଗୋସ୍ୱାମୀ ଓ ରାଧିକାମୋହନ ଗୋସ୍ୱାମୀ ସୁଖ୍ୟାତି ଲାଭ କରିଅଛନ୍ତି । ଅବଚେତନ ମନର ଉଦ୍ଦେଶ୍ୟ, ମାନବ ହୃଦୟର ଆଶା-ଆକାଂକ୍ଷା ଚିତ୍ରଣରେ ଏହି ଦୁଇ ଜଣ ଲେଖକଙ୍କ ଦକ୍ଷତା ସ୍ୱୀକୃତ । ପ୍ରଫୁଲ୍ଲ ଦତ୍ତଙ୍କ 'କେକା ପତର କାପନ'ରେ ଏକ ତରୁଣ ବ୍ୟକ୍ତିର ଆଦର୍ଶଗତ ଅସ୍ଥିରତା ଚିତ୍ରିତ । ରାଧିକା ମୋହନଙ୍କ 'ଚକନାଇଆ' ଉପନ୍ୟାସରେ ଆଧୁନିକ ସମାଜ ସହିତ ସାମଞ୍ଜସ୍ୟ ରକ୍ଷି ଚଳିବାକୁ ଅସମର୍ଥ ହୋଇଥିବା ଏକ ଭଗ୍ନହୃଦୟ ତରୁଣ ବ୍ୟକ୍ତିର ଜୀବନ ଚରିତ ବର୍ଣ୍ଣିତ ହୋଇଅଛି ।

## କ୍ଷୁଦ୍ର ଗଳ୍ପ—

'ଅରୁଣୋଦୟ', 'ଜୋନାକୀ', 'ଆସାମବନ୍ଧୁ' ପ୍ରଭୃତି ପତ୍ରିକାରେ ସର୍ବପ୍ରଥମେ କ୍ଷୁଦ୍ର ଗଳ୍ପ ପ୍ରକାଶିତ ହୋଇଥିଲା । ଉପନ୍ୟାସ ସଦୃଶ ଆସାମୀ କ୍ଷୁଦ୍ର ଗଳ୍ପ ମଧ୍ୟ ପାଶ୍ଚାତ୍ୟ ପ୍ରଭାବ ଯୋଗୁଁ ବିକାଶଲାଭ କରିଅଛି । ଲକ୍ଷ୍ମୀନାଥ ବେଜବରୁଆଙ୍କ ସୃଷ୍ଟି-ସାଧନା ଫଳରେ ହିଁ ସର୍ବାଦୌ କ୍ଷୁଦ୍ର ଗଳ୍ପ ଉଚ୍ଚତମ ସାହିତ୍ୟିକ ସ୍ତରକୁ ଉନ୍ନୀତ ହୋଇପାରିଥିଲା । ଆଜୀବନ ଏକ ପତ୍ରିକାର ସମ୍ପାଦକରୂପେ ସେ କଥାବସ୍ତୁର ଅଭିବ୍ୟକ୍ତିକୁ ସଂକ୍ଷିପ୍ତ କରିବାରେ ଅଭ୍ୟସ୍ତ ଥିଲେ । ବେଜବରୁଆଙ୍କ ଗଳ୍ପଗୁଡ଼ିକରେ ଜୀବନର ଖଣ୍ଡାଂଶ, ଅନୁଭୂତିର କଣିକା, ସାମୟିକ ମନୋଭାବର (impression) ଚିତ୍ରଣ ଦେଖିବାକୁ ମିଳିଥାଏ । ତାହାଙ୍କ କ୍ଷୁଦ୍ର ଗଳ୍ପ ସଂଗ୍ରହ ଭାବରେ 'ସାଧୁ କଥାର କୁକି' 'ଯୋନବିରି' 'ସୁରଭି'ର ନାମ ଉଲ୍ଲେଖଯୋଗ୍ୟ । ଲକ୍ଷ୍ମୀନାଥ ଏବଂ ଶରତଚନ୍ଦ୍ର ଗୋସ୍ୱାମୀଙ୍କ ଗଳ୍ପମାନଙ୍କରେ ବାସ୍ତବତା ଓ ଆଞ୍ଚଳିକ ଚିତ୍ରଣ ମୁଖ୍ୟସ୍ଥାନ ଲାଭକରିଅଛି । ନଗେନ୍ଦ୍ର ନାରାୟଣ ଚୌଧୁରୀ ଓ ତ୍ରୈଲୋକ୍ୟନାଥ ଗୋସ୍ୱାମୀଙ୍କ ଗଳ୍ପମାନଙ୍କରେ ଗଭୀର ସମାଜ ସଚେତନତା ପରିଲକ୍ଷିତ ହୁଏ । ଏତାଦୃଶ ରଚନା ଭାବରେ ଗୋସ୍ୱାମୀଙ୍କ 'ମରୀଚିକା' 'ଅରୁଣା' ସୁପରିଚିତ । ଗୋସ୍ୱାମୀଙ୍କ 'ଜୀୟା ମା ନୁହ' (ଜୀଅନ୍ତା ମଣିଷ) କ୍ଷୁଦ୍ର ଉପନ୍ୟାସରେ ଯୁଦ୍ଧ ଯୋଗୁଁ କିପରି ସାମାଜିକତା ଓ ନୈତିକତାର ଅଧୋଗତି

ଘଟିଥିଲ ତାହା ହିଁ ବର୍ଣ୍ଣିତ । ମହି ତୋରା ଓ ଲକ୍ଷ୍ମୀନାଥ ଫୁକନଙ୍କ ଗଳ୍ପମାନଙ୍କରେ ବ୍ୟଙ୍ଗାତ୍ମକ ଦୃଷ୍ଟିକୋଣର ପ୍ରତିଫଳନ ଦେଖିବାକୁ ମିଳେ ।

ଲକ୍ଷ୍ମୀନାଥ ଶର୍ମା ଆସାମୀ ସାହିତ୍ୟରେ ଆଧୁନିକତମ କ୍ଷୁଦ୍ର ଗଳ୍ପ ରଚୟିତା ଭାବରେ ପ୍ରଖ୍ୟାତ । ଗଳ୍ପାବଳୀରେ ବିଶେଷତଃ ନାରୀ ଓ ତାହାର ଆବେଗକୁ ରୂପଦାନ କରିବାରେ ଲକ୍ଷ୍ମୀନାଥ ସର୍ବପ୍ରଥମ କୃତୀ-କଳାକାର । ତାହାଙ୍କ ପରେ ଅନ୍ୟାନ୍ୟ ଔପନ୍ୟାସିକଗଣ ଆଧୁନିକ ନାରୀ ଓ ସେମାନଙ୍କ ପ୍ରଣୟକୁ ଉପଜୀବ୍ୟ କରି ଗଳ୍ପ ରଚନା କରିଅଛନ୍ତି ।

ବୀଣା ବରୁଆ, ରାମଦାସ ପ୍ରଭୃତିଙ୍କ ନାମ ଏ ସମ୍ପର୍କରେ ଉଲ୍ଲେଖଯୋଗ୍ୟ । ବୀଣା ବରୁଆଙ୍କ 'ପଞ୍ଚ ପରିବର୍ତ୍ତନ' କ୍ଷୁଦ୍ର ଗଳ୍ପ ସଙ୍କଳନରେ କଲେଜରେ ଅଧ୍ୟୟନ କରୁଥିବା ଝିଅମାନଙ୍କର ଜୀବନ ସେମାନଙ୍କ ଭାବାଳୁତାପୂର୍ଣ୍ଣ ଅଚିରସ୍ଥାୟୀ ପ୍ରେମ ହିଁ ମୁଖ୍ୟତଃ ଚିତ୍ରିତ ହୋଇଅଛି ।

ଗ୍ରାମ୍ୟଜୀବନକୁ ନେଇ ଗ୍ରାମ୍ୟସମ୍ପର୍କୀୟ ବହୁ ସରସ ଗଳ୍ପ ସେ ରଚନା କରିଅଛନ୍ତି । କ୍ଷୁଦ୍ର ଗଳ୍ପ ରଚୟିତା ଭାବେ ରାମଦାସଙ୍କର କ୍ଷୁଦ୍ର ଗଳ୍ପାବଳୀରେ ବର୍ଣ୍ଣନାନୈପୁଣ୍ୟ ଓ ଗଳ୍ପକଥନ କଳାର ଉତ୍କର୍ଷ ପରିଲକ୍ଷିତ ହୁଏ । ବର୍ଣ୍ଣନାର ସଜୀବତା, କଥୋପକଥନର ଚତୁରୀ, ଭାବନାର ଗମ୍ଭୀରତା, ମନୋଭାବ ଅଭିବ୍ୟକ୍ତିର ଦକ୍ଷତା ତାଙ୍କ ଗଳ୍ପଗୁଡ଼ିକୁ ଉନ୍ନତ କଳାସୃଷ୍ଟିରେ ପରିଣତ କରିଅଛି । ତାଙ୍କର ଅଧିକାଂଶ ପ୍ରଣୟପ୍ରଧାନ ଗଳ୍ପରେ ମନୋବୈଜ୍ଞାନିକ ବିଶ୍ଳେଷଣ ଓ ସମବେଦନା ପରିଲକ୍ଷିତ ହୁଏ । ଏ ଶ୍ରେଣୀର ଗଳ୍ପ ମଧ୍ୟରେ 'ସେତୁବନ୍ଧନ' ଓ 'ବରଷା ଜେଉଆ ନାମେ' ଗଳ୍ପଦ୍ୱୟ ଉଲ୍ଲେଖଯୋଗ୍ୟ । ଦୀନବନ୍ଧୁ ଶର୍ମା ତାହାଙ୍କ 'ଉଷା' ଏବଂ 'ସଂଗ୍ରାମ' ନାମକ ଉପନ୍ୟାସ ଯୋଗୁଁ ଜନପ୍ରିୟତା ଲାଭ କରିଥିଲେ ହେଁ କ୍ଷୁଦ୍ର ଗଳ୍ପ ରଚୟିତା ଭାବେ ସେ ଅଧିକ ଖ୍ୟାତି ଅର୍ଜନ କରିଛନ୍ତି । ତାଙ୍କ କ୍ଷୁଦ୍ର ଗଳ୍ପମାନଙ୍କ ମଧ୍ୟରୁ 'କୂଲାଲ' (୧୯୫୨), 'ଅକାଳ ସନ୍ଧ୍ୟା' (୧୯୫୩), 'କୋୟା ଭାତୁରିୟା' ଓ 'ଅନ୍ୟାନ୍ୟ ଗଳ୍ପ' (୧୯୫୨), 'କଳ୍ପନା ଅରୁ ବାସ୍ତବ' (କଳ୍ପନା ଓ ବାସ୍ତବ) ପ୍ରସିଦ୍ଧ । ବିଶେଷ ଭାବରେ ତାହାଙ୍କ ଗଳ୍ପଗୁଡ଼ିକ ପ୍ରେମାତ୍ମକ । ନାରୀଚରିତ୍ରର କୁତ୍ସିତ ଓ ପ୍ରତାରଣାତ୍ମକ କାର୍ଯ୍ୟାବଳୀକୁ ହିଁ ସେ ମୁଖ୍ୟତଃ ରୂପଦାନ କରିଅଛନ୍ତି । ତାହାଙ୍କ 'ଯୋଆରନ' ଗଳ୍ପରେ ଏକ ନବବିବାହିତା ନାରୀର ପ୍ରେମଜନିତ ଅତୃପ୍ତି ବର୍ଣ୍ଣିତ । ମୋଟ ଉପରେ ତାହାଙ୍କ ଗଳ୍ପଗୁଡ଼ିକରେ ମାନବ ଚରିତ୍ରର ସଂକୀର୍ଣ୍ଣ ମନୋବୃତ୍ତିର ପରିଚୟ ମିଳିଥାଏ ।

ଲକ୍ଷ୍ମୀଧର ଶର୍ମାଙ୍କ ସାହିତ୍ୟସୃଷ୍ଟି ପରବର୍ତ୍ତୀ କାଳରୁ ଦ୍ୱିତୀୟ ପୃଥିବୀ ମହାଯୁଦ୍ଧ ପର୍ଯ୍ୟନ୍ତ ଯେଉଁମାନେ ଗଳ୍ପଲେଖକ ଭାବେ ପରିଚିତ, ସେମାନଙ୍କ ଉପରେ ଫ୍ରଏଡ୍‌ଙ୍କର ପ୍ରଭାବ ପରିଲକ୍ଷିତ ହୋଇଥାଏ । ସମକାଳୀନ ମହାଦେଶୀୟ ଗାଳ୍ପିକଙ୍କ ଗଳ୍ପ ଅଧ୍ୟୟନ ଏବଂ ଫ୍ରଏଡ୍‌ଙ୍କ ପ୍ରଭାବ ଫଳରେ ସେମାନଙ୍କ ଲେଖାରେ ଦୈହିକ କାମନାର ସ୍ଥୁରୁଣ ସ୍ପଷ୍ଟ ଜଣାଯାଏ । ଉକ୍ତ ଲେଖକଗୋଷ୍ଠୀ ଅବୈଧ ପ୍ରେମ ଓ ଦୈହିକ ଆକର୍ଷଣକୁ ଜୀବନର ଅନ୍ୟତମ ପ୍ରୟୋଜନୀୟ ବିଭାବରୂପେ ଦ୍ୱିଧାହୀନ ଭାବରେ ଗ୍ରହଣ କରିଛନ୍ତି । ନଗ୍ନପ୍ରେମବର୍ଣ୍ଣନା ଲାଗି ସେମାନେ କୌଣସି ପ୍ରକାର ସଂଶୟ ବା ତାହାକୁ ଗୋପନୀୟ କରିବାର ଆବଶ୍ୟକତା ଅନୁଭବ କରିନାହାନ୍ତି । ଏଥିରୁ ସେମାନେ ନୂତନ ସାମାଜିକ ଓ ବ୍ୟକ୍ତିଗତ ପୃଷ୍ଠଭୂମିରେ ନରନାରୀଙ୍କ ମଧ୍ୟରେ ଆଦିମ ସମ୍ପର୍କକୁ ନୂତନ ମୂଲ୍ୟବୋଧରେ ସମ୍ପୃକ୍ତ କରିବାକୁ ଚାହିଁଥିବା ଜଣାଯାଏ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ କବିତା, ନାଟକ, ଉପନ୍ୟାସ ପରି ଗଳ୍ପରେ ମଧ୍ୟ ପରିବର୍ତ୍ତନ ଦେଖାଦେଲା । ଆଜିର କ୍ଷୁଦ୍ର ଗଳ୍ପ ମଧ୍ୟବିତ୍ତଶ୍ରେଣୀ, ଶ୍ରମିକ ଏବଂ କୃଷକ ଶ୍ରେଣୀର ସମସ୍ୟା ପ୍ରକଟନରେ ନିୟୋଜିତ, ନୂତନ ସାମାଜିକ ଏବଂ ଅର୍ଥନୈତିକ ବାତାବରଣ, ସୁଖସୁବିଧାର ବୈଷମ୍ୟ ହିଁ କ୍ଷୁଦ୍ର ଗଳ୍ପର ଉପାଦାନରୂପେ ବିବେଚିତ ହେଉଅଛି । ଦ୍ୱିତୀୟ ବିଶ୍ୱଯୁଦ୍ଧର ପରିଣତି ସ୍ୱରୂପ ସାମାଜିକ, ରାଜନୈତିକ ଓ ନୈତିକ କ୍ଷେତ୍ରରେ ଘଟିଥିବା ପରିବର୍ତ୍ତନକୁ ଚିତ୍ରଣ କରିବା ହିଁ ଆଧୁନିକ ଆସାମୀ କ୍ଷୁଦ୍ର ଗଳ୍ପର ଉଦ୍ଦେଶ୍ୟ । ଅତୀତର ସମାଜ ବ୍ୟବସ୍ଥାରେ ପରିତ୍ୟକ୍ତ ଜୀବନଯାପନ କରୁଥିବା କୃଷକ ଜୀବନର ଚିତ୍ର ପରିବର୍ତ୍ତେ ଆଧୁନିକ ଆସାମୀ କଥାକାରଙ୍କ ରଚନାରେ ନୂତନ ସମାଜ ବ୍ୟବସ୍ଥାର ପରିଣତି ସ୍ୱରୂପ ଦୁଃଖ, ଦୈନ୍ୟ, ଶୋଷଣ, ଅତୃପ୍ତି ଓ ଶ୍ରମ-କୁଣ୍ଠତାର ଚିତ୍ରଣ ପରିଲକ୍ଷିତ ହେଉଅଛି । ଏତାଦୃଶ ଗଳ୍ପ ରଚନାରେ ଅବ୍ଦୁଲ ମଲ୍ଲିକ ବିଶେଷ କୃତିତ୍ୱ ଅର୍ଜନ କରିଛନ୍ତି । ଏତଦ୍‌ବ୍ୟତୀତ ଯୋଗେଶ ଦାସ, ବୀରେନ୍ଦ୍ର କୁମାର ଭଟ୍ଟାଚାର୍ଯ୍ୟ, ହେମେନ୍ ବରଦୋହାଇଁ, ଭବେନ୍ଦ୍ରନାଥ ସଇକିଆ ପ୍ରଭୃତି ଆଧୁନିକ ଆସାମୀ କ୍ଷୁଦ୍ର ଗଳ୍ପ କ୍ଷେତ୍ରରେ ନୂତନ ବର୍ଣ୍ଣବୈଭବ ଓ ବୈଚିତ୍ର୍ୟ ସଂଯୋଗ କରିବାରେ କୃତିତ୍ୱ ଅର୍ଜନ କରିଛନ୍ତି ।

## ପ୍ରବନ୍ଧ ସାହିତ୍ୟ—

ଊନବିଂଶ ଶତାବ୍ଦୀରେ ପୂର୍ଣ୍ଣାଙ୍ଗ ରୂପସମ୍ପନ୍ନ ହୋଇଥିବା ଗଦ୍ୟ କ୍ରମେ ପ୍ରବନ୍ଧରୂପେ ପରିଣତି ଲଭିକଲା ଆଧୁନିକ ଆସାମୀ ବ୍ୟକ୍ତିନିଷ୍ଠ ପ୍ରବନ୍ଧରଚୟିତା ଭାବେ ଲକ୍ଷ୍ମୀନାଥ ବେଜବଡ଼ୁଆଙ୍କ ନାମ ସର୍ବାଦୌ ସ୍ମରଣୀୟ । ବିବିଧ ସରସ ପ୍ରବନ୍ଧ

ରଚୟିତା ଭାବରେ ଓ ଉଦାର, ସହୃଷ୍ଟ, ସୂକ୍ଷ୍ମଦୃଷ୍ଟିସମ୍ପନ୍ନ ଆଲୋଚକ ଭାବେ ଲକ୍ଷ୍ମୀନାଥ ଆସାମୀ ପ୍ରବନ୍ଧ ସାହିତ୍ୟ କ୍ଷେତ୍ରରେ ଅମରତ୍ୱ ଲାଭ କରିଛନ୍ତି । ଇଂରାଜୀ ପ୍ରାବନ୍ଧିକ ଚେଷ୍ଟରଟନଙ୍କ ଭଳି ତାହାଙ୍କ ପ୍ରବନ୍ଧ ଗଳ୍ପଧର୍ମୀ । ଏଥିପାଇଁ ତାଙ୍କ ପ୍ରବନ୍ଧ ସମୂହ ସରସ, ସୁଖପାଠ୍ୟ ଓ ଆନନ୍ଦପ୍ରଦ । ଦୈନନ୍ଦିନ ଜୀବନର ତୁଚ୍ଛ ସାଧାରଣ ବିଷୟାବଳୀକୁ ସେ ହାସ୍ୟରସାତ୍ମକ ଭାବରେ ବର୍ଣ୍ଣନା କରିଅଛନ୍ତି । ସାର୍ ରୋଗର ଡିକଭରଲିଙ୍କ ପରି ସେ କୃପାବର ବାରବରୁଆ ନାମକ ଏକ ଚରିତ୍ର ମାଧ୍ୟମରେ ତାହାଙ୍କ ପ୍ରବନ୍ଧଗୁଡ଼ିକୁ ପରିକଳ୍ପିତ ଓ ସମ୍ପୃକ୍ତ କରିଅଛନ୍ତି । ଉକ୍ତ ଚରିତ୍ରର ମୁଦ୍ରାଦୋଷ ମାଧ୍ୟମରେ ସେ ଆସାମର ଜୀବନ ଓ ସମାଜର ବହୁ ବୈଶିଷ୍ଟ୍ୟକୁ ପ୍ରବନ୍ଧ ମାଧ୍ୟମରେ ରୂପାୟିତ କରିଛନ୍ତି । ଏହି ସରସ ପ୍ରବନ୍ଧଗୁଚ୍ଛ 'ବାର୍‌ବରୁଆ ଭାବର ବୁର୍‌ବୁରନି' ( ବାରବରୁଆଙ୍କ ଭାବନାର ପାଣିଫୋଟକା ) ନାମରେ ସୁବିଦିତ । ଏଥିରେ ସମକାଳୀନ ଘଟଣାବଳୀ ଅନୁଷ୍ଠାନ ଓ ବ୍ୟକ୍ତିବିଶେଷର ଅନ୍ତଃସାରଶୂନ୍ୟତା ଉନ୍ନତ ହାସ୍ୟରସାତ୍ମକ ରୀତିରେ ସରସ ଭାବରେ ବର୍ଣ୍ଣିତ ହୋଇଅଛି ; ତହିଁରୁ ଲେଖକଙ୍କର ସୂକ୍ଷ୍ମ ପର୍ଯ୍ୟବେକ୍ଷଣ ଓ ସମକାଳୀନ ଜୀବନ ସମସ୍ୟାର ଯଥାଯଥ ପରିଚୟ ମିଳିଥାଏ । ଏତାଦୃଶ ପ୍ରବନ୍ଧର ସୁଦକ୍ଷ ଅନୁକରଣକାରୀ ଭାବେ ହରିରାମ ଡେକା ଓ ହେମଚନ୍ଦ୍ର ବରୁଆଙ୍କ ନାମ ସ୍ମରଣୀୟ ।

ଗମ୍ଭୀର ଭାବୋଦ୍ଦୀପକ ପ୍ରବନ୍ଧ ରଚୟିତା ଭାବରେ ସତ୍ୟନାଥ ବୋରା ଆଧୁନିକ ଆସାମୀ ସାହିତ୍ୟରେ ସୁପରିଚିତ । ତାହାଙ୍କ 'ସାରଥୀ' 'ଚନ୍ଦ୍ରାକଳା'ରେ ସନ୍ନିବିଷ୍ଟ ପ୍ରବନ୍ଧାବଳୀରୁ ତାହା ହିଁ ପ୍ରତିପନ୍ନ ହୁଏ । ଏହି ପ୍ରବନ୍ଧାବଳୀ ମାଧ୍ୟମରେ ସତ୍ୟନାଥ ଆସାମୀ ପ୍ରବନ୍ଧ ସାହିତ୍ୟର ଭାଷାକୁ ଶୁଦ୍ଧ, ପ୍ରକାଶଶୈଳୀକୁ ସମୁନ୍ନତ କରି ଯାଇଅଛନ୍ତି । ଆସାମୀ ପ୍ରବନ୍ଧ ସାହିତ୍ୟର ଅନ୍ୟତମ ବିଶିଷ୍ଟ ଲେଖକ ଭାବରେ ବାଣୀକାନ୍ତ କାକତିଙ୍କ ନାମ ଚିରସ୍ମରଣୀୟ । ଆସାମୀ ଭାଷା ଓ ସାହିତ୍ୟ ସଂପର୍କରେ ମାର୍ଜିତ ସ୍ୱଚ୍ଛ ଶୈଳୀରେ ଜ୍ଞାନଗର୍ଭକ ଚିନ୍ତାପୂର୍ଣ୍ଣ ଓ ସିଦ୍ଧାନ୍ତମୂଳକ ବହୁ ପ୍ରବନ୍ଧ ରଚନାକରି ସେ ଆସାମୀ ସାହିତ୍ୟକୁ ପରିପୁଷ୍ଟ କରିଅଛନ୍ତି ।

ଇଂରାଜୀ ଶିକ୍ଷା ବିସ୍ତାର ଫଳରେ ଜାତୀୟତାର ବିକାଶ ସଙ୍ଗେ ସଙ୍ଗେ ଦେଶର ପ୍ରାଚୀନ ସାହିତ୍ୟ-ସଂସ୍କୃତି ଓ ଇତିହାସ ଅନୁଶୀଳନ ପ୍ରତି ଜନଚିତ୍ତରେ ଗଭୀର ଅନୁରାଗ ସଂଚାରିତ ହୋଇଥିଲା ଓ ବହୁ ଐତିହାସିକ ପ୍ରବନ୍ଧ ମଧ୍ୟ ରଚିତ ହୋଇଥିଲା । ହେମଚନ୍ଦ୍ର ଗୋସ୍ୱାମୀ ଓ ସୂର୍ଯ୍ୟକୁମାର ଭୂୟାଁଙ୍କ ଆସାମ ଇତିହାସ ଗବେଷଣାତ୍ମକ ପ୍ରବନ୍ଧାବଳୀ ଆଧୁନିକ ଆସାମୀ ସାହିତ୍ୟରେ ଶ୍ରେଷ୍ଠ ସଂପଦ ଭାବରେ ପରିଗୃହୀତ ହୋଇଥାଏ । ଶ୍ରୀଯୁକ୍ତ ଭୂୟାଁ 'ବୁରୁଞ୍ଜି' ମାନଙ୍କରେ ବ୍ୟବହୃତ ବହୁ ଅପ୍ରଚଳିତ ଶବ୍ଦକୁ ଯୁଗୋଚିତ ରୂପରେ ସ୍ୱୀୟ ରଚନାବଳୀରେ ପ୍ରୟୋଗକରି

ଆପଣାର ବୈଶିଷ୍ଟ୍ୟ ପ୍ରଦର୍ଶନ କରିଯାଇଛନ୍ତି । ହେମଚନ୍ଦ୍ର ଅସମିୟା ବ୍ୟାକରଣ ଓ ଅଭିଧାନ (ହେମକୋଷ) ସଂକଳନ କରି ଆସାମୀ ସାହିତ୍ୟକ୍ଷେତ୍ରରେ ସ୍ମରଣୀୟ ହୋଇଅଛନ୍ତି ।

ଗବେଷଣାତ୍ମକ ଓ ଆସାମୀ ଭାଷା ଓ ସାହିତ୍ୟର ଆଲୋଚନାତ୍ମକ ପ୍ରବନ୍ଧ ରଚୟିତା ଭାବରେ ବାଣୀକାନ୍ତ କାକତି, ଡମ୍ବେଶ୍ୱର ନିୟୋଗ, ସତ୍ୟନାଥ ବୋରା, ବିରଞ୍ଚି କୁମାର ବରୁଆ, ତ୍ରୈଲୋକ୍ୟନାଥ ଗୋସ୍ୱାମୀ, ହେମ ବରୁଆ, ମହେନ୍ଦ୍ର ବୋରା ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ । ବାଣୀକାନ୍ତଙ୍କ ଅସମିୟା ଭାଷାର ଉତ୍ପତ୍ତି ଓ ବିକାଶ, ଡମ୍ବେଶ୍ୱରଙ୍କ ଅସମିୟା ସାହିତ୍ୟର ଜିଲଙ୍ଗଣି, ସତ୍ୟନାଥଙ୍କ ସାହିତ୍ୟ ବିଚାର, ବିରଞ୍ଚିକୁମାରଙ୍କ କାବ୍ୟ ଆରୁ ଅଭିବ୍ୟଞ୍ଜନା, ତ୍ରୈଲୋକ୍ୟନାଥଙ୍କ ସାହିତ୍ୟ ଆରୁ ସମାଲୋଚନା, ହେମ ବରୁଅଙ୍କ ଆଧୁନିକ ସାହିତ୍ୟ ଏତାଦୃଶ ରଚନା ଭାବରେ ଉଲ୍ଲେଖଯୋଗ୍ୟ ।

ବେଣୁଧର ଶର୍ମା ମଧ୍ୟ ଶୁଦ୍ଧ ଆସାମୀ ଶବ୍ଦାବଳୀ ପ୍ରୟୋଗ କରି ଐତିହାସିକ ପ୍ରବନ୍ଧ ରଚନା କରିବା ଯୋଗୁଁ ସୁଖ୍ୟାତିଲାଭ କରିଅଛନ୍ତି । ବହୁ ପ୍ରାଚୀନ ଆସାମୀ ଗ୍ରନ୍ଥ ଆଲୋଚନା ସହ ସଂପାଦନା କରି ସୂର୍ଯ୍ୟକୁମାର ଆସାମ ସାହିତ୍ୟର ମହୋପକାର ସାଧନ କରିଯାଇଅଛନ୍ତି । ତାହାଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ହରିନାରାୟଣ ଦତ୍ତ ବରୁଆ, କାଳୀରାମ ମେଧି, ବିରିଞ୍ଚିକୁମାର ବରୁଆ, ଉପେନ୍ଦ୍ରଚନ୍ଦ୍ର ଲେଖରୁ, ମହେଶ୍ୱର ନିୟୋଗ, ସତ୍ୟେନ୍ଦ୍ରନାଥ ଶର୍ମା ପ୍ରଭୃତି ପ୍ରବନ୍ଧ ରଚନା କରି ଆସାମୀ ପ୍ରବନ୍ଧ-ସାହିତ୍ୟକୁ ପରିପୁଷ୍ଟ କରିଅଛନ୍ତି ।

ଆସାମର ସମୃଦ୍ଧ ଲୋକସାହିତ୍ୟ ପ୍ରତି ସର୍ବାଦୌ ଅନୁରକ୍ତ ହୋଇଥିଲେ ଲକ୍ଷ୍ମୀନାଥ ବେଜବରୁଆ ଓ ନକୁଳ ଚନ୍ଦ୍ର ଭୂୟାଁ । ସେମାନଙ୍କ ଉଦ୍ୟମରେ ବହୁ ଆସାମୀ ଲୋକକଥା ଓ ଲୋକଗୀତ ସଂଗୃହୀତ ହୋଇ ପାରିଥିଲା । ସମ୍ପ୍ରତି ଏ ବିଷୟରେ ବହୁ ଆଲୋଚନା ଓ ଗବେଷଣାତ୍ମକ ନିବନ୍ଧ ରଚିତ ହୋଇଅଛି ।

ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ପରିମାଣ ତଥା ବୈଚିତ୍ର୍ୟ ଦୃଷ୍ଟିରୁ ଆସାମୀ ସାହିତ୍ୟର ଯେଉଁ ବିକାଶ ହୋଇଅଛି, ତାହା ତାହାର ଉଜ୍ଜ୍ୱଳ ସମୃଦ୍ଧ ଭବିଷ୍ୟତର ହିଁ ନିଦର୍ଶନ ।

———

# ମୈଥିଳୀ ସାହିତ୍ୟ

## ମୈଥିଳୀ ଭାଷା—

ଭାରତର ଚଉଦଗୋଟି ପ୍ରଧାନ ଆଧୁନିକ ଭାରତୀୟ ଭାଷାମାନଙ୍କ ମଧ୍ୟରୁ ମୈଥିଳୀ ଭାଷା ଅନ୍ୟତମ । ବିଗତ ୭୦୦ ବର୍ଷ ଧରି ନିରବଚ୍ଛିନ୍ନ ଭାବରେ ଏହାର ସାହିତ୍ୟ ବିକାଶଲାଭ କରିଅଛି ।

ଅର୍ଥାତ୍ ବିହାରର ଉତ୍ତରଭାଗ ଓ ନେପାଳର ଦକ୍ଷିଣ ଅଂଚଳ ମିଥିଳା ବା ତିରୁହୁତ୍ ନାମରେ ପରିଚିତ । ହିମାଳୟ ଓ ଗଙ୍ଗା ମଧ୍ୟବର୍ତ୍ତୀ ଏହି ଅଞ୍ଚଳରେ ମୈଥିଳୀ ଭାଷା ପ୍ରଚଳିତ । ବିଗତ ଦୁଇ ଶତାବ୍ଦୀ ମଧ୍ୟରେ ଏହାର ସ୍ୱାତନ୍ତ୍ର୍ୟ ସ୍ୱୀକାର ସଂପର୍କରେ ବହୁ ମତଦ୍ୱୈଧ ଓ ପ୍ରତିକୂଳତା ସଂଘଟିତ ହୋଇଅଛି । ଏହା ଭ୍ରମାତ୍ମକ ଭାବରେ ବଙ୍ଗଳା ଅଥବା ହିନ୍ଦୀର ଉପଭାଷା ଭାବେ ଗୃହୀତ ହେଉଥିଲା । ଭାଷାତତ୍ତ୍ୱବିତ୍ ସାର୍ ଜର୍ଜ ଗ୍ରିୟରସନ୍ ପ୍ରଥମେ ଏହା ଏକ ସ୍ୱତନ୍ତ୍ର ଭାଷା ବୋଲି ସ୍ୱୀକାର କରିଥିଲେ । ବିଗତ ଅର୍ଦ୍ଧଶତାବ୍ଦୀ ମଧ୍ୟରେ ହରପ୍ରସାଦ ଶାସ୍ତ୍ରୀ, ନଗେନ୍ଦ୍ର ନାଥ ଗୁପ୍ତ, ସୁନୀତି କୁମାର ଚଟ୍ଟାର୍ଜୀ, ଡକ୍ଟର ଜୟକାନ୍ତ ମିଶ୍ର ଏବଂ ମିଥିଳାର ବହୁ ଗବେଷକ ଓ ପଣ୍ଡିତମାନଙ୍କ ଉଦ୍ୟମ ଫଳରେ ଏହି ଭାଷାର ଓ ସାହିତ୍ୟର ସ୍ୱାତନ୍ତ୍ର୍ୟ ସ୍ୱୀକୃତିଲାଭ କରିଅଛି । ଏହି ଭାଷାର ବ୍ୟାକରଣ, ଭାଷାତତ୍ତ୍ୱ, ସାହିତ୍ୟର ଇତିହାସ ପ୍ରଭୃତି ପ୍ରଣୀତ ହେବା ସଙ୍ଗେ ସଙ୍ଗେ ଏହି ଭାଷାରେ ବହୁ ପ୍ରାଚୀନ ଓ ଆଧୁନିକ ଗ୍ରନ୍ଥ ମୁଦ୍ରିତ ହୋଇଅଛି ।

ବିହାର, ବଙ୍ଗ ଓ ଅନ୍ୟ ନିକଟବର୍ତ୍ତୀ ରାଜ୍ୟରେ ହିନ୍ଦୁ, ମୁସଲମାନ ନିର୍ବିଶେଷରେ ପ୍ରାୟ ଦେଢ଼କୋଟି ଲୋକ ଏହି ଭାଷାରେ କଥୋପକଥନ କରିଥାଆନ୍ତି । ମାଗଧି ପ୍ରାକୃତ ଭାଷାରୁ ଏହି ଭାଷା ସୃଷ୍ଟି ହୋଇଅଛି । ମହାମହୋପାଧ୍ୟାୟ ଡକ୍ଟର ଉମେଶ ମିଶ୍ରଙ୍କ ମତାନୁସାରେ ମାଗଧି ପ୍ରାକୃତ ଚାରି ଭାଗରେ ବିଭକ୍ତ । (୧) ଉତ୍ତର-ପୂର୍ବ (ଆସାମୀ), (୨) ଦକ୍ଷିଣ ପୂର୍ବୀ (ଓଡ଼ିଆ), (୩) କେନ୍ଦ୍ରସ୍ଥ (ବଙ୍ଗଳା ଓ ମୈଥିଳୀ), (୪) ପଶ୍ଚିମୀ (ଭୋଜପୁରୀ) ମୈଥିଳୀ ଭାଷାର ଲିପି "ମୈଥିଳଲିପି" 'ମିଥିଳାକ୍ଷର' ଓ ବିଶେଷଭାବରେ 'ତିରୁହୁତା' ନାମରେ ପରିଚିତ । ଏକ ମୂଳଲିପି 'ବ୍ରାହ୍ମୀରୁ ଦେବନାଗରୀ ଓ ବଙ୍ଗଳା ଆସାମୀ, ମୈଥିଳୀ (ତିରୁହୁତା) ଓଡ଼ିଆ, କଇଥି ପ୍ରଭୃତି ପୂର୍ବଭାରତୀୟ ଲିପିସମୂହ ସୃଷ୍ଟି ହୋଇଅଛି । ଓଡ଼ିଆ ଲିପି ଅପେକ୍ଷା ବଙ୍ଗଳା ଲିପି ସହିତ ମୈଥିଳୀର ଅଧିକ ସାମଞ୍ଜସ୍ୟ ଦେଖାଯାଏ ।

## ୧ । ମୈଥିଳୀ ସାହିତ୍ୟର ଯୁଗ ବିଭାଗ—

ଆଲୋଚନାର ସୁବିଧା ଦୃଷ୍ଟିରୁ ମୈଥିଳୀ ସାହିତ୍ୟର କ୍ରମବିକାଶର ଧାରାକୁ ନିମ୍ନୋକ୍ତ ତିନୋଟି ପର୍ଯ୍ୟାୟରେ ବିଭକ୍ତ କରାଯାଇଥାଏ । ଯଥା—(୧) ଆଦିକାଳ (ଖ୍ରୀ: ୧୩୦୦-ଖ୍ରୀ: ୧୬୦୦)—ଏହି ସମୟରେ ମୈଥିଳୀ ସାହିତ୍ୟ ସୃଷ୍ଟି ହୋଇଥିଲି ଓ ବହୁ ଗୀତିକବିତା ମାଧ୍ୟମରେ ତାହା ଅଭିବ୍ୟକ୍ତ ଲାଭ କରିଥିଲା । ଖ୍ରୀ: ୧୪୦୦ରେ ଏହି ସାହିତ୍ୟ ସୁପ୍ରସିଦ୍ଧ କବି ବିଦ୍ୟାପତିଙ୍କ ଦ୍ୱାରା ସମୃଦ୍ଧ ଓ ପ୍ରଭାବିତ ହେଲା । ମାଗଧି ଅପଭ୍ରଂଶର ଅନାଦର ଓ ଶିଥିଳତା ପରେ ମୈଥିଳୀ ଭାଷା ହିଁ ପୂର୍ବ-ଭାରତରେ ଅଧିକ ଗୌରବସମ୍ପନ୍ନ ଓ ଜନପ୍ରିୟ ଭାବରେ ପରିଗଣିତ ହୋଇଥିଲା ।

## ୨ । ମଧ୍ୟଯୁଗ (୧୬୦୦-୧୮୬୦)

ଏହି ସମୟରେ ନାଟ୍ୟସାହିତ୍ୟର ବିକାଶ ଘଟିଥିଲା । ମାତ୍ର ରାଜନୈତିକ କାରଣରୁ ମିଥିଳା ଅପେକ୍ଷା ନେପାଳରେ ହିଁ ଏହି ନାଟ୍ୟସାହିତ୍ୟ ସୃଷ୍ଟି ଓ ବିକାଶ ସାଧନ ସମ୍ଭବପର ହୋଇଥିଲା । ଏ ଯୁଗର ବିଶିଷ୍ଟ ଓ ପ୍ରତିନିଧି ସ୍ଥାନୀୟ ଲେଖକ ଭାବରେ ବଂଶମଣି ଝା, ଜଗତ ପ୍ରକାଶ ମଲ୍ଲ, ଉମାପତି ଉପାଧ୍ୟାୟଙ୍କ ନାମ ଉଲ୍ଲେଖଯୋଗ୍ୟ । ଆସାମର କବି ଶଙ୍କର ଦେବଙ୍କ ରଚିତ 'ଅଙ୍କିଆ ନାଟ'ଗୁଡ଼ିକୁ ମଧ୍ୟ ଏ ଯୁଗର ସୃଷ୍ଟି ଭାବରେ ଗଣନା କରାଯାଏ ।

## ୩ । ଆଧୁନିକ ଯୁଗ (୧୮୬୦)

ଏହି ଯୁଗର ପ୍ରାରମ୍ଭକାଳ ମୈଥିଳୀ-ସାହିତ୍ୟ ଇତିହାସରେ ଏକ ଅବନତିର କାଳ ଥିଲେ ହେଁ କ୍ରମେ ଏହା ମହାରାଜା ଲକ୍ଷ୍ମୀଶ୍ୱର ସିଂହଙ୍କ (୧୮୮୦-୯୮) ପୃଷ୍ଠପୋଷକତା ଲାଭକରି ଦ୍ରୁତ ଅଗ୍ରଗତି କରିଥିଲା । ଚଳିତ ଶତାବ୍ଦୀର ପ୍ରାରମ୍ଭରୁ ମୁଖ୍ୟତଃ ଏହା ଗଦ୍ୟସାହିତ୍ୟ ମାଧ୍ୟମରେ ବିକାଶ ଲାଭ କରୁଅଛି । ଇଂରାଜୀ ଶିକ୍ଷା ବିସ୍ତାର ଫଳରେ ଗଦ୍ୟ ବ୍ୟତୀତ ନୂତନ ରୀତିରେ ନାଟକ, କବିତା ଓ ଗଦ୍ୟର କ୍ରମବିକାଶ ହେଉଅଛି ।

## ମୈଥିଳୀ ସାହିତ୍ୟରେ ପ୍ରଚଳିତ ବିବିଧ ସାହିତ୍ୟ ରୂପ—

**(କ) ମହାକାବ୍ୟ**—(୧) ସଂସ୍କୃତ ମହାକାବ୍ୟର ଅନୁବାଦ ବା ରୂପାନ୍ତର-ମୂଳକ—ଅଚ୍ୟୁତାନନ୍ଦ ଦାଶଙ୍କ 'ମହାଭାରତ', 'ରଘୁବଂଶ'କୁ ଏହି ପର୍ଯ୍ୟାୟଭୁକ୍ତ କରାଯାଇପାରେ ।

୨ । ସଂସ୍କୃତ ମହାକାବ୍ୟଦର୍ଶନରେ ଲିଖିତ ମହାକାବ୍ୟ—ବଦ୍ରିନାଥ ଝାଙ୍କ ଏକାବଲୀ ପରିଣୟ, ରଘୂନାଥ ଦାସଙ୍କ ସୁଭଦ୍ରାହରଣ, ତନ୍ତ୍ରନାଥ ଝାଙ୍କ କୀଚକବଧ ଏତାଦୃଶ ରଚନା ଭାବରେ ଗଣନୀୟ । ଗୌରୀଶଙ୍କର ଝା ଏହିପରି ବଙ୍ଗକବି ମାଇକେଲ ମଧୁସୂଦନଙ୍କ 'ମେଘନାଦ ବଧ'କୁ ମୈଥିଳୀରେ ଅନୁବାଦ କରିଥିଲେ । ଏହା ମଧ୍ୟ ସଂସ୍କୃତ ମହାକାବ୍ୟ ଆଦର୍ଶରେ ଲିଖିତ ।

୩ । ମହାକାବ୍ୟର କେତେକ ଲକ୍ଷଣସମ୍ପନ୍ନ ରଚନା—ଚନ୍ଦା ଝାଙ୍କ 'ରାମାୟଣ', ମନବୋଧଙ୍କ 'କୃଷ୍ଣଜନ୍ମ' ପ୍ରଭୃତି କାବ୍ୟକୁ ଏହି ଶ୍ରେଣୀଭୁକ୍ତ କରାଯାଇ ପାରେ ।

## (ଖ) ଗୀତିକାବ୍ୟ—

୧ । କାବ୍ୟ, ମହାକାବ୍ୟ ଅପେକ୍ଷା ଗୀତିକାବ୍ୟ ବା ଖଣ୍ଡକାବ୍ୟ ମୈଥିଳୀ ସାହିତ୍ୟରେ ଅଧିକ ଅଂଶ ଅଧିକାର କରିଅଛି । ବିଦ୍ୟାପତି ପ୍ରଭୃତିଙ୍କ ସଙ୍ଗୀତାବଳୀ ତାହାର ଉଦାହରଣ ।

୨ । ପୌରାଣିକ ଓ କିମ୍ବଦନ୍ତୀମୂଳକ ବୀରଚରିତମାନଙ୍କ ଜୀବନର ଏକ ଘଟଣାରୁ ଉପଜୀବ୍ୟ କରି ଅନୁପ ମିଶ୍ର 'ନାରଦ ବିବାହ', ସିଦ୍ଧିନାଥ ଝା 'ସତୀ ବିଭୂତି', ରଘୁନନ୍ଦନ ଦାସଙ୍କ 'ବୀରବାଳକ', ଭୁଣବନ୍ତଲାଲ ଦାସଙ୍କ 'ଗଜଗ୍ରାହୋଦ୍ଧାର', ଲାଲଦାସଙ୍କ 'ଗଙ୍ଗାଲହରି', 'ଗଣେଶ ଖଣ୍ଡ' ପ୍ରଭୃତି ଖଣ୍ଡକାବ୍ୟ ରଚିତ । ଏତଦ୍‌ବ୍ୟତୀତ 'ମେଘଦୂତ', 'ଋତୁସଂହାର', 'ଭର୍ତ୍ତୃହରି ନିର୍ବେଦ କାବ୍ୟ', 'ବିରହିଣୀ ବ୍ରଜାଙ୍ଗନା' ପ୍ରଭୃତିକୁ ଅନ୍ୟ ସାହିତ୍ୟର ଆହରଣାତ୍ମକ ଗୀତିକାବ୍ୟ ପର୍ଯ୍ୟାୟରେ ଗ୍ରହଣ କରାଯାଇପାରେ ।

୩ । ବାତାହ୍ୱାନ କାବ୍ୟ—ଚନ୍ଦା ଝା ଓ ଭୋଲା ଝା କେତେକ ବାତାହ୍ୱାନ କାବ୍ୟ ରଚନା କରିଅଛନ୍ତି । ଗ୍ରୀଷ୍ମକାଳରେ ପବନକୁ ଧୀରେ ବହିବାକୁ ଏଥିରେ ଅନୁରୋଧ କରାଯାଇଥାଏ । ଏତାଦୃଶ ଗୀତିକାବ୍ୟକୁ ମୈଥିଳୀ ଗୀତିକାବ୍ୟର ଏକ ବୈଶିଷ୍ଟ୍ୟ ଭାବରେ ଗ୍ରହଣ କରାଯାଇପାରେ ।

୪ । ବିରୁଦାବଳୀ—ଲାଲଦାସ ଓ ସିଦ୍ଧିନାଥ ଝାଙ୍କ ବିରୁଦାବଳୀ ଏହାର ପ୍ରକୃଷ୍ଟ ଉଦାହରଣ ।

୫ । ବିବିଧ—'ସମ୍ବର' (ସ୍ୱୟମ୍ବର) 'କୋବର ଗୀତ' ପ୍ରଭୃତି ଏହି ପର୍ଯ୍ୟାୟଭୁକ୍ତ କରାଯାଏ । 'ସମ୍ବର' କାଣ୍ଡ କାବ୍ୟରେ ରାମ, ଜଗନ୍ନାଥ ଓ କୃଷ୍ଣ ପ୍ରଭୃତିଙ୍କ ବିବାହ ହିଁ ବର୍ଣ୍ଣିତ ହୋଇଥାଏ । ୧୯ ଶତାବ୍ଦୀର ବହୁ ଗୌଣକବି ଏତାଦୃଶ ରଚନା ପ୍ରଣୟନ କରିଯାଇଅଛନ୍ତି ।

ମୈଥିଲୀ ସାହିତ୍ୟ ଆଲୋଚକ ଚର୍ଯାଗୀତିମାନଙ୍କୁ ମଧ୍ୟ ସେମାନଙ୍କ ସାହିତ୍ୟର ପ୍ରାଚୀନତମ ରଚନା ଭାବରେ ଗ୍ରହଣ କରିଥାଆନ୍ତି । ମୈଥିଳୀ ସାହିତ୍ୟରେ ପ୍ରଚଳିତ ସମସ୍ତ ପ୍ରକାର ଗୀତିକାବ୍ୟ ରୂପର ବ୍ୟବହାର ବିଦ୍ୟାପତିଙ୍କ ରଚନାବଳୀରେ ପରିଦୃଷ୍ଟ ହୁଏ । ମୈଥିଳୀ ଗୀତିକାବ୍ୟ ବା ସଙ୍ଗୀତଗୁଡ଼ିକ ଓଡ଼ିଆ ସଙ୍ଗୀତ ସଦୃଶ ଧ୍ରୁବାପଦ, ଅନ୍ତର୍ବର୍ତ୍ତୀ କେତେଗୋଟି ପଦ ଓ ଭଣିତାଯୁକ୍ତ । ଘୋଷା ପଦରେ 'ନା', ହୋ, ହେ ଅଥବା ସଜନୀ ଗୋ ପ୍ରଭୃତି ବ୍ୟବହୃତ । ତିରହୁତୀ ବା ତିର ହୁତା ନାମରେ ମଧ୍ୟ ଏହି ଗୀତଗୁଡ଼ିକ ପରିଚିତ । ସାଧାରଣତଃ ଏଥିରେ ନାୟିକାର ମନୋଭାବ ବର୍ଣ୍ଣିତ ହୋଇଥାଏ । ଏହାର ଏକ ଉପବିଭାଗକୁ 'ବାଟ-ଗମନୀ' କୁହାଯାଏ । ଏତାଦୃଶ ଗୀତରେ ଗମନକାରିଣୀ ନାୟିକାର ରୂପଗୁଣଅବସ୍ଥା ବର୍ଣ୍ଣିତ ହୋଇଥାଏ । ବିଦ୍ୟାପତିଙ୍କ 'ବାଟଗମନୀ' ଗୀତଗୁଡ଼ିକ ମୈଥିଳୀ ସାହିତ୍ୟରେ ସର୍ବୋତ୍କୃଷ୍ଟ ବିବେଚିତ ହୋଇଥାଏ ।

ତିରୁହୁତା ଗୀତର ଅନ୍ୟ ଏକ ବିଭାବ 'ଗୋଲାରି' ନାମରେ ପରିଚିତ । କୃଷ୍ଣ ଓ ଗୋପୀମାନଙ୍କ କ୍ରୀଡ଼ାକୌତୁକ ଏହି ଗୀତରେ ବର୍ଣ୍ଣିତ ହୋଇଥାଏ । ନନ୍ଦିପତିଙ୍କୁ ମୈଥିଳୀ ସାହିତ୍ୟର ଶ୍ରେଷ୍ଠ ଗୋଲାରିଙ୍କୁ ରଚୟିତା ଭାବରେ ଗ୍ରହଣ କରାଯାଇଥାଏ । କୃଷ୍ଣ ଓ ଗୋପୀଲୀଳାତ୍ମକ 'ରାସ' ମଧ୍ୟ ତିରୁହୁତା ଗୀତର ଅନ୍ୟ ଏକ ପ୍ରକାର ଭେଦ ।

'ସ୍ତ୍ରୀମାନ' ଓ 'ପୁରୁଷମାନ' ଭେଦରେ ଦୁଇ ଭାଗରେ ବିଭକ୍ତ ମାନଧରଣିର ଗୀତିକବିତାରେ ପ୍ରେମିକ ଓ ପ୍ରେମିକା ପରସ୍ପରକୁ ମାନ ତ୍ୟାଗ କରିବା ଲାଗି ଅନୁରୋଧ କରିବା ବିଷୟ ବର୍ଣ୍ଣିତ ହୋଇଥାଏ । 'ସମାଦାଉଣୀ' (ସମ୍ବାଦବାଣୀ) ଗୀତଗୁଡ଼ିକ ବିଦାୟକାଳୀନ ଭାବନା, ବିଶେଷତଃ ସ୍ୱାମୀଗୃହକୁ ଯାଉଥିବା କନ୍ୟାର ସମ୍ପର୍କକୁ ଉପଜୀବ୍ୟ କରି ରଚିତ ହୋଇଥାଏ । ଦୁର୍ଗାମୂର୍ତ୍ତି ବିସର୍ଜନ ଉପଲକ୍ଷ୍ୟରେ ମଧ୍ୟ ଏତାଦୃଶ ଗୀତ ରଚିତ ହୋଇଥିବାର ଦେଖାଯାଏ । ଗଣନାଥ ଝା ଓ ବିନ୍ଧ୍ୟନାଥ ଝା ଏତାଦୃଶ ଗୀତରଚନା କ୍ଷେତ୍ରରେ ଆପଣାର ବିଶେଷତ୍ୱ ରଖିଯାଇ ଅଛନ୍ତି । ଗ୍ରାମ୍ୟନାରୀମାନେ ପ୍ରଭାତରେ ଶସ୍ୟପେଶିବା ଅବକାଶରେ ଗାଉଥିବା ଗୀତଗୁଡ଼ିକ 'ଲଗନ' ନାମରେ ପରିଚିତ । ଚିଥି ଓ ଗଣନାଥ ଝା ଏହାକୁ ଉପଯୋଗ କରି ସରସ ଗୀତିକାବ୍ୟ ରଚନା କରିଯାଇ ଅଛନ୍ତି ।

ଚଇତ ବା 'ଚଇତାବର' ଗୀତରେ ଚୈତ୍ରମାସର ପ୍ରଶସ୍ତି ଭାବନାକୁ ବ୍ୟକ୍ତ କରାଯାଇଥାଏ । ଏହି ଧରଣର ଅଧିକାଂଶ ଗୀତକୁ ଲୋକଗୀତ ପର୍ଯ୍ୟାୟଭୁକ୍ତ କରାଯାଇଅଛି । ଋତୁକାଳୀନ ଗୀତ ଭାବରେ 'ମଲାର' ଗୀତ ମଧ୍ୟ ପ୍ରସିଦ୍ଧ । ଏହା 'ପାଭସ ମଲାର' ( ବର୍ଷାକାଳରେ ଗୀତ ହୋଇଥାଏ ) ଓ 'ଧୂଣିଆ ମଲାର' ( ଗ୍ରୀଷ୍ମ କାଳରେ ଗୀତ ହୋଇଥାଏ ) ଭେଦରେ ଦୁଇ ଭାଗରେ ବିଭକ୍ତ । 'ଯୋଗ' ନାମିତ ଗୀତଗୁଡ଼ିକ ବର ଉଦ୍ଦେଶ୍ୟରେ ଲିଖିତ ହୋଇଥାଏ । ବିଦ୍ୟାପତିଙ୍କ ସମୟରୁ ଏହାର ପ୍ରଚଳନ ଦେଖାଯାଏ । ଏତଦ୍‌ବ୍ୟତୀତ 'ସୋହର' ( ଜନ୍ମସଙ୍ଗୀତ, ବିଶେଷତଃ ରାମ ଓ କୃଷ୍ଣଙ୍କର ), 'ବାରହମାସା ( ବାରମାସୀ ) 'ଛଓମାସା' ( ଜ୍ୟୈଷ୍ଠରୁ କାର୍ତ୍ତିକ ପର୍ଯ୍ୟନ୍ତ ଛଅ ମାସର ନାୟକନାୟିକାଙ୍କର ବିରହ ଭାବନାମୂଳକ ) ଚତୁର୍ମାସ୍ୟ ( କେବଳ ବର୍ଷାକାଳର ବିରହ ଭାବନା ସମ୍ବଳିତ ) ନାମିତ ଗୀତଗୁଡ଼ିକ ମଧ୍ୟ ମୈଥିଳୀ ଗୀତିକବିତାର ବୈଶିଷ୍ଟ୍ୟ ।

ଭକ୍ତି ଭାବନାତ୍ମକ ମୈଥିଳୀ ସଙ୍ଗୀତଗୁଡ଼ିକୁ ଚାରି ଭାଗରେ ବିଭକ୍ତ କରାଯାଇଥାଏ । ଯଥା—୧ । ନାଗାରି—ଶିବ ବନ୍ଦନାମୂଳକ ଗୀତଗୁଡ଼ିକ ଏହି ନାମରେ ପରିଚିତ । ବିଦ୍ୟାପତି, ଲାଲକବି, ଚନ୍ଦା ଝା ପ୍ରଭୃତି ନାଗାରି, ଗୀତରଚୟିତା ଭାବରେ ଶ୍ରେଷ୍ଠ ବିବେଚିତ ହୁଅନ୍ତି ।

୨ । ମହେଶବାଣୀ—ଶିବଙ୍କ ବିବାହ, ତପସ୍ୟା ପ୍ରଭୃତିକୁ ଉପଜୀବ୍ୟ କରି ଏହି ଗୀତ ରଚିତ ହୁଏ । ଏହି ଗୀତଗୁଡ଼ିକ ଗୌରୀଙ୍କ ମାତା ମେନକାଙ୍କୁ ସମ୍ବୋଧନ ଛଳରେ ଲିଖିତ ।

୩ । ଗୋସାଉଣୀ କା ଗୀତ, ଦେବୀ ପଦ ବା ଭଗବତୀକା ଗୀତ – ଶକ୍ତି ବା ବିଭିନ୍ନ ଦେବୀଙ୍କ ଉଦ୍ଦେଶ୍ୟରେ ଲିଖିତ ଗୀତକୁ ଏହି ପର୍ଯ୍ୟାୟଭୁକ୍ତ କରାଯାଇଥାଏ । ପ୍ରାୟ ପ୍ରତ୍ୟେକ କବି ଏହି ଧରଣର ଗୀତ ରଚନାରେ ମନୋଯୋଗୀ ଥିବା ଜଣାଯାଏ ।

୪ । ବିଷ୍ଣୁପଦ—ଏତାଦୃଶ ଗୀତରେ ରାମକୃଷ୍ଣ ପ୍ରଭୃତିଙ୍କ ବନ୍ଦନା ହୋଇଥାଏ ।

## ନାଟ୍ୟ-ସାହିତ୍ୟର ବିବିଧ ରୂପ—

ମୈଥିଳୀ ନାଟ୍ୟସାହିତ୍ୟକୁ ସାଧାରଣତଃ ଚାରି ଭାଗରେ ବିଭକ୍ତ କରା-ଯାଇଥାଏ ।

୧ । ନିୟମାବଦ୍ଧ ମୈଥିଳୀ ନାଟକ—ଏଗୁଡ଼ିକ ସଂସ୍କୃତ ନାଟକ ସଦୃଶ । ଏଥିରେ ସଂସ୍କୃତ ବା ପ୍ରାକୃତ ଭାଷାରେ ଉକ୍ତି-ପ୍ରତ୍ୟୁକ୍ତି ଥାଏ ଓ ତାହା ମଝିରେ ସ୍ଥାନେ ସ୍ଥାନେ ମୈଥିଳୀଭାଷାରେ ରଚିତ ସଂଗୀତ ସଂଯୋଜିତ ହୋଇଥାଏ । କେଉଁ କେଉଁ ନାଟକର ମୈଥିଳୀ ସଙ୍ଗୀତ ରୂପରେ ସଂସ୍କୃତ କବିତାର ଅର୍ଥ ସଂସ୍କୃତ କବିତାର ପୂର୍ବରୁ ବା ପରେ ସଂଯୋଜିତ ହୋଇଥାଏ । ଉମାପତିଙ୍କ 'ପାରିଜାତ ହରଣ' ନାଟକଟିରୁ ତାହାର ପ୍ରକୃଷ୍ଟ ଉଦାହରଣ ମିଳିଥାଏ ।

୨ । ନିୟମ ରହିତ ମୈଥିଳୀ ନାଟକ—ଏତାଦୃଶ ନାଟକଗୁଡ଼ିକ କେବଳ ମୈଥିଳୀସଙ୍ଗୀତ ବା କବିତାରେ ରଚିତ ହୋଇଥାଏ । ତନ୍ମଧ୍ୟରେ ଅତ୍ୟନ୍ତ ଅଳ୍ପ ପରିମାଣରେ ବା ଅଳ୍ପ ସ୍ଥାନରେ ସଂସ୍କୃତ ଅଥବା ପ୍ରାକୃତ ଭାଷା ସଂଯୋଜିତ ହୋଇଥାଏ । ଉଦାହରଣ ସ୍ୱରୂପ ଜଗଜ୍ୟୋତି ମଲ୍ଲଙ୍କ ରଚିତ 'ମହାଭାରତର' ନାମ ଉଲ୍ଲେଖଯୋଗ୍ୟ । ଏଗୁଡ଼ିକୁ ଏକପ୍ରକାର ମୈଥିଳୀ ସାହିତ୍ୟର ଗୀତନାଟ୍ୟ କୁହାଯାଇ ପାରେ ।

୩ । ଆଧୁନିକ ମୈଥିଳୀ ନାଟକ—ସଂସ୍କୃତ ଏବଂ ଇଂରାଜୀ ନାଟକ ରୀତିକୁ ଅନୁସରଣ କରି ଏତାଦୃଶ ବହୁ ନାଟକ ମୈଥିଳୀ ଭାଷାରେ ରଚିତ ହୋଇଅଛି । ଏଥିରେ ମୈଥିଳୀ ବ୍ୟତୀତ ଅନ୍ୟ ଭାଷାର ବ୍ୟବହାର ଦେଖାଯାଏ ନାହିଁ । ସଙ୍ଗୀତର ବ୍ୟବହାର ଥିଲେ ହେଁ କ୍ରମେ ତାହାର ବ୍ୟବହାର ହ୍ରାସ ହେବା ପରିଲକ୍ଷିତ ହୁଏ ।

୪ । କୀର୍ତ୍ତନୀୟା ମୈଥିଳୀନାଟକ ଓ 'ଅଙ୍କିଆ ନାଟକ'—ସଂସ୍କୃତ ନାଟକରେ ମୈଥିଳୀ ଗୀତ ସଂଯୋଜନା କରି ନାଟକ ରଚନା ପଦ୍ଧତିରୁ କ୍ରମେ କୀର୍ତ୍ତନୀୟା ନାଟକର ସୃଷ୍ଟିହୋଇଥିଲା । କାଳକ୍ରମେ ଏହା ମୈଥିଳୀ ସଙ୍ଗୀତମୂଳକ ଗୀତନାଟ୍ୟରେ ପରିଣତି ଲାଭ କରିଥିଲା ଓ କୃଷ୍ଣଙ୍କର ଲୀଳା ବର୍ଣ୍ଣନା ଏହାର ମୁଖ୍ୟ ବିଷୟ ହୋଇଥିଲା । ଆସାମରେ ପ୍ରଚଳିତ ଭକ୍ତିମୂଳକ, ଏକ ଚରିତପ୍ରଧାନ ଓ ଏକ ଅଙ୍କବିଶିଷ୍ଟ ନାଟକକୁ 'ଅଙ୍କିଆ ନାଟକ' କୁହାଯାଏ । ଏଗୁଡ଼ିକ ମଧ୍ୟ ମୈଥିଳୀ ଭାଷାରେ ରଚିତ ହୋଇଥିଲା ।

## ମୈଥିଳୀ ସାହିତ୍ୟର କ୍ରମବିକାଶ (ପ୍ରାଚୀନ ଯୁଗ)—

ମାଗଧୀ ପ୍ରାକୃତରୁ ଖ୍ରୀ. ୯୦୦ରେ ମୈଥିଳୀଭାଷା ରୂପରେଖ ଲାଭ କରି-ଥିଲା । ଖ୍ରୀ. ୯୦୦ରୁ ଖ୍ରୀ. ୧୩୦୦ ମଧ୍ୟରେ ମୈଥିଳୀ ସାହିତ୍ୟର ଯଥେଷ୍ଟ ଉପାଦାନ

ମିଳନାହିଁ । ତଥାପି ଦଶମ ଶତାବ୍ଦୀରୁ ଚତୁର୍ଦ୍ଦଶ ଶତାବ୍ଦୀ ମଧ୍ୟରେ ମୈଥିଳୀ ସଙ୍ଗୀତର ବହୁଳ ପ୍ରଚଳନ ଥିବା ବିଷୟ ଜ୍ୟୋତିଶ୍ୱରଙ୍କ ଅମର କୃତି 'ବର୍ଣ୍ଣରତ୍ନାକର'ରୁ ମିଳିଥାଏ । ଦଶମରୁ ଦ୍ୱାଦଶ ଶତାବ୍ଦୀ ମଧ୍ୟରେ ରଚିତ ହୋଇଥିବା ଚର୍ଯ୍ୟାଗୀତି-ଗୁଡ଼ିକ ପ୍ରାଚୀନ ମୈଥିଳୀ ରଚନାର ନିଦର୍ଶନ ବୋଲି, ରାହୁଲ ସାଂକୃତାୟନ, ଡକ୍ଟର କେ. ପି. ଜୟସ୍ୱାଲ, ମ. ମ. ଉମେଶ ମିଶ୍ର, ନରେନ୍ଦ୍ରନାଥ ଦାସ, ଡକ୍ଟର ସୁଭଦ୍ରା ଝା, ଶିବାନନ୍ଦ ଠାକୁର ପ୍ରଭୃତି ଆଲୋଚକଗଣ ନିର୍ଦ୍ଧାରଣ କରି ଯାଇଅଛନ୍ତି ।

ଏହା ସର୍ବଶ୍ରେଣୀସ୍ତ କ୍ଷେତ୍ରରେ ଏକ ସଂଶୟାତ୍ମକ ବିଷୟ ହେଲେ ହେଁ ଜ୍ୟୋତିଶ୍ୱରଙ୍କ ରଚିତ 'ବର୍ଣ୍ଣରତ୍ନାକର'କୁ ମୈଥିଳୀ ସାହିତ୍ୟର ପ୍ରଥମ ଓ ଏକ ଅମୂଲ୍ୟ ଗ୍ରନ୍ଥ ଭାବରେ ନିର୍ବିବାଦରେ ଗ୍ରହଣ କରାଯାଇଥାଏ । ମ.ମ. ହରପ୍ରସାଦ ଶାସ୍ତ୍ରୀ ଏହି ଗ୍ରନ୍ଥଟିକୁ ନେପାଳ ରାଜାଙ୍କ ଗ୍ରନ୍ଥାଗାରରୁ ସର୍ବପ୍ରଥମେ ଆବିଷ୍କାର କରିଥିଲେ ଓ ଏହା ଚତୁର୍ଦ୍ଦଶ ଶତାବ୍ଦୀର ପ୍ରଥମ ଭାଗର (ଖ୍ରୀ. ୧୩୧୪) ରଚନା ବୋଲି ନିର୍ଦ୍ଧାରଣ କରିଥିଲେ । ଏହାର ବିଷୟବସ୍ତୁର ଅଭିନବତ୍ୱ ମଧ୍ୟ ସ୍ୱୀକାର୍ଯ୍ୟ । ଏହା ଗଦ୍ୟରେ ରଚିତ ଓ ଏଥିରେ ସନ୍ନିବିଷ୍ଟ ସାତଗୋଟି ପରିଚ୍ଛେଦରେ ନାନାବିଷୟକ କବିପ୍ରସିଦ୍ଧି ଓ ତାହାର ବର୍ଣ୍ଣନା ପ୍ରଦତ୍ତ ହୋଇଅଛି । ଏହି ସାତଗୋଟି ପରିଚ୍ଛେଦ ହେଉଅଛି ନଗର ବର୍ଣ୍ଣନା, ନାୟିକା ବର୍ଣ୍ଣନା, ଆସ୍ଥାନ (ରାଜପ୍ରାସାଦ) ବର୍ଣ୍ଣନା, ଋତୁବର୍ଣ୍ଣନା, ପ୍ରୟାଣକ (ରାଜାଙ୍କ ଯାତ୍ରା), ଭଟ୍ଟାଦି ବର୍ଣ୍ଣନା (ଭାଟବିଷୟକ), କଳାବର୍ଣ୍ଣନା । ଉଦାହରଣ ସ୍ୱରୂପ କପରି ସରସ ଗଦ୍ୟରେ ଚନ୍ଦ୍ରର ବର୍ଣ୍ଣନା କରାଯାଇଅଛି, ତାହା ନିମ୍ନୋକ୍ତ ଉଦ୍ଧୃତିରୁ ଅନୁମେୟ—

"ପାତାଲ ଅଇସନ ଦୁଃପ୍ରବେଶ ; ସ୍ତ୍ରୀକ ଚରିତ ଅଇସନ ଦୁର୍ଲକ୍ଷ୍ୟ ; କାଲିନ୍ଦୀକ କଲ୍ଲୋଲ ଅଇସନ ମାଂସଲ ; କାଜରକ ପର୍ବତ ଅଇସନ ନିବଲ, ପାପକ ସହୋଦର ଅଇସନ ଶରୀର ; ଆତଙ୍କକ ନଗର ଅଇସନ ଭୟାନକ ; କୁମନ୍ତ୍ର ଅଇସନ ନିଫଲ, ଅଜ୍ଞାନ ଅଇସନ ସମ୍ମୋହକ ; ମନ ଅଇସନ ସର୍ବତୋଗାମୀ ; ଅହଙ୍କାର ଅଇସନ ଉନ୍ନତ ; ପରଦ୍ରୋହ ଅଇସନ ଅଭବ୍ୟ ; ପାପ ଅଇସନ ମଳିନ ; ଏବଂବିଧ ଅତିବ୍ୟାପକ ଦୁଃସଞ୍ଚର ଦୃଷ୍ଟିବନ୍ଧକ ଭୟାନକ, ଗମ୍ଭୀର ଶୁଚି-ଭେଦ ଅନ୍ଧକାରଦେଷୁ ।"

## ବିଦ୍ୟାପତି ଯୁଗ—

ଏହାକୁ ମୈଥିଳୀ ସାହିତ୍ୟର ସ୍ୱର୍ଣ୍ଣଯୁଗ କୁହାଯାଇପାରେ । ଇଂରାଜୀ ସାହିତ୍ୟରେ ସେକ୍ସପିଅର ଏବଂ ଗ୍ରୀକ ସାହିତ୍ୟରେ ଏସ୍କାଇଲସଙ୍କ ପରି

ମୈଥିଳୀ ସାହିତ୍ୟରେ ବିଦ୍ୟାପତିଙ୍କୁ ଗୌରବମୟ ଆସନ ପ୍ରଦାନ କରାଯାଇଥାଏ । ସେ ଇଂରାଜୀ ସାହିତ୍ୟର ପ୍ରସିଦ୍ଧ କବି ଚସର (୧୩୪୦) ଙ୍କର ପ୍ରାୟ ସମସାମୟିକ । ଶଙ୍କରଦେବ (ଜ ୧୪୪୯), ଚଣ୍ଡୀଦାସ (ଜ ୧୪୧୮), ରାମାନନ୍ଦ ରାୟ (ଜ-ପଞ୍ଚଦଶ ଶତାବ୍ଦୀର ମଧ୍ୟଭାଗ), କବୀର (ଜ ୧୩୯୯), ତୁଳସୀଦାସ (ଜ ୧୫୪୦), ମୀରାବାଈ (ଜ ୧୪୯୭) ସୁରଦାସ (ଜ ୧୪୩୫)ଙ୍କ ପୂର୍ବରୁ ବିଦ୍ୟାପତି ସାହିତ୍ୟ ରଚନାରେ ବ୍ରତୀ ହୋଇଥିଲେ ।

୧୩୬୦ ଖ୍ରୀଷ୍ଟାବ୍ଦରେ ସେ ଜନ୍ମଗ୍ରହଣ କରିଥିଲେ । ମହାରାଜା ଶିବସିଂହ ଏବଂ ମହାରାଜା କୀର୍ତ୍ତିସିଂହଙ୍କ ଦରବାରରେ ତାହାଙ୍କର କବିତ୍ୱ ସମାଦୃତ ହୋଇଥିଲା । କୀର୍ତ୍ତିସିଂହଙ୍କ ଦରବାରରେ ଥିବା ସମୟରେ ସେ ମହାରାଜାଙ୍କର ପ୍ରଶସ୍ତି ସମ୍ବଳିତ 'କୀର୍ତ୍ତିଲତା'ଗ୍ରନ୍ଥଟି ଖ୍ରୀ. ୧୪୦୨-୫ରେ ରଚନା କରିଥିଲେ । କୀର୍ତ୍ତିସିଂହଙ୍କ ମୃତ୍ୟୁ ପରେ ବିଦ୍ୟାପତି ଓଇନୱାର ଦେବକୁଳ ଶାଖାର ରାଜାଙ୍କ ଦରବାରକୁ ଯାଇଥିଲେ । ଏହିଠାରେ ତାହାଙ୍କ ପ୍ରତିଭା ପୂର୍ଣ୍ଣବିକାଶ ଲାଭ କରିଥିଲା । ଏହି ରାଜ୍ୟର ମହାରାଜା ଦେବସିଂହ ଓ ତାହାଙ୍କ ନାତି ଶିବସିଂହଙ୍କର ସେ ସାହଚର୍ଯ୍ୟ ଓ ଅନୁଗ୍ରହ ଲାଭ କରିଥିଲେ । ଶିବସିଂହଙ୍କ ରାଣୀ ମହାଦେବୀ ଲକ୍ଷୀମା ତାହାଙ୍କୁ ଅତ୍ୟନ୍ତ ଶ୍ରଦ୍ଧା କରୁଥିଲେ । ସାହିତ୍ୟ ସାଧନା ଲାଗି ଶିବସିଂହ ତାଙ୍କୁ ଏକ ଗାଁ ଉପହାର ଦେଇଥିଲେ । କବି ପୁରାତନ ମୈଥିଳୀ ଅବହଟ୍ଠ ଭାଷାରେ ତାହାଙ୍କର ଏହି ପୃଷ୍ଠପୋଷକ ରାଜାଙ୍କ ପ୍ରଶସ୍ତି ସମ୍ବଳିତ 'କୀର୍ତ୍ତିପତାକା' ନାମକ ଏକ କାବ୍ୟ ରଚନା କରିଅଛନ୍ତି । ତାହାଛଡ଼ା ସେ ସଂସ୍କୃତରେ 'ପୁରୁଷ ପରୀକ୍ଷା' ଓ ବହୁ ମୈଥିଳୀ ସଙ୍ଗୀତ ରଚନା କରିଥିଲେ ।

ଶିବ ସିଂହ ମୁସଲମାନଙ୍କ ଦ୍ୱାରା ପରାଜିତ ହେଲା ପରେ ରାଣୀ ଲକ୍ଷ୍ମୀମା ନେପାଳର ଏକ ଗ୍ରାମରେ ଦୀର୍ଘ ବାର ବର୍ଷ ଅଜ୍ଞାତବାସ କରିଥିଲେ । ଏଠାରେ ଥିବା ସମୟରେ ମଧ୍ୟ ସେ ଶିବ ସିଂହ ଓ ଲକ୍ଷ୍ମୀମାଙ୍କ ନାମରେ ଭଣିତା କରି ଅନେକ ସଙ୍ଗୀତ ରଚନା କରିଥିଲେ । ଲକ୍ଷ୍ମୀମାଙ୍କ ମୃତ୍ୟୁ ପରେ ମଧ୍ୟ ସେ ବହୁ ପ୍ରେମସଙ୍ଗୀତ ରଚନା କରିଥିଲେ । ପରିଣତ ବୟସରେ ସେ କର୍ମକାଣ୍ଡ ଧର୍ମଶାସ୍ତ୍ରାଦି ପ୍ରତି ଅନୁରକ୍ତ ହୋଇଥିଲେ । ଲକ୍ଷ୍ମୀମାଙ୍କ ମୃତ୍ୟୁ ପରେ ସେ ପଦ୍ମ ସିଂହ ଓ ପରେ ତାହାଙ୍କ ବିଧବା ପତ୍ନୀ ବିଶ୍ୱାସ ଦେବୀଙ୍କ ଦରବାରରେ ଅବସ୍ଥାନ କରିଥିଲେ ଓ ବିଶ୍ୱାସ ଦେବୀଙ୍କ ଆଦେଶରେ ସଂସ୍କୃତ ଭାଷାରେ 'ଗଙ୍ଗା ବାକ୍ୟାବଳୀ' ରଚନା କରିଥିଲେ । 'ଶୈବ ସର୍ବସ୍ୱସାର' (ସଂସ୍କୃତ) ମଧ୍ୟ ତାହାଙ୍କ ପୃଷ୍ଠପୋଷକତାରେ କବି ରଚନା କରିଥିବା ଜଣାଯାଏ । କବି ଏହି ସ୍ଥାନରେ ଅବସ୍ଥାନ କରୁଥିବା ସମୟରେ ଶିବ ଓ ଗଙ୍ଗାଙ୍କ ଉଦ୍ଦେଶ୍ୟରେ ବହୁ ସଙ୍ଗୀତ ମଧ୍ୟ ରଚନା କରିଥିଲେ ।

ଏହାପରେ କବି ହରିସିଂହ ଦେବ, ନରସିଂହ ଦେବ, ଧୀରସିଂହ ଦେବ ପ୍ରଭୃତି ରାଜାଙ୍କ ଦରବାରରେ ୧୪୪୬ ପର୍ଯ୍ୟନ୍ତ ଅବସ୍ଥାନ କରି 'ବିଭାଗ ସାର' (ସ୍ମୃତି ଗ୍ରନ୍ଥ) 'ଦାନ ବାକ୍ୟାବଳୀ', 'ଦୁର୍ଗା ଭକ୍ତିତରଙ୍ଗିଣୀ' ପ୍ରଭୃତି ରଚନା କରିଥିଲେ । ତାହାଙ୍କର ଦୁଇଟି ପତ୍ନୀ ଥିଲେ ଓ ଶେଷଜୀବନରେ ସେ ପୁତ୍ରକନ୍ୟାଦି ସହ ଶାନ୍ତିପୂର୍ଣ୍ଣ ପାରିବାରିକ ଜୀବନ ଯାପନ କରୁଥିଲେ । ଖ୍ରୀ. ୧୪୪୮ରେ ତାହାଙ୍କର ମୃତ୍ୟୁ ହୋଇଥିଲା । ଗଙ୍ଗା କୂଳରେ ଦେହତ୍ୟାଗ କରିବା ଉଦ୍ଦେଶ୍ୟରେ ଯାତ୍ରା କରୁଥିବା ସମୟରେ ପଥ ମଧ୍ୟରେ ତାହାଙ୍କର ମୃତ୍ୟୁ ହୋଇଥିଲା ବୋଲି ଶୁଣାଯାଏ ।

ମୈଥିଳୀ ଭାଷାରେ ଲିଖିତ ପଦ (ସଙ୍ଗୀତ) ଗୁଡ଼ିକ ତାହାଙ୍କ ସର୍ବୋତ୍କୃଷ୍ଟ କୀର୍ତ୍ତି ଭାବରେ ପରିଗଣିତ । ମୈଥିଳୀ ଗୀତିକାବ୍ୟର ବିବିଧ ବିଭବ ଭାବରେ ପରିଚିତ ତରୁଣୀ, ବାଟଗମନୀ, ମାନ, ଗୋଲରି ପ୍ରଭୃତି ନାନାବିଧ ପ୍ରେମ-ଗୀତିକା ସେ ରଚନା କରିଯାଇଅଛନ୍ତି । ସାଧାରଣତଃ ରାଧାକୃଷ୍ଣଙ୍କ ପ୍ରେମଲୀଳାକୁ ଉପଜୀବ୍ୟ କରି ତାହା ଲିଖିତ । ଏହି ଗୀତଗୁଡ଼ିକ ସଂସ୍କୃତ ଗୀତଗୋବିନ୍ଦ ସଦୃଶ । ଏଣୁ ତାଙ୍କୁ ଯଥାର୍ଥତଃ ମୈଥିଳୀ ସାହିତ୍ୟର ନବ ଜୟଦେବ କୁହାଯାଇଥାଏ । ତାହାଙ୍କ ସମକାଳରେ ଓ ପରବର୍ତ୍ତୀ କାଳରେ ବହୁ କବି ବିଦ୍ୟାପତିଙ୍କ ରଚନାବଳୀ ଦ୍ୱାରା ପ୍ରଭାବିତ ହୋଇଥିଲେ । ବଙ୍ଗ, ବିହାର, ଆସାମ ଓ ଓଡ଼ିଶା ପ୍ରଭୃତି ଭାରତର ପୂର୍ବାଞ୍ଚଳରେ ମୈଥିଳୀ ଭାଷାରେ 'ପଦ' ବା ସଙ୍ଗୀତ ରଚନାର ସୂତ୍ରପାତ ହୋଇଥିଲା । ଶ୍ରୀ ଚୈତନ୍ୟ ବିଦ୍ୟାପତିଙ୍କ ଗୀତାବଳୀକୁ ଅତି ଶ୍ରଦ୍ଧାରେ ଗାନ କରୁଥିବାରୁ ଏହି ଭାଷା ଗୌଡ଼ୀୟ ବୈଷ୍ଣବ ସମାଜରେ ସମାଦୃତ ହୋଇଥିଲା ଓ ବଙ୍ଗଳା, ହିନ୍ଦୀ, (ବ୍ରଜ ଭାଷା) ଓ ମୈଥିଳୀ ଭାଷାର ସମନ୍ୱୟରେ ଏକ କୃତ୍ରିମ ବ୍ରଜବୋଲି ଭାଷାରେ ଗୀତି ରଚନାର ଏକ ପରମ୍ପରା ସୃଷ୍ଟି ହୋଇଥିଲା । ଜ୍ଞାନ ଦାସ, (୧୫୫୦) ଗୋବିନ୍ଦ ଦାସ (୧୫୭୩) ନରୋତ୍ତମ ଦାସ ପ୍ରଭୃତି ବଙ୍ଗୀୟ ପ୍ରାଚୀନ କବିଗଣ ଏହି ଭାଷାରେ ବହୁ ସଙ୍ଗୀତ ରଚନା କରିଥିଲେ । ଏପରିକି ଆଧୁନିକ ଯୁଗରେ ମଧ୍ୟ ଜନ୍ମେଜୟ ମିତ୍ର, ବଙ୍କିମଚନ୍ଦ୍ର (୧୮୩୮—୧୮୯୪), ରାଜକୃଷ୍ଣ ରାୟ, (୧୮୫୫—୯୩) ଏବଂ ସର୍ବୋପରି ରବୀନ୍ଦ୍ରନାଥ ଠାକୁର ମଧ୍ୟ ଏହି ମୈଥିଳୀ ଭାଷାରେ ଗୀତ ରଚନା କରି ଯାଇଅଛନ୍ତି । ରବୀନ୍ଦ୍ରନାଥ 'ଭାନୁସିଂହ ଠାକୁର' ଛଦ୍ମନାମରେ ଏତାଦୃଶ ବହୁଗୀତ ରଚନା କରିଥିଲେ ।

ବିଦ୍ୟାପତିଙ୍କ କାବ୍ୟରେ ରାଧାଙ୍କ ବିଷୟ ବର୍ଣ୍ଣନା କରି ରବୀନ୍ଦ୍ରନାଥ ଲେଖିଛନ୍ତି—'ବିଦ୍ୟାପତିଙ୍କ ରାଧା ଅଳ୍ପ ଅଳ୍ପ ମୁକୁଳିତ ଓ ବିକଶିତ ହୋଇ ଉଠୁଅଛି । ସୌନ୍ଦର୍ଯ୍ୟରେ ଢଳଢଳ ହେଉଅଛି । ଶ୍ୟାମ ସହିତ ଦେଖା ହେଲେ ଘୃରି ଆଡ଼େ ଯୌବନର କମ୍ପନ ହିଲ୍ଲୋଳିତ ହୋଇ ଉଠେ । ଟିକିଏ ହସ, ଟିକିଏ

ଛଳନା, ଟିକଏ ଆଡ଼ ନୟନର ଗ୍ଳାନି ।…ଆପଣାକୁ ଅର୍ଦ୍ଧେକ ପ୍ରକାଶ ଓ ଅର୍ଦ୍ଧେକ ଗୋପନ ; କେବଳ ଉଦ୍ଦାମ ପବନର ଏକ ଆନ୍ଦୋଳନରେ ସଙ୍ଗେ ସଙ୍ଗେ ଟିକଏ ଉନ୍ମେଷିତ ହୋଇ ପଡ଼େ । ବିଦ୍ୟାପତିଙ୍କ ରାଧା ନବୀନା, ଲୀଳାମୟୀ, ନିକଟରେ କମ୍ପିତ, ଶଙ୍କିତ, ବିହ୍ୱଳ । କେବଳ ଚମ୍ପକ ଅଙ୍ଗୁଳିର ଅଗ୍ରଭାଗ ଦ୍ୱାରା ଅତି ସାବଧାନରେ ଅପରିଚିତ ପ୍ରେମକୁ ଟିକଏ ମାତ୍ର ସ୍ପର୍ଶ କରି ସଙ୍ଗେ ସଙ୍ଗେ ପଳାୟନପର ହୁଏ । ଯୌବନ, ସେ ମଧ୍ୟ ଏବେ ଆରମ୍ଭ ହୋଇଛି, ସେତେବେଳେ ସମସ୍ତ ହିଁ ରହସ୍ୟ ପରିପୂର୍ଣ୍ଣ । × × ସେଥିପାଇଁ ଛନ୍ଦ, ସଙ୍ଗୀତ ଏବଂ ବିଚିତ୍ର ରଙ୍ଗରେ ବିଦ୍ୟାପତିଙ୍କ ସଙ୍ଗୀତ ଏପରି ପରିପୂର୍ଣ୍ଣ, ସେଥିପାଇଁ ସେଗୁଡ଼ିକରେ ସୌନ୍ଦର୍ଯ୍ୟ-ସୁଖ-ସମ୍ଭୋଗର ଏପରି ତରଙ୍ଗଲୀଳା ।'' *

'ନବୀନା-ନବସ୍ଫୁଟା' ରାଧାଙ୍କ ପ୍ରଥମ ପ୍ରଣୟର ଗ୍ଳାନିଲ୍ୟକୁ ଦୀପ୍ତ ଓ ରହସ୍ୟମୟ କରିବାରେ ବିଦ୍ୟାପତିଙ୍କ ପ୍ରତିଭା କିପରି ତନ୍ମୟ, ତାହା ନିମ୍ନୋକ୍ତ ଗୀତଟିରୁ ଅନୁମେୟ ।

ଖନେ ଖନେ ନୟନ କୋନ ଅନୁସରଇ
ଖନେ ଖନେ ବସନ-ଧୂଲି ତନୁ ଭରଇ
ଖନେ ଖନେ ଦଶନ ଛଟା ଛୁଟ ହାସ
ଖନେ ଖନେ ଅଧର ଆଗେ କରୁ ବାସ ।
ଚଉଁକି ଚଲଏ ଖନେ ଖନେ ଚଲୁ ମନ
ମନମଥ-ପାଠ ପହିଲ ଅନୁବନ୍ଧ ।
ହୃଦୟ-ମୁକୁଲ ହେରି ହେରି ଥୋର
ଖନେ ଆଁଚର ଦଏ ଖନେ ହୋୟ ଭୋର ।
ବାଲା ଶୈଶବ ତାରୁ ନ ଭେଟ
ଲଖଏ ନ ପରିଅ ଜେଠ କନେଠ ।
ବିଦ୍ୟାପତି କହ ସୁନ୍ ବରି କାନ
ତରୁନିମ ଶୈଶବ ଚହ୍ନଇ ନ ଜାନ ।

କବି ସଂସ୍କୃତ ଭାଷା ପରିତ୍ୟାଗ କରି ଅବହଟ୍ଠ ଭାଷାରେ ଗ୍ରନ୍ଥ ରଚନା ସପକ୍ଷରେ 'କୀର୍ତ୍ତିଲତା' ଗ୍ରନ୍ଥରେ ବର୍ଣ୍ଣନା କରିଛନ୍ତି—

'ସକ୍ୟ ବାଣୀ ବୁହଜନ ଭାବଇ
ପାଉଅ-ରସକୋ ମମ୍ମ ନ ପାବଇ ।
ଦେସିଲ ବଅନା ସବଜନ ମିଠ୍ଠା

* ଆଧୁନିକ ସାହିତ୍ୟ ଓ ରବୀନ୍ଦ୍ରନାଥ ।

ତେଁ ତୈସନ ଜପ୍‌ପଓ୍ତୋ ଅବହଠ୍‌ଠା ।'

ଅର୍ଥାତ୍ 'ବୁଧଜନ ସଂସ୍କୃତ ଭାଷା ଚର୍ଚ୍ଚା କରନ୍ତି; ପ୍ରାକୃତ ରସର ମର୍ମ ପାଆନ୍ତି ନାହିଁ । ଦେଶୀ ବଚନ ସବୁ ଲୋକଙ୍କ ପକ୍ଷେ ମିଷ୍ଟ, ସେଥିପାଇଁ ସେହି ଧରଣର ଅବହଠ୍‌ଠ ଭାଷାରେ କହୁଅଛି ।'

ବିଦ୍ୟାପତିଙ୍କ ରଚିତ ସୁବିଖ୍ୟାତ ଭାବୋଲ୍ଲାସମୂଳକ ସଙ୍ଗୀତ (ପଦ)ଟିକୁ ଏଠାରେ ଉଲ୍ଲେଖ କରାଯାଇପାରେ । ଅନନୁଭବନୀୟକୁ କବି ଏଠାରେ ଇନ୍ଦ୍ରିୟ-ଗ୍ରାହ୍ୟ ଚିତ୍ରରୂପ ଦାନ କରିଅଛନ୍ତି—

ସଖି, କି ପୁଛସି ଅନୁଭବ ମୋୟ
ସେହୋ ପିରିତି ଅନୁରାଗ ବଖାନିଏ
ତିଲେ ତିଲେ ନୂତନ ହୋୟ ।
ଜନମ ଅବଧି ହାମ ରୂପ ନେହାରଲ
ନୟନ ନ ତିରପିତ ଭେଲ
ସେହୋ ମଧୁ ବୋଲ ସ୍ରବଣହି ସୁନଲ
ସ୍ରୁତିପଥ ପରସ ନ ଭେଲ ।
କତ ମଧୁ ଯାମିନି ରଭସ ଗମାଓଲ
ନ ବୁଝଲ କୈସନ କେଲ
ଲାଖ ଲାଖ ଯୁଗ ହିୟ ହିୟ ରାଖଲ
ତଇ ହିୟ ଜୁଡ଼ନ ନା ଗେଲ ।
କତ ବିଦଗଧ ଜନ ରସ ଆମୋଦଇ
ଅନୁଭବ କାହୁ ନ ପେଖ
ବିଦ୍ୟାପତି କହେ ପ୍ରାଣ ଜୁଡ଼ା ଏତ
ଲାଖେ ନା ମିଲଲ ଏକ ।'

ବିଳାସ କଳା କୁତୂହଳର ଉଦ୍ଭାବନରେ, ଛନ୍ଦ-ବର୍ଣ୍ଣ ଭାବରୂପ-ସୁଷମାର ଅପରୂପ ବୈଚିତ୍ର୍ୟ ପ୍ରକଟନରେ, ବେଦନା ଆକ୍ଷେପର ମଧୁମନ୍ଦର ଅଭିବ୍ୟକ୍ତିରେ ତାହାଙ୍କ ସଙ୍ଗୀତ କିପରି ଅପୂର୍ବ ରସମୟ, ତାହାର ଆଉ ଗୋଟିଏ ଦୃଷ୍ଟାନ୍ତ ଏଠାରେ ଦିଆଯାଇପାରେ —

'ଫୁଟଲ କୁସୁମ ନବ କୁଞ୍ଜ କୁଟୀର ବନ
କୋକିଲ ପଞ୍ଚମ ଗାଓଇ ରେ ।
ମଲୟାନିଲ ହିମ-ସିଖର ସିଧାରଲ
ପିୟା ନିଜ ଦେଶ ନ ଆଓଇ ରେ ।

ଚନନ ଗୃନ ତନ ଅଧିକ ଉତାପଏ
ଉପବନ ଅଲ ଉତରୋଲ ରେ ।
ସମସ୍ତ ବସନ୍ତ କନ୍ତ ରହୁ ଦୂର ଦେଶ
ଜାନଲ ବିହି ପ୍ରତିକୂଲ ରେ ।
ଆନମିଖ ନୟନ ନାହ୍ନ ମୁଖ ନିରଖଇତ
ତରପିତ ନ ଭେଲ ନୟାନ ରେ ।
ଇ ସୁଖ ସମସ୍ତ ସହଏ ଏତ ସଙ୍କଟ
ଅବଲା କଠିନ ପରାଣ ରେ ।
ଦିନ ଦିନ ଖିନ ତନୁ କମଲନି ଜାନି
ନ ଜାନି କି ଜୀବ ପରଜନ୍ତ ରେ ।
ବିଦ୍ୟାପତି କହି ଧିକ ଧିକ ଜୀବନ
ମାଧବ ନିକରୁଣ କନ୍ତ ରେ ।'

ଆସାମରେ ମଧ୍ୟ ବିଦ୍ୟାପତିଙ୍କ ସଙ୍ଗୀତର ପ୍ରଭାବ ଯୋଗୁଁ ବ୍ରଜବୋଲି ଭାଷାରେ ବହୁ ଗୀତ ରଚିତ ହୋଇଥିଲା । ଆସାମର ବିଶିଷ୍ଟତମ କବି ଶଙ୍କରଦେବ (୧୪୦୯—୧୫୬୮) ପ୍ରଥମେ ଏହାର ପ୍ରୟୋଗ କରିଥିଲେ । ତାହାଙ୍କ ଅନୁଗାମୀ ଅନ୍ୟାନ୍ୟ କବିବୃନ୍ଦ ମଧ୍ୟ ତାଦୃଶ ବ୍ରଜବୋଲି ଭାଷାରେ ଗୀତ ରଚନାରେ ମନୋନିବେଶ କରିଥିଲେ । ବିଦ୍ୟାପତି ପ୍ରଭାବିତ ଆସାମୀ କବିତାବଳୀକୁ ଦୁଇ ଭାଗରେ ବିଭକ୍ତ କରାଯାଇପାରେ । ଯଥା—'ବରଗୀତ' (ଦିବ୍ୟ ସଂଗୀତ) ଓ 'ଅଙ୍କେର ଗୀତ' ('ଅଙ୍କିଆ ନାଟ' ନାମକ ନାଟକରେ ବ୍ୟବହୃତ ଗୀତ) । ବିଦ୍ୟାପତିଙ୍କ ସଙ୍ଗୀତ ଭଳି ଏହି ଗୀତଗୁଡ଼ିକରେ ରାଗର ନିର୍ଦ୍ଦେଶ, ଧ୍ରୁବପଦ, ଭଣିତା ଓ କୃଷ୍ଣଲୀଳାତ୍ମକ ଭାବନା ଦେଖିବାକୁ ମିଳେ । ସାଧାରଣତଃ ବର-ଗୀତମାନଙ୍କର ସଂଖ୍ୟା ୨୪୦ ବୋଲି ଧରାଯାଇଥାଏ । ମାତ୍ର ତନ୍ମଧ୍ୟରୁ ମିଳୁଥିବା ୨୦୭ ଗୋଟି ଗୀତ ମଧ୍ୟରୁ ୪୧ ଗୋଟି ଗୀତ ଶଙ୍କରଦେବଙ୍କର, ୧୫୪ ଗୋଟି ମାଧବଦେବଙ୍କର, ଗୋଟିଏ ମାଧବ ଠାକୁରଙ୍କର, ଗୋଟିଏ ଦଇତାରି ଠାକୁରଙ୍କର ଓ ୧୦ ଗୋଟି ପୁରୁଷୋତ୍ତମ ଠାକୁରଙ୍କର ବୋଲି ଜଣାଯାଇଅଛି ।

ଓଡ଼ିଶାରେ ମୈଥିଳୀ ପ୍ରଭାବ ଷୋଡ଼ଶ ଶତାବ୍ଦୀର ପ୍ରଥମ ଦଶକରୁ ଅନୁଭୂତ ହୁଏ । ଏହି ପ୍ରଭାବ ବଙ୍ଗୀୟମାନଙ୍କ ମଧ୍ୟସ୍ଥତାରୁ ବିସ୍ତାରିତ ହୋଇଥିଲା । ଓଡ଼ିଶାରେ ରଚିତ ମୈଥିଳୀ ପ୍ରଭାବିତ ପ୍ରାଚୀନତମ ଓଡ଼ିଆ କବିତା ସ୍ୱଦରେ ଓଡ଼ିଶାର ରଜା ପ୍ରତାପରୁଦ୍ରଦେବ (୧୫୦୪—୧୫୩୨)ଙ୍କ ନାମରେ ଭଣିତା ହୋଇଥିବା ଗୋଟିଏ

ଗୀତକୁ ଗ୍ରହଣ କରାଯାଏ । ଏହାଙ୍କ ପରବର୍ତ୍ତୀ ଲେଖକ ହେଉଛନ୍ତି ଓଡ଼ିଶାର ସୁବିଖ୍ୟାତ କବି, ନାଟ୍ୟକାର ରାମାନନ୍ଦ ରାୟ । ※ ତାହାଙ୍କ ରଚିତ ଗୋଟିଏ ଗୀତ ଶ୍ରୀଚୈତନ୍ୟଚରିତାମୃତରେ ଲିପିବଦ୍ଧ ହୋଇଅଛି ।

"ପହିଲହି ରାଗ ନୟନ ଭଁଗ ଭେଲ ।
ଅନୁଦିନ ବାଢ଼ଲ ଅବଧି ନା ଗେଲ ॥
ନା ସୋ ରମଣ ନ ହାମ ରମଣୀ ।
ଦୁହଁ ମନ ମନୋଭବ ପେସଲ ଜାନି ॥
ଏ ସଖୀ ସୌ ସବ ପ୍ରେମ କହାନି ।
କାନୁ ଠାମେ କହବୋ ବିଛୁରହି ଜାନି ॥
ନ ଖୋଜଲେ ଦୋତି ନ ଖୋଜଲେ ଆନ ।
ଦୌହକୋ ମିଲନେ ମଧ୍ୟତ ପାଁଚ ବାଣ ॥
ଅବସୋ ବିରାଗେ ତୁହୁଁ ଭେଲ୍ ଦୋତି ।
ସୁପୁରୁଷୋ ପ୍ରେମକୋ ଅଇଛନ ରୀତି ॥
ବର୍ଦ୍ଧନ ରୁଦ୍ରନରାଧିପ ମାନ ।
ରାମାନନ୍ଦ ରାୟ କବି ଭଣ ॥"

ପ୍ରିୟରଞ୍ଜନ ସେନ ରାୟ ରାମାନନ୍ଦଙ୍କର ଶତାଧିକ ସରସ, କୃଷ୍ଣଲୀଳାତ୍ମକ ଗୀତିକାବ୍ୟ ସଂଗ୍ରହ କରି 'ରାୟ ରାମାନନ୍ଦେର ଭଣିତାଯୁକ୍ତ ପଦାବଲୀ' ନାମରେ ପ୍ରକାଶ କରିଅଛନ୍ତି । ଏହି ଗୀତଗୁଡ଼ିକ ଅତୀବ ଉଚ୍ଚକୋଟିର ଓ ଏଥିରେ ମୈଥିଳୀ ଭାଷା ସହିତ ବ୍ରଜଭାଷା, ବଙ୍ଗଳା ଶବ୍ଦାବଳୀର ସଂଯୋଜନା ଦେଖିବାକୁ ମିଳେ । ଉଦାହରଣ ସ୍ୱରୂପ—

"ସଭି ସଖାଗଣେ କୃଷ୍ଣ ବଲଏ ବଚନ ।
ସ୍ନାହାନ ବଢ଼ାଆ ମୋରେ ମିଳବ ଅଖନ ॥
ସୁରେଶ ମନ୍ଦିରେ ବିଜେ ହରି ହଲଧର ।
ଗୋପାଲ ଚଟଲନ ଘରେ ସ୍ନାହାନେ ତତ୍ପର ॥
ନିତ୍ୟକର୍ମ ସାରିସରେ ଭେଟଲ ମୋହନ ।
ଚନ୍ଦନ ଯୋଗାଛେ କେହ ଦେଖାଏ ଦର୍ପଣ ॥
ମଲୟ କୁସୁମ ମଧୁ ଶ୍ରୀ ଅଙ୍ଗେ ମଣ୍ଡଲ ।
ରାମାନନ୍ଦ ଚନ୍ଦ୍ର ରୂପ ଆନନ୍ଦେ ବୁଢ଼ଲ ॥"

---

※ ଚଣ୍ଡୀଦାସ, ବିଦ୍ୟାପତି, ରାୟେର (ରାୟ ରାମାନନ୍ଦ) ନାଟକଗୀତି କର୍ଣ୍ଣାମୃତ ଶ୍ରୀ ଗୀତଗୋବିନ୍ଦ । ସ୍ୱରୂପ ଦାମୋଦର ସନେ ମହାପ୍ରଭୁ ରାତ୍ରିଦିନେ ଗାୟ ଶୁନେ ପରମ ଆନନ୍ଦ ॥ (ଶ୍ରୀ ଚୈତନ୍ୟ ଚରିତାମୃତ—ଶ୍ରୀ କୃଷ୍ଣଦାସ କବିରାଜ)

ଷୋଡ଼ଶ ଶତାବ୍ଦୀର ଅନ୍ୟାନ୍ୟ ଓଡ଼ିଆ ବ୍ରଜବୁଲି ଗୀତ ରଚୟିତାମାନଙ୍କ ମଧ୍ୟରୁ ପ୍ରତାପରୁଦ୍ରଦେବ ଓ ତାହାଙ୍କ ମହାପାତ୍ର ଚମୂପତି ରାୟ, ନାଟ୍ୟକବି ମାଧବୀ ଦାସୀ, କାହ୍ନୁ ଦାସ, ମୁରାରି ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ । ବଙ୍ଗଳା 'ପଦକଳ୍ପତରୁ' ଓ 'କ୍ଷଣଦା ଚନ୍ଦ୍ରାମଣି'ରେ ଏତାଦୃଶ କେତେକ ଗୀତ ସଙ୍କଳିତ ହେବା ଦେଖାଯାଏ । ସପ୍ତଦଶ ଶତାବ୍ଦୀରେ ରାୟ ଦାମୋଦର ଦାସ, ଗୋବିନ୍ଦକବି, ଯଦୁପତି ଦାସ ବ୍ରଜବୋଲି ଗୀତରଚୟିତା ଭାବେ ସୁବିଖ୍ୟାତ । ରାୟ ଦାମୋଦର ଓ ଗୋବିନ୍ଦକବି ପୁରୀର ରାଜା ରାମଚନ୍ଦ୍ର ଦେବଙ୍କର ସଭାକବି ଥିଲେ ଏବଂ ଯଦୁପତି ଦାସ ନରସିଂହ ଦେବଙ୍କର ସଭାକବି ଥିଲେ । ବିଦ୍ୟାପତିଙ୍କୁ ଅନୁସରଣ କରି ଏହି କବିମାନେ ସଙ୍ଗୀତ ରଚନା କରିଥିଲେ ହେଁ ଚଣ୍ଡୀଦାସଙ୍କ ଭାଷା ସହିତ ତାହାର ଅଧିକ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ ।

ଅତି ପ୍ରାଚୀନକାଳରୁ ନେପାଳ ସହିତ ମିଥିଳାର ଘନିଷ୍ଠ ସମ୍ପର୍କ ସ୍ଥାପିତ ହୋଇଥିଲା ଓ ମୈଥିଳୀଭାଷା ସେଠାରେ ପ୍ରବେଶ ଲାଭ କରିଥିଲା । ସେଠାରେ ଅଭିନୀତ ହେଉଥିବା ସଂସ୍କୃତ ନାଟକମାନଙ୍କ ମଧ୍ୟରେ ମୈଥିଳୀଭାଷାରେ ରଚିତ ସଙ୍ଗୀତର ବ୍ୟବହାର ଏକ ପାରମ୍ପରିକ ରୀତିରେ ପରିଣତ ହୋଇଥିଲା । କ୍ରମେ ମୈଥିଳୀଭାଷା ନେପାଳର ଦରବାର ଓ କାର୍ଯ୍ୟାଳୟର ବ୍ୟବହୃତ ଭାଷାରେ ପରିଣତ ହୋଇଥିଲା । ନେପାଳର ମଲ୍ଲ ରାଜାମାନେ ବିଦ୍ୟାପତିଙ୍କୁ ଅନୁକରଣ କରି ସଙ୍ଗୀତ ରଚନା କରିଥିଲେ ଓ ଅନ୍ୟାନ୍ୟ କବି,ଓ ସଙ୍ଗୀତଜ୍ଞଙ୍କୁ ତାଦୃଶ ଗୀତରଚନା କରିବାକୁ ଉତ୍ସାହିତ କରିଥିଲେ ।

ପଞ୍ଚଦଶ ଶତାବ୍ଦୀରୁ ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ବିଦ୍ୟାପତିଙ୍କ ସମକାଳୀନ ଓ ତାହାଙ୍କ ଅନୁକରଣକାରୀ ବହୁ କବିଙ୍କର ରଚନାବଳୀ ସମ୍ପର୍କରେ ଅଧୁନା ବହୁ ତଥ୍ୟ ମୈଥିଳୀ ସାହିତ୍ୟର ଆଲୋଚକମାନଙ୍କ ପ୍ରୟତ୍ନ ଫଳରେ ଜାଣିବା ସମ୍ଭବପର ହୋଇଅଛି । ତନ୍ମଧ୍ୟରୁ ଅନେକ ରଚନା ଏବେ ମଧ୍ୟ ପ୍ରକାଶିତ ହୋଇ ପାରିନାହିଁ । ତାହା ନେପାଳ ଓ ମିଥିଳାରେ ବିଭିନ୍ନ ବ୍ୟକ୍ତିଙ୍କ ଘରେ ପୋଥି ଆକାରରେ ସଂରକ୍ଷିତ ହୋଇ ରହିଅଛି । ତହିଁରୁ ବହୁ କବିଙ୍କର ଗୀତିକା ବା ସଙ୍ଗୀତାବଳୀର ସନ୍ଧାନ ମିଳିଥାଏ । ସଙ୍ଗୀତ ସଂଗ୍ରହମାନଙ୍କ ମଧ୍ୟରୁ ଲୋଚନଙ୍କ 'ରାଗତରଙ୍ଗିଣୀ' (୧୬୮୧) ବିଶିଷ୍ଟତମ ।

ପଞ୍ଚଦଶ ଶତାବ୍ଦୀରୁ ଷୋଡ଼ଶ ଶତାବ୍ଦୀ ମଧ୍ୟରେ ବିଦ୍ୟାପତିଙ୍କ ସମକାଳୀନ କବି ଭାବେ ଅମୃତ କର, ବିଦ୍ୟାପତିଙ୍କ ପୁତ୍ରବଧୂ ନାଯିକବି ଚନ୍ଦ୍ରକଳା, ହରପତି, ଭାନୁକବି, ଗଜସିଂହ, ରୁଦ୍ରଧର, କବିରାଜ ଭିକାରୀ ମିଶ୍ର, ଦଶାବଧାନ ଠାକୁର,

ବିଷ୍ଣୁପୁରୀ, ଯଶୋଧର-ନବକବିଶେଖର, ରାଜପଣ୍ଡିତ, ଚତୁର ଚତୁର୍ଭୁଜ, ମଧୁସୂଦନ, ଜୀବନାଥ, ଗୋପିନାଥ, ଖ୍ରୀଷ୍ଣକବି, ଗଙ୍ଗାଧର, ଲକ୍ଷ୍ମୀନାଥ, କଂସନାରାୟଣ, ଗୋବିନ୍ଦ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ । ସେମାନଙ୍କ ମଧ୍ୟରୁ ଅମୃତ କର, ଚତୁର୍ଭୁଜ, ଗୋବିନ୍ଦ, ଖ୍ରୀଷ୍ଣ ଏବଂ କଂସନାରାୟଣଙ୍କ ରଚନା ଉତ୍କୃଷ୍ଟତମ ଓ ଅଧିକ ଜନପ୍ରିୟତା ଲାଭ କରିଥିଲା । ଏହିସବୁ କବି ବିଦ୍ୟାପତିଙ୍କୁ ଅନୁସରଣ କରି ରାଧାକୃଷ୍ଣଙ୍କ ପ୍ରଣୟଲୀଳା, ଲୌକିକ ପ୍ରେମ, ଗଙ୍ଗା, ଶିବ ଓ ଶକ୍ତିଙ୍କ ଉଦ୍ଦେଶ୍ୟରେ ବହୁ ସଙ୍ଗୀତ ରଚନା କରିଥିଲେ । ଅଇନବାର ରାଜବଂଶର ରାଜତ୍ୱକାଳ ମଧ୍ୟରେ ଏହି କବିମାନେ ସାହିତ୍ୟ ସାଧନା କରିଥିଲେ ଓ ଏହି ରାଜବଂଶର ପତନ ପରେ ୧୫୨୭ରୁ ୧୫୫୭ ପର୍ଯ୍ୟନ୍ତ ମହାରାଜା ମହେଶ ଠାକୁରଙ୍କ ଦ୍ୱାରା ନୂତନ ରାଜବଂଶ ପ୍ରତିଷ୍ଠା ପର୍ଯ୍ୟନ୍ତ ମିଥିଳାରେ ସାହିତ୍ୟ ସୃଷ୍ଟି ସମ୍ପୂର୍ଣ୍ଣ ବ୍ୟାହତ ହୋଇପଡ଼ିଥିଲା । ଏହାପରେ ମିଥିଳା ଦରବାର ହିଁ ପରିସ୍ଥିତିର ପ୍ରଭାବରୁ ମୈଥିଳୀ-ସାହିତ୍ୟ-ସାଧକଙ୍କୁ ପୃଷ୍ଠପୋଷକତା ଦେଇଥିଲା ।

ଷୋଡ଼ଶ ଶତାବ୍ଦୀର ପ୍ରଥମ ପାଦରୁ ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ମିଥିଳାରେ ହରିଦାସ, ମହେଶ ଠାକୁର (୧୫୫୭—୧୫୬୯) ଭଗୀରଥ କବି, ମହୀନାଥ ଠାକୁର, ଲୋଚନ, ଗୋବିନ୍ଦ ଦାସ ପ୍ରଭୃତି ସାହିତ୍ୟ ସୃଷ୍ଟିରେ ବ୍ରତୀ ହୋଇଥିଲେ । ୧୫୫୭ରେ ମିଥିଳାରେ ଏକ ନୂତନ ରାଜବଂଶ ପ୍ରତିଷ୍ଠିତ ହେବା ପରେ ମୈଥିଳୀ ସାହିତ୍ୟ ପୁନର୍ବାର ରାଜକୀୟ ପୃଷ୍ଠପୋଷକତା ଲାଭ କରିଥିଲା । ଏହି ରାଜବଂଶର ପ୍ରତିଷ୍ଠାତା ମହେଶ ଠାକୁର ସ୍ୱୟଂ କବିତା ରଚନା କରିଥିଲେ ଓ ଅନ୍ୟମାନଙ୍କୁ କାବ୍ୟ ସୃଷ୍ଟି ଲାଗି ଉତ୍ସାହିତ କରୁଥିଲେ । ଗଙ୍ଗା ଓ ତାରାଙ୍କ ଉଦ୍ଦେଶ୍ୟରେ ତାହାଙ୍କ ରଚିତ ସ୍ତୁତିଗୀତ ମିଥିଳାରେ ଜନପ୍ରିୟ ।

ମହୀନାଥ ଠାକୁର ଓ ତାହାଙ୍କ ଭାଇ ନରପତି ଠାକୁରଙ୍କ ରାଜତ୍ୱ କାଳରେ ମୈଥିଳୀ ସଂଗୀତ ପୁନଶ୍ଚ ଉଚ୍ଚକୋଟୀକୁ ଉନ୍ନୀତ ହୋଇପାରିଥିଲା । କବି ଲୋଚନ ତାହାଙ୍କର ବହୁ ସଂଗୀତ ରାଜାଙ୍କ ନାମରେ ଭଣିତା କରିଯାଇଅଛନ୍ତି । 'ରାଗ-ତରଙ୍ଗିଣୀ' ତାହାଙ୍କର ସୁପ୍ରସିଦ୍ଧ ରଚନା । ଭ୍ରମବଶତଃ ଏହାଙ୍କୁ ବଙ୍ଗକବି ଭାବରେ ବହୁକାଳ ପର୍ଯ୍ୟନ୍ତ ଗ୍ରହଣ କରାଯାଇଥିଲା । ସେ କେତେକ ଭକ୍ତିମୂଳକ ସଂଗୀତ ରଚନା କରିଥିଲେ ହେଁ ତାହାଙ୍କ ସଂଗୀତଗୁଡ଼ିକ ଆଦିରସ ପ୍ରଧାନ । ତାହାଙ୍କ ଜନପ୍ରିୟ ରଚନାରୁ ଦୁଇଟି ଏଠାରେ ଉଦାହରଣ ସ୍ୱରୂପ ଉଲ୍ଲେଖ କରାଯାଇପାରେ ।

ଅଭିସାରିକା ବର୍ଣ୍ଣନା :

ଆନନ୍ଦ କନ୍ଦା   ପୁନିମକା ଚନ୍ଦା   ସୁମୁଖୀ ବଦନ ତହି ମନ୍ଦା!
ଅଧରେ ମଧୁରି   ସାମରି ସୁନ୍ଦରି   ବିଭୁଷି ଜିତଏ ପୀତ କୁସୁମ ସିରି ।
ପଥ ମିଲଲି ଧନୀ, ଦାମିନୀ ସନି ବ୍ରଜରାଜନନ
ଚକୁର ଭ୍ରମରି   ମୁଦିର ସାମରି   ନଳିନ ନୟନ ସୁଖ କରି ।
କାମ ରମନୀ   ଜହିନ ତହିନ   ଦସନ ଚମକ ଜନି ହୀରକନୀ
ଉକୁତି ବେକତି   ବୁଝଲ ଜୁଗୁତି   କାମିନୀ ମନାବତି ପତି ।
ବିଦୁରି ଉଦରି   ରଜନି ଘୁଜରି   ଇତି ଦୋଧରି ଅଭିସରି
'ଲୋଚନ' ବାନୀ   ସୁତନୁ ସୟାନୀ   କନ୍ତ ଭଜଲି ଜଲ ଦ୍ୱିଜଗମୀ ।

ଆଦିଶକ୍ତିଙ୍କୁ ବନ୍ଦନାକରି ଲିଖିତ ଲୋଚନଙ୍କ ଏକ ଭକ୍ତିମୂଳକ କବିତା ଏହିପରି—

ଜୟ ଜୟ ଜୟ ନତ ସତତ ସିରଙ୍କରି ପରିହିତ ନରସିର ମାଲେ
ଲମ୍ବିତ ରସନ ଦଶନ ଅତି ଭୀଷନ ବସନ ମିଲଲି ବଘ ଛାଲେ ।
ଚୌଦିସି ମାନୁସ ମାଁସୁ ମୁଦିତ ଅତି ଫେରୁ ଫୁକରି କତହାସେ
ମନମନ୍ତ୍ର ବିବିଧ ବିଭୂଷନେ ମଣ୍ଡିତ ବେଦ ବିଦିତ ତୁଅ ବାସେ ।
ବିମଲ ବାଲ ରବି ମଣ୍ଡଲ ସନ ଭୁଅ ତୀନ ନୟନ ପରିଗାସେ
ଅସୁର ରୁହିର ମଦବିମଦ ମାତଲି ବଦନ ଅମିୟ ସମ ହାସେ ।
ତୁଅ ଅନୁରୂପ ସରୂପ ବୁଝିଅ ନହି ତୈଁଅଓ ତୋହରି ଘୁନଗାଉ
ଏ କାଁହି ତୁଅ ପଦବଙ୍କ କଇଅ ଦେଖି ନନ୍ତ୍ରଗଦେ ଲୋଚନ' ଲଉ ।

ନେପାଳର କବିମାନଙ୍କ ମଧ୍ୟରୁ ନେପାଳର ରାଜା ତଥା କବି ଭୂପତୀନ୍ଦ୍ର (ରାଜତ୍ୱକାଳ ୧୬୯୫—୧୭୨୨)ଙ୍କୁ ବଶିଷ୍ଟତମ କୁହାଯାଇପାରେ । ଶିବ, ଗୌରୀ, ହରି, ଶକ୍ତି ଓ ବିବିଧ ବିଷୟକୁ ଉପଜୀବ୍ୟ କରି ତାହାଙ୍କ ରଚିତ ଏକଶତ ଗୀତ ସଂଗୃହୀତ ହୋଇଅଛି । ଏହା ଛଡ଼ା ରାଜା ଜଗଜ୍ୟୋତି ମଲ୍ଲ, ଜଗତ ପ୍ରକାଶ ମଲ୍ଲ, ଚନ୍ଦ୍ରଶେଖର ସିଂହ, ଜିତା ମିତ୍ର, ରଣଜିତ ମଲ୍ଲ ପ୍ରଭୃତି ନେପାଳର ରାଜାବୃନ୍ଦ ଏହି ସମୟରେ ବହୁ ମୈଥିଳୀ ସଂଗୀତ ରଚନା କରିଥିଲେ ।

## ମୈଥିଳୀ ସାହିତ୍ୟର ମଧ୍ୟଯୁଗ

ମଧ୍ୟଯୁଗୀୟ ମୈଥିଳୀ ସାହିତ୍ୟରେ କାବ୍ୟକବିତା, ଗଦ୍ୟ ଓ ନାଟକର ବିକାଶ ସଂଘଟିତ ହୋଇଥିଲା । ନାଟକର, ବିଶେଷତଃ 'କୀର୍ତ୍ତନୀୟା ନାଟକ'ର ସୃଷ୍ଟିକୁ ଏହି ଯୁଗର ପ୍ରଧାନ ବୈଶିଷ୍ଟ୍ୟ କୁହାଯାଇପାରେ । ସଂସ୍କୃତ ନାଟକର ଅବଶେଷ ଉପରେ ହିଁ ଲୋକ ସାହିତ୍ୟର ଏହି ନାଟକାବଳୀ କାଳକ୍ରମେ ଗଢ଼ି ଉଠିଥିଲା । ମୈଥିଳୀ ନାଟକ ସର୍ବାଦୌ ନେପାଳରେ ହିଁ ରଚିତ ହୋଇଥିବାର ପ୍ରମାଣ ମିଳେ ।

ବିଦ୍ୟାପତି (୧୩୬୧-୧୪୪୮) ସର୍ବପ୍ରଥମେ ତାହାଙ୍କ ରଚିତ ସଂସ୍କୃତ ନାଟକରେ ମୈଥିଳୀ ଭାଷାକୁ ଅନୁପ୍ରବିଷ୍ଟ କରିଥିଲେ; ମାତ୍ର ମିଥିଳାରେ ଏହି ପରମ୍ପରାର ଅନୁବର୍ତ୍ତନ ତାହାଙ୍କ ପରବର୍ତ୍ତୀ କାଳରେ ଦେଖିବାକୁ ମିଳେ ନାହିଁ । ଏହା ପରେ ନେପାଳର ଲେଖକଗଣ ମୈଥିଳୀ ଭାଷାରେ ପୂର୍ଣ୍ଣାଙ୍ଗ ନାଟକ ରଚନା କରିଥିବାର ନିଦର୍ଶନ ମିଳେ । ଖ୍ରୀ. ୧୬୦୦ ବେଳକୁ ମୈଥିଳୀ ଭାଷାରେ ପୂର୍ଣ୍ଣାଙ୍ଗ ନାଟକ ରଚିତ ହୋଇଥିଲା । ସପ୍ତଦଶ ଶତାବ୍ଦୀରୁ ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ନେପାଳରେ ମୈଥିଳୀ ନାଟକର ଉତ୍ତରୋତ୍ତର ଅଭିବୃଦ୍ଧି ସାଧିତ ହୋଇଥିଲା ।

ନେପାଳରେ ରଚିତ ହୋଇଥିବା 'ନିୟମ ରହିତ' (Irregular) ମୈଥିଳୀ ନାଟକଗୁଡ଼ିକରେ ନାନ୍ଦୀ (ବେଳେ ବେଳେ ଅଷ୍ଟମଙ୍ଗଳା ଓ ପୁଷ୍ପାଞ୍ଜଳି ମଧ୍ୟ ଏହା ସହିତ ଯୁକ୍ତ ହୋଇଥାଏ) ପରେ ସୂତ୍ରଧର ଓ ନଟୀ ମଞ୍ଚରେ ଉପସ୍ଥିତ ହୁଅନ୍ତି ଓ ନାଟକର କଥା ବସ୍ତୁ, ନାଟକ ରଚନାର ପରିସ୍ଥିତି ଓ ତାହାର ପୃଷ୍ଠପୋଷକଙ୍କ ପରିଚୟ ଅବତାରଣା କରନ୍ତି । ତା'ପରେ ଆରମ୍ଭ ହୁଏ 'ରାଜ ବର୍ଣ୍ଣନା' ଓ 'ଦେଶ ବର୍ଣ୍ଣନା', (ରାଜା ଓ ରାଜ୍ୟର ବର୍ଣ୍ଣନା ।) ଏହାପରେ ନାଟକର କଥାବସ୍ତୁ ପ୍ରଦର୍ଶିତ ହୁଏ । ଅଭିନେତା ଓ ଅଭିନେତ୍ରୀମାନେ ମଞ୍ଚକୁ ଆସି ସଂଗୀତ ମାଧ୍ୟମରେ ଆପଣାର ପରିଚୟ ପ୍ରଦାନ କରନ୍ତି । ସଂଗୀତ ମାଧ୍ୟମରେ କାର୍ଯ୍ୟାବଳୀର ଅଗ୍ରଗତି ଓ ସମାପ୍ତି ବର୍ଣ୍ଣିତ ହୁଏ । କେତେକ ନିୟମାବଦ୍ଧ (Regular) ନାଟକରେ ସରଳ ସଂକ୍ଷିପ୍ତ ଗଦ୍ୟ ବାକ୍ୟର ବ୍ୟବହାର ଦେଖିବାକୁ ମିଳିଥାଏ । ନିୟମରହିତ ନାଟକରେ ଚରିତ୍ରମାନଙ୍କ ମଧ୍ୟରେ ସଂଗୀତ ହିଁ ମୁଖ୍ୟତଃ ବ୍ୟବହୃତ ହେଉଥିଲା । ରାମାୟଣ, ମହାଭାରତ, ହରିବଂଶ ଓ ଅନ୍ୟାନ୍ୟ ପୁରାଣ ପ୍ରଭୃତିର ଉପାଖ୍ୟାନକୁ ଏହି ନାଟକରେ କଥାବସ୍ତୁ ଭାବରେ ଗ୍ରହଣ କରାଯାଉଥିଲା । 'ଅଙ୍କିଆ ନାଟ' ଭଳି ଏହା ଏକ ପାର୍ଷୀୟ ନ ଥିଲା । ପରନ୍ତୁ ଏଥିରେ ବହୁ ଚରିତ୍ର ଅଂଶଗ୍ରହଣ କରୁଥିଲେ । ଦିନରେ ମୁକ୍ତାକାଶ ତଳେ ଏହାର ଅଭିନୟ ହେଉଥିଲା ଓ ଚିତ୍ରିତ ପର୍ଦ୍ଦାଦି ବ୍ୟବହୃତ ହେଉ ନ ଥିଲା ।

ବଂଶମଲ୍ଲଙ୍କ (୧୫୩୩) ରାଜତ୍ୱ କାଳରେ ରଚିତ 'ବିଦ୍ୟାବିଳାପ' ନାଟକକୁ ମୈଥିଳୀ ଭାଷାର ପ୍ରଥମ ନାଟକ ଭାବରେ ଗ୍ରହଣ କରାଯାଏ । ପ୍ରାଚୀନ ମୈଥିଳୀ ନାଟକମାନଙ୍କ ମଧ୍ୟରୁ 'ମୁଦିତ କୁବଳୟାଶ୍ୱ (୧୬୨୮), ହରଗୌରୀ ବିଳାପ (୧୬୨୯) 'କୃଷ୍ଣଚରିତ୍ର ନାଟକ' ଉଲ୍ଲେଖଯୋଗ୍ୟ । ରାଜା ଜଗତ ପ୍ରକାଶ ମଲ୍ଲଙ୍କ ନାମରେ ଭଣିତା ହୋଇଥିବା ଉଷାହରଣ, ନଳୀୟ ନାଟକମ୍ (୧୬୬୦), ପ୍ରଭାବତୀ ହରଣ (୧୬୫୬), ମଳୟ ଗନ୍ଧିନୀ (୧୬୬୩), ମଦନ ଚରିତ ନାଟକଗୁଡ଼ିକ 'ଚନ୍ଦ୍ରଶେଖର' ନାମା

କୌଣସି କବିଙ୍କ ରଚନା ବୋଲି ଜଣାଯାଏ । କୃଷ୍ଣ ଦାସଙ୍କ ରଚିତ ଓ ଜଗତ ପ୍ରକାଶଙ୍କ ନାମରେ ଭଣିତାଯୁକ୍ତ ତିନି ଅଙ୍କବିଶିଷ୍ଟ 'ରାମାୟଣ ନାଟକ'ର ମଧ୍ୟ ସନ୍ଧାନ ମିଳିଅଛି । ସୁମତି ଜିତମିତ୍ର ମଲ୍ଲ କାଳୀୟ ମର୍ଦ୍ଦନୋପାଖ୍ୟାନ (୧୬୮୪), ମଦାଳସା ହରଣମ୍ (୧୬୮୭), ଜୈମିନୀୟ ଭାରତ ନାଟକମ୍ (୧୬୯୦), ଗୋପିଚନ୍ଦ୍ର ନାଟକମ୍ (୧୬୯୦) ପ୍ରଭୃତି ଆଠ ଗୋଟି ନାଟକ ରଚନା କରିଥିଲେ ।

ଜିତାମିତ୍ରମଲ୍ଲଙ୍କ ମୃତ୍ୟୁପରେ ରାଜପଦରେ ଅଭିଷିକ୍ତ ହୋଇଥିବା ତାହାଙ୍କ ପୁତ୍ର ଭୂପତୀନ୍ଦ୍ର ମଲ୍ଲ (୧୬୯୫-୧୭୨୨) ମଧ୍ୟ ବହୁ ନାଟକର ରଚୟିତା ଭାବରେ ପ୍ରସିଦ୍ଧ । ତାହାଙ୍କ ରଚିତ ନାଟକମାନଙ୍କ ମଧ୍ୟରୁ ମାଧବାନନ୍ଦ (୧୭୦୪), 'ଗୌରୀ ବିବାହ ନାଟକ' (୧୭୦୭), 'ପଶୁପତି ପ୍ରାଦୁର୍ଭାବ' (୧୭୧୧) 'ଗୋପୀରାସ' 'ଉଷାହରଣ' (୧୭୧୩) 'ରୁକ୍ମଣୀ ପରିଚୟ, 'ବିଦ୍ୟାବିଳାପ' 'ମହାଭାରତ' ପ୍ରଭୃତିର ନାମ ଉଲ୍ଲେଖଯୋଗ୍ୟ । ଏହି ବଂଶର ଶେଷରାଜା ରଣଜିତମଲ୍ଲଙ୍କ ରାଜତ୍ୱ କାଳରେ (୧୭୨୨-୭୨) ଅଧିକ ସଂଖ୍ୟକ ମୈଥିଳୀ ନାଟକ ରଚିତ ହୋଇଥିବା ଜଣାଯାଏ ।

ନେପାଳର କାଠମାଣ୍ଡୁ ବା କାନ୍ତିପୁରଠାରେ ତତ୍ରତ୍ୟ ରାଜବଂଶୀୟମାନଙ୍କ ଅଧିକାର କାଳରେ ଉକ୍ତ ରାଜାମାନଙ୍କ ପୃଷ୍ଠପୋଷକ ଯୋଗୁଁ ବହୁ ନାଟକ ରଚିତ ହୋଇଥିଲା । ବହୁ ରାଜା ମଧ୍ୟ ସ୍ୱୟଂ ନାଟକ ରଚନା କରିଥିଲେ । ଲଳିତପୁର ବା ପାଟନାର ରାଜାମାନଙ୍କ ମଧ୍ୟରୁ ସିଦ୍ଧିନାରାୟଣ ଦେବ (୧୬୨୦-୧୬୫୭) ସୁବିଖ୍ୟାତ ହରିଶ୍ଚନ୍ଦ୍ର ନାଟକମ୍ ଖ୍ରୀ. ୧୬୫୧ରେ ରଚନା କରିଥିଲେ । ଅନ୍ୟତମ ରାଜା ବିଷ୍ଣୁସିଂହ ମଲ୍ଲ (୧୬୩୭) 'ଉଷାହରଣ ନାଟକ' ବା 'କୃଷ୍ଣଚରିତ୍ର ନାଟକ' ରଚନା କରିଥିଲେ । କହିବା ବାହୁଲ୍ୟ, ଏହି ସବୁ ନାଟକ ମଧ୍ୟରୁ ଅନେକ ଏବେ ମଧ୍ୟ ଅପ୍ରକାଶିତ ରହିଅଛି । ଗୁର୍ଖାରାଜା ପୃଥ୍ୱୀନାରାୟଣ ସାହା (୧୭୬୮-୧୭୭୫) ନେପାଳରେ ନୂତନ ରାଜବଂଶ ପ୍ରତିଷ୍ଠା କରିଥିଲେ । ତାହାଙ୍କ ସମୟରୁ ନେପାଳ ରାଜଦରବାରରେ ଗୁର୍ଖାଭାଷା ପ୍ରଚଳିତ ହେଲା ଓ ମୈଥିଳୀଭାଷାର ପ୍ରତିଷ୍ଠା ଓ ପ୍ରସାର ସଂପୂର୍ଣ୍ଣ ରହିତ ହୋଇଯାଇଥିଲା ।

## ମିଥିଳାର କୀର୍ତ୍ତନୀୟା ନାଟକ—

କୀର୍ତ୍ତନୀୟା ନାଟକଗୁଡ଼ିକ କୃଷ୍ଣଲୀଳା ପ୍ରଦର୍ଶନ ଉଦ୍ଦେଶ୍ୟରେ ପ୍ରବର୍ତ୍ତିତ ହୋଇଥିଲା । କେତେକଙ୍କ ମତରେ ଉମାପତି ଉପାଧ୍ୟାୟ ହିଁ କୀର୍ତ୍ତନୀୟା ନାଟକ

ସଦାଦୌ ପ୍ରବର୍ତ୍ତନ କରିଥିଲେ । ବଙ୍ଗ ଓ ଆସାମରେ ପ୍ରଚଳିତ କୀର୍ତ୍ତନ ଓ ଯାତ୍ରାର ପ୍ରଭାବ ଫଳରେ ମିଥିଳାରେ ଏତାଦୃଶ ନାଟକ ସୃଷ୍ଟି ହୋଇଥିବା ସମ୍ଭବ । କୀର୍ତ୍ତନୀୟା ନାଟକଗୁଡ଼ିକ ରାସରେ ଏକ ଅନୁଚ୍ଚ ବେଦିକା ଉପରେ ଅନୁଷ୍ଠିତ ହୁଏ । ନାନ୍ଦୀ ପାଠ ପରେ ସୂତ୍ରଧର ନଟୀ ସହ ଉପସ୍ଥିତ ହୋଇ ସାଧାରଣତଃ ପରିବେଶ, ନାଟକର ବିଷୟବସ୍ତୁ ଓ ତାହାର ରଚୟିତାଙ୍କ ବିଷୟ ଦର୍ଶକଙ୍କୁ ଜଣାଇ ଦିଅନ୍ତି । କୀର୍ତ୍ତନୀୟା ନାଟକଗୁଡ଼ିକ ମୁଖ୍ୟତଃ ଗୀତାକାରରେ ଲିଖିତ ହୋଇଥାଏ । ଏହି ନାଟକଗୁଡ଼ିକରେ ସ୍ଥାନେ ସ୍ଥାନେ କ୍ୱଚିତ ଗଦ୍ୟରେ ଉକ୍ତିପ୍ରତ୍ୟୁକ୍ତି ଦେଖିବାକୁ ମିଳେ । କୌଣସି ଘଟଣା ପ୍ରଦର୍ଶନ କରିବା ଆବଶ୍ୟକ ହେଲେ ତାହାକୁ ଗୀତାକାରରେ ବର୍ଣ୍ଣନା କରାଯାଏ । ନାୟକନାୟିକାଙ୍କ ବ୍ୟତୀତ ଲମ୍ପଟ ବା ବିଦୂଷକର ଚରିତ୍ର ହାସ୍ୟରସ ସୃଷ୍ଟି କରିବା ପାଇଁ ଏଥିରେ ସଂଯୋଜିତ ହୋଇଥିବାର ଦେଖାଯାଏ । କୀର୍ତ୍ତନୀୟା ନାଟକର ପ୍ରଚଳନ ଆଜିକାଲି ଆଉ ଦେଖିବାକୁ ମିଳେନାହିଁ ।

ଏହି କୀର୍ତ୍ତନୀୟା ନାଟକଗୁଡ଼ିକ ମୁଖ୍ୟତଃ ଥିଲି କାବ୍ୟଧର୍ମୀ ନାଟକ ଓ ସଙ୍ଗୀତ ହିଁ ଏହାର ପ୍ରଧାନ ଆକର୍ଷଣ ଥିଲି । ଚରିତ୍ରଚିତ୍ରଣ ଅଥବା କଥାବସ୍ତୁ ପ୍ରତି ଏଥିରେ ସେପରି ଗୁରୁତ୍ୱ ଦିଆଯାଉ ନ ଥିଲି । ଏଥିରେ ନାରଦ, ଶିବଙ୍କ ସଂପର୍କରେ ସ୍ଥାନେ ସ୍ଥାନେ ହାସ୍ୟରସ ଦେଖିବାକୁ ମିଳିଲେ ହେଁ ନୀତି ଓ ଆଦର୍ଶ ପ୍ରଚାର ହିଁ ଏହି ନାଟକଗୁଡ଼ିର ଲକ୍ଷ୍ୟ ଥିଲି । ପୁରାଣ ସାହିତ୍ୟର ଜନପ୍ରିୟ ଉପାଖ୍ୟାନକୁ ଏହାର କଥାବସ୍ତୁରୂପେ ଗ୍ରହଣ କରାଯାଉଥିଲି । ତନ୍ମଧ୍ୟରୁ ଶିବ-ପ୍ରଧାନ ନାଟକଗୁଡ଼ିକ ଅଧିକ ଜନପ୍ରିୟତା ଲଭ କରିଥିବା ଜଣାଯାଏ । କୀର୍ତ୍ତନୀୟା ନାଟକଗୁଡ଼ିକୁ ମଧ୍ୟଯୁଗର ମୈଥିଳୀ ସାହିତ୍ୟରେ ଶ୍ରେଷ୍ଠକୃତି ରୂପେ ଗ୍ରହଣ କରାଯାଏ । ଏହା ସଂପର୍କରେ ଯଥାର୍ଥତଃ କୁହାଯାଇଅଛି ଯେ—It simplified Vidyapati tradition of writing poems, it contributed to the growth of long narrative poems in Maithili, it kept generations of Mathili writers engaged in a profitable task and finally it contributed to the popularity and development of Maitheli language and literature during the centuries. ✳

ବିଦ୍ୟାପତିଙ୍କୁ ପ୍ରଥମ ମୈଥିଳୀ ନାଟ୍ୟକାର ଭାବେ ଗ୍ରହଣ କରାଯାଇଥାଏ । ତାହାଙ୍କର 'ଗୋରକ୍ଷ ବିଜୟ' ନାଟକ ମହାରାଜା ଶିବ ସିଂହ (୧୪୧୨-୧୪୨୮)ଙ୍କ ରାଜତ୍ୱ କାଳରେ ରଚିତ ହୋଇଥିଲି । ଏଥିରେ ଚରିତ୍ରମାନଙ୍କ ଉକ୍ତିପ୍ରତ୍ୟୁକ୍ତି

---

✳ Maithili Literature. P. 359

ସଂସ୍କୃତରେ ଲିଖିତ ହୋଇଥିଲେ ହେଁ ଏଥିରେ ସନ୍ନିବିଷ୍ଟ ସଙ୍ଗୀତଗୁଡ଼ିକ ମୈଥିଳୀ ଭାଷାରେ ରଚିତ ହୋଇଥିଲା । ଏତଦ୍‌ବ୍ୟତୀତ 'ପାରିଜାତ ହରଣ' ଓ 'ରୁକ୍ମିଣୀ ହରଣ' ନାମକ ଦୁଇଟି ନାଟକ ତାହାଙ୍କ ଦ୍ୱାରା ରଚିତ ବୋଲି ଜଣାଯାଇଅଛି; ମାତ୍ର ତାହାର ସନ୍ଧାନ ଏ ପର୍ଯ୍ୟନ୍ତ ମିଳିନାହିଁ । ଅନ୍ୟାନ୍ୟ ନାଟ୍ୟକାରମାନଙ୍କ ମଧ୍ୟରୁ 'ନଳଚରିତ' ରଚୟିତା ଗୋବିନ୍ଦ ଠାକୁର, 'ଆନନ୍ଦ ବିଜୟ' ନାଟିକା ରଚୟିତା ରାମଦାସ ଝା, 'ଉଷାହରଣ' ନାଟକ ରଚୟିତା ଦେବାନନ୍ଦ ଦାସ (ସପ୍ତଦଶ ଶତାବ୍ଦୀର ଶେଷାର୍ଦ୍ଧ ଓ ଅଷ୍ଟାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧ), 'ପାରିଜାତ ହରଣ' ରଚୟିତା ଉମାପତି ଉପାଧ୍ୟାୟ, 'ରୁକ୍ମିଣୀ ହରଣ' ରଚୟିତା ରମାପତି ଉପାଧ୍ୟାୟ, 'ଗୌରୀ ସ୍ୱୟମ୍ବର' ରଚୟିତା ଲାଲ କବି, 'କୃଷ୍ଣକେଳିମାଳା' ରଚୟିତା ନନ୍ଦ ପତି, 'ମାନଚରିତ' ନାଟକ ରଚୟିତା ଗୋକୁଳାନନ୍ଦ, 'ପାରିଜାତ ହରଣ' ଓ ଗୌରୀ ପରିଣୟ' ରଚୟିତା ଶିବଦକ୍ଷ, 'ରୁକ୍ମାଙ୍ଗଦ' ନାଟକ ରଚୟିତା କର୍ଣ୍ଣଜୟାନନ୍ଦ, 'ଶ୍ରୀକୃଷ୍ଣ ଜନ୍ମ ରହସ୍ୟ' ରଚୟିତା ଶ୍ରୀକାନ୍ତ ଗଣକ, 'ଗୌରୀ ସ୍ୱୟମ୍ବର (୧୮୪୬) ନାଟକ ରଚୟିତା କାହ୍ନା ରାମଦାସ 'ଉଷାହରଣ' ରଚୟିତା ରତ୍ନପାଣି (୧୮୫୦-୬୦) ପ୍ରଭାବତୀ ହରଣ ରଚୟିତା ଭାନୁନାଥ ଝା, 'ଉଷାହରଣ' ଓ 'ମାଧବାନନ୍ଦ', 'ରାଧାକୃଷ୍ଣ ମିଳନ ଲୀଳା' ରଚୟିତା ହର୍ଷନାଥ ଝା, 'ରମେଶ୍ୱର ଚନ୍ଦ୍ରିକା' (୧୮୯୯) ରଚୟିତା ବିଶ୍ୱନାଥ ଝା, 'ଅହଲ୍ୟା ଚରିତ' ନାଟକ ରଚୟିତା ଚନ୍ଦା ଝା (୧୮୩୦-୧୯୦୭), 'ରାଜରାଜେଶ୍ୱରୀ' ନାଟକ (୧୯୬୦) 'ରମେଶୋଦୟ' ନାଟକ ରଚୟିତା ବଳଦେବ ମିଶ୍ର ( ୧୮୮୭) ପ୍ରଭୃତିଙ୍କର ନାମ ଉଲ୍ଲେଖ ଯୋଗ୍ୟ ।

## ଆସାମର ମୈଥିଳୀ ନାଟକ—

ଷୋଡ଼ଶ ଶତାବ୍ଦୀରେ ଆସାମର ଭକ୍ତ କବିଗଣ ଜନସାଧାରଣଙ୍କ ମଧ୍ୟରେ ଭକ୍ତିବାଦ ପ୍ରଚାର କରିବା ଉଦ୍ଦେଶ୍ୟରେ ନାଟକ ରଚନାରେ ପ୍ରବୃତ୍ତ ହୋଇଥିଲେ । ଆସାମର ସୁପ୍ରସିଦ୍ଧ କବି ଶଙ୍କରଦେବ (୧୪୪୯-୧୫୬୮) ମୈଥିଳୀ ଭାଷାରେ ବହୁ ନାଟକ ରଚନା କରିଥିଲେ । ତନ୍ମଧ୍ୟରୁ ଛଅଗୋଟିର ସନ୍ଧାନ ମିଳିଅଛି; ଯଥା— 'କାଳିୟ ଦମନ', 'ରାମବିଜୟ' ବା ସୀତା ସ୍ୱୟମ୍ବର, 'ରୁକ୍ମିଣୀ ହରଣ', 'କେଳି ଗୋପାଳ', 'ପତ୍ନୀପ୍ରସାଦ', 'ପାରିଜାତ ହରଣ' ଏମାନଙ୍କ ମଧ୍ୟରୁ 'ରୁକ୍ମିଣୀ ହରଣ' ନାଟକ ଆସାମରେ ସର୍ବାଧିକ ଜନପ୍ରିୟ । ଏତଦ୍‌ବ୍ୟତୀତ କୃଷ୍ଣଙ୍କ ବାଲ୍ୟଲୀଳାତ୍ମକ ଅର୍ଜ୍ଜୁନ ଭଞ୍ଜନ', 'ଭୋଜନ ବ୍ୟବହାର' 'ଭୂଷଣ ହେରଆ', 'ରାସଝୁମର', 'କୋଟରା ଖେଳା', 'ଭୁଆଲପାରା','ଚୋର ଧରା', 'ଭୂମି ଲେଟଭା' ପ୍ରଭୃତି ନାଟକ ରଚୟିତା ମାଧବ ଦେବ, 'ଜନ୍ମଯାତ୍ରା' ନାଟକ ରଚୟିତା ଗୋପାଳ ଦେବ ପ୍ରଭୃତି ନାମ ଉଲ୍ଲେଖ ଯୋଗ୍ୟ ।

ଆସାମରେ ଏହି ନାଟକଗୁଡ଼ିକ "ଅଙ୍କିଆ' ନାଟକ ନାମରେ ପରିଚିତ । ଏଗୁଡ଼ିକରେ କୌଣସି ଅଙ୍କ ଓ ଦୃଶ୍ୟ ବିଭାଗ ପରିଲକ୍ଷିତ ହୁଏ ନାହିଁ । ତେଣୁ ଏଗୁଡ଼ିକୁ ଏକ ଅଙ୍କବିଶିଷ୍ଟ ନାଟକ ବା ଅଙ୍କିଆ ନାଟକ କହିବା ସମୀଚୀନ । କାବ୍ୟ ଆବୃତ୍ତିରୁ ଏହି ନାଟକଗୁଡ଼ିକ ଉଦ୍ଭୂତ ହୋଇଥିବା ଅନୁମେୟ । ଏହି ନାଟକଗୁଡ଼ିକରେ ଗଦ୍ୟର ଅପେକ୍ଷାକୃତ ପ୍ରାଧାନ୍ୟ ଅନୁଭୂତ ହେଲେ ହେଁ ନାଟକଗୁଡ଼ିକ ବହୁ ସଙ୍ଗୀତରେ ପରିପୂର୍ଣ୍ଣ । ରାମାୟଣ, ମହାଭାରତ ଓ ଅନ୍ୟାନ୍ୟ କୃଷ୍ଣସମ୍ବନ୍ଧୀୟ ପୁରାଣରୁ ଏହି ନାଟକଗୁଡ଼ିକର କଥାବସ୍ତୁ ଗୃହୀତ । ଏହି ନାଟକଗୁଡ଼ିକରେ ମଧ୍ୟ ନାନ୍ଦୀ ପରେ ସୂତ୍ରଧରର ଉପସ୍ଥିତି ଦେଖିବାକୁ ମିଳେ । ସୂତ୍ରଧର ସାଧାରଣତଃ ଗଦ୍ୟରେ ପରିସ୍ଥିତି, ବିଷୟବସ୍ତୁର ସୂଚନା ଦେଇ ଦର୍ଶକମାନଙ୍କୁ କଥାବସ୍ତୁ ବିଷୟରେ ଅବହିତ କରାଇଥାଏ । ଏହି ଅଙ୍କିଆ ନାଟକଗୁଡ଼ିକର ଭାଷା ସୁସ୍ପଷ୍ଟ, ଶକ୍ତିଶାଳୀ ଓ ଅଳଙ୍କାରବିହୀନ । କୃଷ୍ଣଙ୍କର ମହତ୍ତ୍ୱ ପ୍ରତିପାଦନ ଓ କୃଷ୍ଣଭକ୍ତି ପ୍ରଚାର ହିଁ ଏଗୁଡ଼ିକର ମୁଖ୍ୟ ଉଦ୍ଦେଶ୍ୟ । ଏହି ନାଟକଗୁଡ଼ିକ ମଧ୍ୟରେ କୃଷ୍ଣଙ୍କର ବାତ୍ସଲ୍ୟ ଲୀଳା ଓ କୃଷ୍ଣଙ୍କ ପ୍ରତି ଦାସ୍ୟଭାବର ପ୍ରାଧାନ୍ୟ ଦେଖିବାକୁ ମିଳିଥାଏ । ବଙ୍ଗୀୟ ପରକୀୟାପ୍ରୀତିଭାବ ଏଗୁଡ଼ିକରେ ଦେଖିବାକୁ ମିଳେ ନାହିଁ । ଆସାମର ଗ୍ରାମମାନଙ୍କରେ ପରିଲକ୍ଷିତ ହେଉଥିବା ଭବନ ଓ ତହିଁରେ ଥିବା 'ଗ୍ରେ'ନାରି'ଗୁଡ଼ିକରେ ଏହି ଅଙ୍କିଆ ନାଟକଗୁଡ଼ିକ ସାଧାରଣତଃ ଅଭିନୀତ ହେଉଥିଲା ।

## ମଧ୍ୟକାଳୀନ ମୈଥିଳୀ କାବ୍ୟ

ଚତୁର୍ଦ୍ଦଶ ଶତାବ୍ଦୀରେ ମୈଥିଳୀ ଗଦ୍ୟ ରୂପଲାଭ କରିଥିବାର ଜଣାଯାଏ । ଜ୍ୟୋତିରଶ୍ୱରଙ୍କ 'ବର୍ଣ୍ଣରତ୍ନାକର' ଏବଂ ବିଦ୍ୟାପତିଙ୍କର ଅବହଟ୍ଟ ରଚନାବଳୀରୁ ସାହିତ୍ୟିକ ଗଦ୍ୟ ଯେ ଉଚ୍ଚକୋଟୀକୁ ଉନ୍ନୀତ ହୋଇଥିଲା, ତାହା ଜଣାପଡ଼େ । ମାତ୍ର ବିଦ୍ୟାପତିଙ୍କ ପରେ ଗଦ୍ୟସାହିତ୍ୟ-ସୃଷ୍ଟି ପ୍ରତି ସାହିତ୍ୟିକମାନଙ୍କର ମନୋଯୋଗ ଆକୃଷ୍ଟ ହୋଇଥିବାର ନିଦର୍ଶନ ମିଳେ ନାହିଁ । ଆଧୁନିକ ଯୁଗରେ ହିଁ ଗଦ୍ୟ କ୍ରମବିକାଶିତ ହୋଇଅଛି ଓ ଭାବ ପ୍ରକାଶର ପ୍ରଧାନ ମାଧ୍ୟମରେ ପରିଣତ ହୋଇଅଛି । ମଧ୍ୟଯୁଗର ମୈଥିଳୀ ନାଟକମାନଙ୍କରେ ଓ କେତେକ ଦାନପତ୍ର ଓ ଦଲିଲରେ ମୈଥିଳୀ ଗଦ୍ୟର ଯେଉଁ ନିଦର୍ଶନ ମିଳିଥାଏ, ତାହାର ବିବରଣୀ ନିମ୍ନରେ ପ୍ରଦତ୍ତ ହେଲା ।

ପ୍ରାଚୀନ ସରକାରୀ କାଗଜପତ୍ର, ବନ୍ଧିପତ୍ର, ଦାନପତ୍ର, ଦାସ ବା ସେବକର ମୁକ୍ତପତ୍ରଗୁଡ଼ିକରୁ ମଧ୍ୟକାଳୀନ ମୈଥିଳୀ ଗଦ୍ୟର ନମୁନା ମିଳିବା ସଙ୍ଗେ ସଙ୍ଗେ ତତ୍କାଳୀନ ସାମାଜିକ ଜୀବନର ମଧ୍ୟ ବହୁ ନିଦର୍ଶନ ମିଳିଥାଏ । ସପ୍ତଦଶ ଶତାବ୍ଦୀରେ ଦାସ ପ୍ରଥା ମିଥିଳାଞ୍ଚଳରେ ବ୍ୟାପକ ଭାବେ ପ୍ରଚଳିତ ଥିଲା ।

ସେଗୁଡ଼ିକ ମଧ୍ୟରୁ ବନ୍ଧ ଖାତା, ଗୌରୀବଚ୍ଛଟିକାପତ୍ର, ଆଜାତପତ୍ର, ଗୃହିଲ-ଗୁଡ଼ିକ ପ୍ରଧାନ ।

**ଗୌରୀବଚ୍ଛଟିକା** :— ଗଦ୍ୟରେ ଲିଖିତ ଚୁକ୍ତିପତ୍ର, ଦାନପତ୍ର ପ୍ରଭୃତି ବ୍ୟାବହାରିକ ରଚନାମାନଙ୍କ ମଧ୍ୟରୁ ଗୌରୀବଚ୍ଛଟିକାଗୁଡ଼ିକ ପ୍ରାଚୀନତମ ମନେହୁଏ । ମିଳୁଥିବା ଗୌରୀବଚ୍ଛଟିକାମାନଙ୍କ ମଧ୍ୟରୁ ଖ୍ରୀ. ୧୯୧୫ରେ ସମ୍ପାଦିତ ଏକ ଗୌରୀବଚ୍ଛଟିକା ପ୍ରାଚୀନତମ ମନେହୁଏ । ଏ ଗୁଡ଼ିକରେ ମୈଥିଳୀ ଓ ସଂସ୍କୃତ ଶବ୍ଦାବଳୀର ସମ୍ମିଶ୍ରଣ-ବୈଚିତ୍ର୍ୟ ପରିଲକ୍ଷିତ ହୁଏ । ୧୭୯୦ ପର୍ଯ୍ୟନ୍ତ ଲିଖିତ ହୋଇ-ଥିବା ବହୁ ଗୌରୀବଚ୍ଛଟିକା ସଂଗୃହୀତ ହୋଇପାରିଅଛି । ଏଥିରେ ଦାସ ଭାବରେ କାର୍ଯ୍ୟ କରୁଥିବା ବ୍ୟକ୍ତିକୁ ମୁକ୍ତି ପ୍ରଦାନକରିବା ବିଷୟ ମୁକ୍ତି ପ୍ରଦାନକାରୀ ବର୍ଣ୍ଣନା କରୁଥିଲେ ।

**ବନ୍ଧଖାତା** :— ବନ୍ଧଖାତାଗୁଡ଼ିକରେ ଦାସ ବା ସେବକମାନଙ୍କର ବିକ୍ରି ଖରିଦ ବିଷୟ ଲିପିବଦ୍ଧ ହେଉଥିଲା । ଅର୍ଥ ବିନିମୟରେ ସେବକ ତାର ପ୍ରଭୁ ନିକଟରେ ପ୍ରଭୂତ ସେବା କରିବାକୁ ଏତଦ୍ଦ୍ୱାରା ଚୁକ୍ତିବଦ୍ଧ ହେଉଥିଲା । ଅଧିକାଂଶ ବନ୍ଧଖାତାଗୁଡ଼ିକ ସଂସ୍କୃତ ଗଦ୍ୟରେ ଲିଖିତ ହେଉଥିଲା । ମିଳିଥିବା ବନ୍ଧଖାତାମାନଙ୍କ ମଧ୍ୟରୁ ପ୍ରାଚୀନତମ ବନ୍ଧଖାତା ୧୬୬୭ ଖ୍ରୀଷ୍ଟାବ୍ଦରେ ସମ୍ପାଦିତ ହୋଇଥିବାର ଜଣାଯାଏ । ଊନବିଂଶ ଶତାବ୍ଦୀର ମଧ୍ୟଭାଗଠାରୁ ଏହା ସମ୍ପୂର୍ଣ୍ଣ ରହିତ ହୋଇ ଯାଇଥିଲା । ତେଣୁ ଉକ୍ତ ସମୟ ପର୍ଯ୍ୟନ୍ତ ଏହା ଲୌକିକ ବ୍ୟବହାର ସିଦ୍ଧ ଥିଲା । ଦାସମାନଙ୍କୁ ମୁକ୍ତି ଦେବା ବିଷୟ ବର୍ଣ୍ଣିତ ହୋଇଥିବା ପତ୍ରକୁ 'ଅଜାତପତ୍ର' କୁହାଯାଏ । ଊନବିଂଶ ଶତାବ୍ଦୀର ପ୍ରାରମ୍ଭରୁ ଦାସମାନଙ୍କର କ୍ରୟବିକ୍ରୟ ରହିତ ହେଲା ଓ ନିର୍ଦ୍ଧାରିତ ସମୟ ପାଇଁ କାର୍ଯ୍ୟ କରିବା ବିଷୟ ବର୍ଣ୍ଣିତ ହୋଇଥିବା ଚୁକ୍ତି ବା ଅକରାର ପତ୍ର ଓ ଜନୈଧିମାନଙ୍କର ପ୍ରଚଳନ ହୋଇଥିଲା । ସାଧାରଣତଃ କୁମ୍ଭାର, ଧୋବା ଓ ଶ୍ରମିକମାନେ ଏହିପରି 'ଅକରାର ପତ୍ର' ସମ୍ପାଦନ କରୁଥିଲେ । ଅନ୍ୟ ଏକ ପ୍ରକାର ଚୁକ୍ତିପତ୍ରକୁ 'ନସ୍ତାର ପତ୍ର' କୁହାଯାଏ । ଏତଦ୍ଦ୍ୱାରା କରଜ ଓ ପରିଶୋଧ ସମ୍ପର୍କୀୟ ଚୁକ୍ତି ସମ୍ପାଦିତ ହେଉଥିଲା ।

ମୈଥିଳୀ ଗଦ୍ୟରେ ଲିଖିତ ଦାନପତ୍ରକୁ 'ବୃତ୍ତିପତ୍ର' କୁହାଯାଏ । ଏଥିରେ ପର୍ସିଆନ ଓ ଆରବୀ ଭାଷାର ପ୍ରାଧାନ୍ୟ ପରିଲକ୍ଷିତ ହୁଏ । ପର୍ସିଆନ ମୋଗଲ ରାଜତ୍ୱ କାଳରେ ବିଚାରାଳୟର ଭାଷାଥିବା ଯୋଗୁଁ ଏପରି ହେବା ସ୍ୱାଭାବିକ ।

ମିଥିଳାର ଦରବାରରେ ହିନ୍ଦୁ ଆଇନ ଅନୁଯାୟୀ ସଂସ୍କୃତ ଭାଷାରେ ରାୟ (Judgement) ଲିଖିତ ହେଉଥିଲା । ଏଗୁଡ଼ିକୁ ବ୍ୟବସ୍ଥାପତ୍ର କୁହାଯାଉଥିଲା । ଏହାର ମୈଥିଳୀ ପ୍ରତିରୂପ ମଧ୍ୟ ପ୍ରସ୍ତୁତ ହେଉଥିବା ସମ୍ଭବପର । ପ୍ରାଚୀନ ବ୍ୟବସ୍ଥା-ପତ୍ରମାନଙ୍କ ମଧ୍ୟରୁ ଖ୍ରୀ: ୧୭୪୩ରେ ମୈଥିଳୀଭାଷାରେ ଲିଖିତ ଏକ ବ୍ୟବସ୍ଥା-ପତ୍ର ପ୍ରାଚୀନତମ ମନେହୁଏ । ଅନ୍ୟାନ୍ୟ ଗଦ୍ୟରୂପମାନଙ୍କ ମଧ୍ୟରୁ କେତେକ ସରକାରୀ ପରବାନା ଉଲ୍ଲେଖଯୋଗ୍ୟ । ଏଗୁଡ଼ିକରେ ସାହିତ୍ୟିକ ସୌନ୍ଦର୍ଯ୍ୟ, କାରୁକଳା ପରିଲକ୍ଷିତ ନ ହେଲେ ହେଁ ମୈଥିଳୀ ଗଦ୍ୟର କ୍ରମବିକାଶ ଓ ଇତିହାସରେ ଏଗୁଡ଼ିକ ଉପେକ୍ଷଣୀୟ ମନେ ହୁଏନାହିଁ । ସେଗୁଡ଼ିକରୁ ମୈଥିଳୀ ଗଦ୍ୟର ସରଳତା, ସ୍ପଷ୍ଟତା, ଶବ୍ଦଯୋଜନାରେ ସଂକ୍ଷିପ୍ତତାର ପରିଚୟ ମିଳିଥାଏ ।

ମଧ୍ୟଯୁଗରେ ଲିଖିତ ମୈଥିଳୀ ନାଟକମାନଙ୍କରେ ମଧ୍ୟ ଗଦ୍ୟର ପ୍ରଚଳନ ହୋଇଥିଲା । ଅଙ୍କିଆ ନାଟକଗୁଡ଼ିକରେ ବ୍ୟାପକ ଭାବରେ ଗଦ୍ୟର ବିକାଶ ହୋଇଥିବା ବିଷୟ ପୂର୍ବରୁ କୁହାଯାଇଅଛି । ଏହି ନାଟକଗୁଡ଼ିକର ତିନି ଚତୁର୍ଥାଂଶ ଗଦ୍ୟରେ ଲିଖିତ । ମଧ୍ୟଯୁଗର ସାହିତ୍ୟିକ ଗଦ୍ୟର ଏହା ହିଁ ସର୍ବୋତ୍କୃଷ୍ଟ ନିଦର୍ଶନ । ବର୍ଣ୍ଣନାତ୍ମକ ଗଦ୍ୟର ସମସ୍ତ ଗୁଣ ଏଥିରେ ପରିଲକ୍ଷିତ ହୁଏ । ଉଦାହରଣ ସ୍ୱରୂପ 'ରୁକ୍ମିଣୀ ହରଣ' ନାଟକରେ ସୂତ୍ରଧରର ଉକ୍ତି ଏଠାରେ ଉଲ୍ଲେଖଯୋଗ୍ୟ ।

"ଏ ଛନ ପରକାରେ କୃଷ୍ଣକ ବିବାହ ଭେଲ । ତଦନନ୍ତର ବ୍ରହ୍ମା ଇନ୍ଦ୍ର ଆଦି ଜତ ଦେବତା, ପାତାଲକ ବାସୁକି ପ୍ରଭୃତି ଜତ ନାଗ, ପୃଥିବୀକ ଜତରାଜା, ସବାକୋ ସାଦରେ ଶ୍ରୀକୃଷ୍ଣ ଗନ୍ଧ ଚନ୍ଦନ, ପୁଷ୍ପ, ତାମ୍ବୁଲ, ବସ୍ତ୍ର, ଅଲଙ୍କାର, ପରମ ସନ୍ତୁଷ୍ଟ କୟଲ ; ଅତଃ ପରେ ପରମ କୌତୁକେ ତ୍ରୈଲକ୍ୟଲୋକ ଜୟକୃଷ୍ଣ ଘୁଷିଥେ ସମାଜ···ସ୍ୱକୀ ସ୍ୱକୀ ସ୍ଥାନେ ଚଲଥେ ଆନ୍ୟାଅନ୍ୟ ଆଶ୍ଚର୍ଯ୍ୟ ଗୁଣରୂପ ମହିମା କୀର୍ତ୍ତିନ କୟକହୋ ଦଶୋଦଶେ ଗେଲ ।"

## ମଧ୍ୟକାଳୀନ ମୈଥିଳୀକାବ୍ୟ

ଇଂରେଜମାନେ ବଙ୍ଗ-ବିହାରର ଦେୱାନୀ ଗ୍ରହଣ କଲା ପରେ କର୍ଣ୍ଣୱାଲିସଙ୍କ ଚିରସ୍ଥାୟୀ ବନ୍ଦୋବସ୍ତ ନୀତି ପ୍ରଚଳିତ ହେଲା । ଏହା ଫଳରେ ମିଥିଳା ଏକ ସ୍ୱାଧୀନ ରାଜ୍ୟ ଭାବରେ ତାହାର ସ୍ୱୀକୃତି ହରାଇଲା । ଏହା ହିଁ ହେଲା ତାହାର ସାହିତ୍ୟିକ ଅବନତିର ପ୍ରଧାନ କାରଣ । କ୍ରମେ 'ପ୍ରତିବେଶୀ ମଧ୍ୟ ଦେଶଭାଷା' ଏଠାରେ ପ୍ରାଧାନ୍ୟ ଲାଭକଲା । ମିଥିଳାରେ ବ୍ରଜଭାଷାର ପ୍ରସାର ଘଟିବାରୁ ମୈଥିଳୀ

ଭାଷାରେ ସାହିତ୍ୟ ସୃଷ୍ଟି ବାଧାପ୍ରାପ୍ତ ହେଲା । ବହୁ ମୈଥିଳୀ ଲେଖକ 'ମଧ୍ୟଦେଶ ଭାଷା' ଓ ବ୍ରଜଭାଷାରେ ସାହିତ୍ୟ ସୃଷ୍ଟି କରିବାରେ ଅନୁରାଗୀ ହେଲେ ।

ମୈଥିଳୀ କାବ୍ୟର ମଧ୍ୟଯୁଗ ଖ୍ରୀ. ୧୮୬୦ ପର୍ଯ୍ୟନ୍ତ ପରିବ୍ୟାପ୍ତ ବୋଲି ଧରାଯାଇ ଥାଏ । ପୂର୍ବରୁ ମଧ୍ୟକାଳୀନ ମୈଥିଳୀ କବିମାନଙ୍କର ବିଷୟ ବର୍ଣ୍ଣିତ ହୋଇଅଛି । ଅଷ୍ଟାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ କବି ଶେଖର ଭଞ୍ଜନ, ବୁଦ୍ଧିଲାଲ, ରାମେଶ୍ୱର, ନନ୍ଦି, ଉମାପତି ପ୍ରଭୃତି ବହୁ ଗୀତିକାବ୍ୟ ରଚନା କରିଥିଲେ । ଅଷ୍ଟାଦଶ ଶତାବ୍ଦୀର ଶେଷାର୍ଦ୍ଧରେ କେଶବ, ମୋଦନାରାୟଣ, ହରିନାଥ, ମାଧବ, ଶ୍ରୀପତି, ମହୀପତି, ଚକ୍ରପାଣି, କୃଷ୍ଣ ପତି, ମଙ୍ଗଣିରାମ (୧୬୮୭-୧୭୧୫), ମନବୋଧ ଓରଫ୍ ଭୋଲନା କବି, ମଣିଦତ୍ତ ଝା, କରଣ ସିଆମ, କୁଲପତି, ରତ୍ନପାଣି ଝା, ଫତୁରି କବି ପ୍ରଭୃତି କବିଗଣ ଗୀତିକାବ୍ୟ ରଚୟିତା ଭାବେ ବିଖ୍ୟାତ । ମଧ୍ୟଯୁଗର ଶେଷ ଗୀତିକବିଭାବେ ହର୍ଷନାଥ ଝାଙ୍କୁ ସମ୍ମାନ ଦିଆଯାଏ । ସେ ଗୋସାଉଣୀଙ୍କ ଗୀତ (ବନଦୁର୍ଗା ଓ ତାଙ୍କ ସମ୍ବନ୍ଧୀୟ ଗୀତ), ସୋହର, ଭକ୍ତି, ଚରୁହ୍ନତ ପ୍ରଭୃତି ବିବିଧ ଗୀତିକାବ୍ୟ ରଚନା କରିଥିଲେ ।

ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗରୁ ମୈଥିଳୀ ଗୀତିକାବ୍ୟରେ କେତେକ ପରିବର୍ତ୍ତନର ସୂତ୍ରପାତ ହୋଇଥିବାର ଜଣାଯାଏ । ଏହି ସମୟରେ ବହୁ ପ୍ରେମ ଗୀତିକା ଓ ବ୍ୟାଦହାରିକ ଗୀତିକବିତା ରଚିତ ହୋଇଥିଲେ ହେଁ ଭକ୍ତିମୂଳକ ଓ ତତ୍ତ୍ୱପ୍ରଧାନ ଗୀତିକାବ୍ୟ ରଚନା ପ୍ରତି ଏ ଯୁଗର କବିମାନସ ଅଧିକ ଅନୁରକ୍ତ ହୋଇଥିଲା । ପୂର୍ବବର୍ଣ୍ଣିତ ରତ୍ନପାଣି, ଶଙ୍କର, ରମାନାଥ, ଆଦ୍ଧିନାଥ, ରଘୁନନ୍ଦନ ପ୍ରଭୃତି କବିଗଣ ସ୍ତୋତ୍ର ଓ ପ୍ରାର୍ଥନାମୂଳକ ଗୀତିକାବ୍ୟ ରଚନା କରିଥିଲେ । କ୍ରମେ ପରବର୍ତ୍ତୀକାଳରେ ସୁରଦାସ ଓ ତୁଳସୀଦାସଙ୍କ 'ବିଷ୍ଣୁପଦ' ଅନୁକରଣରେ ଗୀତରଚନା କରିବାରେ ମୈଥିଳୀ କବିମାନେ ଅନୁରାଗୀ ହେଲେ । ବିଷ୍ଣୁଭକ୍ତ ଗୋସାଇଁ, ସାଧୁ, ମହନ୍ତ ଓ ମଠାଧୀଶମାନେ ହିଁ ଏତାଦୃଶ ଗୀତରଚନା କରିବାରେ ମନୋନିବେଶ କରିଥିଲେ । ମୈଥିଳୀଭାଷାରେ ବିଷ୍ଣୁ ଭକ୍ତିମୂଳକ ସଂଗୀତ ରଚନା କରିବାରେ ଗୋସାଇଁମାନଙ୍କ ମଧ୍ୟରୁ ମହାତ୍ମା ସାହେବ ରାମଦାସ ଏବଂ ଲକ୍ଷ୍ମୀନାଥ ଗୋସାଇଁ ସୁପ୍ରସିଦ୍ଧ । ସାହେବ ରାମଦାସଙ୍କ ବିଷ୍ଣୁପଦ ଓ ରାସ ଜାତୀୟ ଗୀତଗୁଡ଼ିକ ସୁପ୍ରସିଦ୍ଧ ଓ ଅଧିକ ଜନପ୍ରିୟ । ରାଜା ନରେନ୍ଦ୍ର ସିଂହ (୧୭୪୪-୬୧ ) ମଧ୍ୟ କେତେକ ଭକ୍ତିସଂଗୀତ ରଚନା କରିଥିଲେ । ଲକ୍ଷ୍ମୀନାଥ ଗୋସାଇଁ ମୈଥିଳୀ ଭାଷାରେ ବହୁ 'ଚୌମାସା' 'ତିରହୁତ' 'ପ୍ରତି' 'ବିଷ୍ଣୁପଦ' ଓ 'ମହେଶ ବାଣୀ' ରଚନା କରିଯାଇଅଛନ୍ତି । ଏତଦ୍‌ବ୍ୟତୀତ ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧର ଭକ୍ତକବି ଓ ଭଜନ ରଚୟିତାଭାବେ ରାମରୂପ ଦାସ, ହରିକୃଷ୍ଣ ଦାସ, ପରମାନନ୍ଦ ଦାସ, ଜୟଦେବ ସ୍ୱାମୀ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ ।

ଜୟଦେବଙ୍କର ଏକ 'ଚୌମାସା ଗୀତ'ର ନମୁନା ଏଠାରେ ପ୍ରଦତ୍ତ ହେଲା। ବର୍ଷାକାଳରେ କୃଷ୍ଣ ଆଗମନ ପାଇଁ ଗୋପୀମାନେ କପରି ଉତ୍କଣ୍ଠିତ ଥିଲେ, ତାହା ଏହି ଉଦାହରଣରୁ ଜଣାଯାଏ।

'ବୋଲ୍, କାଗା କଦମ କୌଲି ପାସ କବ ହରି ଆବ ସ୍ୱୋ,
ଊର୍ଦ୍ଧ ବାହୁ ନବାସ ସଖିସବ କରହି ମଙ୍ଗଳ ଗାନ ସ୍ୱୋ।
ରାଧିକା ମୁଖକମଲ ବିକଶିତ ଶେଷ ସୁରମୁନି ଗାବ ସ୍ୱୋ,
''ଜୟଦେବ ସ୍ୱାମୀ'' ଚରଣ ବନ୍ଦହି ଶରଣ ରାଖୁ ଗୋବିନ୍ଦ ସ୍ୱୋ।

ଏହି ସମୟରେ ଅତି ଅଳ୍ପସଂଖ୍ୟକ ଦୀର୍ଘକାବ୍ୟ ରଚିତ ହୋଇଥିଲା। ସେଗୁଡ଼ିକୁ ସଂସ୍କୃତ ରାମାୟଣ ମହାଭାରତର ଅନୁବାଦ, ସମ୍ବର ଓ ଚରିତ କାବ୍ୟ; ଓ ବିବିଧ ଭେଦରେ ତିନି ଭାଗରେ ବିଭକ୍ତ କରାଯାଇପାରେ।

ଅନୂଦିତ ରଚନାମାନଙ୍କ ମଧ୍ୟରୁ ରତିପତି ଭଗତଙ୍କର ଗୀତଗୋବିନ୍ଦର ଅନୁବାଦ ପ୍ରାଚୀନତମ। ଏତଦ୍‌ବ୍ୟତୀତ ମନବୋଧଙ୍କ 'କୃଷ୍ଣଜନ୍ମ' ବା ହରିଚରିତ ଉଲ୍ଲେଖଯୋଗ୍ୟ। ମୈଥିଲୀ ସାହିତ୍ୟର ଇତିହାସରେ ମନବୋଧ ପ୍ରଖ୍ୟାତ କବି। ରାଗରାଗିଣୀକୁ ଉପେକ୍ଷା କରି ସେ ଦୀର୍ଘକାବ୍ୟ ରଚନା କରି ମୈଥିଳୀ ଭାଷାରେ କାବ୍ୟ ରଚନା ଧାରାର ପରଂପରାକୁ ବଳିଷ୍ଠ କରିଥିଲେ। ଊନବିଂଶ ଶତାବ୍ଦୀର ପ୍ରଥମ ପାଦରେ ବିଦ୍ୟାନାଥ ମହାଭାରତ ଓ ପୁରାଣର କେତେକ ଆଖ୍ୟାୟିକାକୁ ଅବଲମ୍ବନ କରି ବିଭିନ୍ନ ସରଳ ଛନ୍ଦରେ 'ପ୍ରପଞ୍ଚ', 'ଭକ୍ତି ଚମତ୍କାର' ରଚନା କରିଥିଲେ।

## ସମ୍ବର ଓ ଚରିତ କାବ୍ୟ—

'ସ୍ୱୟମ୍ବର' ମୂଳକ କାବ୍ୟକୁ ମୈଥିଲୀରେ ସମ୍ବର କାବ୍ୟ କୁହାଯାଇଥାଏ। ମଧ୍ୟଯୁଗର ଚାରିଗୋଟି ସମ୍ବର କାବ୍ୟ ମଧ୍ୟରୁ ଚକ୍ରପାଣିଙ୍କ 'ଉଷାହରଣ', ଅଜ୍ଞାତନାମା କବିଙ୍କ 'ରୁକ୍ମିଣୀ ସ୍ୱୟମ୍ବର', ଓ 'ପାରିଜାତ ସମ୍ବର' ଏବଂ ଶିବଦତ୍ତଙ୍କ 'ସୀତା ସ୍ୱୟମ୍ବର' ପ୍ରଧାନ। ଚରିତମୂଳକ କାବ୍ୟମାନଙ୍କ ମଧ୍ୟରୁ ଅଜ୍ଞାତନାମା କବିଙ୍କ 'ସୁଦାମା ଚରିତ'ର ନାମ ଉଲ୍ଲେଖଯୋଗ୍ୟ।

ଏତଦ୍‌ବ୍ୟତୀତ ମଧ୍ୟଯୁଗରେ ରଚିତ ଗଣିତ (ଶୁଭଙ୍କରୀଙ୍କ 'ଅଙ୍କବିଳାସ') ଟୀକାଗ୍ରନ୍ଥ, (ବୃତ୍ତି ପ୍ରକାଶ) ଇତିହାସ (ଜୟସ୍ତୁତି, ମଲ୍ଲଙ୍କ ରାଜ ଅଭିଷେକ ବର୍ଣ୍ଣନ, ନେପାଳ ରାଜବଂଶାବଳୀ ଭାଷା, ଉପାଖ୍ୟାନ ଭାଷା) ନୀତି କଥା, (ଭାଷାନୀତି, ହିତୋପଦେଶ ଭାଷା ସାହିତ୍ୟମ୍), କାମଶାସ୍ତ୍ର (ଅନଙ୍ଗ ରଙ୍ଗ ଭାଷା ସାହିତ୍ୟମ୍, ନାଗର କାମଶାସ୍ତ୍ର), ଅଭିଧାନ (ଅମରକୋଷ ଭାଷା ନାମା ସାହିତ୍ୟ) ଓ ବିଭିନ୍ନ କାବ୍ୟର ପାଣ୍ଡୁଲିପି ନେପାଳ ରାଜଦରବାର ଗ୍ରନ୍ଥାଗାରରେ ରହିଥିବାର ଜଣାଯାଏ।

ସ୍ଥୂଳତଃ ମଧ୍ୟଯୁଗର କାବ୍ୟଧାରାକୁ ତିନୋଟି ସ୍ତରରେ ବିଭକ୍ତ କରାଯାଇ ପାରେ । ମଧ୍ୟଯୁଗର ପ୍ରାରମ୍ଭ କାଳର କବିମାନଙ୍କ ରଚନାବଳୀ ବିଦ୍ୟାପତିଙ୍କ କାବ୍ୟ ପ୍ରଭାବରେ ପ୍ରଭାବିତ ହୋଇଥିଲା । ପରବର୍ତ୍ତୀ ସ୍ତରରେ କୀର୍ତ୍ତନୀୟା ନାଟକ ଓ ମନବୋଧଙ୍କ କାବ୍ୟ ଦୀର୍ଘ ଆଖ୍ୟାନ କାବ୍ୟ ରଚନାର କ୍ଷେତ୍ର ପ୍ରସ୍ତୁତ କରିଥିଲା । ମଧ୍ୟଯୁଗର ତୃତୀୟ ସ୍ତରରେ 'ଭଜନ' ସାହିତ୍ୟର ବିକାଶ ଘଟିଥିଲା । ଏପରି ତ୍ରିବିଧ ବିକାଶ ଲାଗି ବିବିଧ କାବ୍ୟ କୃତିର ଅଧ୍ୟୟନ ମୁଖ୍ୟ ହେତୁ ଭାବରେ ପରିଗୃହୀତ ହୁଏ । ସଂସ୍କୃତ ଉଦ୍ଭଟ କବିତା, ବିଦ୍ୟାପତିଙ୍କ ସଂଗୀତ, ସଂସ୍କୃତ ଅଳଙ୍କାର ଗ୍ରନ୍ଥ ଓ କାମଶାସ୍ତ୍ରର ଅନୁଶୀଳନରୁ ପ୍ରଥମ ସ୍ତରର କାବ୍ୟକବିତା ସୃଷ୍ଟି ସମ୍ଭବପର ହୋଇଅଛି ବୋଲି ବୁଝାଯାଇପାରେ । ହରିବଂଶ, ଭାଗବତ ଓ ଅନ୍ୟାନ୍ୟ ବୈଷ୍ଣବ ପୁରାଣ କୀର୍ତ୍ତନୀୟା ନାଟକ ଅଧ୍ୟୟନରୁ ଦୀର୍ଘ ଆଖ୍ୟାନ କାବ୍ୟର ଓ ବ୍ରଜଭାଷା କାବ୍ୟ ଯଥା, ଦାନଲୀଳା, ନାଗଲୀଳା, ଚନ୍ଦ୍ରଗାଥା ଗୀତାବଳୀ, ସୁର ଦାସ ଓ ତୁଳସୀ ଦାସଙ୍କ ଭଜନ ପ୍ରଭୃତିର ପ୍ରଭାବରୁ ଚର୍ଚ୍ଚରୀ ପଦ, ରାସ ବିଭିନ୍ନ ପ୍ରକାର 'ସୋହର ଗୀତ'ର ସୃଷ୍ଟି ସମ୍ଭବପର ହୋଇଥିଲା ।

ସ୍ୱୟମ୍ବର ଓ ଚରିତ କାବ୍ୟରେ ବ୍ରଜଭାଷାର ପ୍ରଭାବ ସୁସ୍ପଷ୍ଟ । ଏହି ବ୍ରଜଭାଷାର ପ୍ରସାର ଫଳରେ ମୈଥିଳୀଭାଷାରେ ସାହିତ୍ୟ ସୃଷ୍ଟି ବହୁ ପରିମାଣରେ ବ୍ୟାହତ ହୋଇଥିଲେ ହେଁ ବ୍ରଜଭାଷାର ପ୍ରସାର ଯୋଗୁଁ ହିଁ ଭକ୍ତିଭାବ ବିଶେଷତଃ କୃଷ୍ଣ ଭକ୍ତି ମୈଥିଳୀ ସାହିତ୍ୟରେ ଅନୁପ୍ରବିଷ୍ଟ ହୋଇଥିଲା । ଏହା ପରେ ଚନ୍ଦା ଝା ପ୍ରଭୃତି ମୈଥିଳୀ କବିମାନଙ୍କ ଉଦ୍ୟମରେ ପୁନଶ୍ଚ ଶୁଦ୍ଧ ମୈଥିଳୀ ସାହିତ୍ୟ ପୁନଃପ୍ରବର୍ତ୍ତିତ ହୋଇଥିଲା । ମଧ୍ୟକାଳୀନ ଶ୍ରେଷ୍ଠ କାବ୍ୟରଚୟିତା ଭାବରେ ଲୋଚନ, ଭୂପତୀନ୍ଦ୍ର, ଗୋବିନ୍ଦ ଦାସ, ନନ୍ଦପତି, ମନବୋଧ, ରତ୍ନପାଣି, ସାହେବ ରାମ, କର୍ଣ୍ଣଶ୍ୟାମ ଓ ହର୍ଷନାଥଙ୍କୁ ଗ୍ରହଣ କରାଯାଇଥାଏ ।

## ମୈଥିଳୀ ସାହିତ୍ୟର ଆଧୁନିକ ଯୁଗ—

ଇଂରେଜୀ ଶିକ୍ଷାବିସ୍ତାର ଫଳରେ ସବୁ ଭାରତୀୟ ସାହିତ୍ୟ ପରି ମୈଥିଳୀ ସାହିତ୍ୟରେ ମଧ୍ୟ ନୂତନତା ପ୍ରବର୍ତ୍ତିତ ହୋଇଥିଲା । ଚଳିତ ଶତାବ୍ଦୀରେ 'ମୈଥିଳୀ ମହାସଭା' (୧୯୧୦) ମିଥିଳା ରିସର୍ଚ୍ଚ ସୋସାଇଟି, ମୈଥିଳୀ ସାହିତ୍ୟ ସଭା ପ୍ରଭୃତି ସାଂସ୍କୃତିକ ଅନୁଷ୍ଠାନର ପ୍ରତିଷ୍ଠା ଫଳରେ ମୈଥିଳୀ ଭାଷାଭାଷୀଙ୍କ ମଧ୍ୟରେ ଜାଗରଣ ଉପସ୍ଥିତ ହେଲା ଓ ସାହିତ୍ୟୋନ୍ନତିର ପ୍ରଚେଷ୍ଟା ଅଭିବୃଦ୍ଧି ଲାଭ କରିଥିଲା । ପ୍ରାଚୀନ ମୈଥିଳୀ ସାହିତ୍ୟର ପୁନରୁଦ୍ଧାର, ମୁଦ୍ରଣ ଓ ଅନୁଶୀଳନ ତଥା ନୂତନ ଧରଣର ସାହିତ୍ୟ ସୃଷ୍ଟି ବିଷୟରେ ଲେଖକମାନେ ଏହି ସମୟରେ ମନୋନିବେଶ କରିଥିଲେ । ମହାମହୋପାଧ୍ୟାୟ ମୁରଲୀଧର ଝାଙ୍କ ଉଦ୍ୟମରେ ବନାରସରେ 'ମୈଥିଳୀ ବିଦ୍ୱଜ୍ଜନ

ସମିତି'ର ପ୍ରତିଷ୍ଠା ଓ ୧୯୦୬ ମସିହାରେ 'ମୈଥିଲୀ ମୋଦ' ନାମକ ମାସିକ ସାହିତ୍ୟ ପତ୍ରିକାର ପ୍ରଚଳନ ମଧ୍ୟ ମୈଥିଲୀଭାଷାଭାଷୀଙ୍କୁ ଉଦ୍‌ବୁଦ୍ଧ ଓ ନୂତନ ସାହିତ୍ୟ ସୃଷ୍ଟିରେ ଅନୁପ୍ରାଣିତ କରିଥିଲା ।

ଦରଭଙ୍ଗାର ରାଜାଙ୍କ ପୃଷ୍ଠପୋଷକତା ଫଳରେ ବହୁ ପ୍ରାଚୀନ ମୈଥିଲୀ ସାହିତ୍ୟ ସଂରକ୍ଷିତ ଓ ସମ୍ପାଦିତ ହୋଇଥିଲା ଓ ଖ୍ରୀ. ୧୯୦୮ ରେ 'ମିଥିଳା ମିହିର' ନାମରେ ଏକ ମାସିକ ସାହିତ୍ୟ ପତ୍ରିକା ପ୍ରଚଳିତ ହୋଇଥିଲା । ଆଧୁନିକ ସାହିତ୍ୟ ସୃଷ୍ଟିରେ ସହାୟତା କରିଥିବା ଅନ୍ୟାନ୍ୟ ପତ୍ରିକାମାନଙ୍କ ମଧ୍ୟରୁ 'ମୈଥିଲୀ ହିତ-ସାଧନ' (୧୯୦୫) 'ମୈଥିଲୀ ପ୍ରଭାକର' (୧୯୧୧) 'ମୈଥିଲୀ ବନ୍ଧୁ' (୧୯୩୪) ପ୍ରଭୃତି ପତ୍ରିକାମାନଙ୍କର ନାମ ଉଲ୍ଲେଖଯୋଗ୍ୟ । ଖ୍ରୀ. ୧୯୩୧ ରେ ମିଥିଳାରେ 'ମୈଥିଲୀ ସାହିତ୍ୟ ପରିଷଦ' ପ୍ରତିଷ୍ଠା ମଧ୍ୟ ଆଧୁନିକ ସାହିତ୍ୟର ବିକାଶ ସାଧନରେ ପ୍ରଭୂତ ସହାୟତା କରିଅଛି ।

ଊନବିଂଶ ଶତାବ୍ଦୀର ଶେଷପାଦରେ ଗଦ୍ୟରେ ସାହିତ୍ୟ ସୃଷ୍ଟିର ଉଦ୍ୟମ ହୋଇଥିଲା । ଚନ୍ଦା ଝା ଓ ଲାଲପତି ସିଂହଙ୍କ କେତେକ ଅନୁବାଦରୁ ତାହା ପ୍ରତିପନ୍ନ ହୋଇଥାଏ । ମାତ୍ର ଏହି ସମୟର ଗଦ୍ୟରେ ସ୍ୱଚ୍ଛନ୍ଦତା ଓ ସ୍ୱାଭାବିକତା ପରିଲକ୍ଷିତ ହୁଏ ନାହିଁ । ପରନ୍ତୁ ଏହି ସମୟର ଗଦ୍ୟରେ କୃତ୍ରିମ ଓ ପ୍ରାଣହୀନତା ପରିଲକ୍ଷିତ ହୋଇଥାଏ । ମୁକୁନ୍ଦ ଝାଙ୍କ 'ଖାଣ୍ଡବବନ କୁଳ ଇତିହାସ'ରୁ ଗଦ୍ୟଶୈଳୀର ବିକାଶ ସୂଚିତ ହୁଏ । ପରବର୍ତ୍ତୀ କାଳରେ ଡ: ଉମେଶ ମିଶ୍ର, କୁମାର ଗଙ୍ଗାନନ୍ଦ ସିଂହ, ଭୁବନେଶ୍ୱର ସିଂହ, ରାମନାଥ ଝା ପ୍ରଭୃତିଙ୍କ ରଚନାବଳୀରୁ ଆଧୁନିକ ଗଦ୍ୟର ରୂପ ସୁବିକଶିତ ହେବାର ପରିଚୟ ମିଳିଥାଏ । ସମ୍ବାଦପତ୍ରର ବିକାଶ, ମୈଥିଲୀ ଭାଷାରେ ଭାଷଣ ଦେବା ପ୍ରୟାସ, ଅନ୍ୟ ଭାଷାରୁ ଗଦ୍ୟାନୁବାଦ, ମୈଥିଲୀଭାଷାର ଉଚ୍ଚାରଣ ଓ ଲିଖନ ରୀତିରେ ବିଜ୍ଞାନସମ୍ମତ ପଦ୍ଧତି ଅନୁସରଣ ଫଳରେ ଆଧୁନିକ ମୈଥିଲୀ ଗଦ୍ୟ ସୁପ୍ରତିଷ୍ଠିତ ହୋଇଥିଲା ଓ ଗଦ୍ୟରେ ଉପନ୍ୟାସ, ଗଳ୍ପ ପ୍ରଭୃତି ବିବିଧ ନୂତନ ସାହିତ୍ୟ ରୂପ ପ୍ରବର୍ତ୍ତିତ ହୋଇଥିଲା ।

ମୈଥିଲୀ ଗଦ୍ୟର ବିକାଶ ସାଧନରେ 'ମୈଥିଲୀ ସାହିତ୍ୟପତ୍ର' (୧୯୩୬-୩୯) ଓ 'ବିଭୂତି' (୧୯୩୬-୩୮)ର କାର୍ଯ୍ୟ ମହତ୍ତ୍ୱପୂର୍ଣ୍ଣ । ଆଧୁନିକ ମୈଥିଲୀ ଗଦ୍ୟ-ସାହିତ୍ୟର ପ୍ରକାଶ ଅଥବା ବିକାଶକ୍ଷେତ୍ରରେ ଖ୍ରୀଷ୍ଟିୟାନ ଧର୍ମପ୍ରଚାରକମାନଙ୍କର ଉଦ୍ୟମ ଏକାନ୍ତ ନଗଣ୍ୟ । ଇଂରେଜୀରୁ ବିଭିନ୍ନ ଗ୍ରନ୍ଥକୁ ଅନୁବାଦ କରିବାରେ ଦୀନନାଥ ଝା, ଜଳେଶ୍ୱର ସିଂହ, ଉମାନାଥ ଝା, ରମାନନ୍ଦ ଠାକୁର ଯଥାକ୍ରମେ ଗୋଲ୍ଡ୍-ସ୍ମିଥ୍‌ଙ୍କ ଭିକାର ଅଫ ୱେକ୍ ଫିଲ୍ଡ୍ ('ଭିକାପିଡ୍ କା ପାଦ୍ରୀ') ସେକ୍ସପିୟରଙ୍କ ନାଟ୍ୟ କଥା (ଲ୍ୟାଂବସ ଟେଲସ ଫ୍ରମ୍ ସେକ୍ସପିଅର) କାପେପଙ୍କ 'ମଦର', ଏସପସ୍

କେବଳ ପ୍ରଭୃତିକୁ ମୈଥିଳୀଭାଷାରେ ଅନୁବାଦ କରୁଥିଲେ । ଏତଦ୍‌ବ୍ୟତୀତ ସଂସ୍କୃତ ସାହିତ୍ୟର ବହୁ ଗ୍ରନ୍ଥକୁ ମଧ୍ୟ ମୈଥିଳୀରେ ଅନୁବାଦ କରାଯାଇଥିଲା । କେତେକ ଭାରତୀୟ ସାହିତ୍ୟରୁ ମଧ୍ୟ ଅନୁବାଦ କରାଯାଇଥିଲା । ତନ୍ମଧ୍ୟରୁ ସଂସ୍କୃତ ସାହିତ୍ୟରୁ କେତେକ ଉପନିଷଦ ପୁରାଣ, ନାଟକ ଧର୍ମଶାସ୍ତ୍ର, କର୍ମକାଣ୍ଡ, ଦର୍ଶନ, ଅଲଙ୍କାର ଗ୍ରନ୍ଥମାନଙ୍କର ଗଦ୍ୟ ଓ ପଦ୍ୟ ଅନୁବାଦ ଓ ବଙ୍ଗଳାରୁ ବଙ୍କିମଚନ୍ଦ୍ର ଶରତଚନ୍ଦ୍ର ଓ ରବୀନ୍ଦ୍ରନାଥଙ୍କର କେତେକ ଉପନ୍ୟାସ, ମାଇକେଲ ମଧୁସୂଦନ, ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କର କେତେକ କାବ୍ୟ ଓ ପ୍ରବନ୍ଧ ଓ ହିନ୍ଦୀରୁ କେତେକ ପ୍ରବନ୍ଧ, କାବ୍ୟ ଓ କ୍ଷୁଦ୍ର ଗଳ୍ପର ଅନୁବାଦ ଉଲ୍ଲେଖଯୋଗ୍ୟ ।

## ଆଧୁନିକ ମୈଥିଳୀ ଉପନ୍ୟାସ—

ମିଥିଳାରେ ସଂସ୍କୃତ ସାହିତ୍ୟର ବହୁଳ ଅନୁଶୀଳନ ଯୋଗୁଁ ସଂସ୍କୃତ ଆଖ୍ୟାୟିକା, ଆଖ୍ୟାନ ଓ ଉପାଖ୍ୟାନ ଭଳି ମୈଥିଳୀ ଗଦ୍ୟରେ ବହୁ ନୀତିକଥା ରଚିତ ହୋଇଥିଲା ଓ ରାମାୟଣ, ମହାଭାରତର ଉପାଖ୍ୟାନମାନଙ୍କୁ ରୂପାୟିତ କରିବାର ପ୍ରଚେଷ୍ଟା ହୋଇଥିଲା । ମାତ୍ର ଆଧୁନିକ ଯୁଗରେ ପ୍ରକୃତ ଉପନ୍ୟାସ, ପାଶ୍ଚାତ୍ୟ ସାହିତ୍ୟ ସମ୍ପର୍କରେ ଆସିବା ଫଳରେ ହିଁ ମୈଥିଳୀଭାଷାରେ ରଚିତ ହେଲା । ମହାମହୋପାଧ୍ୟାୟ ପରମେଶ୍ୱର ଝାଙ୍କ 'ସୀମନ୍ତିନୀ ଆଖ୍ୟାୟିକା' ଏବଂ ତୁଳପତି ସିଂହଙ୍କ 'ମଦନ ରାଜ ଉପନ୍ୟାସ' ଦୁଇଟିକୁ ମୈଥିଳୀ ସାହିତ୍ୟର ପ୍ରାଚୀନତମ ଉପନ୍ୟାସ ଭାବେ ଗ୍ରହଣ କରାଯାଏ । ଏହି ଦୁଇଟି ରଚନା ପୂର୍ଣ୍ଣାଙ୍ଗ ହୋଇ ନ ଥିଲେ ହେଁ ଆଧୁନିକ ଉପନ୍ୟାସର ଲକ୍ଷଣାବଳୀ ଏଥିରେ ପରିଲକ୍ଷିତ ହୁଏ । ଏହାପରେ ଇଂରାଜୀ ଓ ବଙ୍ଗଳାରୁ ମଧ୍ୟ କେତେକ ଉପନ୍ୟାସ ମୈଥିଳୀ ଭାଷାରେ ଅନୂଦିତ ହୋଇଥିଲା । ତନ୍ମଧ୍ୟରୁ ଶିବାନନ୍ଦ ଚୌଧୁରୀଙ୍କ 'କପାଳ କୁଣ୍ଡଳା' ଅନୁବାଦ ଜନପ୍ରିୟ ।

ଆଧୁନିକ ଅର୍ଥରେ ପ୍ରକୃତ ମୌଳିକ ଉପନ୍ୟାସ ଖ୍ରୀ. ୧୯୬୦ରେ ପ୍ରଣୀତ ହୋଇଥିଲା । ଉପନ୍ୟାସ ମାଧ୍ୟମରେ ମିଥିଳାର ସାମାଜିକ ଚରିତ୍ର ଓ ସାଂସ୍କୃତିକ ଜୀବନକୁ ପ୍ରତିଫଳିତ କରିବାରେ ଏପରି ବିଳମ୍ବ ଘଟିବାର ପ୍ରଧାନ ହେତୁ ହେଉଛି ମିଥିଳାର ବହୁ ବିଳମ୍ବରେ ଇଂରାଜୀ ଶିକ୍ଷାବିସ୍ତାର । ଏହାଛଡ଼ା ଇଂରାଜୀଶିକ୍ଷା ବିସ୍ତାର ପରେ ମଧ୍ୟ ବହୁ କାଳ ପର୍ଯ୍ୟନ୍ତ ମୈଥିଳୀଭାଷାକୁ ଶିକ୍ଷାନୁଷ୍ଠାନମାନଙ୍କରେ ସ୍ୱୀକୃତି ମିଳି ନ ଥିଲା । ଶିକ୍ଷାନୁଷ୍ଠାନମାନଙ୍କରେ ମୈଥିଳୀଭାଷାକୁ ପ୍ରଚଳିତ କରିବାକୁ ମୈଥିଳୀଭାଷାଭାଷୀ ବିଶିଷ୍ଟ ବ୍ୟକ୍ତିମାନଙ୍କୁ ଦୀର୍ଘକାଳ ଆନ୍ଦୋଳନ କରିବାକୁ ପଡ଼ିଥିଲା । ଯାହାହେଉ, ଏହି ସବୁ ପ୍ରତିକୂଳ ପରିସ୍ଥିତି ମଧ୍ୟରେ ଚଳିତ ଶତାବ୍ଦୀରୁ ହିଁ ଆଧୁନିକ ମୈଥିଳୀ ସାହିତ୍ୟ ସୃଷ୍ଟି ଲାଭ କରିଅଛି ।

ଚଳିତ ଶତାବ୍ଦୀର ଦ୍ୱିତୀୟ ଦଶକରେ ମୈଥିଳୀ ଭାଷାରେ ଯେଉଁ ଉପନ୍ୟାସ ରଚିତ ହୋଇଥିଲା, ସେଗୁଡ଼ିକ ବିଶେଷ ଭାବରେ ଉପଦେଶାତ୍ମକ ଥିଲା । ମୈଥିଳୀ ମହାସଭାର ଉଚ୍ଚାଦର୍ଶ, ସମାଜ ସଂସ୍କାର ଓ ବିକାଶ ଯୋଜନାଦି ପ୍ରଭାବର ଏହା ପରିଣତି । ରାସବିହାରୀ ଲାଲଙ୍କ 'ସୁମତି' (୧୯୧୮) ଉପନ୍ୟାସ ତାହାର ପ୍ରକୃଷ୍ଟ ଉଦାହରଣ । ଏହି ଉପନ୍ୟାସ କେତେକ ପରିମାଣରେ ରୂପକଧର୍ମୀ । ଉଚିତ ବିଭା ଚରିତ୍ର ମାଧ୍ୟମରେ କୁମତି ଅପେକ୍ଷା ସୁମତି ଚରିତ୍ରର ମହତ୍ତ୍ୱ ହିଁ ଏଥିରେ ଦର୍ଶାଇ ଦିଆଯାଇଅଛି । ଏତାଦୃଶ ଅନ୍ୟାନ୍ୟ ଉପନ୍ୟାସ ରଚୟିତା ଭବେ ଭୋଲ ଝା, ପୂର୍ଣ୍ଣାନନ୍ଦ ଝା ଓ ଜନାର୍ଦ୍ଦନ ଝା ପ୍ରଭୃତି ଲେଖକମାନଙ୍କ ନାମ ଉଲ୍ଲେଖ-ଯୋଗ୍ୟ ।

ଖ୍ରୀ. ୧୯୩୦ର ଅଳ୍ପ ପୂର୍ବରୁ ଅଧ୍ୟାପକ ହରିମୋହନ ଝାଙ୍କ ରଚିତ ଉପନ୍ୟାସ ଦ୍ୱାରା ମୈଥିଳୀ ଉପନ୍ୟାସ ସମୁନ୍ନତ ଓ ବହୁ ଜନପ୍ରିୟ ହୋଇ ପାରିଥିଲା । ଏଣୁ ତାହାଙ୍କ ସମ୍ପର୍କରେ ଯଥାର୍ଥତଃ କୁହାଯାଇଛି ଯେ—**Hari mohan Jha made novel as great as Vidyapati had made poetry or Umapati had made drama in the past**. ତାହାଙ୍କ ରଚିତ 'କନ୍ୟାଦାନ' ଉପନ୍ୟାସ (୧୯୩୦-୩୩) ମୈଥିଳୀସାହିତ୍ୟର ଏକ ଶ୍ରେଷ୍ଠ ରଚନା ଭାବରେ ଗୃହୀତ ହୁଏ । ଏହାପରେ ତାହାଙ୍କ 'ଦ୍ୱିରଗମନ' (ଦ୍ୱିତୀୟ ବିବାହ) ଓ 'ଖଟ୍ଟରର କଳକ ତରଙ୍ଗ', ଉପନ୍ୟାସର ନାମ ଉଲ୍ଲେଖଯୋଗ୍ୟ । ହାସ୍ୟରସ ସୃଷ୍ଟି ସମାଜ ସଂସ୍କାର ମନୋଭାବ ଓ ସୂକ୍ଷ୍ମ ଦୃଷ୍ଟିଭଙ୍ଗୀ ଉନ୍ନତ ଭାଷାଶୈଳୀ ହିଁ ତାହାଙ୍କ ଉପନ୍ୟାସକୁ ଉଚ୍ଚାଙ୍ଗ ଶିଳ୍ପସୃଷ୍ଟିର ଗୌରବ ପ୍ରଦାନ କରିଅଛି । ଉପନ୍ୟାସରେ ଗୌଣଚରିତ୍ରମାନଙ୍କୁ ମଧ୍ୟ ସେ ଅତ୍ୟନ୍ତ ନିପୁଣତାର ସହିତ ଚିତ୍ରଣ କରି ଯାଇଅଛନ୍ତି । ଏହି ସମୟର ଅନ୍ୟାନ୍ୟ ଔପନ୍ୟାସିକମାନଙ୍କ ମଧ୍ୟରୁ କିରଣ, ସରୋଜ, କୁମର ଗଙ୍ଗାନନ୍ଦ ସିଂହ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ ।

ଖ୍ରୀ. ୧୯୪୦-୫୦ ମଧ୍ୟରେ ବହୁ ଔପନ୍ୟାସିକ ମୈଥିଳୀ ଭାଷାରେ ଉପନ୍ୟାସ ରଚନା କରିଥିବା ଜଣାଯାଏ । ସେମାନଙ୍କ ମଧ୍ୟରୁ 'ଶ୍ରୀ ଯାତ୍ରୀ'ଙ୍କୁ ଶ୍ରେଷ୍ଠ ଔପନ୍ୟାସିକ ଭାବରେ ଗ୍ରହଣ କରାଯାଏ । ତାହାଙ୍କ ରଚିତ ସୁପ୍ରସିଦ୍ଧ କରୁଣରସାତ୍ମକ ଉପନ୍ୟାସ 'ପରେ' (୧୯୪୬) ଜନପ୍ରିୟତା ଅର୍ଜନ କରିଅଛି । ଏହା ଏକ ଦ୍ୱନ୍ଦ୍ୱାତ୍ମକ ହୃଦୟର କାହାଣୀ । ଉଚ୍ଚ ମଧ୍ୟବିତ୍ତ ଗ୍ରାମ୍ୟବାସୀଙ୍କ ମନସ୍ତତ୍ତ୍ୱ ଚିତ୍ରଣରେ ଏହି ପ୍ରଗତିଶୀଳ ଲେଖକଙ୍କ ଦକ୍ଷତା ଅନସ୍ୱୀକାର୍ଯ୍ୟ । ଏତଦ୍‌ବ୍ୟତୀତ ସେ 'ନଭତୁରିୟ' ( ୧୯୫୪ ) ନାମକ ଏକ ଉପନ୍ୟାସ ମଧ୍ୟ ରଚନା କରିଅଛନ୍ତି ।

ବିଗତ ଦୁଇ ଦଶନ୍ଧି ମଧ୍ୟରେ 'କୁମାର' (୧୯୪୬) ରଚୟିତା ଉପେନ୍ଦ୍ର ଝା ବ୍ୟାସ, 'ଭଲ ମାନୁଷ' (୧୯୪୪) ରଚୟିତା ଯୋଗାନନ୍ଦ ଝା, 'ମଧୁଶ୍ରାବଣୀ' (୧୯୫୬) ରଚୟିତା ଶୈଳେନ୍ଦ୍ର ମୋହନ ଝା, ବାସ୍ତବବାଦୀ ଦୃଷ୍ଟିକୋଣରୁ ଲିଖିତ 'ବୈଦେହୀ' ରଚୟିତା କଳ୍ପନା ଶରଣ ପ୍ରଭୃତି ଉପନ୍ୟାସ ଲେଖକ ଭାବରେ ସୁଖ୍ୟାତି ଅର୍ଜନ କରିଅଛନ୍ତି ।

ଜନାର୍ଦ୍ଦନ ଝା 'ଶଶୀକଳା' (୧୯୧୫) ନାମକ ଏକ ଅପୂର୍ଣ୍ଣ ଉପନ୍ୟାସ ମଧ୍ୟ ରଚନା କରିଥିଲେ । ପରବର୍ତ୍ତୀ କାଳରେ ତାହାଙ୍କ ରଚିତ 'କଳିଯୁଗୀ ସନ୍ୟାସୀ' (୧୯୨୧), 'ପୁନର୍ବିବାହ' (୧୯୨୬) 'ଦ୍ୱିରାଗମ ରହସ୍ୟ' (୧୯୪୫) ପ୍ରଭୃତି ଉପନ୍ୟାସମାନଙ୍କ ମଧ୍ୟରୁ 'ପୁନର୍ବିବାହ'କୁ ଉତ୍କୃଷ୍ଟ ବିବେଚନା କରାଯାଏ ।

ଭୋଳା ଝାଙ୍କ 'ମନୁଷ୍ୟକ ମୋଲ' (୧୯୨୪), ଓ 'ବିବାହ' ଓ ପୁଣ୍ୟାନନ୍ଦ ଝାଙ୍କ 'ମିଥିଳା-ଦର୍ପଣ' (୧୯୨୫) ସାମାଜିକ ସମସ୍ୟାକୁ ଉପଜୀବ୍ୟ କରି ରଚିତ ।

ମୈଥିଳୀ ଉପନ୍ୟାସର ପରବର୍ତ୍ତୀ ପର୍ଯ୍ୟାୟରେ ଆମ୍ଭେ ହରିମୋହନ ଝା, କାଞ୍ଚିନାଥ ଝା, ହରିନନ୍ଦନ ଠାକୁର, କୁମାର ଗଙ୍ଗାନନ୍ଦ ସିଂହ ଓ ଲକ୍ଷ୍ମୀପତି ସିଂହଙ୍କୁ ଗଣନା କରିଥାଉଁ । ହରିମୋହନ ଝା ଆଧୁନିକ ଔପନ୍ୟାସିକମାନଙ୍କ ମଧ୍ୟରେ ସର୍ବାଧିକ ଜନପ୍ରିୟ । ତାହାଙ୍କ 'କନ୍ୟାଦାନ' (୧୯୩୦-୩୩) 'ଦ୍ୱିରାଗମନ' (୧୯୪୩) ଆଧୁନିକ ମୈଥିଳୀ ସାହିତ୍ୟରେ ବହୁତ ଜନପ୍ରିୟ । କାଞ୍ଚିନାଥ ଝା 'ଚନ୍ଦ୍ର ଗ୍ରହଣ' (୧୯୩୨), ଲକ୍ଷ୍ମୀପତି ସିଂହଙ୍କ 'ଭ୍ରମୁଣ୍ଡୀ' (୧୯୩୩) ହରିନନ୍ଦନ ଠାକୁରଙ୍କ 'ମାଧବୀ ମାଧବ' (୧୯୨୯ରେ ଲିଖିତ ଓ ୧୯୩୫ରେ ପ୍ରକାଶିତ) ଉପନ୍ୟାସଗୁଡ଼ିକ ସାମାଜିକ ବିବିଧ ସମସ୍ୟା ଓ ସଂସ୍କାରକୁ ଉପଜୀବ୍ୟ କରି ରଚିତ । ଏହି ଦଶନ୍ଧୀର ଶ୍ରେଷ୍ଠ ଔପନ୍ୟାସିକ ଭାବରେ ଗଙ୍ଗାନନ୍ଦ ସିଂହଙ୍କୁ ଗ୍ରହଣ କରାଯାଏ । ତାହାଙ୍କ ଅସମାପ୍ତ ଉପନ୍ୟାସ 'ଅଗିलହୀ' ଏକ ମହତ୍ତର ସୃଷ୍ଟି ଭାବରେ ବିବେଚିତ ହୁଏ ।

ଆନୁମାନିକ ୧୯୪୦ରୁ ମୈଥିଳୀ ଉପନ୍ୟାସର ତୃତୀୟ ପର୍ଯ୍ୟାୟ ଆରମ୍ଭ । ଏହି ସମୟରେ ପ୍ରତିଷ୍ଠିତ ଓ ତରୁଣ ଔପନ୍ୟାସିକମାନଙ୍କ ମଧ୍ୟରୁ ଗଙ୍ଗାପତି ସିଂହ, ବୈଦ୍ୟନାଥ ମିଶ୍ର, ଉପେନ୍ଦ୍ର ଝା, ବ୍ରଜନନ୍ଦନ ଝା ଓ ଯୋଗାନନ୍ଦ ଝା ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ । ଗଙ୍ଗାପତି ସିଂହଙ୍କ ଐତିହାସିକ ଉପନ୍ୟାସ 'ଜୟଚନ୍ଦ୍ର ପରାଜୟ' ସାମାଜିକ ଉପନ୍ୟାସ 'ସୁଶୀଲ' ବୈଦ୍ୟନାଥ ମିଶ୍ରଙ୍କ 'ପାରୋ' ଉପେନ୍ଦ୍ର ଝାଙ୍କ 'କୁମାର', ବ୍ରଜନନ୍ଦନଙ୍କ 'ଅସହାୟ କାୟା', ଯୋଗାନନ୍ଦଙ୍କ 'ଭଲ

ମନୁଷ', ଶାରଦାନନ୍ଦ ଝାଙ୍କ 'ଜୟବର' ପ୍ରଭୃତି ଉପନ୍ୟାସ ସମକାଳୀନ ଶ୍ରେଷ୍ଠ ରଚନା ଭାବରେ ବିବେଚିତ ହୋଇଥାଏ ।

## ଆଧୁନିକ ମୈଥିଳୀ କ୍ଷୁଦ୍ରଗଳ୍ପ

ସମ୍ବାଦପତ୍ର ଓ ସାମ୍ବାଦିକତାର ବିକାଶ ସହିତ ମୈଥିଳୀ କ୍ଷୁଦ୍ରଗଳ୍ପର ଜନ୍ମ-ଇତିହାସ ଜଡ଼ିତ । ବହୁକାଳ ପର୍ଯ୍ୟନ୍ତ ଲେଖକମାନେ ଉପନ୍ୟାସ ଓ କ୍ଷୁଦ୍ରଗଳ୍ପ ମଧ୍ୟରେ କୌଣସି ପାର୍ଥକ୍ୟ ରକ୍ଷା କରିପାରି ନ ଥିଲେ । ୧୯୩୦ ମସିହାରୁ ହିଁ ଏହି ଦୁଇଟି ସାହିତ୍ୟ ରୂପର ସ୍ୱାତନ୍ତ୍ୟ ସ୍ପଷ୍ଟତର ହୋଇଅଛି ।

ଅପେକ୍ଷାକୃତ ପ୍ରାଚୀନ ଓ ବୟୋଜ୍ୟେଷ୍ଠ କଥାକାର ଭାବରେ ବୈଦ୍ୟନାଥ ମିଶ୍ର, ମହାନନ୍ଦ ମିଶ୍ର, ଜଗଦୀଶ ମିଶ୍ର, କାଳୀକୁମାର ଦାସ, ଲକ୍ଷ୍ମୀପତି ସିଂହ, ହରିନନ୍ଦନ ଠାକୁର ପ୍ରଭୃତିଙ୍କ ନାମ ସ୍ମରଣୀୟ । ବୈଦ୍ୟନାଥଙ୍କ ସରଳ ଓ ହାସ୍ୟରସାତ୍ମକ ଗଳ୍ପସଂଗ୍ରହ, 'କଥା ସଂଗ୍ରହ', ଗପ୍ପ, ସପ୍ପକା ଖରିହାନ, କାଳୀଚରଣଙ୍କ 'ନବରାତ୍ର', ମହାନନ୍ଦଙ୍କ 'ତୀର୍ଥଯାତ୍ରା' କାଳୀକୁମାରଙ୍କ 'ଭୀଷଣ ଅନ୍ୟାୟ', 'କମଳ', 'ଗଙ୍ଗାସ୍ନାନ', ହରିନନ୍ଦନ 'କର୍ଣ୍ଣଫୁଲ' ପ୍ରଭୃତି ପ୍ରତିନିଧି ସ୍ଥାନୀୟ ଶ୍ରେଷ୍ଠଗଳ୍ପ ଭାବରେ ପରିଗଣିତ ହୁଏ । ଏହି କଥାକାରମାନଙ୍କ ମଧ୍ୟରୁ କାଳୀକୁମାର ଦାସ ଓ ହରିନନ୍ଦନ ଠାକୁର ବହୁ ଗଳ୍ପ ରଚନା କରି ମୈଥିଳୀ କଥାସାହିତ୍ୟକୁ ସମୃଦ୍ଧ କରିଅଛନ୍ତି ।

ଆନୁମାନିକ ଭାବରେ ୧୯୪୦ରେ ବହୁ ଲେଖକ କ୍ଷୁଦ୍ରଗଳ୍ପ ରଚନାରେ ମନୋନିବେଶ କରିଥିଲେ । ଏହି ଲେଖକମାନଙ୍କ ମଧ୍ୟରୁ କେ. ଏନ୍. ଠାକୁର, କାଞ୍ଚିନାଥ ଝା, ଯଦୁନନ୍ଦନ ଝା, ନନ୍ଦକିଶୋର ଲାଲ ଦାସ, ପରମାନନ୍ଦ ଦତ୍ତ, ଭୁବନେଶ୍ୱର ସିଂହ, କୁଳାନନ୍ଦ ଦାସ, ବଲ୍ଲଭ ଝା, ଶଶିନାଥ ଚୌଧୁରୀ ପ୍ରଭୃତିଙ୍କ କୃତିତ୍ୱ ଉଲ୍ଲେଖଯୋଗ୍ୟ ।

୧୯୪୦ ପରେ ମୈଥିଳୀ ସାହିତ୍ୟରେ କେତେକ ଉତ୍କୃଷ୍ଟ କ୍ଷୁଦ୍ର ଗଳ୍ପ ରଚିତ ହୋଇଅଛି । ଏହି ଗଳ୍ପ ରଚୟିତାମାନଙ୍କ ମଧ୍ୟରୁ ପ୍ରବୋଧ ନାରାୟଣ ଚୌଧୁରୀ, (ବିଚଲ ଫୁଲ), ସୁରେନ୍ଦ୍ର ଝା (ସଂଗ୍ରହ—'କଥା ମୁଖୀ'), ହରିମୋହନ ଝା (ସଂଗ୍ରହ—ପ୍ରଣମ୍ୟ ଦେବତା), ଭୀମେଶ୍ୱର ସିଂହ, ନଗେନ୍ଦ୍ରକୁମାର (ସଂଗ୍ରହ—ସପ୍ତଫଣୀ), ଉପେନ୍ଦ୍ର ଝା, ବୃଦ୍ଧିଧାରୀ ସିଂହ (ସଂଗ୍ରହ—ପ୍ରୟାସ), ଯୋଗାନନ୍ଦ ଝା, ଜୟଦେବ ଝା, କୁମାର ଗଙ୍ଗାନନ୍ଦ ସିଂହ, ଗିରିଧର ଝା, ମନମୋହନ ଝା (ସଂଗ୍ରହ—ଅଗ୍ନିକଣା), ଅମରନାଥ ଠାକୁର, ଶତଞ୍ଜୀବ ଝା, ଆଶୁତୋଷ ଝା

ପ୍ରଭୃତ ସୁଖ୍ୟାତ ଲଭ କରିଅଛନ୍ତି । ଏତଦ୍‌ବ୍ୟତୀତ ସମ୍ଭବ ଦେବୀ, ଅନ୍ନପୂର୍ଣ୍ଣା ଦେବୀ, ଲକ୍ଷ୍ମୀବତୀ ଦେବୀ ପ୍ରଭୃତ ଲେଖିକା ମଧ୍ୟ କ୍ଷୁଦ୍ର ଗଳ୍ପ ରଚୟିତା ଭାବେ କୃତତ୍ୱ ଦର୍ଶାଇ ଅଛନ୍ତି ।

ଉପନ୍ୟାସ ଅପେକ୍ଷା କ୍ଷୁଦ୍ରଗଳ୍ପ ମୈଥିଲୀ ସାହିତ୍ୟରେ ଅଧିକ ଜନପ୍ରିୟତା ଅର୍ଜନ କରିଅଛି । ମୈଥିଲୀ ଭାଷାଭାଷୀଙ୍କ ସଂଖ୍ୟା ଅପେକ୍ଷାକୃତ ଅଳ୍ପ ହୋଇଥିବା ଯୋଗୁଁ ଓ ମିଥିଳା ଅଞ୍ଚଳରେ ବହୁଳ ଶିକ୍ଷାବିସ୍ତାର ହୋଇ ନ ଥିବା ଯୋଗୁଁ ଓ ସାଧାରଣ ପାଠକମାନଙ୍କର ପୁସ୍ତକ କ୍ରୟସାମର୍ଥ୍ୟ ଯଥେଷ୍ଟ ନ ଥିବାରୁ ମୈଥିଲୀ ଭାଷାରେ ବୃହଦାକାର ଉପନ୍ୟାସ ରଚନା ସମ୍ଭବପର ହୋଇପାରିନାହିଁ ।

**ଭ୍ରମଣ ସାହିତ୍ୟ**—ମୈଥିଲୀ ସାହିତ୍ୟର ପ୍ରଥମ ଭ୍ରମଣ ବୃତ୍ତାନ୍ତ 'ମିଥିଲା ଯାତ୍ରା' ୧୯୦୭ ମସିହାରେ ପ୍ରକାଶ ପାଇଥିଲା । ଏହାର ଲେଖକ ହେଉଛନ୍ତି ମହାମହୋପାଧ୍ୟାୟ ମୁରଲୀଧର ଝା । ଏହାପରେ ୧୯୧୬ ମସିହାରେ ତାଙ୍କର "ମିଥିଲା-ମାତୃଭୂମି ଯାତ୍ରା" ଓ 'କାଶ୍ମୀର ଯାତ୍ରୀ' ପ୍ରକାଶିତ ହୋଇଥିଲା । ଚଳିତ ଅର୍ଦ୍ଧଶତାବ୍ଦୀ ମଧ୍ୟରେ ସୀତାନାଥ ଝା ( ଜଗନ୍ନାଥ ପୁରୀଯାତ୍ରା, ୧୯୧୦), ରାମବଲ୍ଲଭ ଶର୍ମା (ନେପାଳ, ବ୍ରାହ୍ମଣ ଓ ପଶୁପତି ଦର୍ଶନ) ଭୁବନେଶ୍ୱର ଝା (ମାନସରୋବରରେ ଯାତ୍ରା କା ଡାଏରୀ' (ଅନୁବାଦ), ଆନନ୍ଦ ଝା (ହରିଦ୍ୱାର କୁମ୍ଭ ଓ ପରିଭ୍ରମଣ) ପ୍ରଭୃତ ଭ୍ରମଣ ସାହିତ୍ୟ ରଚନାରେ ମନୋନିବେଶ କରିଅଛନ୍ତି । ଏତଦ୍‌ବ୍ୟତୀତ କୁମାର ଗଙ୍ଗାନନ୍ଦ ସିଂହଙ୍କର ମହାରାଜା କା ସଙ୍ଗ, ଡକ୍‌ଟର ସୁଭଦ୍ରା ସିଂହଙ୍କର (ହାମର ବିଦେଶ ଯାତ୍ରା—୧୯୪୭), ବଦ୍ୟାନାଥ ମିଶ୍ରଙ୍କର ତିବ୍ବତ୍ ଭ୍ରମଣ ସମ୍ବଳିତ ( ତିବ୍ବତ ମେଁ ତେରହ ଦିନ, ୧୯୩୮ ) ପ୍ରଭୃତ ଲେଖକଗଣ ମୈଥିଲୀ ଭ୍ରମଣ ସାହିତ୍ୟକୁ ସମୃଦ୍ଧ କରିଅଛନ୍ତି ।

**ପ୍ରବନ୍ଧ:**—ଭ୍ରମଣ ବୃତ୍ତାନ୍ତ ଅପେକ୍ଷା ମୈଥିଲୀ ପ୍ରବନ୍ଧାବଳୀ ସମୃଦ୍ଧତର । ବହୁ ଲେଖକ ପ୍ରବନ୍ଧ ରଚନାରେ ବ୍ରତୀ ନ ହୋଇଥିଲେ ହେଁ ବିବିଧ ରଚନା ରୀତି ଓ କୃତିତ୍ୱର ନିଦର୍ଶନ ଆଧୁନିକ ମୈଥିଲୀ ପ୍ରବନ୍ଧ ସାହିତ୍ୟରେ ଉପଲବ୍ଧ ହୁଏ । ଗମ୍ଭୀର ଭାବୋଦ୍ଦୀପକ, ବ୍ୟଙ୍ଗାତ୍ମକ ଓ ହାସ୍ୟରସାତ୍ମକ ପ୍ରବନ୍ଧ ରଚନାରେ ମୈଥିଲୀ ଲେଖକ ଗଣ କୃତିତ୍ୱ ଦର୍ଶାଇ ଅଛନ୍ତି ।

ପ୍ରବନ୍ଧରଚନାର ଆଦି ପର୍ବରେ ମୁରଲୀଧର ଝା କେତେକ ଉପଦେଶାତ୍ମକ ଓ ବ୍ୟଙ୍ଗାତ୍ମକ ପ୍ରବନ୍ଧ ରଚନା କରିଥିଲେ । ଏହି ପ୍ରବନ୍ଧଗୁଡ଼ିକ ଏବେ ମଧ୍ୟ ତାହାର ତୀବ୍ର ସାମାଜିକ ସମାଲୋଚନା, ସ୍ପଷ୍ଟବାଦିତା ଓ ବ୍ୟଙ୍ଗାତ୍ମକତା ପାଇଁ ଅପ୍ରତିଦ୍ୱନ୍ଦ୍ୱୀ ରଚନା ଭାବେ ବିବେଚିତ ହୋଇଥାଏ । ତାହାଙ୍କୁ ଅନୁକରଣ କରି ରାମଭଦ୍ର ଝା,

ଗଙ୍ଗାନନ୍ଦ ସିଂହ, ପ୍ରମଥ ନାଥ ମିଶ୍ର, ବଲଦେବ ମିଶ୍ର , ଭୁବନେଶ୍ୱର ସିଂହ ବହୁ ପ୍ରବନ୍ଧ ରଚନା କରିଥିଲେ । ଏହି ଲେଖକମାନଙ୍କ ମଧ୍ୟରୁ ରାମଭଦ୍ର ଝାଙ୍କ ପ୍ରବନ୍ଧ ଉତ୍କୃଷ୍ଟ ବିବେଚିତ ହୋଇଥାଏ । ତାହାଙ୍କ ରଚନାରୁ ବ୍ୟଙ୍ଗାତ୍ମକ ଦୃଷ୍ଟିକୋଣର ପରିଚୟ ନ ମିଳିଲେ ମଧ୍ୟ, ମିଥିଲାର ସମାଜ ଓ ଜୀବନ ସମ୍ପର୍କରେ ସେ ଯେଉଁ ଭାବୋଦ୍ଦୀପକ ଓ ଚିନ୍ତାମୂଳକ ପ୍ରବନ୍ଧ ରଚନା କରିଯାଇଛନ୍ତି, ତାହା ମୈଥିଳୀ ପ୍ରବନ୍ଧ ଓ ଗଦ୍ୟର ବିକାଶରେ ପ୍ରଭୂତ ସହାୟତା କରିଅଛି । ତାହାଙ୍କ ପ୍ରବନ୍ଧ ଯେପରି ପାଣ୍ଡିତ୍ୟପୂର୍ଣ୍ଣ, ସେହିପରି ଆଲୋଚନାତ୍ମକ ଓ ବିଶ୍ଳେଷଣାତ୍ମକ; ଯେପରି ସ୍ୱଚ୍ଛ ସେହି ପରି ସରଳ ଓ ଚିନ୍ତାଧର୍ମୀ । ଗଙ୍ଗାନନ୍ଦ ସିଂହ, ଭୁବନେଶ୍ୱର ସିଂହ ଓ ଭୋଲାନାଥ ଦାସ ତାହାଙ୍କ ପ୍ରବନ୍ଧ ମାଧ୍ୟମରେ ନୂତନ ସଂସ୍କାର, ଯୁବ ଆନ୍ଦୋଳନ ଓ ବିପ୍ଳବର ବାର୍ତ୍ତା ପ୍ରଚାର କରିଅଛନ୍ତି । ଅପର ପକ୍ଷରେ ବଲଦେବ ମିଶ୍ର, ପ୍ରାଚୀନ ସଂସ୍କୃତି ଓ ରକ୍ଷଣ ଶୀଳତାକୁ ତାଙ୍କ ପ୍ରବନ୍ଧ ମାଧ୍ୟମରେ ସମର୍ଥନ କରି ଯାଇ ଅଛନ୍ତି । ମିଥିଲା ମହାସଭାର ଲକ୍ଷ୍ୟ ଆଦର୍ଶ ବହୁ ପ୍ରବନ୍ଧ ଲେଖକଙ୍କୁ ଯେ ଅନୁପ୍ରାଣିତ କରିଥିଲା । ଏହା କହିବା ନିଷ୍ପ୍ରୟୋଜନ ।

ଆତ୍ମନିଷ୍ଠ ଚିନ୍ତାମୂଳକ ପ୍ରବନ୍ଧ ରଚୟିତା ଭାବରେ ପ୍ରାଚୀନ ଲେଖକମାନଙ୍କ ମଧ୍ୟରୁ ବଲଦେବ ମିଶ୍ରଙ୍କ ନାମ ଅଗ୍ରଗଣ୍ୟ । ଆଧୁନିକ ଲେଖକମାନଙ୍କ ମଧ୍ୟରୁ ଶ୍ରୀକୃଷ୍ଣ ମିଶ୍ର ଏତାଦୃଶ ପ୍ରବନ୍ଧ ରଚୟିତା ଭାବରେ ପ୍ରଖ୍ୟାତ । ଉମେଶ ମିଶ୍ର ପ୍ରଥମ ବିଶ୍ୱଯୁଦ୍ଧ କାଳରୁ ଗୁରୁଗମ୍ଭୀର ଶୈଳୀରେ ଯୁକ୍ତିପ୍ରଧାନ ଚିନ୍ତାମୂଳକ ପ୍ରବନ୍ଧ ରଚନା କରି ମୈଥିଳୀ ସାହିତ୍ୟକୁ ସମୃଦ୍ଧ କରିଅଛନ୍ତି । ଭାବପ୍ରଧାନ ନୈର୍ବ୍ୟକ୍ତିକ ପ୍ରବନ୍ଧ ରଚୟିତା ଭାବରେ ଜୀବନ ମିଶ୍ର, ନଭିତ ଝା, ମନମୋହନ ମିଶ୍ର, ମୁରଲୀଧର ଠାକୁର, ବୃଦ୍ଧିନାଥ ଝା, ଦିବାକର ଝା, ଗୌରୀଶଙ୍କର ଝା, ଉପେନ୍ଦ୍ର ଝା ମଧ୍ୟ କୃତିତ୍ୱ ଦର୍ଶାଇ ଅଛନ୍ତି । କଳା ଓ ଜୀବନ ସଂପର୍କରେ, କୁଲାନନ୍ଦ ଦାସ, ଗିରିଧର ଝା, ଅଲଖ ନିରଞ୍ଜନ କେତେକ ସରସ ଓ ସାର୍ଥକ ପ୍ରବନ୍ଧ ରଚନା କରିଅଛନ୍ତି ।

ହାସ୍ୟରସାତ୍ମକ ଓ ଲଘୁ ନିବନ୍ଧ ଲେଖକ ଭାବରେ ହରିମୋହନ ଝାଙ୍କୁ ଶ୍ରେଷ୍ଠ ସ୍ଥାନ ପ୍ରଦାନ କରାଯାଏ । ତନ୍ତ୍ରନାଥ ଝା (ହାମର ଠେଙ୍ଗା) ଶ୍ୟାମାନନ୍ଦ ଝା (ବେଙ୍ଗ-କା ରାଷ୍ଟ୍ରୀୟ ସଭା) ମଧ୍ୟ ହାସ୍ୟ ରସାତ୍ମକ ପ୍ରବନ୍ଧ ରଚୟିତା ଭାବରେ ସୁଖ୍ୟାତି ଲଭ କରିଅଛନ୍ତି । ଏତଦ୍‌ବ୍ୟତୀତ ଚରିତ୍ର ସ୍କେଚ (ନକ୍‌ସା) ରଚନାରେ ଇଶାନାଥ ଝା, ଲକ୍ଷ୍ମୀପତି ସିଂହଙ୍କ କୃତିତ୍ୱ ମଧ୍ୟ ଉଲ୍ଲେଖ ଯୋଗ୍ୟ ।

ମୈଥିଳୀ ଭାଷା ଓ ସାହିତ୍ୟର ଆଲୋଚନା ସଂପର୍କରେ ସର୍ବାଦୌ ଚନ୍ଦା ଝା ଆଲୋକପାତ କରିଥିଲେ । ତାହାଙ୍କ ପରବର୍ତ୍ତୀ କାଳରେ ମୁରଲୀଧର ଝା ବିଦ୍ୟାପତିଙ୍କ ଗୀତାବଳୀ ସଂଗ୍ରହ, ମୈଥିଳୀଭାଷାରେ ଅଭିଧାନ ଓ ବ୍ୟାକରଣ ପ୍ରଣୟନ କରିବା

ବ୍ୟତୀତ ବହୁ ପ୍ରାଚୀନ କବିଙ୍କ ରଚନା ସଂପର୍କରେ ମଧ୍ୟ ଆଲୋଚନା କରିଥିଲେ । ଗଙ୍ଗାନାଥ ଝା, ଅମରନାଥ ଝା, ଜୀବନାଥ ଝା, ଡ: ଉମେଶ ମିଶ୍ର, ନରେନ୍ଦ୍ରନାଥ ଦାସ ପ୍ରାଚୀନ ମୈଥିଲୀ ସାହିତ୍ୟକୁ ସଂପାଦନ କରିବାରେ ମଧ୍ୟ କୃତିତ୍ୱ ଦର୍ଶାଇ ସାଇଅଛନ୍ତି । ୧୯୨୪-୩୮ ମଧ୍ୟରେ ଭାରତୀୟ ଭାଷା ଗୋଷ୍ଠୀ ମଧ୍ୟରେ ମୈଥିଲୀ ଭାଷାର ବୈଶିଷ୍ଟ୍ୟ ଓ ସ୍ୱତନ୍ତ୍ର ସ୍ଥାନ ଦର୍ଶାଇବା ଲାଗି ମୈଥିଲୀ ଲେଖକଗଣ ପ୍ରଯତ୍ନଶୀଳ ହୋଇଥିଲେ । ଡ: ସୁଭଦ୍ରା ଝା ମୈଥିଲୀ ଭାଷା ଓ ଜୟକାନ୍ତ ମିଶ୍ରଙ୍କ ମୈଥିଲୀ ସାହିତ୍ୟର ଇତିହାସ ଏବଂ ଡ: ଉମେଶ ମିଶ୍ର ଓ ଜୀବନାଥ ରାୟଙ୍କ ମୈଥିଲୀ ଲିପି ସଂପର୍କୀୟ ଗବେଷଣା ଗ୍ରନ୍ଥ ଉଲ୍ଲେଖଯୋଗ୍ୟ ।

ଏତଦ୍‌ବ୍ୟତୀତ ସଂସ୍କୃତ ସାହିତ୍ୟର ଦର୍ଶନ ଗ୍ରନ୍ଥ କର୍ମକାଣ୍ଡମାନଙ୍କର ଅନୁବାଦ ଓ ବହୁଜୀବନୀ ଗ୍ରନ୍ଥ ମଧ୍ୟ ମୈଥିଲୀ ସାହିତ୍ୟରେ ପ୍ରଣୀତ ହୋଇଅଛି । ମହାମହୋପାଧ୍ୟାୟ ମୁକୁନ୍ଦ ଝାଙ୍କ 'ମିଥିଳାର ଇତିହାସ' (୧୯୬୭) ଏକ ପ୍ରାମାଣିକ ଗ୍ରନ୍ଥ ଭାବରେ ଗୃହୀତ ହୁଏ ।

## ଆଧୁନିକ ମୈଥିଲୀ କାବ୍ୟ—

ଆଧୁନିକ ମୈଥିଲୀକାବ୍ୟ କ୍ଷେତ୍ରରେ ପୁରାତନ କାବ୍ୟ ରୂପର ପୁନଃ-ପ୍ରୟୋଗ ଓ ପୁରାତନ ବିଷୟର ନବୀନ ରୂପଦାନ ଏକ ଲକ୍ଷଣୀୟ ବୈଶିଷ୍ଟ୍ୟ । ଊନବିଂଶ ଶତାବ୍ଦୀର ପ୍ରଥମ ପାଦରେ ଚନ୍ଦା ଝା ସଂସ୍କୃତ କାବ୍ୟ ମହାକାବ୍ୟ ଭାବରେ ସର୍ବାଦୌ 'ରାମାୟଣ' ପ୍ରଣୟନ କରିଥିଲେ । ପରବର୍ତ୍ତୀ କାଳରେ ଅଚ୍ୟୁତାନନ୍ଦ ଦତ୍ତ (ମହାଭାରତ, ରଘୁବଂଶ) ଜୀବନ ମିଶ୍ର (ରାମାୟଣ) ପରମାନନ୍ଦ ଦତ୍ତ (ହରିବଂଶ) ଲକ୍ଷ୍ମୀନାଥ ଝା (ନୈଷଧ) ଯଦୁନନ୍ଦନ ଦାସ (କୁମାରସମ୍ଭବମ୍) ପ୍ରଭୃତିଙ୍କର ବିଭିନ୍ନ ସଂସ୍କୃତ ଗ୍ରନ୍ଥମାନଙ୍କର ପଦ୍ୟାନୁବାଦ ଉଲ୍ଲେଖଯୋଗ୍ୟ ।

ଏହି ଯୁଗରେ ରଚିତ ମୈଥିଲୀ କାବ୍ୟ ଗ୍ରନ୍ଥ ଭାବରେ ଲାଲ ଦାସଙ୍କ 'ରମେଶ୍ୱର ରମାୟଣ' ରଘୁନନ୍ଦନ ଦାସଙ୍କ 'ସୁଭଦ୍ରା ହରଣ', ବଦ୍ରିନାଥ ଝାଙ୍କ ଏକାବଳୀ ପରିଣୟ', ଅଚ୍ୟୁତାନନ୍ଦ ଦତ୍ତଙ୍କ 'କୃଷ୍ଣଚରିତ', ତନ୍ତ୍ରନାଥ ଝାଙ୍କ 'କୀଚକବଧ' ପ୍ରଭୃତି କାବ୍ୟର ନାମ ଉଲ୍ଲେଖଯୋଗ୍ୟ ।

ପୌରାଣିକ ଉପାଖ୍ୟାନ ପ୍ରଭୃତିକୁ ଖଣ୍ଡକାବ୍ୟ ରୂପରେ ପରିବେଷଣ କରିବାରେ ଆଧୁନିକ ଯୁଗର ମୈଥିଲୀ କବିମାନେ ଅଧିକ ଅନୁରାଗୀ । ତନ୍ମଧ୍ୟରୁ ଲାଲ ଦାସଙ୍କ 'ଶମ୍ଭୁବିନୋଦ', 'ଗଣେଶ ଖଣ୍ଡ', (୧୯୦୯-୧୧) ଓ ବହୁ ବ୍ରତକଥା ସ୍ୱର୍ଣ୍ଣକାନ୍ତ ଲାଲ ଦାସଙ୍କ 'ଗଜଗ୍ରାହୋଦ୍ଧାର' (୧୯୧୪) 'ସୁଦର୍ଶନୋପାଖ୍ୟାନ' 'ଗଙ୍ଗା

ଲହରୀ', 'ସୁକନ୍ୟୋପାଖ୍ୟାନ' 'ଗୌରୀ ପରିଣୟ ପ୍ରବନ୍ଧ' (୧୯୬୧) ଗଙ୍ଗାଧର ମିଶ୍ରଙ୍କ 'ନାରଦ ମୋହ' (୧୯୧୯), 'ସତ୍ୟବ୍ରତୋପାଖ୍ୟାନ' (୧୯୬୧) 'ସୁଦାମା ଚରିତ' (୧୯୩୫) ଦାମୋଦରଲାଲ ଦାସଙ୍କ 'ଶକୁନ୍ତଲୋପାଖ୍ୟାନ', 'ସାବିତ୍ରୀ ସତ୍ୟବାନୋପାଖ୍ୟାନ' ପ୍ରଭୃତି ଉଲ୍ଲେଖଯୋଗ୍ୟ ।

ଏତଦ୍‌ବ୍ୟତୀତ ପୌରାଣିକ ଆଦର୍ଶରେ ଅଭିନବ କଥାବସ୍ତୁକୁ ଖଣ୍ଡକାବ୍ୟ ରୂପରେ ପରିବେଷଣ କରିବାରେ ଜନାର୍ଦ୍ଦନ ଝା ( ଜାନକୀ ପରିଣୟ ), ଦେବକିଷ୍ଟ ରାୟ (ସ୍ୱର୍ଗର ବିଜୟ) ଚେତୀ ଝା (କୋଇଲ ଦୂତ) ସିଦ୍ଧିନାଥ ଝା (ସତୀ ବିଭୂତି), ଅଚ୍ୟୁତାନନ୍ଦ ଦତ୍ତଙ୍କ (ପତିବ୍ରତା ମହିମା) ଗୋବିନ୍ଦ ଝା (ବନବାସିନୀ), ରଘୁନନ୍ଦନ ଦାସ (ବୀର ବାଳକ) ପରମାନନ୍ଦ ଦତ୍ତ (ରୁକ୍ମିଣୀ ପରିଣୟ), ବଦ୍ରିନାଥ ଠାକୁର (ମିଥିଳା ଓ ମୈଥିଳୀ), ଆନନ୍ଦଝା (ବିରହ ବେଦନା) ପୁଲକିତ ଲାଲଦାସ ( ଦେବୀ କେତକୀ ) କାଳୀ କୁମାର ଦାସ (ପରଦେଶୀ) ଉପେନ୍ଦ୍ର ଝା (ସନ୍ୟାସୀ) ପ୍ରଭୃତିଙ୍କ ନାମ ଉଲ୍ଲେଖ ଯୋଗ୍ୟ ।

ଆଧୁନିକ ଯୁଗରେ ପ୍ରାଚୀନ ମୈଥିଳୀ ପଦ୍ୟ ରୀତିରେ ବହୁ ସଂଗୀତ ରଚନା କରି ଥିଲେ ଚନ୍ଦା ଝା । 'ଗୀତ ସପ୍ତଶତୀ', 'ଗୀତ ସୁଧା' 'ମହେଶ ବାଣୀ', ଚନ୍ଦ୍ର ପଦ୍ୟାବଳୀ' ନାମରେ ତାହା ପ୍ରକାଶିତ । ଶିବବନ୍ଦନାମୂଳକ ଭକ୍ତିଭାବ ପୂର୍ଣ୍ଣ 'ମହେଶ ବାଣୀ'କୁ ତାହାଙ୍କ ସର୍ବୋତ୍କୃଷ୍ଟ ଗୀତିରଚନା ଭାବରେ ଗ୍ରହଣ କରାଯାଏ ।

ବିଂଶ ଶତାବ୍ଦୀର ଜୀବନ ଝା, ବୈଦ୍ୟନାଥ ଝା, ରଘୁନନ୍ଦନ, ଜୟମଙ୍ଗଳ, ଆନନ୍ଦ ଝା, ପରମାନନ୍ଦ ଦତ୍ତ ପ୍ରଭୃତି କବିମାନେ ନୂତନ ରୀତିରେ ବହୁ ମହେଶବାଣୀ ରଚନା କରିବାରେ ଅନୁରାଗୀ ହୋଇଛନ୍ତି । ଜୀବନ ଝା, ଗଣନାଥ ଝା, ତୁଳପତି ସିଂହ, ଶ୍ରୀକିଷ୍ଟ ଠାକୁର, ଲକ୍ଷ୍ମେଶ୍ୱର ସିଂହ, ଦୁର୍ଗାଦତ୍ତ ସିଂହ, ଦୀନବନ୍ଧୁ ମଧ୍ୟ ବହୁ 'ଗୋସାଉଣୀଙ୍କ ଗୀତ' ରଚନା କରିଯାଇଅଛନ୍ତି । ଦୁର୍ଗାଦେବୀଙ୍କର ନବରାତ୍ର ପୂଜା ଉପଲକ୍ଷରେ ଗୀତ ହେବା ଉଦ୍ଦେଶ୍ୟରେ ଏହି ଗୀତଗୁଡ଼ିକ ଲିଖିତ । କେତେକ ଗୀତରେ ଆତ୍ମନିଷ୍ଠ ପ୍ରାର୍ଥନା, ମଧ୍ୟ ବର୍ଣ୍ଣିତ ହୋଇଅଛି ।

ଅନ୍ୟାନ୍ୟ ଗୀତିକାବ୍ୟ ରୂପମାନଙ୍କ ମଧ୍ୟରୁ ତିରହୁତ, ଚଉମାସା, ଲଗନୀ, ମଲର, ପ୍ରଭୃତି ରଚନା କରିବାରେ ଚନ୍ଦା ଝା, ଜୀବନ ଝା, ଚନ୍ଦ୍ରଧର ଝା ଗଣନାଥ ଝା, ବୈଦ୍ୟନାଥ ଝା, ସୀତାରାମ ଝା, ମନମୋହନ ଦାସ, ବଦ୍ରିନାଥ ଝା, କାଳୀକୁମାର ଦାସ, ମୁକୁନ୍ଦ ଝା, ଚେତୀ ଝା ପ୍ରଭୃତିଙ୍କ ନାମ ସ୍ମରଣୀୟ । ଏମାନଙ୍କ ମଧ୍ୟରୁ ଗଙ୍ଗାନାଥ ଝା ଓ ବୈଦ୍ୟନାଥଙ୍କ କୃତିତ୍ୱ ସବିଶେଷ ଉଲ୍ଲେଖଯୋଗ୍ୟ । ବାରହ

ମାସା ଓ ଡରୁନ୍ନଙ ରଚନା କରିବାରେ ମନମୋହନ ଦାସ ପ୍ରସିଦ୍ଧିଲାଭ କରିଛନ୍ତି ।

ଆହ୍ନନାଥଙ୍କ ରଚିତ କେତେକ ଗୀତରେ ଅତ୍ୟନ୍ତ ଲୌକିକ ଭାବରେ ଦେବୀଙ୍କ ପୂଜା ଓ ସେବାର ବର୍ଣ୍ଣନା ଦେଖିବାକୁ ମିଳେ । ଏତଦ୍‌ବ୍ୟତୀତ ଏଥିରେ ସାଂସାରିକ ସୁଖସୁବିଧା, ଧନଜନ, ଆପଦ-ମୁକ୍ତ ଏବଂ ବ୍ୟାଧିନାଶ ପ୍ରଭୃତି ପାଇଁ ମଧ୍ୟ ପ୍ରାର୍ଥନା ପରିଲକ୍ଷିତ ହୁଏ । ସଂଗୀତଗୁଡ଼ିକରେ ସବୁବେଳେ ଯେ ଏହି ସାଧାରଣ ସାଂସାରିକ 'ଦେହି ଦେହି' ପ୍ରାର୍ଥନାର ସ୍ୱର ନିହିତ ତାହା ନୁହେଁ । କେତେକ ସଂଗୀତରେ ସନ୍ତାନଭାବର ଏକ ମୂର୍ଚ୍ଛନା ଏବଂ ହୃଦୟର ଏକ ପ୍ରଚ୍ଛନ୍ନ ଆକୁତି ପ୍ରସ୍ଫୁଟିତ । ଉଦାହରଣ ସ୍ୱରୂପ 'ଗୋସାଉନିକ ଗୀତ'ର ଗୋଟିଏ ପଦରେ ଦେଖିବାକୁ ମିଳେ—

ଜନନୀ ଆବ କିଛୁ କରିଯୁ ଉପାଯୁ—
କୀ ହମ କରବ କତୟ ହମ ଜାୟବ
କେ ହୋୟତ ଦୋସର ସହାୟ ।
ବନ ବନୁ ଅବଲମ୍ବନ ଧାରି ମେ ପଡ଼ଲୌଁ
ଚନ୍ଦ୍ରା ସଁ ଅତି ଅକୁଲାୟ ।
ଆବକୃପା କଏ ହେରହୁଁ ଜନନୀ
କର ଧଏ ଲେହୁଁ ଉଠାୟ ।
ପୂଜାଧ୍ୟାନ ଏକୋ ନହିଁ କୟଲହୁଁ
ତଦପି ନ ତ୍ୟାଗବ ମାୟ ।
ପୁତ୍ର ବିକଲ ଦେଖି ଜଗ-ଜନନୀ
କୋରକୈଁ ଲେଲ ଉଠାୟ ।
କର ଚୁଚକାରି ଦୁଲରତି ଜନନୀ
ଚନ୍ଦ୍ରା ଦେଲ ହଁସାୟ ।

ଆଧୁନିକ ମୈଥିଲୀ ସାହିତ୍ୟର ଏହା ଏକ ମୁଖ୍ୟ ପ୍ରବଣତା । ସମଗ୍ର ଦେଶରେ ଯେତେବେଳେ ରାଷ୍ଟ୍ରବିପ୍ଳବ ଓ ସମାଜବିପ୍ଳବର ସୂତ୍ରପାତ ହୋଇଛି ଏବଂ ସେହି ବିପ୍ଳବ ଭିତର ଦେଇ ସମଗ୍ର ଦେଶ ସେତେବେଳେ ଗୋଟିଏ ନୂତନ ଯୁଗାନ୍ତକାରୀ ବିବର୍ତ୍ତନ ଗ୍ରହୁଛି । ଶୋଷକର ନିର୍ମମ ଅତ୍ୟାଚାର ଏବଂ ଶୋଷିତମାନଙ୍କର ଆର୍ତ୍ତ-ରବରେ ପୃଥିବୀ ପୂର୍ଣ୍ଣ । ଏହି ଶୋଷକରୂପୀ ଦାନବ ଦଳନ ପାଇଁ ମା' ଜନନୀ ଦଶଭୁଜା ଯେପରି ପୁଣି ରକ୍ତପିପାସୁ ହୋଇ ଉଠିଛନ୍ତି ଏବଂ ନିଜେ ପଣି ସମରାଙ୍ଗଣରେ

ଆବର୍ତ୍ତନା ହେବାକୁ ଯାଉଛନ୍ତି । ଉଦାହରଣ ସ୍ୱରୂପ—ଏହି ଜାତୀୟ କବିତାର କତିପୟାଂଶ ଏଠାରେ ଉଦ୍ଧାର କରାଗଲା ।

'ଶୋଣିତ ଦେ ଶୋଣିତ ଦେ ମୈଥିଲାର୍ଫ
ପ୍ୟାସେଁ ତଡ଼ପଧଲ ଅଛି ଖଡ଼୍ଗ ହମର
ବଡ଼ବାନଲ ଛୁଧା ଧର୍ତଲ କୈଁ
ସଂହାର କରେ ପରତଛି ଠାଢ଼ି
ଅଛି ଖପ୍‌ପର ଛୁଛେ ଯୁଗଯୁଗ ସଁ
ଖଲଖଲ କୟ ପ୍ରାଣିକ ପ୍ରାଣ ବାଢ଼ି
ମାରୁତ ଗତ ବଢ଼ି ଗେଲ ଦଗ ଦଗନ୍ତ
ଧୂଧୂଆଏଲ ଧୂମ କୁହେସ ପ୍ରଖର
ଇ ପ୍ରକୃତ କ୍ଲାନ୍ତ କନ୍ଦନ କରଇଛ
ସ୍ପନ୍ଦନ ପ୍ରାଣିକ ରୁଦ୍ଧ ଭେଲ
ଶୋଷିତ କ ଆହୂତ ଦେଖି ଦେଖି
ଶୋଷକ ପରମନ ମୋର ହୃଷ୍ଟ ଭେଲ
ଥାଏଲ ଛୀ ଉଠ ଦେମାଂସ ଏ କର
ହମ ପେଟ ଭରବ ପୂର୍ଣ୍ଣ କରବ ସମର ।

ସିଦ୍ଧିନାଥ ଝାଙ୍କ ରଚିତ ରାଜା ବିଶେଶ୍ୱରଙ୍କ କୋବର ଯାତ୍ରା ଉତ୍ସବ ବର୍ଣ୍ଣନାସମ୍ବଳିତ 'ବିଶ୍ୱେଶ୍ୱର ଚମ୍ପୂ' (୧୯୪୭) ମଧ୍ୟ ଏତାଦୃଶ ପ୍ରାଚୀନ କାବ୍ୟ ରୂପ ଅନୁସରଣରେ ଲିଖିତ କାବ୍ୟ ଭାବରେ ଗ୍ରହଣୀୟ । ମାତ୍ର ସାମ୍ପ୍ରତିକ ଲେଖକମାନେ ଏହି ପ୍ରାଚୀନ ଗୀତିକାବ୍ୟ ରୂପମାନଙ୍କର ଅନୁସରଣ ଲାଗି ତାଦୃଶ ଅନୁରକ୍ତ ନୁହନ୍ତି । ନୂତନ କାବ୍ୟରୂପ ଓ ନୂତନ ବିଷୟବସ୍ତୁ ଆଧୁନିକ କାବ୍ୟକ୍ଷେତ୍ରରେ ବ୍ୟବହୃତ ହେଉଅଛି । ବିଶେଷତଃ ଜାତୀୟତା ଆଧୁନିକ ମୈଥିଲୀ କାବ୍ୟ କବିତାର ମୁଖ୍ୟ ପ୍ରବୃତ୍ତି ରୂପରେ ଦେଖା ଦେଇଅଛି । ଖ୍ରୀ. ୧୯୨୦-୨୯ ମଧ୍ୟରେ ପ୍ରକାଶିତ ଯଦୁନାଥ ଝା ଓ ଶ୍ୟାମାନନ୍ଦ ଝାଙ୍କ ଦ୍ୱାରା ଯଥାକ୍ରମେ ସମ୍ପାଦିତ 'ମୈଥିଲୀ ଗୀତାଞ୍ଜଳି' ଓ 'ମୈଥିଲୀ ସନ୍ଦେଶ' ନାମକ ଦୁଇଟି ସଂକଳନରୁ ଏତଦୃଶ ଗୀତିକବିତା ପରମ୍ପରାର ନିଦର୍ଶନ ମିଳିଥାଏ । ଏହି ସଂକଳନସ୍ଥ ରଘୁନାଥ ଝା, ଚନ୍ଦା ଝା, ଜୀବନ ଝା, ତ୍ରିଲୋଚନ ଝା, ପଦ୍ମନାଭ ଝା, ପୁଲକିତଲାଲ ଦାସ, ହୀରାଲାଲ ଝା, ରାମଚନ୍ଦ୍ର ମିଶ୍ର, ରଘୁନନ୍ଦନ ଦାସ ପ୍ରଭୃତି ବହୁ କବିଙ୍କ ରଚନାରୁ ଦେଶପ୍ରେମ ଓ ଜାତୀୟ ଜାଗରଣର ସନ୍ଦେଶ ମିଳିଥାଏ । ପରବର୍ତ୍ତୀ ଦଶକରେ ଆନନ୍ଦ ଝା, କାଶୀନାଥ ଝା, କାଶୀକାନ୍ତ ମିଶ୍ର,

ବୈଦ୍ୟନାଥ ମିଶ୍ର, ଶ୍ୟାମାନନ୍ଦ ଝା ପ୍ରଭୃତି ଏତାଦୃଶ ଗୀତିକାବ୍ୟ ରଚନା କରିଥିଲେ ।

ସ୍ଥୂଳତଃ ୧୯୦୬ରୁ ୧୯୩୫ ପର୍ଯ୍ୟନ୍ତ ପ୍ରାୟ ପ୍ରତ୍ୟେକ କବିଙ୍କ ଗୀତାବଳୀରେ ମିଥିଳାର ମହତ୍ତ୍ୱ ବର୍ଣ୍ଣନା ଓ ସ୍ୱଦେଶ ପ୍ରେମ ହିଁ ମୁଖ୍ୟ ସ୍ଥାନ ଲାଭ କରିଥିବା ଦେଖିବାକୁ ମିଳେ । ପ୍ରାଚୀନ ମୈଥିଳୀ ଗୀତିକାବ୍ୟ ସଙ୍ଗୀତର ରାଗ-ରାଗିଣୀ ଅନୁଯାୟୀ ଲିଖିତ ହେଉଥିଲା ଓ ସଙ୍ଗୀତାକାରରେ ପରିବେଷିତ ହେଉଥିଲା ; ମାତ୍ର ଇଂରାଜୀ ଗୀତିକାବ୍ୟର ଆଦର୍ଶରେ ଲିଖିତ କବିତା ସମୂହ ପଠିତ ହେବା ଉଦ୍ଦେଶ୍ୟରେ ହିଁ ଲିଖିତ ହେବାକୁ ଲାଗିଲା । ଆନୁମାନିକ ଭାବରେ ୧୯୩୦ ଠାରୁ ଏତାଦୃଶ ଗୀତିକାବ୍ୟ ରଚନାର ସୂତ୍ରପାତ ହୋଇଅଛି । ଏତାଦୃଶ ଗୀତିକାବ୍ୟ ରଚୟିତାମାନଙ୍କ ମଧ୍ୟରୁ କାଳୀକୁମାର ଦାସ 'କାବ୍ୟ କୁସୁମାଞ୍ଜଳି' (୧୯୩୦) ଜୟନାରାୟଣ ମଲ୍ଲିକ, କାଞ୍ଚିନାଥ ଝା, ଲକ୍ଷ୍ମୀପତି ସିଂହ (ପଦ୍ୟ ପୁଷ୍ପାଞ୍ଜଳି), ଭୁବନେଶ୍ୱର ସିଂହ (ମୁକ୍ତିକଣା), ଜୀବନାଥ ଝା (କଳ୍ପନା ୧୯୪୧), କାଶୀନାଥ ମିଶ୍ର (ଝଙ୍କାର-୧୯୪୬, ଶତଦଳ-୧୯୪୪) ତନ୍ତ୍ରନାଥ ଝା (ପ୍ରତିପଦ, ଅର୍ଚ୍ଚନା—୧୯୫୦), ଉପେନ୍ଦ୍ର ଠାକୁର (ଫୁଲଡାଲି) ପ୍ରଭୃତିଙ୍କ ନାମ ସୁପରିଜ୍ଞାତ । ଏହି କବିମାନଙ୍କ ମଧ୍ୟରେ ଭୁବନେଶ୍ୱର ସିଂହ ସୁବିଖ୍ୟାତ । କ୍ରମେ ବ୍ୟକ୍ତିଗତ ଅନୁଭୂତି ବ୍ୟତୀତ ବହୁବିଷୟକ ଗୀତିକାବ୍ୟ ରଚିତ ହେବାକୁ ଲାଗିଲା । ଆଧୁନିକ କବିମାନଙ୍କ ମଧ୍ୟରୁ ବୌଦ୍ଧଧର୍ମାବଲମ୍ବୀ ବୈଦ୍ୟନାଥ ମିଶ୍ରଙ୍କର ନାମ ଅଗ୍ରଗଣ୍ୟ । ମୁକ୍ତଛନ୍ଦରେ ଲିଖିତ ତାଙ୍କର ବହୁ କବିତା ଉଚ୍ଚ-କୋଟୀର ରଚନା ଭାବରେ ପରିଗଣିତ ହୁଏ । ତନ୍ତ୍ରନାଥ ଝା ମଧ୍ୟ ଆଧୁନିକ ମୈଥିଳୀ ଗୀତି-କବିତାରେ ନୂତନ ରଚନାଶୈଳୀର ପ୍ରବର୍ତ୍ତକ ଭାବରେ ପ୍ରସିଦ୍ଧି-ଲାଭ କରିଅଛନ୍ତି ।

ହାସ୍ୟ ଓ ବ୍ୟଙ୍ଗାତ୍ମକ କବିତା ରଚୟିତା ଭାବରେ ହରିମୋହନ ଝା, ଦାମୋଦର ଲାଲ ଦାସ, ଚନ୍ଦ୍ରନାଥ ମିଶ୍ର (ଘୁଡ଼ଘୁଡ଼-୧୯୪୫, ତ୍ରିଫଲା-୧୯୪୧) ସୁଖ୍ୟାତି ଲାଭ କରିଅଛନ୍ତି । ନବୀନ କବିମାନଙ୍କ ମଧ୍ୟରୁ ବୃଦ୍ଧିଧାରୀ ସିଂହ, ଗୋବିନ୍ଦ ଝା, ଚନ୍ଦ୍ରନାଥ ମିଶ୍ର, ରୂପନାରାୟଣ ଝା, ଉପେନ୍ଦ୍ର ଝା ପ୍ରଭୃତି ପ୍ରଗତିଶୀଳ ଓ ସମ୍ଭାବନାସମ୍ପନ୍ନ କବି ଭାବରେ ବିବେଚିତ ।

ଏହିପରି ଭାବରେ ଆଧୁନିକ ମୈଥିଳୀ କବିତା ଇଂରାଜୀ କବିତା ସଦୃଶ ମନୁଷ୍ୟ ଓ ତାର ବିବିଧ ସମସ୍ୟାକୁ ଉପଜୀବ୍ୟ କରି ଲିଖିତ ହେଉଅଛି । କଥା କବିତା, ସମ୍ବୋଧ ଗୀତି, ବ୍ୟଙ୍ଗାତ୍ମକ କବିତା, ଚତୁର୍ଦ୍ଦଶପଦୀ କବିତା ରୂପରେ ତାହା ଅଭିବ୍ୟକ୍ତ ହେଉଅଛି । ଏହା ଯେ ଇଂରାଜୀ କବିତା ପ୍ରଭାବର ପରିଣତି, ତାହା କହିବା ଅନାବଶ୍ୟକ ।

## ଆଧୁନିକ ମୈଥିଲୀ ନାଟକ—

ମୈଥିଲୀ ନାଟକ କ୍ଷେତ୍ରରେ ପାଶ୍ଚାତ୍ୟ ପ୍ରଭାବ ସବୁଠାରୁ ବିଳମ୍ବରେ ଅନୁଭୂତ ହୋଇଥିଲା । ଚଳିତ ଶତାବ୍ଦୀ ପର୍ଯ୍ୟନ୍ତ ମଧ୍ୟଯୁଗୀୟ ଗୀତାତ୍ମକ କୀର୍ତ୍ତନୀୟା ନାଟକ ପ୍ରଚଳିତ ଥିଲା । ମାତ୍ର ଚଳିତ ଶତାବ୍ଦୀର ପ୍ରାରମ୍ଭରେ ଏହାର ପ୍ରଚଳନ ଓ ସୃଷ୍ଟି ସମ୍ପୂର୍ଣ୍ଣ ସ୍ଥଗିତ ହୋଇଗଲା । ହିନ୍ଦୀ ଓ ସଂସ୍କୃତ ନାଟକକୁ ଅନୁକରଣ କରି ପ୍ରଥମେ ମୈଥିଲୀଭାଷାରେ ଗଦ୍ୟରେ ନାଟକ ପ୍ରଣୀତ ହେବାକୁ ଲାଗିଲା । ଗଦ୍ୟରେ ଏତାଦୃଶ ନୂତନ ନାଟକ ରଚୟିତା ଭାବରେ ଜୀବନ ଝାଙ୍କ ନାମ ସର୍ବାଦୌ ଉଲ୍ଲେଖଯୋଗ୍ୟ । ତାହାଙ୍କ ପ୍ରଥମ ନାଟକ 'ସୁନ୍ଦର ସଂଯୋଗ' ୧୯୦୪ରେ ଲିଖିତ ହୋଇଥିଲା । ଦୀର୍ଘ ବିଚ୍ଛେଦ ପରେ ନବବିବାହିତ ସୁନ୍ଦର ଓ ତାର ପତ୍ନୀ ସରଳାର ପୁନର୍ମିଳନ ଏହି ସାମାଜିକ ନାଟକର କଥାବସ୍ତୁ । ଏହା ପରେ ସେ 'ନର୍ମଦା ସାଗର ସଟ୍ଟକ' (୧୯୦୬), 'ମୈଥିଲୀ ସଟ୍ଟକ' (୧୯୦୬) 'ସାମ୍ବବତୀ ପୁନର୍ଜନ୍ମ' (୧୯୦୮) ରଚନା କରିଥିଲେ । ଶେଷୋକ୍ତ ପୌରାଣିକ ନାଟକଟି ତାଙ୍କର ଶ୍ରେଷ୍ଠ ରଚନା ଭାବରେ ଗ୍ରହଣ କରାଯାଏ । ଏହାପରେ ଲାଲଦାସ (ସାବିତ୍ରୀ-ସତ୍ୟବାନ ୧୯୦୯) ଶଶୀନାଥ ଝା (କଳିଧର୍ମ ପ୍ରକାଶିକା ୧୯୧୧-୧୨, ଆତୃର୍ଯ୍ୟ ବିଜୟ) ଆନନ୍ଦ ଝା, (ସୀତାସ୍ୱୟଂବର ୧୯୩୮), ରଘୁନନ୍ଦନ ଦାସ (ମିଥିଳା ନାଟକ ୧୯୨୦-୨୩, ଦୂତାଙ୍ଗଦ ବ୍ୟାୟୋଗ) ପ୍ରଭୃତି ମୁଖ୍ୟତଃ ଆଦର୍ଶମୂଳକ ଅଥବା ପୌରାଣିକ ନାଟକ ରଚନାରେ ମନୋନିବେଶ କରିଥିଲେ । ସେଥିରେ ବାସ୍ତବଧର୍ମୀ ଚରିତ୍ରଚିତ୍ରଣ ପରିଲକ୍ଷିତ ହେଉ ନ ଥିଲା । ତଥାପି ମୈଥିଲୀ ନାଟକର ପ୍ରଥମ ପର୍ଯ୍ୟାୟର ଶ୍ରେଷ୍ଠ ନାଟକ ଭାବରେ ଇଶାନାଥ ଝାଙ୍କ 'ଚିନିକା ଲଡ୍ଡୁ' ସ୍ୱୀକୃତ ।

ମୈଥିଲୀ ନାଟକର ଦ୍ୱିତୀୟ ପର୍ଯ୍ୟାୟ:—ବହୁ ସଂସ୍କୃତ ନାଟକର ଅନୁବାଦକୁ ଏହି ପର୍ଯ୍ୟାୟଭୁକ୍ତ କରାଯାଏ । ସଂସ୍କୃତର 'ମୁଦ୍ରାରାକ୍ଷସ' (ସୀତାନାଥ ଝା), 'ଉତ୍ତର ରାମ ଚରିତ' (ରଘୁନନ୍ଦନ ଦାସ), 'ପ୍ରସନ୍ନ ରାଘବ' (ଅଚ୍ୟୁତାନନ୍ଦ ଦତ୍ତ), 'ଅଭିନବ ପ୍ରସନ୍ନ ରାଘବ' (ଅଜ୍ଞାତ), 'ମୃଚ୍ଛକଟିକମ୍' (ପରମାନନ୍ଦ ଦତ୍ତ), 'ରତ୍ନାବଳୀ' (ବଲ୍ଲଭ ଝା), 'ଶାକୁନ୍ତଳମ୍' (ଇଶୀନାଥ ଝା), ପ୍ରବୋଧ ଚନ୍ଦ୍ରୋଦୟ (ଆନନ୍ଦ ଝା) 'ନାଗାନନ୍ଦ' (ତ୍ରୈଲୋକ୍ୟନାଥ ମିଶ୍ର) ପ୍ରଭୃତି ନାଟକଗୁଡ଼ିକ ମୈଥିଲୀ ଭାଷାରେ ଅନୂଦିତ ହୋଇ ମୈଥିଲୀସାହିତ୍ୟକୁ ସମୃଦ୍ଧ କରିଅଛି ।

ସମ୍ପ୍ରତି ରଙ୍ଗମଞ୍ଚର ପ୍ରତିଷ୍ଠା ଓ ସାମୟିକ ସମସ୍ୟାକୁ ଉପଜୀବ୍ୟ କରି ନାଟକ ରଚିତ ହେବା ଯୋଗୁଁ ମୈଥିଲୀ ନାଟ୍ୟସାହିତ୍ୟ କ୍ଷେତ୍ରରେ ବହୁ ପରିବର୍ତ୍ତନ ସଂଘଟିତ ହୋଇଅଛି । ଜୀବନାଥ ଝା, ଆନନ୍ଦ ଝା, ହରିଚନ୍ଦନ ଠାକୁର ପ୍ରଭୃତି ସଫଳତା ସହ ଚରିତମୂଳକ ଓ ସମସ୍ୟାମୂଳକ ନାଟକ ପ୍ରଣୟନ କରୁଅଛନ୍ତି ।

ଏକାଙ୍କ ନାଟିକା ମଧ୍ୟ ମୈଥିଳୀ ସାହିତ୍ୟରେ ଅଧିକ ଜନପ୍ରିୟତା ଲାଭ କରିଅଛି । ହରିମୋହନ ଝାଁ, ତନ୍ତ୍ରନାଥ ଝାଁ, ହରିକାନ୍ତ ଝାଁ, ପରମାନନ୍ଦ ଦତ୍ତ, ଯୋଗାନନ୍ଦ ଝାଁ, ଜୀବନାଥ ଝାଁ ପ୍ରଭୃତିଙ୍କ ରଚନାବଳୀ ଅଧୁନା ସୁଖ୍ୟାତି ଓ ଜନପ୍ରିୟତା ଅର୍ଜନ କରିଅଛି ।

ମୋଟାମୋଟି ଭାବରେ ଆଧୁନିକ ମୈଥିଳୀ-ସାହିତ୍ୟ ଏହିପରି କାବ୍ୟ-କବିତା, ନାଟକ, ଗଳ୍ପ, ଉପନ୍ୟାସ ଓ ପ୍ରବନ୍ଧ ପ୍ରଭୃତି ବିବିଧ ଦିଗରେ ବିକାଶ ଲାଭ କରୁଅଛି ।

———

# ଗୁଜୁରାଟୀ ସାହିତ୍ୟ

ସୌରସେନୀ ପ୍ରାକୃତ ପଞ୍ଚମ ଶତାବ୍ଦୀରେ ଆଭୀର, ଗୁର୍ଜ୍ଜର ପ୍ରଭୃତି ଜାତିଙ୍କ କଥୋପକଥନର ଭାଷା ସଂସ୍ପର୍ଶରେ ଆସି ଅପଭ୍ରଂଶ ରୂପଲାଭ କରିଥିଲା । ଦ୍ୱାଦଶ ଶତାବ୍ଦୀରେ ଏହି ଅପଭ୍ରଂଶ ସ୍ତରରୁ ଗୁଜରାଟୀ ଭାଷା ଏକ ସୁନିର୍ଦ୍ଦିଷ୍ଟ ରୂପ ପରିଗ୍ରହ କରିଥିଲା ବୋଲି ଭାଷାତତ୍ତ୍ୱବିତ୍ ପଣ୍ଡିତମାନେ ନିର୍ଦ୍ଧାରଣ କରିଛନ୍ତି ।

ଏହି ସାହିତ୍ୟର କ୍ରମବିକାଶର ଇତିବୃତ୍ତିକୁ ଆଦିଯୁଗ, ପୂର୍ବ-ମଧ୍ୟଯୁଗ, ଉତ୍ତର-ମଧ୍ୟଯୁଗ ଓ ଆଧୁନିକ ଯୁଗ ଭେଦରେ ଚାରି ଭାଗରେ ବିଭକ୍ତ କରାଯାଏ ।

## ଆଦିଯୁଗ (୧୨୫୦-୧୪୫୦)

ଗୁଜରାଟୀ ସାହିତ୍ୟର ପ୍ରାଚୀନତମ ରଚନାଭାବେ ବିଜୟ ସେନ (୧୨୩୨)ଙ୍କ 'ରେବନ୍ତ ଗିରିରାସୋ'କୁ ଗ୍ରହଣ କରାଯାଇଥାଏ । ପ୍ରଣୟପ୍ରଧାନ କାଳ୍ପନିକ କଥାବସ୍ତୁ ଓ ବୀରତ୍ୱପୂର୍ଣ୍ଣ ତଥା ଐତିହାସିକ ଘଟଣାବଳୀକୁ ଉପଜୀବ୍ୟ କରି ଏହି ସମୟର ଲେଖକମାନେ ସାହିତ୍ୟସୃଷ୍ଟି କରୁଥିଲେ । ଏହାଛଡ଼ା ଫାଗୁ, ବାରମାସୀ, ଚୂପୋ ପ୍ରଭୃତି ରଚନାବଳୀ ଏ ଯୁଗର କ୍ଷୁଦ୍ର ଗୀତିକବିତା ଭାବରେ ପ୍ରଚଳିତ ହେଉଥିଲା ।

ଶ୍ରୀଧରଙ୍କ 'ରଣମଲ୍ଲ ଛନ୍ଦ'ରେ ରାଠୋରବଂଶୀୟ ରାଜା ରଣମଲ୍ଲଙ୍କର ବୀରତ୍ୱପୂର୍ଣ୍ଣ କାହାଣୀ ବର୍ଣ୍ଣିତ । ପଦ୍ମନାଭଙ୍କ ରଚିତ 'କହ୍ନଡଦେ ପ୍ରବନ୍ଧ' ସେହିପରି ଏକ ବୀରତ୍ୱପୂର୍ଣ୍ଣ କାବ୍ୟ । ଆଲ୍ଲାଉଦ୍ଦିନଙ୍କ ଭାଇ ଉଲ୍‌ଗ ଖାଁଙ୍କ ଆକ୍ରମଣ ଦ୍ୱାରା କିପରି ସୋମନାଥ ମନ୍ଦିରର ପତନ ଘଟିଲା ଓ କହ୍ନଡଦେ ଗୁଜୁରାଟର ସ୍ୱାଧୀନତା ରକ୍ଷାଲାଗି କିପରି ବୀରତ୍ୱପୂର୍ଣ୍ଣ ସଂଗ୍ରାମ କରିଥିଲେ, ତାହା ହିଁ ଏଥିରେ ବର୍ଣ୍ଣିତ ।

ରାସୋ ଅପଭ୍ରଂଶ ସାହିତ୍ୟରେ ଏକ ଜନପ୍ରିୟ ବିଭବ । ଏହା କଥା-କବିତା ସଦୃଶ ଏବଂ ତାହା ନୃତ୍ୟକାଳରେ ଗୀତ ହେଉଥିଲା । ଲୋକନୃତ୍ୟରୁ ଏହା ସର୍ବାଦୌ ଉଦ୍ଭୂତ ହୋଇଥିଲେ ହେଁ, ବିଦଗ୍ଧ ଜନସାଧାରଣଙ୍କ ଦ୍ୱାରା ଏହା ସମାଦୃତ ହେଲା ଓ ଛନ୍ଦୋମୟ ଗୀତିକାବ୍ୟ ଓ ରୂପକର ଗୌରବ ଅର୍ଜ୍ଜନ କରିଥିଲା । ଏହାକୁ ଗାନ କରି ପୁରୁଷ ଓ ନାରୀ ଯୁଗ୍ମଙ୍କ ଭାବରେ ନୃତ୍ୟ କରିଥାଆନ୍ତି । ସେହି ସମୟରେ କରତାଳି ବା ଛୋଟ କାଠି ସାହାଯ୍ୟରେ ତାଳ ଦିଆଯାଏ । ଗୁଜରାଟୀ ସାହିତ୍ୟ ଏହିପରି ବହୁସଂଖ୍ୟକ ପୌରାଣିକ ଓ ଐତିହାସିକ ଘଟଣାସମ୍ବଳିତ ଗାନ ଯୋଗ୍ୟ ରାସ-ଭାତର ରଚନା ଦ୍ୱାରା ସମୃଦ୍ଧ । ଶାଳୀଭଦ୍ର (୧୧୮୫) ଙ୍କର 'ଭରତ

ବାହୁବଳୀ ରାସୋ'କୁ ଗୁଜରାଟୀ ସାହିତ୍ୟର ପ୍ରଥମ ରଚନା ଭାବେ ଗ୍ରହଣ କରାଯାଇ-ଥାଏ । ପ୍ରାଚୀନ ଯୁଗର ଦୁଇ ରାଜଭ୍ରାତାଙ୍କର ଯୁଦ୍ଧ ଏହି ରାସୋର ଉପଜୀବ୍ୟ ବିଷୟ । ଏତଦ୍‌ବ୍ୟତୀତ ଧର୍ମ୍ମଣସୁରିଙ୍କ 'ଆବୁରାସୋ', ବିଜୟ ପ୍ରଭ (୧୩୫୬)ଙ୍କ 'ଗୌତମ ସ୍ୱାମୀରାସୋ', 'ସମର ରାସୋ' (୧୩୧୫) ପ୍ରଭୃତି 'ରାସୋ' ରଚନା-ଗୁଡ଼ିକର ନାମ ମଧ୍ୟ ଉଲ୍ଲେଖଯୋଗ୍ୟ ।

ଫାଗୁ ଗୀତିକା କ୍ଷୁଦ୍ର ଓ ଅଧିକ ସଙ୍ଗୀତମୟ । ରାସୋ ଭଳି ପୌରାଣିକ ବା ଐତିହାସିକ ବ୍ୟକ୍ତି ଏହାର ନାୟକ; ମାତ୍ର ଏଥିରେ ଘଟଣାର ପ୍ରାଧାନ୍ୟ ପରିଲକ୍ଷିତ ହୁଏ ନାହିଁ । ଏହା ବସନ୍ତକାଳୀନ ଆନନ୍ଦୋତ୍ସବ ଓ ନୃତ୍ୟ ସହ ସଂପୃକ୍ତ । ପୁଷ୍ପିତ ବସନ୍ତ କାଳରେ ଅନ୍ୟ ନାରୀମାନେ ସେମାନଙ୍କ ପ୍ରିୟତମଙ୍କ ସହ କ୍ରୀଡ଼ାକୌତୁକ ରଚୁଥିବା-ବେଳେ, ବିରହିଣୀ ନାୟିକା ତାର ପ୍ରବାସୀ ପ୍ରିୟତମ ସ୍ୱାମୀ ଲାଗି ଝୁରି ହେଉଥାଏ ; ମାତ୍ର ତାର ସ୍ୱାମୀ ଫେରିଆସିବା ପରେ ତାର ଦୁଃଖ ଅପସାରିତ ହୁଏ । ପୁନର୍ମିଳନ-ଜନିତ ଆନନ୍ଦରେ ତାର ଅନ୍ତର ପରିପୂର୍ଣ୍ଣ ହୋଇ ଉଠେ । ନେମିନାଥ ଓ ରଜୁଲର କରୁଣ ପ୍ରଣୟ ଫାଗୁର ଏକ ଜନପ୍ରିୟ କଥାବସ୍ତୁ । ଫାଗୁ ଏହି ଯୁଗର ସବୁଠାରୁ ମଧୁରତମ ରଚନା । ଜିନପଦ୍ମଙ୍କ 'ସ୍ଥୁଲୀଭଦ୍ର ଫାଗୁ' (୧୩୩୪), ରାଜଶେଖରଙ୍କ ନେମିନାଥ ଫାଗୁ (୧୩୪୪), ଜୟଶେଖରଙ୍କ ନେମିନାଥ ଫାଗୁ (୧୩୭୫), ସୋମସୁନ୍ଦରଙ୍କ 'ରଙ୍ଗ ସାଗର ନେମିନାଥ ଫାଗୁ' (୧୪୦୦), ବିଜୟଚନ୍ଦ୍ରଙ୍କର 'ନେମିନାଥ ଚତୁଷ୍ପଦିକା' (୧୨୬୯) ପ୍ରଭୃତି ରଚନା ପ୍ରବନ୍ଧମୂଳକ କାବ୍ୟ । ତନ୍ମଧ୍ୟରୁ 'ବସନ୍ତ ବିଳାସ'କୁ ସର୍ବୋତ୍କୃଷ୍ଟ କୁହାଯାଇପାରେ । ଚତୁର୍ଦ୍ଦଶ ଶତାବ୍ଦୀରେ କୌଣସି ଏକ ଅଜ୍ଞାତନାମା କବିଙ୍କ ଦ୍ୱାରା ଏହି ଧର୍ମ-ସମ୍ପର୍କହୀନ ପ୍ରଣୟପ୍ରଧାନ କବିତାଟି ରଚିତ ହୋଇଥିଲା ।

ଏହି ଯୁଗରେ ମଧ୍ୟ କେତେକ କାଳ୍ପନିକ କାବ୍ୟ ରଚିତ ହୋଇଥିଲା । ତନ୍ମଧ୍ୟରୁ ହିରା ନନ୍ଦଙ୍କର 'ବିଦ୍ୟାବିଳାସ ପଭଡ଼ୋ' (୧୪୨୯) ଭୀମଙ୍କର 'ସଦୟ ବତ୍ସ କଥା' ଉଲ୍ଲେଖଯୋଗ୍ୟ । ମାତ୍ର ଐତିହାସିକ ବିଷୟ ସମ୍ବନ୍ଧୀ ରାସୋ ବା ଗୀତିମୟ ଫାଗୁ ଭଳି ଏହି କାବ୍ୟଗୁଡ଼ିକ ସରସ ବା ଶ୍ରୀମଣ୍ଡିତ ହୋଇପାରି ନ ଥିଲା ।

ଜୈନ ସାଧୁମାନେ ସୁପଣ୍ଡିତ ଓ ଧର୍ମପ୍ରଚାରକ ଥିଲେ । ଧର୍ମତତ୍ତ୍ୱକୁ ସରଳ ଉପାଖ୍ୟାନ ଆକାରରେ ଲେଖି ସେମାନେ ପ୍ରଚାର କରିଥିଲେ । ଚତୁର୍ଦ୍ଦଶ ଶତାବ୍ଦୀରେ ତରୁଣପ୍ରଭ, ସୋମସୁନ୍ଦର ପ୍ରଭୃତି ଲେଖକଗଣ ଏହିପରି ଗଳ୍ପା-କାରରେ ବହୁ ଗଦ୍ୟ ରଚନା କରିଥିଲେ । ପଞ୍ଚଦଶ ଶତାବ୍ଦୀରେ ମାଣିକ୍ୟଚନ୍ଦ୍ରଙ୍କ ରଚିତ 'ପ୍ରିଥ୍ୱୀଚନ୍ଦ୍ର ଚରିତ' (୧୪୨୨) ଏକ ପଦ୍ୟଧର୍ମୀ ଗଦ୍ୟ ରଚନା ରଚିତ

ହୋଇଥିଲା । ଏହା ଏକ କାଳ୍ପନିକ କାହାଣୀ ହେଲେ ହେଁ ଏହାର ଉପସଂହାରରେ ଜୈନଧର୍ମର ପ୍ରଚାର ଦେଖିବାକୁ ମିଳେ ।

## ପୂର୍ବ-ମଧ୍ୟଯୁଗ (୧୪୫୦-୧୬୫୦)

ଜୈନଧର୍ମ ପରିବର୍ତ୍ତେ ଏହି ସମୟରେ ହିନ୍ଦୁଧର୍ମର ବିକାଶ ହୋଇଥିଲା । ପୁରାଣ, ଭାଗବତରୁ ପ୍ରେରଣା ଲାଭକରି ସଙ୍ଗୀତ ନାଟକ ଓ କାବ୍ୟର ବିକାଶ ସାଧିତ ହେଲା । ନରସିଂହ ମେହେଟା ଓ ମୀରାବାଈଙ୍କୁ ଏହି ଯୁଗର ସୁପ୍ରସିଦ୍ଧ କବି ଭାବରେ ଗ୍ରହଣ କରାଯାଏ ।

ନରସିଂହ ମେହେଟା (୧୪୧୪-୧୪୮୦) ଗୁଜରାଟୀ କାବ୍ୟର ଜନକଭାବେ ସାଧାରଣତଃ ଗୃହୀତ ହେଉଥିଲେ ହେଁ କାବ୍ୟରଚନା ଦୃଷ୍ଟିରୁ ସେ ପ୍ରଥମ ଗୁଜରାଟୀ କବି ନୁହନ୍ତି । ତାହାଙ୍କ ପୂର୍ବରୁ ବହୁ କବି ସାହିତ୍ୟସୃଷ୍ଟି କରିଯାଇଥିଲେ ହେଁ କାବ୍ୟ ସୃଷ୍ଟିକ୍ଷେତ୍ରରେ କେହି ତାହାଙ୍କ ପରି ପ୍ରତିଭା ଓ ରଚନାପାଟବ ପ୍ରଦର୍ଶନ କରିବାକୁ ସମର୍ଥ ହୋଇପାରି ନ ଥିଲେ । ବିବିଧ ଭାବ ଓ ମନୋଜ୍ଞ କଳ୍ପନାକୁ ଅଭିବ୍ୟକ୍ତ କରିବା ଯୋଗୁଁ ଗୁଜରାଟୀ ଭାଷାକୁ ସେ ଶକ୍ତି ସମର୍ଥ କରିପାରିଥିଲେ । ବହୁ ଶତାବ୍ଦୀ ପର୍ଯ୍ୟନ୍ତ ତାହାଙ୍କ ଭାଷା ଆଦର୍ଶ ଭାବେ ପରିଗଣିତ ହୋଇଥିଲା ଓ ତାହାଙ୍କ ସଙ୍ଗୀତାବଳୀ ଜନସାଧାରଣଙ୍କ ମଧ୍ୟରେ ଅପ୍ରତିହତ ଜନପ୍ରିୟତା ଅର୍ଜନ କରିଥିଲା । ଅପୂର୍ବ ବର୍ଣ୍ଣନାକୁଶଳତା ଓ ଚରିତ୍ରଚିତ୍ରଣପଟୁତା ତାହାଙ୍କ ରଚିତ 'ଗୋବିନ୍ଦ ଗମନ', 'ସୁରତ ସଂଗ୍ରାମ' ଓ 'ସୁଦାମା ଚରିତ' ପ୍ରଭୃତି କାବ୍ୟରେ ପ୍ରତିଫଳିତ । ଭକ୍ତିଭାବନା ଓ ଆଧ୍ୟାତ୍ମିକତା ତାହାଙ୍କର କାବ୍ୟକବିତାର ପ୍ରାଣ ସ୍ୱରୂପ ।

ମୀରାବାଈ (୧୪୯୯ – ୧୫୪୭) ଭାରତର ନାରୀକବିମାନଙ୍କ ମଧ୍ୟରେ ପ୍ରସିଦ୍ଧତମ । ଷୋଡ଼ଶ ଶତାବ୍ଦୀର ପ୍ରାରମ୍ଭରେ ରାଜସ୍ଥାନରେ ଏକପ୍ରକାର ଗୁଜରାଟୀ ଭାଷା ପ୍ରଚଳିତ ହେଉଥିଲା । କିମ୍ବଦନ୍ତୀରୁ ଜଣାଯାଏ, ମୀରାବାଈଙ୍କ ଜୀବନର ଅନ୍ତିମଭାଗ ଗୁଜରାଟରେ ହିଁ ଅତିବାହିତ ହୋଇଥିଲା । ଏଣୁ ମୀରାଙ୍କୁ ଯଥାର୍ଥତଃ ଗୁଜରାଟୀ ସାହିତ୍ୟର କବି ଭାବରେ ଗ୍ରହଣ କରାଯାଇଥାଏ । ତାହାଙ୍କ ସଙ୍ଗୀତାବଳୀରେ କୃଷ୍ଣଙ୍କ ସହ ମୀରାଙ୍କର ନାରୀଜନୋଚିତ ପ୍ରେମଭକ୍ତି ସରଳ ସୁମଧୁର ଭାଷାରେ ଅଭିବ୍ୟକ୍ତି ଲାଭ କରିଅଛି । ନରସିଂହଙ୍କ ପରି ବିଷୟବସ୍ତୁର ବୈଚିତ୍ର୍ୟ ବା ସୃଷ୍ଟିଶୀଳ କଳ୍ପନାର ଐଶ୍ୱର୍ଯ୍ୟ ମୀରାଙ୍କ ରଚନାବଳୀରେ ପରିଦୃଷ୍ଟ ନ ହେଲେ ହେଁ ସ୍ୱକୀୟ ଅନୁଭୂତିର ମାଧୁର୍ଯ୍ୟରେ ତାହାଙ୍କ କବିତା ଅନନ୍ୟ । ଏହାଙ୍କ ବ୍ୟତୀତ ଏ ଯୁଗର ବିଶିଷ୍ଟ କବି ଭାବରେ 'ହରିଲୀଳା ଷୋଡଶକଳା'

ଓ 'ଶ୍ରୀକୃଷ୍ଣ ଲୀଳାକାବ୍ୟ' (୧୪୭୩) ପ୍ରଣେତା କେଶବଦାସ କାୟସ୍ଥଙ୍କ ନାମ ମଧ୍ୟ ଉଲ୍ଲେଖଯୋଗ୍ୟ ।

ଭକ୍ତକବି ଭାଲଣ ଭଲନା (୧୪୩୪-୧୫୧୪)ଙ୍କ ନାମ ଗୁଜରାଟୀ ସାହିତ୍ୟରେ ଚିରସ୍ମରଣୀୟ । ଭଲନା ପୌରାଣିକ କାହାଣୀକୁ ଛନ୍ଦୋବଦ୍ଧ ଓ 'ଅଖ୍ୟାନ' ଆକାରରେ ପରିବେଷଣ କରିଥିଲେ । ୧୫ଶ ଶତାବ୍ଦୀରୁ ୧୯ଶ ଶତାବ୍ଦୀ ପର୍ଯ୍ୟନ୍ତ ଏହା ଜନପ୍ରିୟ ଥିଲା । ୧୯ଶ ଶତାବ୍ଦୀରେ ନାକର ଓ ବିଷ୍ଣୁଦାସ ଏହି ଧାରାକୁ ପରିପୁଷ୍ଟ କରିଥିଲେ ଏବଂ ସପ୍ତଦଶ ଶତାବ୍ଦୀରେ ପ୍ରେମାନନ୍ଦଙ୍କ ଦ୍ୱାରା ଏହା ପରିପୂର୍ଣ୍ଣତା ଲାଭ କରିଥିଲା । ଇଂରେଜ ରାଜତ୍ୱ ପ୍ରତିଷ୍ଠା ପୂର୍ବରୁ ଏତାଦୃଶ ରଚନା କ୍ଷେତ୍ରରେ ଅବନତି ସଙ୍ଘଟିତ ହୋଇଥିଲା । ଭଲନା କୃଷ୍ଣ, ରାମ ଓ ଆଦିମାତାଙ୍କ ଉଦ୍ଦେଶ୍ୟରେ ସମଭକ୍ତିପୂର୍ଣ୍ଣ ସଙ୍ଗୀତାବଳୀ ରଚନା କରିଯାଇ ଅଛନ୍ତି । ସେ ସଂସ୍କୃତରେ ସୁପଣ୍ଡିତ ଥିଲେ ଓ ଅଖ୍ୟାନ ରୀତିରେ ମଧ୍ୟ ବହୁ ପୌରାଣିକ ଘଟଣାକୁ ରୂପଦାନ କରି ଚରିତ୍ରଚିତ୍ରଣ, ଭାବ ଅଭିବ୍ୟକ୍ତିରେ ଅପୂର୍ବ କୁଶଳତା ପ୍ରଦର୍ଶନ କରି ଯାଇଅଛନ୍ତି । 'କାଦମ୍ବରୀ', 'ଦଶମସ୍କନ୍ଧ', 'ନଳାଖ୍ୟାନ', ଓ 'ରାମବଲ ଚରିତ' ଭଲନାଙ୍କର ଅମର କୃତି । ବିଷୟବସ୍ତୁର ପରିବର୍ଜନ ଓ ପରିବର୍ଦ୍ଧନରେ ସେ ଅଦ୍ଭୁତ କଳାକୌଶଳ ପ୍ରଦର୍ଶନ କରିଅଛନ୍ତି । ବାତ୍ସଲ୍ୟଭାବ ପ୍ରସ୍ଫୁଟନରେ ତାହାଙ୍କ କୃତିତ୍ୱ ସମଧିକ । ବାଣଙ୍କ 'କାଦମ୍ବରୀ' କାବ୍ୟର ମୂଳକଥାକୁ ଅନୁସରଣ କରି ଓ ସ୍ୱୀୟ କଳ୍ପନାରେ ତାହାକୁ ଅଭିନବ ରୂପରେ ଛନ୍ଦୋବଦ୍ଧ କରି ପ୍ରକାଶ କରିବାରେ ତାହାଙ୍କ କୃତିତ୍ୱ ଅତୁଳନୀୟ । ମଧ୍ୟଯୁଗର ଭାରତୀୟ ସାହିତ୍ୟରେ ସମ୍ଭବତଃ ଏହା ଏକ ଅନୁପମ କୃତିତ୍ୱ ।

ନାକର (୧୫୦୦-୧୫୭୫) ଏବଂ ବିଷ୍ଣୁଦାସ (୧୫୬୪-୧୬୩୨) ଗୁଜରାଟୀ ଅଖ୍ୟାନ ସାହିତ୍ୟକୁ ସମୃଦ୍ଧ କରିଥିଲେ । ରାମାୟଣ, ମହାଭାରତ ଓ ଭାଗବତ ପ୍ରଭୃତି ପୁରାଣରୁ ବିଷୟବସ୍ତୁ ଆହରଣ କରି ଆଖ୍ୟାନ ରୀତିରେ ରସ ସୃଷ୍ଟି କରିବାରେ ଓ ପୌରାଣିକ ପରିବେଶ ସୃଷ୍ଟି କରିବାରେ ଏହି କବିମାନଙ୍କର ପ୍ରତିଭାର ଉତ୍କର୍ଷ ପରିଦୃଷ୍ଟ ହୁଏ ।

ଏହି ଯୁଗରେ ବହୁ ଜୈନକବି ମଧ୍ୟ ପୂର୍ବବର୍ତ୍ତୀ ଜୈନ ରାସୋକାବ୍ୟର ପରମ୍ପରା ରକ୍ଷାକରି କାବ୍ୟରଚନା କରିଥିଲେ । ସେମାନଙ୍କ ମଧ୍ୟରୁ ଲାବଣ୍ୟସମୟ, 'ବିମଳ ପ୍ରବନ୍ଧ' (୧୫୧୨) ନୟସୁନ୍ଦରଙ୍କ 'ରୂପଚନ୍ଦ୍ର କୁମାର ରାସୋ' (୧୬୮୧) ଓ ନଳଦମୟନ୍ତୀ ରାସ (୧୬୦୯) ଉଲ୍ଲେଖଯୋଗ୍ୟ ।

ପଞ୍ଚଦଶ ଶତାବ୍ଦୀରୁ ଊନବିଂଶ ଶତାବ୍ଦୀ ମଧ୍ୟଭାଗ ପର୍ଯ୍ୟନ୍ତ ଗୁଜରାଟୀ ସାହିତ୍ୟରେ 'ପଦ'ରୀତିରେ ବହୁ ଭଜନ ରଚିତ ହୋଇଥିଲା । ଏହା ସବିଶେଷ

ଜନପ୍ରିୟତା ଅର୍ଜନ କରିବାରୁ ପ୍ରାୟ ଅଧିକାଂଶ କବି ଭଜନ ରଚନାରେ ଆତ୍ମନିୟୋଜିତ କରିଥିଲେ ।

ଅହମଦାବାଦର ଆଖୋ (୧୫୯୧-୧୬୫୬) ବେଦାନ୍ତ-ଦର୍ଶନସମ୍ବଳିତ କବିତା ରଚୟିତାଭାବେ ସମଗ୍ର ଗୁଜରାଟୀ ସାହିତ୍ୟରେ ଅଦ୍ୱିତୀୟ । ଏକ ସୁନାରି ପରିବାରରେ ଜନ୍ମଗ୍ରହଣ କରି ଏବଂ ଶିକ୍ଷାଲାଭରୁ ବଞ୍ଚିତ ହୋଇଥିଲେ ହେଁ ଆଖୋ ସମକାଳୀନ ସମାଜ ଓ ଜୀବନଧାରାକୁ ଉତ୍ତମରୂପେ ଅଧ୍ୟୟନ କରିଥିଲେ । ସେ ବହୁ ସ୍ଥାନ ଭ୍ରମଣ କରି ସମ୍ଭବତଃ ବହୁ ସନ୍ନ୍ୟାସୀ ଓ ଗୁରୁଙ୍କ ଠାରୁ ଧର୍ମୋପଦେଶ ଲାଭ କରିଥିଲେ । ଗଭୀର ମନନଶୀଳତା ଫଳରେ ବେଦାନ୍ତର ନିଗୂଢ଼ ତତ୍ତ୍ୱକୁ ମଧ୍ୟ ସେ ଉତ୍ତମରୂପେ ହୃଦୟଙ୍ଗମ କରିବାକୁ ସମର୍ଥ ହୋଇଥିଲେ । ଜନସାଧାରଣଙ୍କ ଭାଷା ଓ କଥାଭଙ୍ଗୀରେ ସରଳ, ସହଜ, ସୁପରିଜ୍ଞାତ ଉପମା ଓ ରୂପକ ଦ୍ୱାରା ସେ ଭାବ ଅଭିବ୍ୟକ୍ତ କରିବାରେ ଅପୂର୍ବ କୃତିତ୍ୱ ପ୍ରଦର୍ଶନ କରିଯାଇଛନ୍ତି । ସୁଗଭୀର ଆଧ୍ୟାତ୍ମିକ ଉପଲବ୍ଧି, ଜ୍ଞାନଗର୍ଭିକ ବିଷୟରେ ରସବନ୍ତ ଅଭିବ୍ୟକ୍ତି ଏବଂ ମାନବିକ ଦୋଷତ୍ରୁଟି, କପଟତା ଓ ମିଥ୍ୟାଚାରର ଖଣ୍ଡନ କରିବାରେ ତାହାଙ୍କ ପ୍ରତିଭାର ଉତ୍କର୍ଷ ସ୍ୱୀକାର୍ଯ୍ୟ । 'ଚିତ୍ତ ବିଚାର-ସମ୍ବାଦ', ଅନୁଭବ 'ବିନ୍ଦୁ' ଏବଂ 'ଆଖୋ ଗୀତ' ତାହାଙ୍କ ଅଦ୍ୱୈତ ଦର୍ଶନସମ୍ବଳିତ ରଚନାମାନଙ୍କ ମଧ୍ୟରୁ ପ୍ରସିଦ୍ଧତମ । ସବୁ ଗୁରୁଙ୍କ ଅପେକ୍ଷା ମନମୋହାର ହରିଗୁରୁ ଓ ଆତ୍ମଦର୍ଶନର ଗୁରୁତ୍ୱ ସେ ସର୍ବଦା ଘୋଷଣା କରି ଯାଇଅଛନ୍ତି । ସାଂଖ୍ୟଦର୍ଶନ, ମାୟାତତ୍ତ୍ୱ, ଆତ୍ମା ଓ ପରମାତ୍ମାଙ୍କ ସମ୍ମିଳନ, ଆତ୍ମୋପଲବ୍ଧି ଲାଗି ଭକ୍ତି ଓ ଜ୍ଞାନମାର୍ଗର ଆବଶ୍ୟକତା ଓ ଅପର ଧର୍ମମାନଙ୍କର ଅସାରତା ତାହାଙ୍କ ରଚନାବଳୀରେ ବର୍ଣ୍ଣିତ । ଆଖୋ ଧର୍ମ, ଦର୍ଶନ, ସମାଜ ପ୍ରଭୃତି ବିବିଧ ବିଷୟ ସମ୍ବନ୍ଧୀୟ ସାତ ଶହରୁ ଅଧିକ ଛପ (ଛଅଟି ଚରଣବିଶିଷ୍ଟ କବିତା) ରଚନା କରି ଯାଇଅଛନ୍ତି । ତନ୍ମଧ୍ୟରୁ କେତେକ ମଧ୍ୟ ବ୍ୟଙ୍ଗାତ୍ମକ ଭାବରେ ଲିଖିତ । ତାହାଙ୍କ କବିତାଗୁଡ଼ିକ ଗୁଜରାଟୀ ସାହିତ୍ୟର ଅମୂଲ୍ୟ ସମ୍ପଦ ଓ ସର୍ବାଧିକ ଜନପ୍ରିୟ ।

## ଉତ୍ତର ମଧ୍ୟଯୁଗ (୧୬୫୭-୧୮୨୫)

୧୫୭୩ରେ ଆକବରଙ୍କ ଦ୍ୱାରା ସ୍ୱତନ୍ତ୍ର ଗୁଜରାଟ ପ୍ରଦେଶ ପ୍ରତିଷ୍ଠିତ ହୋଇଥିଲା । ଏହାର ପରବର୍ତ୍ତୀ ପ୍ରାୟ ଏକଶହ ବର୍ଷରୁ ଅଧିକ ଗୁଜରାଟରେ ଶାନ୍ତି ବିରାଜିତ ଥିଲା । ଏହି ସମୟ ମଧ୍ୟରେ ବହୁ ଭକ୍ତିମୂଳକ, ଉପଦେଶାତ୍ମକ ଓ ଆଧ୍ୟାତ୍ମିକ କାବ୍ୟକବିତା ରଚିତ ହୋଇଥିଲା । ଏହାପରେ ଆଓରଙ୍ଗଜେବଙ୍କର ଧର୍ମାନ୍ଧତା ଓ ଧର୍ମବିଦ୍ୱେଷ, ମରହଟ୍ଟାମାନଙ୍କର ଆକ୍ରମଣ ଓ ଅବଶେଷରେ ମୋଗଲ ରାଜତ୍ୱ ଅବସାନ ପରେ ମରହଟ୍ଟା-ଅଧିକାର ଫଳରେ ଦେଶରେ ଅସ୍ଥିରତା ଓ ସାମାଜିକ

ବିଶୃଙ୍ଖଳା ଦେଖାଦେଇଥିଲା । ମୋଟ ଉପରେ ଖ୍ରୀ: ୧୭୦୦ରୁ ବ୍ରିଟିଶ ଆଗମନ ପର୍ଯ୍ୟନ୍ତ ଗୁଜରାଟୀ ସାହିତ୍ୟର ଆଶାନୁରୂପ ଅଗ୍ରଗତି ହୋଇ ପାରି ନ ଥିଲା ।

ତଥାପି ଏହି ସମୟର ପ୍ରସିଦ୍ଧ କବିମାନଙ୍କ ମଧ୍ୟରୁ ପ୍ରେମାନନ୍ଦ (୧୬୩୬-୧୭୩୪)ଙ୍କ ନାମ ସର୍ବାଦୌ ଉଲ୍ଲେଖଯୋଗ୍ୟ । ଏହାଙ୍କୁ ପ୍ରାଚୀନ ଗୁଜରାଟୀ ସାହିତ୍ୟର ସର୍ବଶ୍ରେଷ୍ଠ କବି କୁହାଯାଇପାରେ । ସେ ପୌରାଣିକ କାବ୍ୟପରମ୍ପରାକୁ ଅନୁସରଣ କରିଥିଲେ ଓ ଆଖ୍ୟାନ କାବ୍ୟଧାରାକୁ ପ୍ରତିଷ୍ଠା ପ୍ରଦାନ କରିଥିଲେ । ବରୋଦାର ଏକ ବ୍ରାହ୍ମଣ ପରିବାରରେ ତାହାଙ୍କର ଜନ୍ମ । ସୁଦୀର୍ଘ ଜୀବନକାଳ ମଧ୍ୟରେ ସେ ସୁରତ, ନନ୍ଦୁର୍ବାର ବରୋଦା ପ୍ରଭୃତି ପ୍ରସିଦ୍ଧ ସହରମାନଙ୍କରେ ଅଗଣିତ ଶ୍ରୋତାଙ୍କୁ ନିଜର ରାଗ-ତାଳ-ଯୁକ୍ତ କାବ୍ୟ ଶୁଣାଇ ମନ୍ତ୍ରମୁଗ୍ଧ କରି ରଖିଥିଲେ । ଗୁଜରାଟର ଜନସାଧାରଣଙ୍କୁ ତାଙ୍କ ଭଳି ଅନ୍ୟ କୌଣସି କବି କାବ୍ୟରସରେ ଏପରି ଅନୁପ୍ରାଣିତ, ମୁଗ୍ଧ କରିପାରିନାହାଁନ୍ତି । ବିବିଧ ମାନସିକ ଓ ସାଂସ୍କୃତିକ ସ୍ତରର ଶ୍ରୋତାଙ୍କୁ ମୁଗ୍ଧ-ଆକୃଷ୍ଟ କରିବା ବିଷୟରେ ତାଙ୍କର ରଚନାର ଉତ୍କର୍ଷ ଅନସ୍ୱୀ-କାର୍ଯ୍ୟ । କାବ୍ୟରେ ସେ ତାହାଙ୍କ ପୂର୍ବବର୍ତ୍ତୀ ନାକରା, ବିଷ୍ଣୁଦାସ, ବିଶ୍ୱନାଥ ଯାନିଙ୍କ ମାର୍ଗ ଓ ରୀତି ଅନୁସରଣ କରିଥିଲେ ହେଁ ତହିଁରେ ତାହାଙ୍କର ନିଜସ୍ୱ ସୁପ୍ରତିଷ୍ଠିତ । ବିଶେଷତଃ ହାସ୍ୟ ଓ କରୁଣରସାତ୍ମକ ବର୍ଣ୍ଣନାରେ ତାହାଙ୍କ ଦକ୍ଷତା ଥିଲା ଅପ୍ରମେୟ । ତାହାଙ୍କ ରଚିତ ୪୦ ଗୋଟି 'ଆଖ୍ୟାନ' କାବ୍ୟ ମଧ୍ୟରୁ 'ରଣଯଜ୍ଞ', 'ନଳାଖ୍ୟାନ', 'ଅଭିମନ୍ୟୁ ଆଖ୍ୟାନ', 'ଦଶମସ୍କନ୍ଧ', 'ଓଖାହରଣ' 'ସୁଦାମା ଚରିତ' 'ସୁଧନାଖ୍ୟାନ' ଏବଂ 'ନରସିଂହ ମମେରୁଜ', 'ହୁଣ୍ଡି' 'ଶ୍ରାଦ୍ଧ' ପ୍ରଭୃତିଙ୍କ ଜୀବନ-ଚରିତ ସମ୍ବଳିତ ଆଖ୍ୟାନ କାବ୍ୟଗୁଡ଼ିକ ସ୍ମରଣୀୟ । ତାହାଙ୍କ ରଚନାବଳୀରେ ଚିନ୍ତାର ଗମ୍ଭୀରତା ନ ଥିଲେ ହେଁ ବାସ୍ତବ ଜୀବନ୍ତ ଚରିତ୍ର ଚିତ୍ରଣରେ ଓ ସୁଗଭୀର ମାନବିକ ମର୍ମବାଣୀ ପ୍ରକାଶରେ ତାଙ୍କର କୃତିତ୍ୱ ଥିଲା ଅପରିସୀମ । ଶ୍ରୋତା ବା ପାଠକର ଆବେଗକୁ ଉଦ୍ଦୀପ୍ତ କରିବାରେ ସେ ଥିଲେ ସୁଦକ୍ଷ । ସେହିପରି ଅପୂର୍ବ ଶବ୍ଦ ଓ ସ୍ୱରଯୋଜନାରେ ମଧ୍ୟ ତାହାଙ୍କର କୃତିତ୍ୱ ଅନସ୍ୱୀକାର୍ଯ୍ୟ ।

ଗୁଜରାଟୀ ସାହିତ୍ୟରେ ପ୍ରଣୟ ପ୍ରଧାନ କାଳ୍ପନିକ କାବ୍ୟ ରଚନା ଦୃଷ୍ଟିରୁ ଷୋଡ଼ଶ ଶତାବ୍ଦୀ ଥିଲା ଅତ୍ୟନ୍ତ ସମୃଦ୍ଧ । ବହୁ ଜୈନ ତଥା ହିନ୍ଦୁକବି ଏହି ଧରଣର କାବ୍ୟ ରଚନା କରିଥିଲେ । ପ୍ରାଚୀନ ଯୁଗର ଅସାଇତଙ୍କ 'ହଂସାବଳୀ' (୧୩୭୧), ଭୀମଙ୍କ 'ସଦୟ ବିସ କଥା' (୧୪୧୦) ଏବଂ ହୀରାନନ୍ଦଙ୍କ 'ବିଦ୍ୟା ବିଳାସିନୋ 'ପଭାଡ଼ୋ' (୧୪୨୯) ରଚନା ପରେ ନରପତିଙ୍କ 'ନନ୍ଦ ବତିଶୀ' ଓ ପଞ୍ଚଦଣ୍ଡ, ଗଣପତିଙ୍କ 'ମାଧବନନ୍ଦ କାମକନ୍ଦଲ ଦୋଗଧକ' (୧୫୨୮), ମଧୁସୂଦନ ବ୍ୟାସଙ୍କ 'ହଂସାବତୀ-ବିକ୍ରମ ଚରିତ୍ର ବିବାହ' (୧୫୬୦) କୁଶଲ ଲଭଙ୍କ 'ମରୁତ

ଧୋଲା ଗ୍ରେପାଇ' (୧୫୬୧), ଲବଣ୍ୟ ସୁମଯ୍ଯଙ୍କ 'ବମଲ ପ୍ରବନ୍ଧ' (୧୫୧୬) ଏବଂ ନରସୁନ୍ଦରଙ୍କ 'ରୂପଚନ୍ଦ୍ର କୁମ୍ବର ରାସ' (୧୫୮୧) ପ୍ରଭୃତ ରଚନା ଉଲ୍ଲେଖଯୋଗ୍ୟ । ପରବର୍ତ୍ତୀ କାଳରେ ଏହିପରି ପ୍ରଣୟ-ପ୍ରଧାନ କାବ୍ୟ 'ଦେମି ବିଜୟ' ଓ 'ଗଙ୍ଗା ବିଜୟ' ରଚିତ ହୋଇଥିଲା । ସାମଲ (୧୬୯୯-୧୭୬୯) ଏହି ସମୟର ଅନ୍ୟତମ ଜନପ୍ରିୟ ଲେଖକ । ତାହାଙ୍କ ରଚିତ 'ବତ୍ତିଶ ପୁତ୍ତଳୀ', 'ପଦ୍ମାବତୀ' (୧୭୧୮), 'ନନ୍ଦ ବତ୍ତିଶୀ', 'ମଦନମୋହନ' କାହାଣୀ ସୁପ୍ରସିଦ୍ଧ । ସାମଲ ତାହାଙ୍କ ଛପ୍ପ (ଛଅପାଦବିଶିଷ୍ଟ ରଚନା) ଗୁଡ଼ିକ ଲାଗି ମଧ୍ୟ ସୁବିଖ୍ୟାତ ।

ବୈଷ୍ଣବମାନଙ୍କର ଚାରିଗୋଟି ମୁଖ୍ୟ ସମ୍ପ୍ରଦାୟ ମଧ୍ୟରୁ ବଲ୍ଲଭ ସଂପ୍ରଦାୟର ଭକ୍ତିଭାବ ବା ଦାର୍ଶନିକ ସିଦ୍ଧାନ୍ତ ଦ୍ୱାରା ଗୁଜରାଟ ଅଷ୍ଟାଦଶ ଶତାବ୍ଦୀରେ ବିଶେଷ ଭାବରେ ପ୍ରଭାବିତ ହୋଇଥିଲା । ଏହି ମାର୍ଗକୁ ଶୁଦ୍ଧାଦ୍ୱୈତ ବା ପୁଷ୍ଟିମାର୍ଗ କୁହାଯାଏ । ଏହି ସଂପ୍ରଦାୟର କବି ଭାବେ ଜୟାରାମ (୧୭୭୭-୧୮୫୭) ସମସାମୟିକ କବିମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ବିବେଚିତ ହୁଅନ୍ତି । ଏହି ମତବାଦର ପ୍ରତିବାଦୀ ଭାବରେ ସହଜାନନ୍ଦ (୧୭୮୧-୧୮୩୦) ଏକ 'ଭକ୍ତ ସମ୍ପ୍ରଦାୟ' ଗଠନ କରିଥିଲେ । ସହଜାନନ୍ଦ ଗୁଜରାଟରେ ସ୍ୱାମୀନାରାୟଣ ସମ୍ପ୍ରଦାୟର ପ୍ରବର୍ତ୍ତକ । ଚରିତ୍ରଶୁଦ୍ଧି ଓ ଭକ୍ତି ସାଧନାରେ ସବୁ ଜାତିର ସମାନ ଅଧିକାରକୁ ଏହି ଧର୍ମରେ ଅଧିକ ଗୁରୁତ୍ୱ ଦିଆଯାଏ । ତାହାଙ୍କ ଶିଷ୍ୟମାନଙ୍କ ମଧ୍ୟରୁ ଭାଇ, ବ୍ରହ୍ମାନନ୍ଦ, ନିଷ୍କୁଳାନନ୍ଦ, ପ୍ରେମାନନ୍ଦ କବି ଭାବେ ଖ୍ୟାତିଲାଭ କରିଥିଲେ । ପ୍ରୀତମ ଦାସ ପ୍ରାଚୀନ କବି ଅଶୋଙ୍କ ରୀତିରେ ବହୁ ଭକ୍ତିସଙ୍ଗୀତ ଏହି ଶତାବ୍ଦୀରେ ରଚନା କରିଥିଲେ । ସେଗୁଡ଼ିକ ଆଜି ମଧ୍ୟ ଭକ୍ତପ୍ରାଣ ଜନସାଧାରଣ ଆବୃତ୍ତି କରିଥାନ୍ତି । ଅକ୍ଷର ନିୟମରେ ମଧ୍ୟ ସେ କେତେକ କବିତା ରଚନା କରିଥିଲେ । ତାହାଙ୍କ 'ଭକ୍ତପୋଷଣ', 'ରସିକ ବଲ୍ଲଭ' 'ଅଜାମିଲା-ଖ୍ୟାନ କାବ୍ୟ' ଏବଂ ଭକ୍ତିମୂଳକ ବହୁ ସଙ୍ଗୀତ ବା ପଦ ଓ ଗରବି ଗୁଜରାଟୀ ସାହିତ୍ୟରେ ଅତ୍ୟନ୍ତ ଜନପ୍ରିୟ । ଗରବିରେ ରାଧାକୃଷ୍ଣ ଓ ଗୋପୀଙ୍କ ପ୍ରଣୟଲୀଳା ଉକ୍ତି-ପ୍ରତ୍ୟୁକ୍ତି କ୍ରମେ ସରଳ ଗ୍ରାମ୍ୟଭାଷାରେ ବର୍ଣ୍ଣିତ ହୋଇଥାଏ । ସମ୍ପୂର୍ଣ୍ଣ ମାନବିକ ରୀତିରେ ବର୍ଣ୍ଣନା ତାହାଙ୍କ ଗରବିଗୁଡ଼ିକରେ ପରିଦୃଷ୍ଟ ହୁଏ ।

## ଆଧୁନିକ ଯୁଗ (୧୮୨୫-୧୯୫୩)

**ପ୍ରଥମ ପର୍ଯ୍ୟାୟ** (୧୮୨୫-୧୮୮୫)—୧୮୧୮ରେ ଗୁଜରାଟ ଇଂରେଜ ଶାସନାନ୍ତର୍ଗତ ହୋଇଥିଲା । ଏହାର ଅବ୍ୟବହିତ ପରେ ଗୁଜରାଟୀ ସାହିତ୍ୟରେ ନବଯୁଗର ସୂତ୍ରପାତ ହେଲା । ଖ୍ରୀ. ୧୮୨୫ରେ 'ନେଟିଭ ଏଡୁକେଶନ ସୋସାଇଟି'ର ଓ ଦୁର୍ଗାରାମ ମେହେଟାଜୀଙ୍କ ଦ୍ୱାରା ସୁରତରେ 'ମାନବଧର୍ମସଭା',

୧୮୪୮ରେ ଆହ୍ମଦାବାଦରେ 'ଗୁଜରାଟ ଭର୍ଣ୍ଣାକୁଲର ସୋସାଇଟି' ପ୍ରଭୃତିର ପ୍ରତିଷ୍ଠା ଫଳରେ ଗୁଜରାଟରେ ନୂତନ ଶିକ୍ଷାବିସ୍ତାର, ସାହିତ୍ୟ ପ୍ରଚାର ଓ ସମାଜସଂସ୍କାରର ସୂତ୍ରପାତ ହୋଇଥିଲା ।

ଏହି ନବଯୁଗର ଆଦ୍ୟ ବାର୍ତ୍ତାବହ ଓ ସାହିତ୍ୟିକ ନବଯୁଗର ପ୍ରତିଷ୍ଠାତା ହିସାବରେ ଦଲପତରାମ କବି (୧୮୨୦-୧୮୯୮) ଏବଂ ନର୍ମଦାଶଙ୍କର (୧୮୩୩-୧୮୮୬) ସୁପ୍ରସିଦ୍ଧ । ଦଲପତରାମ ଗୁଜରାଟୀ ଭାଷାକୁ ବ୍ୟବସ୍ଥିତ କରିଥିଲେ ଓ ପଦ୍ୟରେ ସଂସ୍କୃତ ବୃତ୍ତିକୁ ଅନୁପ୍ରବିଷ୍ଟ କରି ତାହାକୁ ଜନାଦୃତ, ବିକଶିତ କରିଥିଲେ । ତାହାଙ୍କ ହାସ୍ୟରସାତ୍ମକ ପଦ୍ୟଗୁଡ଼ିକ ସରସ ଓ ସ୍ମରଣୀୟ ।

କବି ନର୍ମଦାଶଙ୍କର ଇଂରାଜୀ ରୋମାଣ୍ଟିକ୍ କବିମାନଙ୍କ ଦ୍ୱାରା ପ୍ରଭାବିତ । ପ୍ରକୃତି, ଦେଶପ୍ରେମ, ସ୍ୱାଧୀନତା, ବୀରତ୍ୱ ଓ ବ୍ୟକ୍ତିନିଷ୍ଠ ଆବେଗକୁ ସେ ଗୀତି-କବିତା ରୂପେ ଅଭିବ୍ୟକ୍ତ କରି ଗୁଜରାଟୀ କବିତାକୁ ଅଭିନବ ରୂପ ଓ ରସରେ ବିମଣ୍ଡିତ କରିଯାଇଅଛନ୍ତି । ନର୍ମଦାଶଙ୍କରଙ୍କୁ ମଧ୍ୟ ଆଧୁନିକ ଗୁଜରାଟୀ ଗଦ୍ୟ-ସାହିତ୍ୟର ଜନକ ରୂପେ ଗ୍ରହଣ କରାଯାଇଥାଏ । ବହୁ ପ୍ରବନ୍ଧ, ଭାଷଣ, ନାଟକ ଓ ଅସମ୍ପୂର୍ଣ୍ଣ ଆତ୍ମଜୀବନୀ ରଚନା କରି ସେ ଏକ ବଳିଷ୍ଠ ଗଦ୍ୟ ଶୈଳୀର ପ୍ରବର୍ତ୍ତକ ଭାବେ ଚିରସ୍ମରଣୀୟ । ବ୍ୟକ୍ତିଗତ ପ୍ରଚେଷ୍ଟାରେ ସେ ଗୁଜରାଟୀ ଭାଷାର ପ୍ରାମାଣିକ ଅଭିଧାନ 'ନର୍ମକୋଷ'ର ସଂକଳନ ଓ ପ୍ରକାଶ କରିଥିଲେ ।

ଗଦ୍ୟସାହିତ୍ୟକୁ ବିକଶିତ କରିବାରେ ନବଲରାମ ପାଣ୍ଡ୍ୟ (୧୮୩୬-୧୮୮୮), ନନ୍ଦଶଙ୍କର ମେହେଟାଙ୍କ (୧୮୩୫-୧୯୦୫) ଉଦ୍ୟମ ମଧ୍ୟ ସ୍ମରଣୀୟ । ସାହିତ୍ୟ ସମାଲୋଚକ ଭାବେ ନଭଲରାମ ସୁପ୍ରସିଦ୍ଧ । ନନ୍ଦଶଙ୍କର ଗୁଜରାଟୀ ସାହିତ୍ୟର ପ୍ରଥମ ଉପନ୍ୟାସ 'କରନ ଘେଲୋ' (୧୮୬୬) ରଚୟିତା ଭାବେ ସୁପ୍ରସିଦ୍ଧ । ମହୀପତିରାମ, ହରଗୋବିନ୍ଦ ଦାସ, କର୍ଣ୍ଣଓ୍ୱାଲା, ଜେହାଙ୍ଗିର ଟଲ୍ୟାର ଖାନ୍ ପ୍ରଭୃତି ଏହି ପର୍ଯ୍ୟାୟର ପ୍ରଖ୍ୟାତ ଉପନ୍ୟାସ ରଚୟିତା ଭାବେ ସୁବିଦିତ ।

ଗୁଜରାଟରେ ଥିଏଟର ଦଳ ଗଢ଼ିବାରେ ଓ ଆଧୁନିକ ପଦ୍ଧତିରେ ନାଟ୍ୟ-ସାହିତ୍ୟ ଅଭିନୀତ କରାଇବାରେ ପାର୍ଶୀମାନେ ହିଁ ନେତୃତ୍ୱ ନେଇଥିଲେ । ଏହାପରେ ଗୁଜରାଟୀମାନେ ଏ ବିଷୟରେ ଉଦ୍ୟମ କରିଥିଲେ । ରଣଛୋଡ଼ ଭାଇ ଉଦୟରାମ (୧୮୩୮-୧୯୨୩) ଆଧୁନିକ ଗୁଜରାଟୀ ସାହିତ୍ୟର ପ୍ରଥମ ନାଟ୍ୟକାର ଭାବେ ପ୍ରଖ୍ୟାତ । ତାହାଙ୍କ 'ଜୟକୁମାରୀ' ଓ 'ଲଳିତା ଦୁଃଖ-ଦର୍ଶନ' ପ୍ରଥମେ ଅଭିନୀତ ହେବା ବେଳେ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । ଏଣୁ ଏହି ନାଟକମାନଙ୍କର ଐତିହାସିକ ମୂଲ୍ୟ ଅନସ୍ୱୀକାର୍ଯ୍ୟ ।

## ଦ୍ୱିତୀୟ ପର୍ଯ୍ୟାୟ (୧୮୮୫-୧୯୨୦)

ଏହି ପର୍ଯ୍ୟାୟ ହେଉଚି ନୂତନତା ସମ୍ପାଦନର ଓ ସମନ୍ୱୟର ଯୁଗ । ଗୋବର୍ଦ୍ଧନ ରାମଙ୍କୁ (୧୮୫୫-୧୯୦୭) ଏହି ପର୍ଯ୍ୟାୟର ଶ୍ରେଷ୍ଠ ପ୍ରତିଭା ଭାବେ ଗ୍ରହଣ କରାଯାଇଥାଏ । ଗୋବର୍ଦ୍ଧନରାମ ପ୍ରବନ୍ଧ, ଗବେଷଣା, କବିତା ଓ ଜୀବନୀ ପ୍ରଭୃତି ଲେଖିଥିଲେ ହେଁ ତାହାଙ୍କ ଚାରି ଖଣ୍ଡରେ ସମାପ୍ତ ସୁବିଖ୍ୟାତ ଉପନ୍ୟାସ 'ସରସ୍ୱତୀ ଚନ୍ଦ୍ରା'ର ରଚୟିତା ଭାବେ ସେ ଚିରସ୍ମରଣୀୟ । ୧୮୮୭ରେ ଏହାର ପ୍ରଥମ ଭାଗ ପ୍ରକାଶିତ ହେବା ମାତ୍ରେ ସାହିତ୍ୟ-ଜଗତ ଚାଞ୍ଚଲ୍ୟ, ବିସ୍ମୟରେ ଅଭିଭୂତ ହୋଇ ପଡ଼ିଥିଲି । ଏହା ଆଜି ମଧ୍ୟ ଗୁଜରାଟୀ ତଥା ଆଧୁନିକ ଭାରତୀୟ ସାହିତ୍ୟରେ ଏକ ମହତ୍ତମ କ୍ଲାସିକ୍ ରଚନା ରୂପେ ପରିଗଣିତ । ଏଥିରେ ୧୮୬୦ରୁ ୧୯୦୦ ପର୍ଯ୍ୟନ୍ତ ତିନି ପୁରୁଷର ଜୀବନ-ଚିତ୍ର ଚିତ୍ରିତ ହୋଇଅଛି । ମଣିଲାଲ ଦ୍ୱିବେଦୀ, ରମଣ ଭାଇ ନୀଳକଣ୍ଠ, ଆନନ୍ଦଶଙ୍କର ଧ୍ରୁବ, ଏହି ଯୁଗର ଚିନ୍ତାଶୀଳ ଲେଖକ । ନରସିଂ ଦିଭାଟିଆ, ମଣିଶଙ୍କର ଭାଟ୍ଟ (କାନ୍ତ), ସୁରସିଂହଜୀ, କଲାପି, କାନ୍ତ ନାନାଲାଲ ଖବରଦାର, ବଲବନ୍ତ ରାୟଠାକୁର, କେ. ଏମ. ମୁନ୍ସି ପ୍ରଭୃତି ଏ ଯୁଗର ଶକ୍ତିମାନ ଲେଖକ ଭାବରେ ପରିଗଣିତ ହୁଅନ୍ତି ।

୧୮୮୫ରେ ପ୍ରଥମ ପର୍ଯ୍ୟାୟର ଅବସାନ ହେଲା । ଉଗ୍ର ପାଶ୍ଚାତ୍ୟ ଅନୁରକ୍ତିର ମୋହ ଅପସାରିତ ହେବା ପରେ ଓ ସଂସ୍କୃତ ଶିକ୍ଷାର ବହୁଳ ପ୍ରସାର ଫଳରେ ଏହି ପର୍ଯ୍ୟାୟରେ ଲେଖକମାନେ ଆତ୍ମସ୍ଥିତ ଅତୀତ ପ୍ରତି ଅନୁରକ୍ତ ହୋଇଥିଲେ । ମାତ୍ର ଏମାନଙ୍କ ମଧ୍ୟରୁ କେହି ପ୍ରଗତିବିରୋଧୀ ଭୂମିକାରେ ଅବତୀର୍ଣ୍ଣ ହୋଇ ନ ଥିଲେ ।

## ତୃତୀୟ ପର୍ଯ୍ୟାୟ (୧୯୨୦-...)

ଗାନ୍ଧୀଜୀଙ୍କ ପ୍ରଭାବ (୧୮୬୯-୧୯୪୮) ଏହି ପର୍ଯ୍ୟାୟର ପ୍ରାରମ୍ଭରୁ ହିଁ ଗୁଜରାଟୀ ସମାଜ ଓ ସାହିତ୍ୟକୁ ନାନାଭାବରେ ଋଦ୍ଧିମନ୍ତ କରିଥିଲା । ଅହମଦାବାଦର ସାବରମତୀ ଆଶ୍ରମ ଥିଲା ଗାନ୍ଧିଜୀଙ୍କର ପ୍ରଧାନ କର୍ମପୀଠ ଏବଂ ତାହାଙ୍କ ପ୍ରତିଷ୍ଠିତ 'ଗୁଜରାଟ ବିଦ୍ୟାପୀଠ' ଦ୍ୱାରା ହିଁ ଗୁଜରାଟର ଅଧିକାଂଶ ତରୁଣ ଲେଖକ ଗାନ୍ଧୀଙ୍କ ପ୍ରେରଣାରେ ଉଦ୍ଦୀପିତ ହୋଇଥିଲେ । ତାହାଙ୍କ 'ଆତ୍ମକଥା', ଓ ଦକ୍ଷିଣ ଆଫ୍ରିକା ସତ୍ୟାଗ୍ରହ ଯେ କେବଳ ଗୁଜରାଟୀ ସାହିତ୍ୟରେ ନୁହେଁ, ସମଗ୍ର ବିଶ୍ୱ ସାହିତ୍ୟରେ ତାହା ଏକ ଉଚ୍ଚକୋଟୀର ସାହିତ୍ୟ ଭାବେ ଅତୁଳନୀୟ । ଗାନ୍ଧୀଙ୍କ ଗଦ୍ୟଶୈଳୀ ଭାବଉଦ୍ଦୀପକତା ଓ ଆନ୍ତରିକତା, ସଂକ୍ଷିପ୍ତତା, ସ୍ୱଚ୍ଛତା, ମର୍ମସ୍ପର୍ଶିତା ଦୃଷ୍ଟିରୁ ଅନନ୍ୟସାଧାରଣ । ନବଜୀବନରେ ପ୍ରକାଶିତ ତାହାଙ୍କର ଭାଷଣ, ବିବୃତି, ପ୍ରବନ୍ଧ, ବିବରଣୀଗୁଡ଼ିକ ମଧ୍ୟ ଅତୁଳନୀୟ । ନବଯୁଗର ଆଦର୍ଶକୁ ରୂପାୟିତ କରିବାରେ

ଗୁଜରାଟ, 'ବସନ୍ତ', 'ସାହିତ୍ୟ' ପ୍ରଭୃତି ମାସିକ ପତ୍ରିକାର ମହତ୍ତ୍ୱ ମଧ୍ୟ ସ୍ୱୀକାର୍ଯ୍ୟ । ମୁନ୍‌ସି, ଆନନ୍ଦ ଶଙ୍କର, ରମଣ ଭାଇ, ନରସିଂହ ରାଓ ଓ ମଟୁଭାଇ କଣ୍ଟାଓ୍ୱାଲ ପ୍ରଭୃତି ଲେଖକଗଣ ପୂର୍ବୋକ୍ତ ପତ୍ରିକା ମାଧ୍ୟମରେ ବାସ୍ତବତା, ହାସ୍ୟରସ, ସରଳତା, ଋଜୁତା ପ୍ରକଟିତ କରିବାରେ ସମର୍ଥ ହୋଇଥିଲେ ।

ଗାନ୍ଧୀଜୀଙ୍କ ସହକର୍ମୀମାନଙ୍କ ମଧ୍ୟରୁ କାକା କଲେଲକାର (ଜ. ୧୮୮୭) କିଶୋର ଆଧୁନିକ ଯୁଗର ପ୍ରବନ୍ଧ ଲେଖକମାନଙ୍କ ମଧ୍ୟରେ ପ୍ରଖ୍ୟାତ । ପାଣ୍ଡିତ୍ୟ, କବିତ୍ୱ, ଦେଶପ୍ରେମ, ପ୍ରକୃତି ପ୍ରେମ, ଶିକ୍ଷା ଓ ସରସ କୌତୂହଳ ପ୍ରବଣତା ପ୍ରଭୃତିର ଅପୂର୍ବ ସମନ୍ୱୟ ତାଙ୍କର ସରସ ରମ୍ୟ ପ୍ରବନ୍ଧାବଳୀରେ ପରିଦୃଷ୍ଟ ହୁଏ । କଳା ଓ ସାହିତ୍ୟ ସମାଲୋଚକ ଭାବେ ମଧ୍ୟ ସେ ପ୍ରଖ୍ୟାତ । 'ହିମାଳୟ ନୋ ପ୍ରବାସ', 'ସ୍ମରଣଯାତ୍ରା', 'ଓତରତି ଦିବାଲେ', 'ଲୋକମାତା' ଓ 'ଜୀବନ ନୋ ଆନନ୍ଦ' ତାହାଙ୍କର ଜନପ୍ରିୟ ଗ୍ରନ୍ଥ ।

ଗାନ୍ଧୀଙ୍କର ବରାବର ସହକର୍ମୀ କିଶୋରଲାଲ ମଶ୍ରୁଓ୍ୱାଲା ତାହାଙ୍କ ଡାଇରି ମାଧ୍ୟମରେ ସ୍ୱାଧୀନ ନୈତିକ ଚିନ୍ତା, ଦାର୍ଶନିକତା ପାଇଁ ସୁପ୍ରସିଦ୍ଧ । ଏତଦ୍‌ବ୍ୟତୀତ ମହାଦେବ ଦେଶାଇ ଗାନ୍ଧିଜୀଙ୍କ ରଚନାବଳୀର ଶ୍ରେଷ୍ଠ ଅନୁବାଦକ ଭାବେ ଏବଂ ନରହରି ପରେଖ, ମଗନଭାଇ ଦେଶାଇ ଜାତୀୟତା, ନୈତିକତାମୂଳକ ପ୍ରାବନ୍ଧିକ ଭାବେ ପ୍ରଖ୍ୟାତ ।

ବିଶୁଦ୍ଧ କଳାସୃଷ୍ଟି ଦୃଷ୍ଟିରୁ କନୈୟାଲାଲ ମାନେକଲାଲ ମୁନ୍‌ସିଙ୍କୁ (୧୮୮୭) ଏହି ଯୁଗର ଶ୍ରେଷ୍ଠ ଲେଖକ ଭାବେ ଗ୍ରହଣ କରାଯାଏ । ଏକମାତ୍ର କବିତା ବ୍ୟତୀତ ଉପନ୍ୟାସ, କ୍ଷୁଦ୍ରଗଳ୍ପ, ନାଟକ, ଜୀବନ ଚରିତ, ଆତ୍ମଜୀବନୀ, ପ୍ରବନ୍ଧ ପ୍ରଭୃତି ସାହିତ୍ୟର ସମସ୍ତ ବିଭାଗକୁ ସେ ଆପଣାର ବହୁ ରଚନାସମ୍ଭାର ଦ୍ୱାରା ସୁ-ସମୃଦ୍ଧ କରାଯାଇଅଛନ୍ତି । ତାହାଙ୍କ ଉପନ୍ୟାସମାନଙ୍କ ମଧ୍ୟରୁ 'ଗୁଜରାଟ ନୋ ନାଥ', 'ପ୍ରିଥ୍ୱୀବଲ୍ଲଭ' 'ଜୟ ସୋମନାଥ' 'ଭଗବାନ ପର୍ଶୁରାମ', 'ବୀର କି ଉସୁଲତ' ଏବଂ ନାଟକମାନଙ୍କ ମଧ୍ୟରୁ 'ତର୍ପଣ', 'କାକା-ନି ଶଶି' ଏବଂ 'ଧ୍ରୁବ-ସ୍ୱାମିନୀ ଦେବୀ' ସର୍ବାଧିକ ଜନପ୍ରିୟ ।

ଏତଦ୍‌ବ୍ୟତୀତ 'କୋକିଳା', 'ଦିବ୍ୟଚକ୍ଷୁ', 'ଭାରେଲୋ ଅଗ୍ନି', 'ଗ୍ରାମଲକ୍ଷ୍ମୀ' ପ୍ରଭୃତି ଉପନ୍ୟାସ ରଚୟିତା ଭାବେ ରାମଲାଲ ଦେଶାଇ ଓ 'ମେଘାନି', 'ଧୂମକେତୁ' ପ୍ରଭୃତି ଐତିହାସିକ ନାଟକର ରଚୟିତା ଭାବରେ ଚୁନିଲାଲ ଶାହ ଏବଂ ପରବର୍ତ୍ତୀ କାଳରେ ଔପନ୍ୟାସିକ ଭାବେ ଗୁଣବନ୍ତରାୟ ଆଚାର୍ଯ୍ୟ (ସୋପାନ) ପାନ୍ନାଲାଲ ପଟେଲ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ ।

ଆଧୁନିକ ଗୁଜରାଟୀ କ୍ଷୁଦ୍ରଗଳ୍ପର ଶ୍ରେଷ୍ଠ ପ୍ରବର୍ତ୍ତକ ହେଉଛନ୍ତି ଗୌରୀଶଙ୍କର ଯୋଷୀ (ଧୂମକେତୁ) । ଏହାଙ୍କ ଅନୁକରଣ କରି ରାମନାରାୟଣ ପାଠକ, ମୁନ୍‌ସି ଏବଂ ଧନସୁଖଲାଲ ମେହେଟ୍ଟା, ଜାଭେର ଚୃନ୍ଦ ମେଘାନି (୧୮୯୭-୧୯୪୭) ଓ ସୁନ୍ଦରମ, ବାସ୍ତବବାଦୀ ଓ ହାସ୍ୟରସାତ୍ମକ କ୍ଷୁଦ୍ରଗଳ୍ପ ରଚନାରେ କୃତିତ୍ୱ ପ୍ରଦର୍ଶନ କରିଅଛନ୍ତି । ସାଧାରଣ ଜନତାର ସୁଖଦୁଃଖ ଓ ଅତି ନଗଣ୍ୟ ପରିବେଶକୁ ଗଦ୍ୟରେ ଶିଳ୍ପରୂପ ଦେବାରେ ଧୂମକେତୁ ପ୍ରଥମ ଗୁଜରାଟୀ ଲେଖକ ଭାବେ ସମ୍ମାନିତ । ଶୈଳୀର ମାଧୁର୍ଯ୍ୟ, ବିଷୟବସ୍ତୁର ବୈଚିତ୍ର୍ୟ, ରସାନୁଭୂତି, ବାସ୍ତବର ଅଭିବ୍ୟକ୍ତି ଲାଗି କଳ୍ପନାସମୃଦ୍ଧ ପରିବେଶ-ଚିତ୍ର ଏବଂ ସୁଗଭୀର ଜୀବନ-ବୋଧ ଯୋଗୁଁ ଭାରତର ଶ୍ରେଷ୍ଠ କଥାକାରମାନଙ୍କ ମଧ୍ୟରୁ ଧୂମକେତୁଙ୍କୁ ଅନ୍ୟତମ ଭାବେ ଗ୍ରହଣ କରାଯାଇଥାଏ ।

ଗୁଜରାଟୀ ସାହିତ୍ୟରେ ନାଟକର ଅଗ୍ରଗତି ଅତ୍ୟନ୍ତ ମନ୍ଥର, ଆଶାନୁରୂପ ନୁହେଁ । ରଣଛୋଡ଼ ଭାଇଙ୍କ ପରେ ସାହିତ୍ୟିକଗଣ ନାଟକ ରଚନା ପ୍ରତି ବୀତସ୍ପୃହ ଥିଲେ । କେବଳ ଧୟାଭାଇ ଧୋଲସାଜୀଙ୍କ ସମୟରୁ ସ୍ୱଳ୍ପସଂଖ୍ୟକ ନାଟ୍ୟକାର ସାହିତ୍ୟିକ କୃତିତ୍ୱ ପ୍ରଦର୍ଶନ କରିବାକୁ ସମର୍ଥ ହୋଇଅଛନ୍ତି । ବଟୁଭାଇ ଉମରୱାଡ଼ିଆ ଆଧୁନିକ ଗୁଜରାଟୀ ସାହିତ୍ୟରେ ସାହିତ୍ୟିକ ଏକାଙ୍କିକା ରଚନା, ସଂଳାପ ଯୋଜନା ଓ ମନସ୍ତାତ୍ତ୍ୱିକ କଥାବସ୍ତୁ ଚିତ୍ରଣ ଲାଗି ସୁବିଖ୍ୟାତ । ତାହାଙ୍କୁ ଏହାର ପ୍ରବର୍ତ୍ତକ କହିଲେ ଅତ୍ୟୁକ୍ତି ହେବ ନାହିଁ । ତାହାଙ୍କ ଲୋମହର୍ଷିଣୀ ନାଟକ-ଗୁଡ଼ିକ ଏହାର ନିଦର୍ଶନ । ଐତିହାସିକ ନାଟକ ରଚନାରେ ଚୂନିଲାଲ ଶାହଙ୍କ ନାମ ଉଲ୍ଲେଖଯୋଗ୍ୟ । ଜନପ୍ରିୟ ମଞ୍ଚ ଉପଯୋଗୀ ନାଟକ ଓ ସାହିତ୍ୟିକ ନାଟକ ମଧ୍ୟରେ ଥିବା ବ୍ୟବଧାନକୁ ଦୂର କରିବାରେ କବି ଓ ଅଭିନେତା ଚନ୍ଦ୍ରବଦନ ମେହେଟା (୧୯୦୧) ଙ୍କ ଦାନ ସର୍ବାଗ୍ରଗଣ୍ୟ । ମଞ୍ଚସଜ୍ଜାର ଆଡ଼ମ୍ବରକୁ ଦୂରକରି ତାହାକୁ ବାସ୍ତବତାମୂଳକ ରୂପେ ପରିବେଷଣ କରିବାରେ ସେ ସଫଳତା ଅର୍ଜନ କରିଥିଲେ । ତାହାଙ୍କ 'ଆଗଖ୍ୟାଡ଼ି' (ରେଲଖଡ଼ି) ସବୁଠାରୁ ଜନପ୍ରିୟ । ଏହାଛଡ଼ା ତାହାଙ୍କ 'ସନ୍ଧ୍ୟାକାଳ', 'ଆଖୋ', 'ଧରାଗୁର୍ଜ୍ଜରୀ' ପ୍ରଭୃତି ନାଟକାବଳୀର ନାମ ମଧ୍ୟ ଏଠାରେ ଉଲ୍ଲେଖଯୋଗ୍ୟ । ନାଟ୍ୟକଳାର ଆଙ୍ଗିକ କ୍ଷେତ୍ରରେ ତାହାଙ୍କ ପରୀକ୍ଷା ଓ ପ୍ରୟୋଗ ପ୍ରଶଂସନୀୟ ।

ଆଧୁନିକ ଗୁଜରାଟୀ ସାହିତ୍ୟରେ ବହୁ ଗୀତିକବିତା, ସଂଗୀତ, ଚତୁର୍ଦ୍ଦଶ-ପଦୀ କବିତା, କଥାକବିତା ରଚିତ ହୋଇଅଛି । ତହିଁରେ ଏ ଯୁଗର ଚେତନାର ବିଭିନ୍ନ ରୂପ, ଉତ୍ସାହ ଓ ନୈରାଶ୍ୟ, ବୀରତ୍ୱ ଓ ଭୀରୁତା, ସହାନୁଭୂତି ଓ ପଳାୟନ-ପ୍ରବଣତା, ନୈତିକତା ଓ ସ୍ଥୂଳଦେହସର୍ବସ୍ୱତା, ବାସ୍ତବବାଦ ଓ ରହସ୍ୟବାଦର ପ୍ରତିଫଳନ ସୁସ୍ପଷ୍ଟ ।

କେଶବ ସେଠ, ଜ୍ୟୋତ୍ସ୍ନା ଶୁକ୍ଳ, ଦେଶଲଜୀ ପରମାର, ଇନ୍ଦ୍ରଲଲ ଗାନ୍ଧୀ, ସୁନ୍ଦରମ, ଉମାଶଙ୍କର ଯୋଷୀ (୧୯୧୧), ମନସୁଖଲଲ ଝାବେରୀ (୧୯୦୭), ଜାଭେରଚନ୍ଦ ମେଘାନ୍ନ (୧୮୯୭-୧୯୪୭), ରାମନାରାୟଣ ପାଠକ (୧୮୮୭-୧୯୫୭), ପୂଜାଲଲ (୧୯୦୧), ସ୍ନେହରଶ୍ମି (୧୯୦୩), ସୁନ୍ଦରଜୀ ବେତାଇ (୧୯୦୪) ଏ ଯୁଗର ପ୍ରତିନିଧିସ୍ଥାନୀୟ କବି । ଆବେଦନର ଗମ୍ଭୀରତା, ଅନ୍ତର୍ଦୃଷ୍ଟିର ତୀକ୍ଷଣତା, ବିଷୟବସ୍ତୁ ଓ ପ୍ରକାଶଭଙ୍ଗୀର ବୈଚିତ୍ର୍ୟ ଏବଂ ଚମତ୍କାରିତା ଦୃଷ୍ଟିରୁ ଉମାଶଙ୍କର ଅଗ୍ରଗଣ୍ୟ ।

କାକା କଲେଲକାରଙ୍କ ପରେ ପ୍ରବନ୍ଧ ସାହିତ୍ୟକୁ ସମୃଦ୍ଧ କରିବାରେ ରତିଲଲ ତ୍ରିବେଦୀ, ଲୀଳାବତୀ ମୁନ୍‌ସି, ଜ୍ୟୋତିନ୍ଦ୍ର ଡାଭେ, ଜୟେନ୍ଦ୍ରରାଇ ଦୁର୍କଲ ଏବଂ ରାମନାରାୟଣ ପାଠକଙ୍କ ପ୍ରଚେଷ୍ଟା ଉଲ୍ଲେଖଯୋଗ୍ୟ । ଜ୍ୟୋତିନ୍ଦ୍ର ଡାଭେଙ୍କୁ (୧୯୦୧) ଆଧୁନିକ ଗୁଜରାଟୀ ସାହିତ୍ୟର ବିଶିଷ୍ଟ ପ୍ରାବନ୍ଧିକ ଭାବରେ ଗ୍ରହଣ କରାଯାଏ । ବିଶେଷତଃ ହାସ୍ୟରସାତ୍ମକ ପ୍ରବନ୍ଧ ରଚୟିତା ଭାବରେ ତାହାଙ୍କ କୃତିତ୍ୱ ଅଦ୍ୱିତୀୟ । ଏତଦବ୍ୟତୀତ ବକୁଳ ତ୍ରିପାଠୀ, ନଭନୀତ ସେବକ ମଧ୍ୟ ହାସ୍ୟରସାତ୍ମକ ପ୍ରବନ୍ଧ ରଚୟିତା ଭାବରେ ସୁଖ୍ୟାତି ଲଭ କରିଅଛନ୍ତି । ନଭନୀତଙ୍କ 'ସତ୍ପତଲିନ ଭାଙ୍ଗୋ' ଏକ ବହୁ ବ୍ୟଙ୍ଗାତ୍ମକ ରଚନା ଭାବରେ ବହୁ ପ୍ରଶଂସିତ ।

ଆଧୁନିକ ଗୁଜରାଟୀ ସାହିତ୍ୟକୁ ସମୃଦ୍ଧ କରିବାରେ ସାମ୍ବାଦିକତା ବିଶେଷ ଭାବରେ ସହାୟତା କରିଅଛି । ପ୍ରାୟ ପ୍ରତ୍ୟେକ ଗୁଜରାଟୀ ଦୈନିକ ଓ ସାପ୍ତାହିକ ପତ୍ରିକାରେ ମୌଳିକ ସାହିତ୍ୟ ଓ ପୁସ୍ତକ ଆଲେଚନା ଦୀର୍ଘକାଳ ଧରି ପ୍ରକାଶିତ ହୋଇଆସୁଅଛି । ଏହା ପାଠକମାନଙ୍କ ମନରେ ସାହିତ୍ୟ ପ୍ରତି ଉତ୍ସାହ ଓ ଅନୁରାଗ ସୃଷ୍ଟି କରୁଅଛି । ମାସିକ ଓ ତ୍ରୟମାସିକ ପତ୍ରମାନଙ୍କର ଦାନ ମଧ୍ୟ ଏ କ୍ଷେତ୍ରରେ ସ୍ୱଳ୍ପ ନୁହେଁ । ଆଧୁନିକ ପ୍ରଚଳିତ ମାସିକ ପତ୍ରମାନଙ୍କ ମଧ୍ୟରେ 'ସଂସ୍କୃତି'କୁ ସାହିତ୍ୟ ଓ ସଂସ୍କୃତିମୂଳକ ଶ୍ରେଷ୍ଠ ପତ୍ରିକା ଭାବରେ ଗ୍ରହଣ କରାଯାଏ । ୩୦ ବର୍ଷରୁ ଅଧିକ କାଳ ଧରି 'କୁମର' ମାସିକ ପତ୍ର ଗୁଜରାଟ ଭାଷାଭାଷୀଙ୍କ ମନ ଓ ଚରିତ୍ରକୁ ପ୍ରଭାବିତ କରିବା ବିଷୟରେ ଅଗ୍ରଗଣ୍ୟ । ଏହାକୁ ଏକ ଶିକ୍ଷାବ୍ରତୀ ଅନୁଷ୍ଠାନ କୁହାଯାଇପାରେ । ଏହାଛଡ଼ା ସର୍ବାଧିକ ଜନପ୍ରିୟ 'ଅଖଣ୍ଡ ଆନନ୍ଦ' ମାସିକ ପତ୍ର ଓ 'ଜନ୍ମଭୂମି' ନାମକ ମାସିକ ପତ୍ରର ନାମ ମଧ୍ୟ ଏ ସମ୍ପର୍କରେ ସ୍ମରଣୀୟ ।

୧୯୪୨ରେ ଭାରତ ଛାଡ଼ ଆନ୍ଦୋଳନ ପରେ ଗୁଜରାଟୀ ପତ୍ରପତ୍ରିକାମାନଙ୍କରେ ବ୍ୟଙ୍ଗାତ୍ମକ କବିତା ପ୍ରକାଶ ଏକ ଉଲ୍ଲେଖଯୋଗ୍ୟ ବିଭାଗ ରୂପେ ପରିଲକ୍ଷିତ ହେଉଅଛି । କର୍ଷନ ଦାସ ମାନେକ ସର୍ବପ୍ରଥମେ ଏତାଦୃଶ ହାସ୍ୟ ଓ ବ୍ୟଙ୍ଗାତ୍ମକ କବିତାର ଧାରା ପ୍ରଚଳନ କରାଇଥିଲେ । ତାହାଙ୍କ 'ବୈସମ୍ପାୟନ-ନ-ବାଣୀ'

ମଧ୍ୟଯୁଗୀୟ ଆଖ୍ୟାନ କାବ୍ୟଶୈଳୀରେ ରଚିତ ଏକ ଚମତ୍କାର ରଚନା । ଇଂରେଜୀ ସରକାରଙ୍କ ଶାସନ ନୀତି ଅସାରତା ଦୃଷ୍ଟିକୋଣର ଅସଙ୍ଗତି, କପଟତା ଓ ନୀଚତାକୁ ଏଥିରେ ସରସ ଓ ବ୍ୟଙ୍ଗାତ୍ମକ ଭାବରେ ପରିବେଷଣ କରାଯାଇଅଛି । ମାନେକଙ୍କ ଅନୁକରଣ କରି ବହୁ କବି ଏତାଦୃଶ ରଚନା ପ୍ରଣୟନ କରିଅଛନ୍ତି । ଏବେ ମଧ୍ୟ ଗୁଜରାଟୀ ଦୈନିକ ପତ୍ରରେ ବ୍ୟଙ୍ଗାତ୍ମକ କବିତା ମୁଦ୍ରିତ ହୋଇଥାଏ ।

ଗୁଜରାଟୀ ଭାଷାଭାଷୀଙ୍କ ବ୍ୟତୀତ ବହୁ ପାର୍ଶୀ ମଧ୍ୟ ଗୁଜରାଟୀ ଭାଷାରେ କବିତା, ଗଳ୍ପ, ଉପନ୍ୟାସ ପ୍ରଭୃତି ରଚନା କରି ସୁଖ୍ୟାତି ଲଭ କରିଅଛନ୍ତି । ସାମ୍ପ୍ରତିକ ଗୁଜରାଟୀ ସାହିତ୍ୟକୁ କେତେକ ଲେଖିକା ମଧ୍ୟ ସମୃଦ୍ଧ କରିଅଛନ୍ତି । ସେମାନଙ୍କ ମଧ୍ୟରୁ ବିନୋଦିନୀ ନୀଳକଣ୍ଠ, ଲିଲ୍ଲୁବେନ ମେହେଟା ପ୍ରଧାନ ।

**ଅନୁବାଦ ସାହିତ୍ୟ**—ଆଧୁନିକ ଗୁଜରାଟୀ ସାହିତ୍ୟରେ ଅନୁବାଦ ଓ ଆହରଣର ଗୁରୁତ୍ୱ ପରିଲକ୍ଷିତ ହୋଇଥାଏ । ଇବ୍‌ସେନ, ଟଲଷ୍ଟୟ, ଭିକ୍‌ଟର ହ୍ୟୁଗୋ, ମୋପାର୍ସା, ଚେକଭ, ଗର୍କୀ, ଇମର୍ସନ, ପ୍ଲାଟୋ, ବର୍ଣ୍ଣାଡ଼୍ ଶ ପ୍ରଭୃତି ବିଦେଶୀ ଲେଖକ ଓ ରବୀନ୍ଦ୍ରନାଥ, ବଙ୍କିମଚନ୍ଦ୍ର, ଶରତଚନ୍ଦ୍ର, ପ୍ରେମଚନ୍ଦ, ଖାଣ୍ଡେକର, ସାନେ ଗୁରୁଜୀ, ଆପ୍ଟେ ପ୍ରଭୃତି ଭାରତୀୟ ଲେଖକମାନଙ୍କର କେତେକ ରଚନା ଗୁଜରାଟୀ ଭାଷାରେ ଅନୂଦିତ ହୋଇଅଛି । ବିଶ୍ୱନାଥ ଭଟ୍ଟ ଟଲଷ୍ଟୟଙ୍କର ଅଧିକାଂଶ ରଚନାକୁ ଗୁଜରାଟୀରେ ଅନୁବାଦ କରିଅଛନ୍ତି । ଟଲଷ୍ଟୟଙ୍କ ସୁବୃହତ୍ 'ଓ୍ୱାର୍ ଏଣ୍ଡ ପିସ୍' ଉପନ୍ୟାସକୁ ଜୟନ୍ତୀ ଦଲାଲ ଅନୁବାଦ କରିଥିବା ଯୋଗୁଁ ପ୍ରଶଂସନୀୟ ।

ସୁରଟ, ବରୋଦା, ବମ୍ବେ, ଆହମଦାବାଦରେ ପ୍ରତିଷ୍ଠିତ ବହୁ ଅନୁଷ୍ଠାନ ପ୍ରାଚୀନ ଗ୍ରନ୍ଥସବୁ ଗୁଜରାଟୀ ଭାଷାସାହିତ୍ୟର ପ୍ରକାଶ କରି ଗବେଷଣା ଲାଗି ଅନୁକୂଳ କ୍ଷେତ୍ର ପ୍ରସ୍ତୁତ କରିଅଛନ୍ତି । ଏହା ଫଳରେ ଗୁଜରାଟୀ ଭାଷା ସାହିତ୍ୟ ଓ ଇତିହାସକ୍ଷେତ୍ରରେ ବହୁ ମୂଲ୍ୟବାନ୍ ଗ୍ରନ୍ଥ ପ୍ରକାଶିତ ହୋଇପାରିଅଛି ।

ସାହିତ୍ୟ ସମାଲୋଚନାକ୍ଷେତ୍ରରେ ମଧ୍ୟ ସମଧିକ ଅଗ୍ରଗତି ସାଧିତ ହୋଇ-ଅଛି । ବିଷ୍ଣୁପ୍ରସାଦ ତ୍ରିବେଦୀ, ଦୋଲରୀ ମାନକଡ଼, ଯେ. ଇ. ସଞ୍ଜନ, ବିଶ୍ୱନାଥ ଭଟ୍ଟ, ବିଜୟରାୟ ବୈଦ୍ୟ ଓ ଅନନ୍ତରାୟ ରାଭଲଙ୍କ ନାମ ଏ ସମ୍ପର୍କରେ ଉଲ୍ଲେଖଯୋଗ୍ୟ ।

ଐତିହାସିକ ଗବେଷଣା ଓ ପ୍ରବନ୍ଧ ରଚୟିତା ଭାବରେ ମୁନିଜୀବ ବିଜୟ, ଦୁର୍ଗାଶଙ୍କର ଶାସ୍ତ୍ରୀ, ହରପ୍ରସାଦ ଶାସ୍ତ୍ରୀ ବିଶିଷ୍ଟତମ । ଭାଷାତତ୍ତ୍ୱ ଆଲୋଚକ ଭାବରେ ଭୋଗିଲାଲ ସନ୍ଦେଶରା, ବିଚରଦାସ ପଣ୍ଡିତ, ହରିବଲ୍ଲଭ ଭୟାନି, ପ୍ରବୋଧ ପଣ୍ଡିତ

କେତେକ ମୂଲ୍ୟବାନ୍ ପ୍ରବନ୍ଧ ରଚନା କରିଅଛନ୍ତି । ସାହିତ୍ୟ ଆଲୋଚନା ପଦ୍ଧତି ସମ୍ପର୍କରେ ଏ ପର୍ଯ୍ୟନ୍ତ କୌଣସି ମୂଲ୍ୟବାନ୍ ଗ୍ରନ୍ଥ ଲିଖିତ ହୋଇପାରି ନାହିଁ । ସେହିପରି ଗୁଜରାଟୀ ଭାଷାର ମୌଳିକ ଭାଷାଭିତ୍ତିକ ପ୍ରାମାଣିକ ବ୍ୟାକରଣ ଅଥବା ସାହିତ୍ୟର ଇତିହାସ ଲିଖିତ ହୋଇପାରି ନାହିଁ ।

ସ୍ୱାଧୀନତା ଲାଭ ପରେ ହିଁ ଯଥାର୍ଥତଃ ସାହିତ୍ୟର ବିକାଶ ଲାଗି ଅନୁକୂଳ ପରିବେଶ ପ୍ରଶସ୍ତତର ହୋଇଅଛି ।

---

# ତାମିଲ ସାହିତ୍ୟ

**ତାମିଲ ଭାଷା**—କେବଳ ଭାରତର ନୁହେଁ, ସମଗ୍ର ପୃଥିବୀର ପ୍ରାଚୀନତମ ଭାଷାମାନଙ୍କ ମଧ୍ୟରୁ ତାମିଲ ଅନ୍ୟତମ । ଦକ୍ଷିଣଭାରତୀୟ ଭାଷାମାନଙ୍କ ମଧ୍ୟରେ ତାମିଲ ସବୁଠାରୁ ପ୍ରାଚୀନ ଓ ସମୃଦ୍ଧ ଭାଷାଭାବେ ପ୍ରସିଦ୍ଧ । ଏମ୍. ଶ୍ରୀନିବାସ ଅୟଙ୍ଗାରଙ୍କ ମତରେ ଆର୍ଯ୍ୟଭାଷା ଗୋଷ୍ଠୀ ମଧ୍ୟରେ ସଂସ୍କୃତଭାଷାର ଯେଉଁ ସ୍ଥାନ, ଦ୍ରାବିଡ଼ ଭାଷାଗୋଷ୍ଠୀ ମଧ୍ୟରେ ତାମିଲ ସେହିପରି ସ୍ଥାନର ଅଧିକାରୀ *। ସଂସ୍କୃତ ଗ୍ରୀକ ଓ ଲାଟିନ୍ ଭଳି ଏହା ଏକ କ୍ଲାସିକାଲ୍ ଭାଷା । ତାମିଲ ଭାଷାର ସମକାଳୀନ ପୂର୍ବୋକ୍ତ ଭାଷାସମୂହର ବହୁଳ ପରିବର୍ତ୍ତନ ଘଟିଥିଲେ ହେଁ ଏବଂ ତନ୍ମଧ୍ୟରୁ ଅନେକେ ଆଉ ଆଜି କଥିତ ଭାଷାରୂପେ ବିଦ୍ୟମାନ ନ ଥିଲେ ହେଁ ତାମିଲ ଭାଷା ଆଧୁନିକ ଭାରତବର୍ଷରେ ଏକ ସୁପ୍ରସିଦ୍ଧ ଭାଷାରୂପେ ପ୍ରଚଳିତ ହେଉଅଛି । କୁହାଯାଇପାରେ, ଏହା ଏକମାତ୍ର ପ୍ରାଚୀନ ଭାଷା ଯେ କି ଏବେ ମଧ୍ୟ ତରୁଣ, ବଳିଷ୍ଠ ଏବଂ ଆଧୁନିକ ଭାବଧାରାକୁ ପ୍ରକାଶ କରିବାରେ ସୁସମର୍ଥ ରହିଅଛି ।

ତାମିଲ ଭାଷାର ପ୍ରାଚୀନତମ ବ୍ୟାକରଣ 'ଥୋଲକାପିପିୟମ୍' ଖ୍ରୀଷ୍ଟପୂର୍ବ ୧୦୦୦ରେ ରଚିତ ହୋଇଥିଲା ବୋଲି ସାଧାରଣତଃ ଗୃହୀତ ହୁଏ । ଏଣୁ ତାମିଲ ଭାଷା ଓ ସାହିତ୍ୟର ଇତିହାସ ଖ୍ରୀ: ପୂ: ୧୦୦୦ଠାରୁ ଧରାଯାଇଥାଏ । ମାତ୍ର ଏହି ବ୍ୟାକରଣର ରଚୟିତା ଥୋଲକାପପିୟନାର୍ ତାମିଲ ଭାଷାର ପ୍ରଥମ ବ୍ୟାକରଣ ପ୍ରଣେତା ନୁହନ୍ତି । ସେ ଉକ୍ତ ବ୍ୟାକରଣରେ ତାହାଙ୍କ ପୂର୍ବବର୍ତ୍ତୀ ଏହି ଭାଷାର ବହୁ ବ୍ୟାକରଣ ପ୍ରଣେତା ଓ ପ୍ରଚଳିତ ସାହିତ୍ୟିକ ପରମ୍ପରା ବିଷୟ ଉଲ୍ଲେଖ କରିଅଛନ୍ତି । ଶବ୍ଦସମ୍ଭାର ଦୃଷ୍ଟିରୁ ସେ ଯୁଗର ତାମିଲଭାଷା ଓ ଆଧୁନିକ ତାମିଲଭାଷା ମଧ୍ୟରେ ତାରତମ୍ୟ ପରିଲକ୍ଷିତ ହେଲେ ହେଁ ବାକ୍ୟଗଠନ ଓ ବାକ୍ୟରେ ପଦବିନ୍ୟାସ ଦୃଷ୍ଟିରୁ ପ୍ରାଚୀନ ତାମିଲ ଓ ଆଧୁନିକ ତାମିଲ ଭାଷା ମଧ୍ୟରେ ବିଶେଷ ତାରତମ୍ୟ ପରିଲକ୍ଷିତ ହୁଏ ନାହିଁ ।

ମଧ୍ୟ ଯୁଗରେ ଓ ଆଧୁନିକ ଯୁଗରେ ତାମିଲ ସାହିତ୍ୟରେ ସଂସ୍କୃତ ଭାଷାରୁ କେତେକ ଶବ୍ଦ ଗୃହୀତ ହୋଇଥିଲେ ହେଁ ତାମିଲଭାଷା ଭାବ ପ୍ରକାଶ ଲାଗି ସଂସ୍କୃତ ଶବ୍ଦାବଳୀ ନିକଟରେ ନିର୍ଭରଶୀଳ ନୁହେଁ । ସର୍ବନାମ ପଦ, ସଂଖ୍ୟାବାଚକ ଶବ୍ଦ ଓ

* Tamil Studies P. 151-152

ବାକ୍ୟରେ ଶବ୍ଦସଂସ୍ଥାନ ଦୃଷ୍ଟିରୁ ତାମିଲ ଓ ସଂସ୍କୃତଭାଷା ମଧ୍ୟରେ କୌଣସି ସାମଞ୍ଜସ୍ୟ ପରିଲକ୍ଷିତ ହୁଏ ନାହିଁ ।

ଆର୍ଯ୍ୟମାନେ ଭାରତକୁ ଆସିବା ଆଗରୁ ଉତ୍ତର ଓ ଦକ୍ଷିଣ-ଭାରତରେ ଏକ ମୂଳ-ଦ୍ରାବିଡ଼ଭାଷା କଥିତ-ଭାଷା ରୂପେ ପ୍ରଚଳିତ ଥିଲା । କ୍ରମେ ସେହି ମୂଳ ଦ୍ରାବିଡ଼ ଭାଷା ବହୁ ଆଞ୍ଚଳିକ ଉପଭାଷାରେ ବିଭକ୍ତ ହୋଇଯାଇଥିଲା । ତାମିଲ, ତେଲୁଗୁ, ପ୍ରଭୃତି ଆଧୁନିକ ଦକ୍ଷିଣ-ଭାରତୀୟ ଭାଷାସମୂହ ସେହି ମୂଳ ଦ୍ରାବିଡ଼ଭାଷାରୁ ଉଦ୍‌ଭବ । ଉତ୍ତରଭାରତୀୟ ଭାଷାସମୂହ ଏକ ମୂଳଭାଷାରୁ ଉଦ୍ଭୂତ ହୋଇଥିଲେ ହେଁ ପରବର୍ତ୍ତୀ କାଳରେ ବହୁ ବୈଦେଶିକ ଶବ୍ଦ, ଭାବସମ୍ମିଶ୍ରଣ ଦ୍ୱାରା ତାହା ପରିବର୍ତ୍ତିତ ହୋଇ ଯାଇଅଛି । ମାତ୍ର ତାମିଲଭାଷା ତାର ଦେଶଜ ମୌଳିକ ରୂପକୁ ଏବେ ମଧ୍ୟ ଅବ୍ୟାହତ ରଖିପାରିଅଛି । ସଂସ୍କୃତ ଭାଷା ଉଦ୍ଭୂତ ହେବା ପୂର୍ବରୁ କିମ୍ବା ତାହାର ଉଦ୍ଭବ ହେବା ସମକାଳରେ ସୁଦୂର ଦକ୍ଷିଣରେ ସାହିତ୍ୟିକ ଉପଭାଷା ରୂପେ ତାମିଲ-ଭାଷା ସୃଷ୍ଟି ହୋଇଥିବା ପଣ୍ଡିତମାନଙ୍କର ମତ । ସେତେବେଳର ସାହିତ୍ୟିକ ଭାଷା 'ସେନ ତାମିଲ' ଓ କଥିତ ଉପଭାଷା 'କୋଦ୍‌ନ ତାମିଲ' ନାମରେ ପରିଚିତ ଥିଲା । ଏହି କଥିତ ଉପଭାଷା କାଳକ୍ରମେ ବହୁ ସାମାଜିକ ଓ ସାଂସ୍କୃତିକ ବିକାଶଦ୍ୱାରା ପରିବର୍ତ୍ତିତ ହୋଇ ଯାଇଥିଲା ଏବଂ ଅବଶେଷରେ ପ୍ରାୟ ୯ମ ଅଥବା ୧୦ମ ଶତାବ୍ଦୀରେ କେତେକ ସଂସ୍କୃତ ପଣ୍ଡିତ ଏହି ଉପଭାଷାର ବ୍ୟାକରଣ ପ୍ରଣୟନ କରିଥିଲେ ଓ ଏହି ଭାଷାରେ ସାହିତ୍ୟ ରଚନା କରିଥିଲେ । ଏହା ଫଳରେ ତେଲୁଗୁ ଓ କନ୍ନଡ଼ ସାହିତ୍ୟ ସୃଷ୍ଟିର ପଥ ଉନ୍ମୁକ୍ତ ହୋଇଥିଲା ।

ଆଦିମ ମୂଳ ଦ୍ରାବିଡ଼ଭାଷାରୁ ତାମିଲ ନାମକ ଉପଭାଷା ସୃଷ୍ଟି ହେବା ପରଠାରୁ ଏହା ତାମିଲନାଡ଼ୁର ବ୍ୟବସ୍ଥିତ ଭାଷା ଭାବରେ ସୁବିଦିତ ଓ ପ୍ରଚଳିତ ହୋଇଆସୁଛି । ପ୍ରାଚୀନ ଭାରତବର୍ଷର ସଂସ୍କୃତିସମ୍ପନ୍ନ ଭାଷା ଭାବରେ ଉତ୍ତର ଭାଗରେ ସଂସ୍କୃତ ଓ ଦକ୍ଷିଣାର୍ଦ୍ଧରେ ତାମିଲ ମାତ୍ର ଏହି ଦୁଇଗୋଟି ଭାଷା ସ୍ୱୀକୃତିଲାଭ କରିଥିଲା । ସଂସ୍କୃତ ବାଲ୍ମୀକି ରାମାୟଣରେ ସୁମହାନ ତାମିଲରାଜ୍ୟ ଓ ତାହାର ସାଂସ୍କୃତିକ ଗୌରବ ବିଷୟରେ ଉଲ୍ଲେଖ ରହିଅଛି । ତାମିଲ ସାହିତ୍ୟର ପ୍ରାଚୀନତମ ରଚନା 'ସଙ୍ଗମ' ସାହିତ୍ୟରୁ ମଧ୍ୟ ଏହାର ଯଥେଷ୍ଟ ପ୍ରମାଣ ମିଳିଥାଏ ।

ତାମିଲଭାଷାର ଧ୍ୱନିତାତ୍ତ୍ୱିକ ନିୟମାନୁଯାୟୀ ଶବ୍ଦରେ ସ୍ୱରବର୍ଣ୍ଣ ଓ ବ୍ୟଞ୍ଜନବର୍ଣ୍ଣ ସମାବେଶର ରୀତି ଅତ୍ୟନ୍ତ ସରଳ ଓ ସ୍ୱାଭାବିକ । ଶବ୍ଦର ବନାନ ବିଷୟରେ ତାମିଲ ବ୍ୟାକରଣ ରଚୟିତାମାନେ ଅତ୍ୟନ୍ତ ଗୁରୁତ୍ୱ ଦେଇଥାଆନ୍ତି । ଶ୍ରୁତିକଷ୍ଟପ୍ରଦ ବ୍ୟଞ୍ଜନବର୍ଣ୍ଣମାନଙ୍କର ଅସୁନ୍ଦର ସମାବେଶକୁ ପରିହାର କରିବା ବିଷୟରେ ସେମାନେ ଏକାନ୍ତ ବ୍ୟଞ୍ଜନବର୍ଣ୍ଣଗୁଡ଼ିକୁ ଯେପରି ସହଜରେ ଉଚ୍ଚାରିତ

ହେବା ଓ କର୍ଣ୍ଣପ୍ରୀତିକର ହେବା—ଏ ବିଷୟରେ ସେମାନେ ନିୟମାବଳୀ ପ୍ରଣୟନ କରିଯାଇ ଅଛନ୍ତି ।

ପ୍ରାଚୀନ ବ୍ୟାକରଣ ପ୍ରଣେତାଗଣ ତାମିଲରେ ଶବ୍ଦଗଠନସମ୍ବନ୍ଧ ବିଷୟରେ ଯେଉଁସବୁ ବିଧି ପ୍ରଣୟନ କରିଯାଇଥିଲେ, ତାହା ଆଜି ମଧ୍ୟ ଅପରିବର୍ତ୍ତିତ ଭାବେ ପ୍ରଚଳିତ ହେଉଅଛି । ମୂଳ ଧାତୁ ଓ ଶବ୍ଦମାନଙ୍କରୁ ବିବିଧ ରୀତିରେ ବହୁସଂଖ୍ୟକ ନୂତନ ଶବ୍ଦ ଗଠିତ ହେଲେ ହେଁ ମୂଳ ଧାତୁ ଓ ଶବ୍ଦକୁ ନିର୍ଣ୍ଣୟ କରିବା ଏହି ଭାଷାରେ ଅତ୍ୟନ୍ତ ସହଜ । ଦେଶଜ ଶବ୍ଦସମ୍ଭାରରେ ଏହା ମୁଖ୍ୟତଃ ସମୃଦ୍ଧ ହୋଇ ଥିବାରୁ ବିଦେଶୀ ଶବ୍ଦ, ଏପରି କି ସଂସ୍କୃତଭାଷାରୁ ମଧ୍ୟ ଅବାଧ ଶବ୍ଦ ଆହରଣକୁ ଏହା ସର୍ବଦା ପ୍ରତିରୋଧ କରିଆସିଛି । ତାମିଲ୍ ସାହିତ୍ୟର ପ୍ରାଚୀନତମ ଯୁଗ 'ସଂଗମ-ଯୁଗ'ରେ ମଧ୍ୟ ତାମିଲ ଭାଷାରେ ଶବ୍ଦପ୍ରାଚୁର୍ଯ୍ୟ ଓ ସମୃଦ୍ଧି ବିସ୍ମୟକର । ପଣ୍ଡିତମାନଙ୍କ ମତରେ ପୃଥିବୀର ଭାଷାମାନଙ୍କ ମଧ୍ୟରେ ତାମିଲ ହେଉଛି ଏକମାତ୍ର ଭାଷା, ଯାହାର କଥିତ ଭାଷାର ରୂପ ବିଗତ ୨° ଶତାବ୍ଦୀ କିମ୍ବା ତଦୂର୍ଦ୍ଧ୍ୱ କାଳ ମଧ୍ୟରେ ଅପରିବର୍ତ୍ତିତ ରହିଅଛି । ଭାରତ, ସିଂହଳ ଓ ମାଳୟରେ ପ୍ରାୟ ୩୫ ନିୟୁତ ଲୋକ ଏହି ଭାଷାରେ କଥାବାର୍ତ୍ତା କରିଥାଆନ୍ତି । ସରଳ ଓ ସ୍ୱାଭାବିକ ଧ୍ୱନିତାତ୍ତ୍ୱିକ ନିୟମ ଓ ଶବ୍ଦଗଠନରେ ବଳିଷ୍ଠ ଦେଶଜ ରୀତି ହିଁ ଏହାର ଅପ୍ରତିହତ ବିକାଶର ହେତୁସ୍ୱରୂପ ।

**ତାମିଲ ସାହିତ୍ୟର ପ୍ରାରମ୍ଭ**—ତାମିଲ ରାଜ୍ୟର ଉର୍ବର ମୃତ୍ତିକା, ଉତ୍ତୁଙ୍ଗ ପର୍ବତମାଳା, ନଦୀ, ବିସ୍ତୀର୍ଣ୍ଣ ମାଳଭୂମି ଏବଂ ପୂର୍ବ-ପଶ୍ଚିମ ଓ ଦକ୍ଷିଣରେ ସାଗର ପର୍ଯ୍ୟନ୍ତ ପରିବ୍ୟାପ୍ତ ପ୍ରାନ୍ତର ପ୍ରାଚୀନ ଯୁଗର କଳ୍ପନାପ୍ରବଣ ଚାରଣମାନଙ୍କୁ କାବ୍ୟ ରଚନା ଲାଗି ପ୍ରଚୁର ପ୍ରେରଣା ଯୋଗାଇଥିଲା । ଐତିହାସିକ ଚେତନା ସେ ଯୁଗର କବିମାନଙ୍କର ନଥିଲା । ସ୍ୱଭାବସିଦ୍ଧ ଏବଂ ରୋମାଣ୍ଟିକ୍ ଦୃଷ୍ଟି ହିଁ ଥିଲା ସେ ଯୁଗର ପ୍ରଧାନ ବୈଶିଷ୍ଟ୍ୟ ।

ତାମିଲର ପ୍ରାଚୀନତମ ସାହିତ୍ୟକୁ 'ସଙ୍ଗମ ସାହିତ୍ୟ' କୁହାଯାଏ । ଖ୍ରୀଷ୍ଟପୂର୍ବ ୫୦୦ରୁ ତୃତୀୟ ଶତାବ୍ଦୀ ପର୍ଯ୍ୟନ୍ତ ଏହା ପରିବ୍ୟାପ୍ତ । ମାତ୍ର ସଂରକ୍ଷଣ ଅଭାବରୁ ସେ ଯୁଗର ବହୁ ରଚନା ନଷ୍ଟ ହୋଇ ଯାଇଥିଲେ ହେଁ ୩ୟ ବା ୪ର୍ଥ ଶତାବ୍ଦୀରେ କେତେକ ଚାରଣ ଓ କାବ୍ୟାନୁରାଗୀ ବିଗତ ବହୁ ଶତାବ୍ଦୀରେ ମିଳୁଥିବା କାବ୍ୟାବଳୀକୁ ସଂଗ୍ରହ ଓ ସଂକଳିତ କରିଯାଇଥିଲେ । ସେଗୁଡ଼ିକ 'ଅଷ୍ଟ ସଂକଳନ' ଓ 'ଦଶଗ୍ରାମ୍ୟଗାଥା' (Idylls) ନାମରେ ପରିଚିତ । ତାହାର ମୋଟ ପଦ୍ୟସଂଖ୍ୟା ଦୁଇ ହଜାର ତିନି ଶହ ଏକାଅଶୀ । ଏଥିରେ ତିନିଗୋଟି ଚରଣବିଶିଷ୍ଟ କ୍ଷୁଦ୍ର ଗୀତି-କାବ୍ୟଠାରୁ ଆରମ୍ଭ କରି ୭୮୨ ପଦବିଶିଷ୍ଟ ଗ୍ରାମ୍ୟଗାଥାସମୂହ ସନ୍ନିବିଷ୍ଟ । ଏହି ସବୁ କାବ୍ୟର ରଚୟିତାମାନଙ୍କ ମଧ୍ୟରୁ ୪୭୩ କବିଙ୍କର ନାମ ଜଣାଯାଇଅଛି ଓ

୧୦୨ଟି କବିତାର ରଚୟିତାଙ୍କ ନାମ ଜଣା ଯାଇନାହିଁ । ଜଣାଯାଇଥିବା କବିମାନଙ୍କ ମଧ୍ୟରେ ପ୍ରାୟ ୩୦ ଜଣ ନାରୀକବି ମଧ୍ୟ ଅନ୍ତର୍ଭୁକ୍ତ । ଏହି କାବ୍ୟ-କବିତାକୁ ମୁଖ୍ୟତଃ ଦୁଇ ଗୋଟି ଭାଗରେ ବିଭକ୍ତ କରାଯାଇପାରେ, ଯଥା—'ଅକମ୍' ବା ପ୍ରେମ-ମୂଳକ କାବ୍ୟ ଏବଂ 'ପୁରମ୍' ବା ଯୁଦ୍ଧ, ଶାସନ ଓ ନୀତିମୂଳକ କାବ୍ୟ ।

ଖ୍ରୀଷ୍ଟପୂର୍ବ ୧୦୦୦ ପୂର୍ବବର୍ତ୍ତୀ ବ୍ୟାକରଣ 'ଥୋଲକାପ୍ପିୟମ୍‌ରେ ୧୬୭୬ଟି ସୂତ୍ର ରହିଛି । ଏହା ତିନି ଭାଗରେ ବିଭକ୍ତ—ଏହାର ପ୍ରଥମ ଭାଗରେ ଧ୍ୱନିବିଜ୍ଞାନ ଓ ବିଶୁଦ୍ଧ ଶବ୍ଦ ଉଚ୍ଚାରଣ, ଦ୍ୱିତୀୟ ଭାଗରେ ପଦ ଓ ବାକ୍ୟରେ ଶବ୍ଦବିନ୍ୟାସତତ୍ତ୍ୱ ଏବଂ ତୃତୀୟ ଭାଗରେ ସାହିତ୍ୟିକ ପରଂପରା, ଛନ୍ଦ, ଅଲଙ୍କାର ଓ ବ୍ୟବହାର ବିଧି ସମ୍ପର୍କୀୟ ଆଲୋଚନା ହୋଇଅଛି । ବହୁ ଶତାବ୍ଦୀର ସାହିତ୍ୟିକ ସଂସ୍କୃତି ଓ ସଭ୍ୟତାର ବିକାଶ ପରେ ହିଁ ଏପରି ବୈଜ୍ଞାନିକ ବିଶ୍ଳେଷଣାତ୍ମକ ଗ୍ରନ୍ଥ ଯେ ଲିଖିତ ହୋଇପାରେ, ଏହା ସହଜେ ଅନୁମେୟ । ଏହି ଗ୍ରନ୍ଥର ତୃତୀୟ ଭାଗରୁ ତତ୍‌କାଳୀନ ତାମିଲଭାଷୀମାନଙ୍କ ସାମାଜିକ, ରାଜନୈତିକ ଓ ଧର୍ମନୈତିକ ବିବରଣୀ ଜଣା-ଯାଇଥାଏ । ଏହି ଗ୍ରନ୍ଥ ସମ୍ପର୍କରେ ବହୁ ପଣ୍ଡିତ ପ୍ରସିଦ୍ଧ ଟୀକାମାନ ରଚନା କରିଅଛନ୍ତି । ଭାରତର ଭାଷାମାନଙ୍କ ମଧ୍ୟରୁ ଏକମାତ୍ର ତାମିଲଭାଷା ସଂସ୍କୃତର ପ୍ରଭାବରୁ କପରି ସମ୍ପୂର୍ଣ୍ଣ ଭାବେ ମୁକ୍ତ ଓ ସ୍ୱତନ୍ତ୍ର, ତାହା ଏହି ଯୁଗର ରଚନାବଳୀରୁ ସହଜରେ ଅନୁମେୟ । ଦଶଲୋକଗାଥା (ପଟିଥ୍ ପଠ୍ଠୁ)—ଆଠଜଣ କବିଙ୍କ ଦ୍ୱାରା ଏଗୁଡ଼ିକ ରଚିତ ହୋଇଅଛି । ତନ୍ମଧ୍ୟରୁ ସବୁଠାରୁ କ୍ଷୁଦ୍ରତମଟି ୧୦୩ ଚରଣ-ବିଶିଷ୍ଟ ଏବଂ ଦୀର୍ଘତମଟି ୭୮୨ ପାଦବିଶିଷ୍ଟ । ଏଗୁଡ଼ିକ କ୍ଲାସିକ୍ ରୀତିରେ ରଚିତ ଏବଂ ଉଚ୍ଚକୋଟୀର ବର୍ଣ୍ଣନାମୂଳକ କାବ୍ୟ ଭାବରେ ପରିଗଣିତ ହୋଇଥାଏ ।

**ପୁରମ-ନାନୁରୁ** :—ଏହାର ଅର୍ଥ ବହିର୍ଜାଗତିକ ଚତୁଃଶତକ । (ପୁରମ୍=ବହିର୍ଜାଗତିକ ନାନୁରୁ=ଚତୁଃଶତକ) । ସଂଗମ ଯୁଗର ୮ଟି ସଂକଳିତ କବିତାସଂଗ୍ରହ ମଧ୍ୟରୁ ଏହା ସର୍ବାଧିକ ଜନପ୍ରିୟ ଓ ଐତିହାସିକ ଦୃଷ୍ଟିରୁ ସବୁଠାରୁ ମୂଲ୍ୟବାନ । ୪୦୦ଟି କବିତା ବିଶିଷ୍ଟ ଏହି ସଙ୍କଳନରେ ବସ୍ତୁତଃ ଯୁଦ୍ଧ, ଶାସନ ଓ ନୀତି ବିଷୟକ ବର୍ଣ୍ଣନା ପରିଲକ୍ଷିତ ହୁଏ । ଏହି ସଙ୍କଳନରେ ୧୫୦ ଜଣ କବିଙ୍କ କବିତା ସନ୍ନିବିଷ୍ଟ । ଏହି କବିମାନେ ରାଜାମାନଙ୍କର ବିଶ୍ୱସ୍ତ ବନ୍ଧୁ ଓ ଉପଦେଷ୍ଟା ଥିଲେ । କେତେକ ବିଜ୍ଞ ରାଜାଙ୍କର କବିତା ମଧ୍ୟ ଏଥିରେ ସନ୍ନିବିଷ୍ଟ । ଜୀବନର ବହୁ ସତ୍ୟ, ଋଜୁ ଓ ମହତ୍ତ୍ୱପୂର୍ଣ୍ଣ ରୀତିରେ ଏଥିରେ ବର୍ଣ୍ଣିତ ହୋଇଅଛି ।

**ଅଗାନାନୁରୁ**—ଏହି ଶୀର୍ଷକର ଅର୍ଥ ପ୍ରେମମୂଳକ ଚାରିଶତ କବିତା । ଏହି କବିତାଗୁଡ଼ିକ ୧୩ ଠାରୁ ୩୭ ପାଦବିଶିଷ୍ଟ । ୧୪୫ ଜଣ କବିଙ୍କ

ରଚନାବଳୀ ଦ୍ୱାରା ଏହି ସଂକଳନଟି ପରିପୁଷ୍ଟ । ଜନୈକ ପାଣ୍ଡ୍ୟରାଜାଙ୍କ ନିର୍ଦ୍ଦେଶରେ ଉରୁଥିରମାନାରଙ୍କ ଦ୍ୱାରା ଏହା ସଂକଳିତ ହୋଇଥିଲା ।

**ନତ୍ରିନଆଇ**— ଏହି ସଂକଳନଟି ମଧ୍ୟ ୧୭୫ ଜଣ କବିଙ୍କ ବିରଚିତ ୪୦୦ ଗୀତିକାବ୍ୟର ସମଷ୍ଟି । ଏଥିରେ ୯ ଚରଣଠାରୁ ୧୨ ଚରଣବିଶିଷ୍ଟ କବିତା ପରିଲକ୍ଷିତ ହୋଇଥାଏ । ପାଣ୍ଡ୍ୟରାଜା ମାରନ ଵାଲୁଧିଙ୍କ ଦ୍ୱାରା ଏହା ସଂକଳିତ ହୋଇଥିଲା ।

**କୁରୁନଥୋଗାଇ**— ଦୁଇଶହ ବ୍ଵିଶଜଣ କବିଙ୍କ ଦ୍ୱାରା ରଚିତ ହୋଇଥିବା ୪୦୦ ଗୀତିକାବ୍ୟବିଶିଷ୍ଟ ଏହି ସଂଗ୍ରହଟିର ସକଳ କବିତା ଚାରି ପାଦରୁ ଆଠପାଦବିଶିଷ୍ଟ ।

**ଏଇନ କୁରୁନୁରୁ**—ତିନି ଠାରୁ ଛଅ ପାଦବିଶିଷ୍ଟ ୫୦୦ କ୍ଷୁଦ୍ର ଗୀତିକାବ୍ୟର ସମଷ୍ଟି ଏହି ପ୍ରେମମୂଳକ କବିତା ସଂକଳନ ଚେର ରାଜାଇରୁମ୍ପୋରାଇଙ୍କ ନିର୍ଦ୍ଦେଶରେ କବି କୁଦାଲୁର କିଲରଙ୍କ ଦ୍ୱାରା ସଂକଳିତ ହୋଇଥିଲା । ଏହି ସଂକଳନଟିର ପ୍ରତ୍ୟେକ ଶତସଂଖ୍ୟକ କବିତା ଯଥାକ୍ରମେ କୃଷିକ୍ଷେତ୍ର ସମ୍ବନ୍ଧୀ, ସାଗର ସୈକତ ସମ୍ବନ୍ଧୀ, ପାର୍ବତ୍ୟାଞ୍ଚଳ ସମ୍ବନ୍ଧୀ, ବାଲୁକାପ୍ରାନ୍ତର ସମ୍ବନ୍ଧୀ (arid) ଓ ଅରଣ୍ୟ ସମ୍ବନ୍ଧୀ ପ୍ରେମକୁ ଉପଜୀବ୍ୟ କରି ରଚିତ ।

**ପଧିତୃପପ୍‌ଥୁ**—ଏହା ଦଶଟି ପର୍ଯ୍ୟାୟରେ ଶତସଂଖ୍ୟକ ଗୀତିକବିତାର ସମଷ୍ଟି । ଏଥିରୁ ୨ଟି ଦଶକ ବିନଷ୍ଟ ହୋଇଯାଇଅଛି । ଅବଶିଷ୍ଟ ୮ଟି ଦଶକ ୮ଜଣ ଚେରବଂଶୀୟ ରାଜାଙ୍କ ଗୌରବସମ୍ବନ୍ଧୀୟ ଏବଂ ଏହା ୮ଜଣ କବିଙ୍କ ଦ୍ୱାରା ରଚିତ । ଏହି ସଂକଳନଟି ତତ୍କାଳୀନ ଚେର ରାଜ୍ୟ (ଅଧୁନା ତ୍ରାଭାଙ୍କୋର ନାମରେ ବିଦିତ) ଜନସାଧାରଣଙ୍କ ରୀତିନୀତି, ଆଚାର-ଆଚରଣ ସଂପର୍କୀୟ ଐତିହାସିକ ବିବରଣୀର ଆଧାର ।

**ପରିପଦଲ**—ସର୍ବାଦୌ ଏହା ୭୦ଟି ଦୀର୍ଘ କବିତାର ସଂଗ୍ରହ ଥିଲା । ମାତ୍ର କାଳର ଧ୍ୱଂସକାରୀ ପ୍ରଭାବରୁ ତନ୍ମଧ୍ୟରୁ ମାତ୍ର ୨୪ଟି କବିତା ରକ୍ଷା-ପାଇ ଯାଇଅଛି । ଏହାର ରଚୟିତା ତେର ଜଣ କବି । ଏହି ସବୁ କବିତାରୁ ଅଧିକାଂଶ ପ୍ରେମମୂଳକ ହେଲେ ହେଁ କେତେକରେ ଭଗବାନ, ଭାଇଗାଇ ନଦୀ ଓ ତିରୁପ୍ପରନ କୁନରମ୍ ପର୍ବତ ପ୍ରଭୃତିର ପ୍ରଶସ୍ତି ମଧ୍ୟ ବର୍ଣ୍ଣିତ ।

**କଲିଥୋଗାଇ**—କଲୀ ବୃତ୍ତରେ କବି ନଲ୍ଲନ୍ତୁଭନାର କଥୋପ-କଥନ ସ୍ୱାତରେ ବିଭିନ୍ନ ପ୍ରେମାନୁଭୂତିମୂଳକ ୧୫୦ଟି ସଂଗୀତ ସଂକଳନ କରିଥିଲେ । ତନ୍ମଧ୍ୟରୁ ଅନେକଗୁଡ଼ିକରେ ଉପଦେଶାତ୍ମକବାଣୀ ମଧ୍ୟ ସଂଯୋଜିତ । ପ୍ରେମର ପାଞ୍ଚଟି ବିଭାବକୁ ଉପଜୀବ୍ୟ କରି ପାଞ୍ଚଜଣ କବିଙ୍କ ଦ୍ୱାରା ଏହି କବିତା ସକଳ ବିରଚିତ । କେତେକ ସମାଲୋଚକଙ୍କ ମତରେ ଭାବ ଓ ରସ ଦୃଷ୍ଟିରୁ ଏହି ସଂକଳନଟି ତାମିଲ ସାହିତ୍ୟର ଏକ ବିରଳ ଓ ଅନୁପମ ସୃଷ୍ଟି ।

**ଅଷ୍ଟାଦଶ ସାଧାରଣ (Minor) ଗ୍ରନ୍ଥାବଳୀ**—ସଙ୍ଗମ ଯୁଗ ପରେ ଅଠର ଗୋଟି ଗ୍ରନ୍ଥ ରଚିତ ହୋଇଥିଲା । ଏଗୁଡ଼ିକ ସାଧାରଣ ଗ୍ରନ୍ଥ ଭାବରେ ବର୍ଗୀକୃତ ହୋଇଅଛି । ଏମାନଙ୍କ ମଧ୍ୟରୁ ୧୧ଟି ଉପଦେଶାତ୍ମକ ଏବଂ ଅବଶିଷ୍ଟ ପ୍ରଣୟସମ୍ବନ୍ଧୀୟ । ଥିରୁଭଲ୍ଲୁଭରଙ୍କ ରଚିତ ପୃଥିବୀବିଖ୍ୟାତ 'ଥିରୁକ୍କୁରାଲ' ଏହି ଗ୍ରନ୍ଥମାନଙ୍କ ମଧ୍ୟରୁ ଅନ୍ୟତମ । ଏହା ତାମିଲ ସାହିତ୍ୟର ସର୍ବଶ୍ରେଷ୍ଠ ଗ୍ରନ୍ଥ ଓ ତାମିଲ ଭାଷାର ଶକ୍ତି ଓ ଐଶ୍ୱର୍ଯ୍ୟର ଚୂଡ଼ାନ୍ତ ନିଦର୍ଶନ । କେତେକ ବିଦେଶୀ ଆଲୋଚକ ମଧ୍ୟ ଏହାକୁ ପୃଥିବୀର ନୀତିଗ୍ରନ୍ଥମାନଙ୍କ ମଧ୍ୟରେ ଶ୍ରେଷ୍ଠ ଗ୍ରନ୍ଥ ଭାବରେ ଅଭିହିତ କରିଅଛନ୍ତି । ଏହି ଗ୍ରନ୍ଥଟି ଅତୀବ ଜନପ୍ରିୟ ; ସବୁ ଯୁଗରେ ସବୁ ସଂପ୍ରଦାୟ ଓ ଧର୍ମ ମତବାଦର ଜନସାଧାରଣଙ୍କ ଦ୍ୱାରା ଏହି ଗ୍ରନ୍ଥ ସମାଦୃତ ଓ ଏହାର ପ୍ରଣେତା ଭକ୍ତି ଓ ଶ୍ରଦ୍ଧାର ପାତ୍ର ବିବେଚିତ ହୋଇଅଛନ୍ତି । ୟୁରୋପ ଓ ଭାରତର ସବୁ ପ୍ରସିଦ୍ଧ ଭାଷାରେ ଏହା ଅନୂଦିତ ହୋଇଅଛି । ଏହାର ପ୍ରତ୍ୟେକ ପଦ ଗଭୀର ଜ୍ଞାନ-ଗର୍ଭକ । ଏହା ତିନି ଭାଗରେ ବିଭକ୍ତ—ପୁଣ୍ୟ ସମ୍ବନ୍ଧୀୟ, ରାଜା ଓ ନାଗରିକତା ସମ୍ବନ୍ଧୀୟ ଏବଂ ପ୍ରେମସମ୍ବନ୍ଧୀୟ । କବି ଏହି ବିଷୟମାନଙ୍କୁ ସମୁଚ୍ଚ ଧର୍ମ-ନୀତି ଦୃଷ୍ଟିରୁ ବିଚାର କରିଅଛନ୍ତି । ଧର୍ମ, ଦର୍ଶନ, ରାଜନୀତି, ପ୍ରେମ, ଜୀବନର କଳା ପ୍ରଭୃତି ବିବିଧ ବିଷୟର ସମସ୍ତ ରହସ୍ୟ ଯେପରି ଏହି ମହାକବିଙ୍କ ନିକଟରେ ଉଦ୍‌ଘାଟିତ । ଥିରୁକ୍କୁରାଲ ବ୍ୟତୀତ ଅନ୍ୟ ୧୭ଟି ଗ୍ରନ୍ଥ ମଧ୍ୟରୁ ନିମ୍ନୋକ୍ତ ରଚନାଗୁଡ଼ିକ ଉଲ୍ଲେଖ-ଯୋଗ୍ୟ ।

**ନାଲଦିୟାର**— ବିଭିନ୍ନ ଜୈନ ସାଧୁଙ୍କ ରଚିତ ଚତୁଷ୍ପଦବିଶିଷ୍ଟ ୪୦୦ ଗୋଟି ଗୀତିକା ଏହି ସଂକଳନର ଅନ୍ତର୍ଗତ । ଏହାର ବିଷୟବସ୍ତୁ ଓ ବର୍ଗୀକରଣ ପୂର୍ବୋକ୍ତ ଥିରୁକ୍କୁରଲ ସଦୃଶ ।

**ନାନମନିକ୍କଡ଼ିଗାଇ** —ଏହାର ଅର୍ଥ ମଣି ଉପହାର ଥଳି । ଏଥିରେ ୧୦୪ଟି କବିତା ସନ୍ନିବିଷ୍ଟ । ପ୍ରତ୍ୟେକ କବିତା ଚତୁଷ୍ପାଦବିଶିଷ୍ଟ ଓ ଚତୁଷ୍ପାଦ ମଣି ସଦୃଶ କ୍ଷୁଦ୍ର ନୀତିବାକ୍ୟ ସମନ୍ୱିତ ।

**କରନାରପ୍‌ପଧୁ**—ଏହା ଚାଳିଶଟି ଦୀର୍ଘପଦବିଶିଷ୍ଟ ବର୍ଷାଋତୁ ସମ୍ପର୍କୀୟ ଏକ ଗୀତିକାବ୍ୟ । ମାତ୍ର ଋତୁଚିତ୍ର ଏଠାରେ ଗୌଣ । ପ୍ରଣୟିନୀର ଦୂରଦେଶୀ ପ୍ରିୟତମଙ୍କ ବିଚ୍ଛେଦ-କାତର ମର୍ମବାଣୀ ହିଁ ଏହାର ମୁଖ୍ୟ ଉପଜୀବ୍ୟ ବିଷୟ ।

**କଲଭଲି-ନାରପ୍‌ପଧୁ**—ଚାରିପାଦବିଶିଷ୍ଟ ଚାଳିଶଟି ପଦରେ କବି ପୋଏଗାୟାର କଲ୍‌ମାଲମ ଯୁଦ୍ଧକୁ ଉପଜୀବ୍ୟ କରି ଏହି ଯୁଦ୍ଧରେ ବିଜୟୀ ଚୋଲରାଜା କୋଚେନକନନଙ୍କ କୀର୍ତ୍ତି ବର୍ଣ୍ଣନା କରିଅଛନ୍ତି ।

**ଇନିୟଭଇ-ନରପ୍‌ପଧ**—କବି ପୁଧନ ଚେନ୍ଧନାର ଚାଳିଶଟି ପଦରେ କେତେକ ମଧୁର ଓ କରଣୀୟ ନୀତି ବିଷୟ ଏଥିରେ ବର୍ଣ୍ଣନା କରିଅଛନ୍ତି ।

**ଇନ୍ନାନାରପ୍‌ପଧୁ**—କେତେକ ମନ୍ଦ ଓ ପରିହାର୍ଯ୍ୟ ବିଷୟ ୪୦ ପଦରେ କବି କପିଲାର ଏଥିରେ ବର୍ଣ୍ଣନା କରିଅଛନ୍ତି ।

**ଥିରିକୁଦଗାମ**—(ତିନି ପ୍ରକାର ମସଲା) ଏତଦ୍‌ବ୍ୟତୀତ ଅଚରକ୍‌କୋ ଭାଇ, ଜନୈକ ଜୈନରାଜାଙ୍କ ରଚିତ ପଲଗୋଲ୍ ନାନରୁ, ଚରୁପଞ୍ଚ ମୂଲମ୍, ମୁଧୁ ମୋଲିକ-କଞ୍ଚି, ଇଲାଧି, ଇନ୍ନିଲଇ ବା କୈନ୍ନିଲଇ ପ୍ରଭୃତି କ୍ଷୁଦ୍ର କାବ୍ୟଗୁଡ଼ିକରେ ଜୀବନର ବହୁ ସତ୍ୟ, ଉପଦେଶଗର୍ଭକ ବାଣୀ, ପାପପୁଣ୍ୟ, ରାଜା-ରାଜନୀତି ଓ ପ୍ରେମ ସଂପର୍କୀୟ ମଧୁର ଅନୁଭୂତି ବର୍ଣ୍ଣିତ ହୋଇଅଛି ।

**ମହାକାବ୍ୟ ଯୁଗଳ**—ଖ୍ରୀ: ୨୦୦-୩୦୦ ମଧ୍ୟରେ ରଚିତ 'ଶିଲପ୍‌ପଧି କରମ' ଓ 'ମନିମେକଲଇ'କୁ ତାମିଲ ସାହିତ୍ୟର ଇଲିଅଡ୍ ଏବଂ ଓଡ଼େସୀ ଅଥବା ରାମାୟଣ ଓ ମହାଭାରତ ଭାବେ ଅଭିହିତ କରାଯାଇଥାଏ । ଶିଲପ୍‌ପଧି କରମ (ଶିରୋନାମାର ଅର୍ଥ କଙ୍କଣର କାହାଣୀ) ଜନୈକ ଚେର ରାଜପୁତ୍ର ତରୁଣ ବୟସରେ ସନ୍ନ୍ୟାସ ଅବଲମ୍ବନ କରି ଇଲଙ୍ଗୋ ଅଦିଗଲ ନାମରେ ପରିଚିତ ହେଲେ । ତାମିଲନାଡ଼ୁ ଓ ସିଂହଳରେ ସତୀତ୍ୱର ଦେବୀ ଭାବରେ ପୂଜିତ କନ୍ନଗୀଙ୍କ ସମ୍ବନ୍ଧୀୟ ଏହା ଏକ ଚମତ୍କାର କାହାଣୀ । ଏହା ତିନି ଭାଗରେ ବିଭକ୍ତ ଓ ପ୍ରତ୍ୟେକ ଭାଗ ତାମିଲନାଡ଼ୁର ତିନିଗୋଟି ବିଖ୍ୟାତ ରାଜଧାନୀ (ପାଣ୍ଡ୍ୟମାନଙ୍କର ମଦୁରାଇ, ଚୋଲ-ମାନଙ୍କର କାଭେରିପପ୍‌ପୁମ୍ପିଟିନମ, ଚେରମାନଙ୍କର ଭାଞ୍ଜି)କୁ ଉତ୍ସର୍ଗୀକୃତ । ଅଠର ଶହ ବର୍ଷ ପୂର୍ବରୁ ତାମିଲ ସମାଜର ପୂର୍ଣ୍ଣାଙ୍ଗ ଓ ଜୀବନ୍ତ ବିବରଣୀ ଏଥିରୁ ମିଳିଥାଏ । କବିଙ୍କର ଚାରୁକଳା ବିଶେଷତଃ ନୃତ୍ୟ, ସଙ୍ଗୀତସମ୍ପର୍କୀୟ ଗଭୀର ପାଣ୍ଡିତ୍ୟର ମଧ୍ୟ ପରିଚୟ ଏହି ମହାକାବ୍ୟରୁ ମିଳିଥାଏ । ଏଥିରେ ନାୟକନାୟିକାଙ୍କ ମନୋଜ୍ଞ ଚରିତ୍ରଚିତ୍ରଣ, ବିଭିନ୍ନ ଦୃଶ୍ୟର ବର୍ଣ୍ଣନା ଓ ଛବିଳ ବର୍ଣ୍ଣନା ଅପୂର୍ବ ।

ଅନ୍ୟତମ ମହାକାବ୍ୟ ମଣିମେକଲାଇ ଛତ୍ତନାରଙ୍କ ଦ୍ୱାରା ଲିଖିତ । ମଣି-ମେକଲାଇଙ୍କ ତ୍ୟାଗ ଓ ବୈରାଗ୍ୟମୟ ଜୀବନ-ଚରିତ ଏହାର ଉପଜୀବ୍ୟ ବିଷୟ । ମଣିମେକଲାଇ ହେଉଛନ୍ତି ଶିଲପ୍ପଧିକରଣମର ନାୟକ କୋଭଲାନ ଓ ତାହାଙ୍କ ପତ୍ନୀ ମାଧବୀଙ୍କ କନ୍ୟା । ଏହାର ଲେଖକ ବୌଦ୍ଧଧର୍ମାବଲମ୍ବୀ ଥିଲେ ଓ ଉକ୍ତ ଧର୍ମତତ୍ତ୍ୱକୁ ସେ ଏଥିରେ ପ୍ରାଞ୍ଜଳଭାବରେ ବର୍ଣ୍ଣନା କରିଅଛନ୍ତି ।

**ମଧ୍ୟଯୁଗ ( ୬୦୦-୧୨୦୦ )**—ପୂର୍ବୋକ୍ତ ମହାକାବ୍ୟ ଯୁଗଳ ରଚିତ ହେବାପରେ ୩ ଶତାବ୍ଦୀକୁ ତାମିଲ ସାହିତ୍ୟର ଅନ୍ଧକାରଯୁଗ କୁହାଯାଏ । ଏହାପରେ ଷଷ୍ଠ ଶତାବ୍ଦୀରୁ ତାମିଲ ସାହିତ୍ୟରେ ଭକ୍ତି କବିତାର ଧାରା ପ୍ରବାହିତ ହେବା ପରିଲକ୍ଷିତ ହୁଏ । ଯେତେବେଳେ ଜୈନ ଓ ବୌଦ୍ଧ ଧର୍ମର ପ୍ରଭାବ ପ୍ରବଳ-ତମ, ସେହି ସମୟରେ ହିଁ ଶୈବ ନୟନମାରଗଣ ଓ ବୈଷ୍ଣବ ଆଲଓ୍ୱାରଗଣ ଭକ୍ତି-ମୂଳକ ସଙ୍ଗୀତ ରଚନା କରି ପ୍ରଭୂତ ଜନପ୍ରିୟତା ଅର୍ଜନ କରିଥିଲେ । ଏ ଯୁଗର ଅନ୍ୟତମ ବିଶିଷ୍ଟ ପରିବର୍ତ୍ତନ ହେଉଛି ତାମିଲନାଡ଼ୁର ବହୁକାଳର ପ୍ରାଚୀନ ରାଜବଂଶର ପତନ ଓ ଦଶମ ଶତାବ୍ଦୀ ପର୍ଯ୍ୟନ୍ତ ପଲ୍ଲବ ରାଜାମାନଙ୍କ ଦ୍ୱାରା ତାମିଲ-ରାଜ୍ୟ ଅଧିକାର । ଏହି ପଲ୍ଲବ ରାଜାମାନେ ସଂସ୍କୃତ ସାହିତ୍ୟର ପ୍ରଧାନ ପୃଷ୍ଠପୋଷକ ଥିଲେ—ଏଣୁ ଏହାର ପରିଣତି ସ୍ୱରୂପ ବହୁତ ସଂସ୍କୃତ କାବ୍ୟ ତାମିଲଭାଷାରେ ଅନୂଦିତ ହୋଇଥିଲା । ତାମିଲଭାଷାରେ ସଂସ୍କୃତ ଶବ୍ଦର ସମ୍ମିଶ୍ରଣ ଓ ସଂସ୍କୃତ ଗ୍ରନ୍ଥମାନଙ୍କରୁ ଆହରଣ ପ୍ରତି ଅଧିକ ପୋଷକତା କରାଯାଇଥିଲା ।

**ଭକ୍ତିମୂଳକ ସାହିତ୍ୟ**—ଥିରୁଗ୍ନନ ସମ୍ବନ୍ଧର, ଥିରୁନଭୁକ୍କରସାର, ସୁନ୍ଦରାର ଏବଂ ମଣିକଭଚଗର ଏହି ଚାରିଜଣ ଶୈବଧର୍ମ ପ୍ରଚାରକଙ୍କୁ ନୟନମାର କୁହାଯାଏ । ବୈଷ୍ଣବଧର୍ମର ପ୍ରଚାରକ ବା ଆଲଓ୍ୱାରମାନଙ୍କ ସଂଖ୍ୟା ହେଉଛି ବାର—ସେମାନଙ୍କ ନାମ ପୋଏଗାଇ ଆଲଓ୍ୱାର, ପୁଧଥତ୍, ଥୋଣ୍ଡରାଡିପ୍ପୋଡ଼ି, ପେ, ଥିରୁମଲ୍ଲିସାଇ, ଥିରୁପ୍ପନ, ଅଣ୍ଡାଲ, ଥିରୁମଙ୍ଗାଇ, କୁଲଶେଖର, ପେରିୟ, ନମ୍ମ ଏବଂ ମଧୁର ବଭିୟାର । ଏହି ସନ୍ଥଗଣ ସମଗ୍ର ତାମିଲନାଡ଼ୁ ଅଞ୍ଚଳ ପରିଭ୍ରମଣ କରି ସେମାନଙ୍କ ରହସ୍ୟମୟୀ କବିତା ଓ ସ୍ଥାନୀୟ ଦେବଦେବୀଙ୍କ ଉଦ୍ଦେଶ୍ୟରେ ପ୍ରଶସ୍ତି-ଗୀତିକା ରଚନା କରିଥିଲେ । ସେମାନଙ୍କ ମତରେ ଈଶ୍ୱରଙ୍କ ଉଦ୍ଦେଶ୍ୟରେ ଭକ୍ତି ନିବେଦନ ହେଉଛି ପ୍ରଧାନ ଧର୍ମ—ତାହାକୁ ଉପଜୀବ୍ୟ କରି ସେମାନେ ସହସ୍ର ସହସ୍ର ଗୀତିକା ରଚନା କରିଥିଲେ । ଗଭୀର ହୃଦୟୋଚ୍ଛ୍ୱାସ ଓ ପ୍ରକାଶଭଙ୍ଗୀର ସରଳତା ଯୋଗୁ ତାହା ଅତ୍ୟନ୍ତ ମର୍ମସ୍ପର୍ଶୀ । ପରବର୍ତ୍ତୀ କାଳରେ ନମ୍ବିଏଣ୍ଡର ନମ୍ବି ଶୈବଭକ୍ତି କବିତାକୁ ଏଗାରଟି ଥିରୁମରାଇ ନାମରେ ସଂଗ୍ରହ କରିଥିଲେ ଓ ନାଥମୁନିଙ୍କ ଦ୍ୱାରା

ବୈଷ୍ଣବ ଭକ୍ତ କବିତାଗୁଡ଼ିକୁ 'ନଲାୟିରପ୍‌ପିର ବନ୍ଧମ୍' ନାମରେ ସଂଗୃହୀତ ହୋଇଥିଲା । ଏଥିରେ ୪୦୦୦ ଭକ୍ତିକବିତା ସନ୍ନିବିଷ୍ଟ ।

ଶୈବ ନୟନମାରଙ୍କ ସାତହଜାର ସଙ୍ଗୀତ ଦକ୍ଷିଣ-ଭାରତୀୟ ମନ୍ଦିରମାନଙ୍କରେ ୧୨ଶ ଶତାବ୍ଦୀରୁ ଏ ଯାବତ୍ ଗୀତ ହୋଇ ଆସୁଅଛି । ତାମିଲନାଡ଼ୁର ଦେଶଜ ରୀତିରେ ଲିଖିତ ଏଇସବୁ ସଙ୍ଗୀତରୁ ଦକ୍ଷିଣ-ଭାରତୀୟ କର୍ଣ୍ଣାଟକୀ ସଙ୍ଗୀତ ଉଦ୍ଭୂତ-ହୋଇଅଛି ବୋଲି ଅନେକଙ୍କର ମତ । ଏହା ବ୍ୟତୀତ ପ୍ରାୟ ଚାରି ହଜାର ଶୈବଭକ୍ତି-କବିତା ମଧ୍ୟ ବିଭିନ୍ନ ନୟନମାରଙ୍କ ଦ୍ୱାରା ରଚିତ ହୋଇଥିଲା । ସେକ୍‌କିଲାରଙ୍କ ରଚିତ (୭୨ଟି ସର୍ଗ ନିବନ୍ଧ) ପେରିଅ ପୁରାଣମ୍‌ରେ ତେଷଠି ଜଣ ଭକ୍ତଙ୍କ ଜୀବନଚରିତ ବର୍ଣ୍ଣିତ ହୋଇଅଛି । ଏହା ରାଜା କୁଲୋଥୁଙ୍ଗୀୟଙ୍କ (୧୧୩୩-୧୧୫୦) ରାଜତ୍ୱ କାଳରେ ରଚିତ ହୋଇଥିଲା । ଧାର୍ମିକ ଭାବନା ଓ କବିତ୍ୱର ସମନ୍ୱୟ ଏଥିରେ ପ୍ରକାଶିତ ହୋଇଅଛି । ମଧ୍ୟଯୁଗର ତାମିଲନାଡ଼ୁର ବିଭିନ୍ନ ଜାତି ଓ ଶ୍ରେଣୀଙ୍କର ରୀତିନୀତି, ଆଚାର ଆଚରଣର ବାସ୍ତବ ବର୍ଣ୍ଣନା ଯୋଗୁଁ ମଧ୍ୟ ଏହା ସୁପ୍ରସିଦ୍ଧ ।

**କାବ୍ୟମ ସମୂହ**—ତାମିଲ ସାହିତ୍ୟରେ ପାଞ୍ଚଟି ପ୍ରଧାନ ଓ ପାଞ୍ଚଟି ଗୌଣ କାବ୍ୟମ୍ ରଚନା ପରିଦୃଷ୍ଟ ହୁଏ । ପୂର୍ବରୁ ବର୍ଣ୍ଣିତ ମହାପୁରାଣ ଯୁଗଳ ଏହାର ଅନ୍ତର୍ଭୁକ୍ତ । ଅନ୍ୟ ତିନୋଟି ହେଉଛି 'ଜୀବକ ଚିନ୍ତାମଣି', 'ଭାଲୟାପାଥି' ଓ 'କୁଣ୍ଡଲ କେଶୀ' । ପାଞ୍ଚଗୋଟି ଗୌଣ କାବ୍ୟମ୍ ହେଉଛି, 'ଚୂଲାମଣି' 'ଉଦୟନ କଥାଇ', 'ୟଶୋଧାରା କାବ୍ୟମ୍' ଓ 'ନାଗକୁମାର କାବ୍ୟମ୍' । ଏହିସବୁ ଗ୍ରନ୍ଥ ଜୈନ ଓ ବୌଦ୍ଧକବିମାନଙ୍କର ରଚନା ଓ ଏଗୁଡ଼ିକରେ ଭକ୍ତିଧର୍ମ ପ୍ରଚାରର ପ୍ରଚେଷ୍ଟା ହୋଇଥିଲେ ହେଁ ସେଗୁଡ଼ିକର ସାହିତ୍ୟିକ ନୂତନତ୍ୱ ଯୋଗୁଁ ତାହା ସର୍ବବିଧ ସଂପ୍ରଦାୟର ଜନସାଧାରଣଙ୍କ ଦ୍ୱାରା ପଠିତ ଓ ଆଦୃତ ହୋଇଥାଏ ।

ଏହି ଯୁଗରେ ଜୈନ ଓ ଶୈବ ପଣ୍ଡିତମାନଙ୍କ ଦ୍ୱାରା ବହୁ ବ୍ୟାକରଣ, ଛନ୍ଦ, ଟୀକାଗ୍ରନ୍ଥ ଓ ଅଭିଧାନ ମଧ୍ୟ ପ୍ରଣୀତ ହୋଇଥିଲା । ଏହି ଯୁଗର କବିମାନଙ୍କ ମଧ୍ୟରୁ ନାରୀକବି ଅଭୈୟାର ସୁପ୍ରସିଦ୍ଧ । ସରଳ ଭାଷାରେ ଓ ସଂକ୍ଷେପରେ ବ୍ୟାବହାରିକ ଜ୍ଞାନ ନୀତିଶିକ୍ଷାମୂଳକ କାବ୍ୟ ରଚନା ଯୋଗୁଁ ସେ ତାମିଲନାଡ଼ୁରେ ଜନପ୍ରିୟ ।

ଏହି ଯୁଗର ସର୍ବଶ୍ରେଷ୍ଠ କୃତି ହେଉଛି କବି କମ୍ବନଙ୍କ ରଚିତ 'କମ୍ବ ରାମାୟଣ' । ଏହା ତାମିଲ-ସାହିତ୍ୟର ଏକ ଅମର ମହାପୁରାଣ । ଏହା ବାଲ୍ମୀକି ରାମାୟଣ ଅନୁସରଣରେ ରଚିତ ହୋଇଥିଲେ ହେଁ ଏଥିରେ କବିଙ୍କର ସ୍ୱକୀୟତା ଓ ସୃଜନ ପ୍ରତିଭାର ସମୁଜ୍ଜ୍ୱଳ ଦୃଷ୍ଟାନ୍ତ ପରିଲକ୍ଷିତ ହୁଏ । ତାମିଲଭାଷା ଉପରେ ସେ ଆପଣାର ଅସାଧାରଣ ଦକ୍ଷତା ଓ କୌଶଳ ପ୍ରଦର୍ଶନ କରିଛନ୍ତି । ବର୍ଣ୍ଣନା ଓ

ବ୍ୟାଖ୍ୟାରେ ତାହାଙ୍କର କୃତିତ୍ୱ ମଧ୍ୟ ଅତୁଳନୀୟ । ବିରୁତ୍ତମ୍ ବୃତ୍ତିରେ ଓ ଅତ୍ୟନ୍ତ ସୁଲଳିତ ଭାଷାରେ ଏହାକୁ ରଚନା କରି କବି ତାମିଲ-ସାହିତ୍ୟକୁ ଅଳଂକୃତ କରିଅଛନ୍ତି । କେତେକଙ୍କ ମତରେ କବି ୧୦ମ ଶତାବ୍ଦୀରେ ଓ ଅନ୍ୟ-କେତେକଙ୍କ ମତରେ ୧୨ଶ ଶତାବ୍ଦୀରେ ଜୀବିତ ଥିଲେ । କମ୍ବନଙ୍କ ସମକାଳୀନ କବି ଓଟ୍ଟକ କୁଥ୍‌ଥାର ରାମାୟଣର ଶେଷକାଣ୍ଡ ଉତ୍ତରରାମାୟଣ ରଚନା କରିଥିଲେ ।

**ଉତ୍ତର ମଧ୍ୟଯୁଗ** ( ଖ୍ରୀ: ୧୨୦୦-୧୭୫୦ ) —ଏ ଯୁଗର ତାମିଲ ସାହିତ୍ୟ ମୁଖ୍ୟତଃ ବହୁ ଗୌଣ କବି, ଟୀକାକାର, ଶୈବ ଓ ବୈଷ୍ଣବଧର୍ମ ପ୍ରଚାରକଙ୍କ ରଚନାବଳୀ ଦ୍ୱାରା ସମୃଦ୍ଧ ହୋଇଥିଲା । ତନ୍ମଧ୍ୟରୁ ଚତୁର୍ଦ୍ଦଶ 'ଶୈବସିଦ୍ଧାନ୍ତ ଶାସ୍ତ୍ର' ଅନ୍ୟତମ । କେତେକ ବୈଷ୍ଣବ ଆଚାର୍ଯ୍ୟ ମଣିପ୍ରବାଳମ୍ ଶୈଳୀରେ (ସଂସ୍କୃତ ଓ ତାମିଲ ଭାଷାର ସମ୍ମିଶ୍ରଣ) ଟୀକାଗ୍ରନ୍ଥମାନ ରଚନା କରିଥିଲେ । ରହସ୍ୟବାଦୀ ଗୀତି-କବିତା ରଚନାରେ ଅଷ୍ଟାଦଶ ସିଦ୍ଧରଙ୍କ ନାମ ମଧ୍ୟ ଉଲ୍ଲେଖଯୋଗ୍ୟ । ଏହି ଯୁଗରେ ବହୁ ସଂସ୍କୃତ ପୁରାଣ ତାମିଲ ଭାଷାରେ ଅନୂଦିତ ହୋଇଥିଲା ଓ କେତେକ ନୂତନ ପୁରାଣ ମଧ୍ୟ ରଚିତ ହୋଇଥିଲା । କାଳିଦାସଙ୍କ 'ରଘୁବଂଶ' ଅରସକେଶରୀଙ୍କ ଦ୍ୱାରା ଅନୂଦିତ ହୋଇଥିଲା । ତାମିଲନାଡ଼ୁର ଶୈବମଠଗୁଡ଼ିକ ଦର୍ଶନ, ଧର୍ମ ଓ ଜ୍ଞାନ-ବିତରଣର କେନ୍ଦ୍ର ଥିଲା । ଏହି ସ୍ଥାନରେ ସାହିତ୍ୟ ଗ୍ରନ୍ଥଗୁଡ଼ିକ ଯେପରି ସୁରକ୍ଷିତ, ବ୍ୟାଖ୍ୟାତ ଏବଂ ଆଲୋଚିତ ହେଉଥିଲା, ସେହିପରି ଏହି ପୀଠମାନଙ୍କରୁ ତାହା ଉପରେ ବହୁ ଟୀକାଗ୍ରନ୍ଥ ମଧ୍ୟ ପ୍ରଣୀତ ହେଉଥିଲା । କୌଣସି କୌଣସି ଯୋଗ୍ୟ ବ୍ୟକ୍ତି ବା ମଠାଧୀଶ ମଧ୍ୟ ବହୁ ନୂତନ ଗ୍ରନ୍ଥ ପ୍ରଣୟନ କରିଥିଲେ । ଏଣୁ ତାମିଲ-ସାହିତ୍ୟର ବିକାଶ ଲାଗି ଏହି ସବୁ ମଠମାନଙ୍କର ଦାନ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

କୁମାର ଗୁରୁପରର ଏବଂ ଶିବପିପ୍ରକସାର ଏ ଯୁଗର ପ୍ରସିଦ୍ଧତମ କବି । କୁମାର ଗୁରୁପରର ସପ୍ତଦଶ ଶତାବ୍ଦୀରେ ଜୀବିତ ଥିଲେ । ଶିବପିପ୍ରକସାର ଧର୍ମ ଓ ସାହିତ୍ୟମୂଳକ ତେଇଶଟି ଗ୍ରନ୍ଥ ରଚନା କରିଥିଲେ । ବୈଷ୍ଣବଭକ୍ତ ପିଲ୍ଲାଇ ପେରୁମଲ ଆୟାଙ୍ଗାରଙ୍କ ଆଠଟି କାବ୍ୟ 'ଅଷ୍ଟ ପିରବନ୍ଧମ' ମଧ୍ୟ ଏ ଯୁଗର ଅନ୍ୟତମ କୃତି ।

**ଆଧୁନିକ ଯୁଗ** ( ୧୭୫୦-୧୯୫୦ )—ଦକ୍ଷିଣଭାରତକୁ ମୁସଲମାନ-ମାନଙ୍କ ଆଗମନ ଫଳରେ ମୁସଲମାନ ସଂପ୍ରଦାୟରୁ କବିମାନଙ୍କର ଆବିର୍ଭାବ ହେଲା । ବ୍ରିଟିଶ ରାଜତ୍ୱକାଳରେ, ପାଶ୍ଚାତ୍ୟ ସାହିତ୍ୟର ପ୍ରଭାବ ଫଳରେ ବିଶେଷତଃ ଇଂରେଜୀ ସାହିତ୍ୟ ଅଧ୍ୟୟନ ଯୋଗୁଁ ତାମିଲ ସାହିତ୍ୟର ବହୁ ବିକାଶ ସାଧିତ ହୋଇଥିଲା । ମୁସଲମାନ କବିମାନଙ୍କ ମଧ୍ୟରୁ ଉମରୁ ପୁଲଭାରଙ୍କ ରଚିତ ମହମ୍ମଦଙ୍କ

ଜୀବନଚରିତମୂଳକ ପୁରାଣ 'ଶୀରପ ପୁରାଣମ୍' ଓ ମସ୍ତାନ ସାହେବଙ୍କ ଭକ୍ତିମୂଳକ ଗୀତିକବିତା, ଦାର୍ଶନିକ କବିତାସମୂହ ପ୍ରସିଦ୍ଧ । ବହୁ ୟୁରୋପୀୟ ପଣ୍ଡିତ ମଧ୍ୟ ତାମିଲ ଭାଷାରେ କାବ୍ୟ, ବ୍ୟାକରଣ, ଅଭିଧାନ ଓ ଗବେଷଣାତ୍ମକ ରଚନା ପ୍ରଣୟନ କରି ଏହି ସାହିତ୍ୟକୁ ସମୃଦ୍ଧ କରିଅଛନ୍ତି । ସେମାନଙ୍କ ମଧ୍ୟରୁ ଇଟାଲୀୟ କନଷ୍ଟାଣ୍ଟିଅସ ବେସିଚଙ୍କ ନାମ ଅଗ୍ରଗଣ୍ୟ । ବାଇବେଲର କେତେକ ଘଟଣାକୁ ନେଇ ସେ ତାମିଲରେ ଉଚ୍ଚକୋଟୀର କାବ୍ୟ ପ୍ରଣୟନ କରିବା ବ୍ୟତୀତ ତାମିଲ-ଭାଷାର ଅଭିଧାନ ଓ ଲାଟିନ୍‌ଭାଷାରେ ଦୁଇଟି ତାମିଲ ବ୍ୟାକରଣ ପ୍ରଣୟନ କରି-ଥିଲେ । ପ୍ରସିଦ୍ଧ ଭାଷାତତ୍ତ୍ୱବିତ୍ ଡକ୍ଟର କଲ୍‌ଡ଼ଓ୍ୱେଲଙ୍କ ଦ୍ରାବିଡ଼ ଭାଷାର ତୁଳନାତ୍ମକ ଭାଷାତତ୍ତ୍ୱ ଆଲୋଚନା ମଧ୍ୟ ସବିଶେଷ ଉଲ୍ଲେଖଯୋଗ୍ୟ । ଏତଦ୍‌ବ୍ୟତୀତ ରେଭରେଣ୍ଡ ଡକ୍ଟର ଜି. ୟୁ. ପୋପ୍ ତାମିଲଭାଷାର ବହୁ ପ୍ରସିଦ୍ଧ ଅମର ରଚନାବଳୀକୁ ଇଂରାଜୀରେ ଅନୁବାଦ କରିଥିଲେ ।

ଥିରୁକୁଡ଼ା ରସପ୍‌ପକ-କଭିରାୟରଙ୍କ ରଚିତ 'କୁତ୍ରାଲକ କୁରଭଞ୍ଜି' ତାମିଲ ସାହିତ୍ୟର ଏକ ଅମର ରଚନାଭାବେ ପରିଗୃହୀତ । କୁତ୍ରାଲମର ଦେବତା ଓ ଦେବାଳୟର ପ୍ରଶସ୍ତି ନାଟକୀୟ ରୀତିରେ ଏଥିରେ ବର୍ଣ୍ଣିତ । ଏଥିରେ କବି କୁତ୍ତାଲମର ସୁପ୍ରସିଦ୍ଧ ଜଳପ୍ରପାତର ବର୍ଣ୍ଣନା ଅପୂର୍ବ କବିତ୍ୱପୂର୍ଣ୍ଣ ରୀତିରେ କରିଅଛନ୍ତି । ଏହା ବ୍ୟତୀତ ସେ ତେରଟି ଗ୍ରନ୍ଥର ରଚୟିତା । ଅରୁଣାଚଳକ୍ କଭିରାୟର ରାମାୟଣର ବିଷୟବସ୍ତୁକୁ 'ରାମ ନାଦଗମ୍' ଗୀତିନାଟ୍ୟ ରୂପେ ପରିବେଷଣ କରି ଅମରତ୍ୱ ଲାଭ କରିଅଛନ୍ତି ।

ଊନବିଂଶ ଶତାବ୍ଦୀରେ ଧାର୍ମିକ ଓ ଆଧ୍ୟାତ୍ମିକ ନେତୃତ୍ୱ ନେଇଥିଲେ ରାମଲିଙ୍ଗ ସ୍ୱାମୀଗଲ । ଉଚ୍ଚକୋଟିର ହୃଦୟସ୍ପର୍ଶୀ ଭକ୍ତିକବିତା ରଚୟିତା ଭାବରେ ମଧ୍ୟ ତାଙ୍କ ସ୍ଥାନ ବହୁ ଊର୍ଦ୍ଧ୍ୱରେ । ତାହାଙ୍କ ରଚିତ 'ଜୀଉକାରୁଣ୍ୟ ଓଲ୍‌କମ୍' ବିଗତ ଶତାବ୍ଦୀର ଶ୍ରେଷ୍ଠ ଗଦ୍ୟ ରଚନା ଭାବେ ପରିଗଣିତ । ରହସ୍ୟବାଦୀ ସାଧୁ ଓ ସର୍ବ-ଧର୍ମ ସମନ୍ୱୟବାଦୀ ଭାବେ ସେ ଉଚ୍ଚ ସମ୍ମାନର ଅଧିକାରୀ । ଊନବିଂଶ ଶତାବ୍ଦୀର ବହୁ ଗ୍ରନ୍ଥ ରଚୟିତା ଭାବେ ମୀନାକ୍ଷିସୁନ୍ଦରମ୍ ପିଲଇ ସ୍ୱନାମଧନ୍ୟ । ସେ ଷୋହଳଟି ପୁରାଣ, ନଅଟି ପିଲେଟାମିଲ, ଏଗାରଟି 'ଅନ୍ଧାଧି', ଦୁଇଟି 'କଲମ୍ବକ', ଚାରୋଟି 'ମଲଇ', ଗୋଟିଏ 'କୋଭାଇ', ଗୋଟିଏ 'ଉଲ' ଏବଂ ଗୋଟିଏ 'ଲଲଇ' ରଚନା କରିଥିଲେ ।

ସିଂହଳର ମଧ୍ୟ ବହୁ ପଣ୍ଡିତ ଓ ଲେଖକ ବହୁ ଗ୍ରନ୍ଥ ରଚନା କରି ତାମିଲ ସାହିତ୍ୟକୁ ସମୃଦ୍ଧ କରିଅଛନ୍ତି । ଜାଫନାରୁ ଆଗତ, ଅରୁମୁଗା ନଭଲର ତାହାଙ୍କ ବହୁ ଗଦ୍ୟରଚନା ଦ୍ୱାରା ଆଧୁନିକ ତାମିଲ ଗଦ୍ୟରୀତିର ବିକାଶ ସାଧନ କରିଥିଲେ ।

ଷି: ଦାମୋଦରମ୍ ପିଲଇ ତାମିଲ ମହାକାବ୍ୟମାନଙ୍କର ସଂପାଦନା କ୍ଷେତ୍ରରେ ପଥପ୍ରଦର୍ଶକଭାବେ ସ୍ୱନାମଧନ୍ୟ ହୋଇଅଛନ୍ତି । ଜାଫ୍‌ନାରୁ ଆଗତ ଅନ୍ୟାନ୍ୟ ଲେଖକମାନଙ୍କ ମଧ୍ୟରୁ କଥିରୈଭେଲ ପିଲଇ, ମୁରୁଗେଶ ପଣ୍ଡିଆରଙ୍କ ନାମ ମଧ୍ୟ ସ୍ମରଣୀୟ ।

ଭେଦନାୟଗମ ପିଲଇଙ୍କ "ପିରଧନ ମୁଦାଲିଅର ଚରିତ୍ରମ୍"କୁ ତାମିଲ ସାହିତ୍ୟର ପ୍ରଥମ ଉପନ୍ୟାସ ଭାବରେ ଗଣନା କରାଯାଇଥାଏ । ଅଧ୍ୟାପକ ପି. ସୁନ୍ଦରମ୍ ପିଲଇ ସେକସପିଅରଙ୍କ ନାଟ୍ୟରୀତି ଅନୁସରଣ କରି ଅମିତ୍ରାକ୍ଷର ଛନ୍ଦରେ 'ମନୋନ୍ମନୀୟମ୍' ନାମକ ଏକ ନାଟକ ରଚନା କରି ଆଧୁନିକ ନାଟକ ରଚନାର ସୂତ୍ରପାତ କରିଥିଲେ । ତାହାଙ୍କର ଗବେଷଣାତ୍ମକ ପ୍ରବନ୍ଧାବଳୀ ମଧ୍ୟ ଉଚ୍ଚକୋଟିର ବିବେଚିତ ହୋଇଥାଏ । ଭି. ଜି. ସୂର୍ଯ୍ୟନାରାୟଣ ଶାସ୍ତ୍ରୀୟାର କବି ଓ ନାଟ୍ୟକାର ଭାବେ ସୁପ୍ରସିଦ୍ଧ । ସେକସପିଅରଙ୍କ ନାଟ୍ୟରୀତି ଅନୁସରଣରେ ସେ 'ରୂପବତୀ', 'କଳାବତୀ' 'ମନବିଜୟମ୍' ନାମକ ତିନୋଟି ନାଟକ ରଚନା କରିଥିଲେ । ଉନ୍ନତ ସରସ ଶୈଳୀ ଯୋଗୁଁ ତାହାଙ୍କ ଗଦ୍ୟରଚନାବଳୀ ମଧ୍ୟ ଉଚ୍ଚ ପ୍ରଶଂସିତ । ତାମିଲ ଭାଷାର ଇତିହାସ 'ତାମିଲ ମଲିୟିନ ଭରଲରୁ' ରଚନା କରି ସେ ଏ କ୍ଷେତ୍ରରେ ମାର୍ଗ ପ୍ରଦର୍ଶକର ଗୌରବ ଅର୍ଜନ କରିଅଛନ୍ତି ।

ବିଂଶ ଶତାବ୍ଦୀରେ ବହୁ ପ୍ରତିଭାବାନ ଲେଖକ ଆବିର୍ଭୂତ ହୋଇ ତାମିଲ ସାହିତ୍ୟର ଗଦ୍ୟ, ପଦ୍ୟ, ନାଟକ, ଉପନ୍ୟାସ, ପତ୍ରିକା ସାହିତ୍ୟକ୍ଷେତ୍ରରେ ବିପୁଳ ବିକାଶ ସାଧନ କରିଅଛନ୍ତି । ଡକ୍ଟର୍ ସ୍ୱାମୀନାଥ ଆୟାର ବହୁ ପ୍ରାଚୀନ ସାହିତ୍ୟଗ୍ରନ୍ଥ ଆବିଷ୍କାର କରି ତାହାର ସଂପାଦନା, ବ୍ୟାଖ୍ୟା, ତଥ୍ୟସମ୍ବଳିତ ଭୂମିକା ଓ ପ୍ରକାଶ ଦ୍ୱାରା ତାମିଲସାହିତ୍ୟର ମହୋପକାର ସାଧନ କରିଅଛନ୍ତି । ବିଶେଷତଃ ପ୍ରାଚୀନ ସଂଗମ ସାହିତ୍ୟ ସଂପର୍କରେ ତାଙ୍କର ଧୈର୍ଯ୍ୟ, ଅନ୍ୱେଷଣ ଓ ଅଧ୍ୟବସାୟ ଅତୁଳନୀୟ । ବହୁବିଧ ବିଷୟରେ ସରଳ ପ୍ରାଣବନ୍ତ ଶୈଳୀରେ ଗଦ୍ୟ ରଚନା କରି ସେ ଆଧୁନିକ ତାମିଲ ସାହିତ୍ୟକୁ ସମୃଦ୍ଧ କରିଅଛନ୍ତି ।

ସ୍ୱାମୀ ଭେଦାଚଲମ ଓରଫ ମରାଇମଲାଇ ଆଦିଗଲ ଶୁଦ୍ଧ ତାମିଲଭାଷାରେ ବହୁ ଉଚ୍ଚକୋଟୀର ଗଦ୍ୟରଚନା, ଗବେଷଣାତ୍ମକ ନିବନ୍ଧ, କବିତା ଓ ଉପନ୍ୟାସ ରଚନା କରିଯାଇଅଛନ୍ତି । ତାହାଙ୍କର କାଳିଦାସଙ୍କର ଶାକୁନ୍ତଳର ଅନୁବାଦ ଅତୀବ ଉଚ୍ଚକୋଟୀର । ସଙ୍ଗମ ସାହିତ୍ୟ ବିଷୟରେ ସେ ସର୍ବପ୍ରଥମେ ତଥ୍ୟମୂଳକ ସମାଲୋଚନା ଗ୍ରନ୍ଥ ପ୍ରଣୟନ କରିଥିଲେ । ଟି. ଭି. କଲ୍ୟାଣସୁନ୍ଦର ମୁଦାଲିଅରଙ୍କର ଉଚ୍ଚ ଆଦର୍ଶ ସମ୍ବଳିତ ଗଦ୍ୟ ଓ ପଦ୍ୟ ଉଚ୍ଚପ୍ରଶଂସିତ । ଚଳିତ ଶତାବ୍ଦୀର ସମାଲୋଚକ, ଗଦ୍ୟରଚୟିତାମାନଙ୍କ ମଧ୍ୟରୁ କାର୍ତ୍ତିକେୟ ମୁଦାଲିଅର୍, ଶ୍ରୀନିବାସ ପିଲଇ, ରାଘବ

ଆୟଙ୍ଗାର, ସୁବ୍ରମନୟମ୍ ପିଲଇ ଓ ସୋମସୁନ୍ଦର ଭାରଥିୟରଙ୍କର ନାମ ଉଲ୍ଲେଖ-ଯୋଗ୍ୟ ।

ସୁବ୍ରମନ୍ୟ ଭାରଥୀଙ୍କୁ ଆଧୁନିକ ତାମିଲସାହିତ୍ୟର ସର୍ବଶ୍ରେଷ୍ଠ କବି ଭାବରେ ପରିଗଣନା କରାଯାଇଥାଏ । ଭାରତ ସେତେବେଳେ ସାମାଜିକ, ରାଜନୈତିକ ଓ ସାଂସ୍କୃତିକ ବିପ୍ଳବ ମଧ୍ୟଦେଇ ଗତି କରୁଥାଏ । ତାମିଲର ଦେଶପ୍ରେମୀ ପଣ୍ଡିତ ଚିଦମ୍ବର ପିଲ୍ଲଇଙ୍କ ବିପ୍ଳବୀ ରାଜନୈତିକ ଜୀବନ ଏବଂ ଜାତୀୟ ଆନ୍ଦୋଳନ ଭାରତୀଙ୍କ ହୃଦୟାବେଗ ସ୍ପନ୍ଦିତ କରିଥିଲା । ଏଣୁ ତାଙ୍କର ସମସାମୟିକ ଲେଖକଗଣ ପୁରାତନ ପାରଂପରିକ ନିରର୍ଥକ ବିଷୟକୁ ନେଇ ସନ୍ତୁଷ୍ଟ ଥିବାବେଳେ ସେ ସମକାଳୀନ ଦୁଃଖଦ ସମସ୍ୟାଗୁଡ଼ିକୁ ଉତ୍ତମରୂପେ ହୃଦୟଙ୍ଗମ କରିପାରିଥିଲେ । ଭାରତୀ ସ୍ୱାଧୀନତାର କବି ବ୍ୟକ୍ତିଗତ ସ୍ୱାଧୀନତା, ଜାତୀୟ ସ୍ୱାଧୀନତା ଏବଂ ସମଗ୍ର ମାନବଜାତିର କୌଳିକ ଏକତା ତାହାଙ୍କ କବିତାରେ ଉତ୍ତମରୂପେ ଅଭିବ୍ୟକ୍ତ ଲଭ କରିଅଛି । ଜାତୀୟ ସ୍ୱାଧୀନତା ସଂଗ୍ରାମ ସହିତ ତାହାଙ୍କ କବିତାଗୁଡ଼ିକ ଘନିଷ୍ଠ-ଭାବେ ସଂପୃକ୍ତ । ବିଶ୍ୱଭ୍ରାତୃତ୍ୱ ଆକାଂକ୍ଷା ଓ ସୁଗଭୀର ଅନୁଭୂତିରୁ ତାହାଙ୍କର ଧାର୍ମିକ ଓ ଦାର୍ଶନିକ କବିତାଗୁଡ଼ିକ ସୃଷ୍ଟି । ଶିଶୁମାନଙ୍କ ଲାଗି ଏକ କବିତାସଂଗ୍ରହ 'ପାପ୍‌ପ ପାଟ୍ଟୁ' ଓ ପ୍ରାଚୀନ ରୀତିରେ ନୀତିଶିକ୍ଷାପ୍ରଦ 'ପୁଢ୍ୟ ଅଥିଚୁଡ଼ୀ' ନାମକ କବିତାଗ୍ରନ୍ଥ ମଧ୍ୟ ସେ ରଚନା କରିଥିଲେ । ବଳିଷ୍ଠ ଭାଷାରେ ମହାଭାରତର ଏକ ଘଟଣାକୁ ନେଇ "ପଞ୍ଚାଲଶପଥମ୍" ନାମକ ଏକ କ୍ଷୁଦ୍ର ପୌରାଣିକ କାବ୍ୟ ରଚନା କରିଥିଲେ । ଖ୍ରୀ: ୧୯୨୧ରେ ତାହାଙ୍କ ମୃତ୍ୟୁ ପରେ ତାହାଙ୍କ ସାହିତ୍ୟିକ ପ୍ରତିଭାର ମହତ୍ତ୍ୱ ଅଧିକରୁ ଅଧିକ ଅନୁଭୂତ ହେଲା ଓ ତାହାଙ୍କ 'କନ୍ନନ ପାଟ୍ଟୁ' ଏବଂ 'କୁଇଲ'ର ମହତ୍ତ୍ୱ ଅଧିକ ସ୍ୱୀକୃତିଲଭ କଲା । ଅଧୁନା ପ୍ରାୟ ପ୍ରତ୍ୟେକ ତାମିଲ ଭାଷାଭାଷୀର ଭାରତୀ ହୋଇଛନ୍ତି ପ୍ରିୟତମ କବି । ତାହାଙ୍କ ସଙ୍ଗୀତ ଓ କବିତା ପ୍ରାୟ ପ୍ରତ୍ୟେକ ସଭାରେ ଗାୟକଙ୍କ କଣ୍ଠରୁ ଶୁଣିବାକୁ ମିଳେ ।

ପ୍ରସିଦ୍ଧ ରାଜନୀତିଜ୍ଞ ଚିଦାମ୍ବରମ ପିଲଇ ନୀତି ଓ ଦର୍ଶନସମ୍ବଳିତ କେତେକ କାବ୍ୟପ୍ରଣେତା ଭାବେ ସୁଖ୍ୟାତି ଅର୍ଜନ କରିଅଛନ୍ତି । ତେଲଭି କେଶବରାୟ ମୁଦାଲିଅର ବିଭିନ୍ନ ପ୍ରବନ୍ଧ 'କମ୍ବନ' ଓ 'ଥିରୁଭାଲ୍‌ଭାର' ବିଷୟରେ ଆଲୋଚନାତ୍ମକ ରଚନା ଯୋଗୁଁ ପ୍ରସିଦ୍ଧ । ଅଭିନୟ ଉପଯୋଗୀ ବହୁ ନାଟକରଚୟିତା ଭାବେ ପି. ସମ୍ବନ୍ଧ ମୁଦାଲିଅର ଓ ଭାରତୀଙ୍କ ପରେ କବିଭାବେ ନମକକଲ ରାମଲିଙ୍ଗମ ପିଲଇ, ଭାରତୀ ଧସନ, ଧେସିଗ ବିନାୟକମ୍ ପିଲଇ ଜନପ୍ରିୟତା ଅର୍ଜନ କରିଅଛନ୍ତି ।

ଖ୍ରୀଷ୍ଟପୂର୍ବ ଯୁଗରୁ ତାମିଲ ଏକ ସମୃଦ୍ଧ ସାହିତ୍ୟଭାବେ ବିକଶିତ ହୋଇ-ଥିଲେ ହେଁ ଦକ୍ଷିଣଭାରତକୁ ଖ୍ରୀଷ୍ଟିୟାନମାନଙ୍କ ଆଗମନ ପୂର୍ବରୁ ତାମିଲଭାଷାରେ

ଗଦ୍ୟ ସାହିତ୍ୟ ରଚିତ ହୋଇ ନ ଥିଲା । ରେଭରେଣ୍ଡ ବେସଚିଙ୍କ ଦ୍ୱାରା ଗଦ୍ୟ ରଚନାର ସୂତ୍ରପାତ ହୋଇଥିଲା ଓ ପରବର୍ତ୍ତୀ କାଳରେ ରାମଲିଙ୍ଗ ସ୍ୱାମୀଗଲ, ଅରୁମୁଗା ନଭଲାର, ଭେଦନାୟଗମ୍ ପିଲାଇଙ୍କ ରଚନାବଳୀ ଦ୍ୱାରା ଗଦ୍ୟସାହିତ୍ୟ ବହୁଳ ଭାବରେ ବିକଶିତ ହୋଇଥିଲା । ରାଜନୈତିକ, ସାମାଜିକ ଓ ସାଂସ୍କୃତିକ ଆନ୍ଦୋଳନ ଯୋଗୁଁ ଓ ତାମିଲଭାଷାରେ ସମ୍ବାଦପତ୍ରମାନଙ୍କର ପ୍ରଚଳନ ଯୋଗୁ ଏହାର ଆବଶ୍ୟକତା ମଧ୍ୟ ବୃଦ୍ଧିପାଇଥିଲା । ସ୍ୱଦେଶଭକ୍ତ ଚିଦାମ୍ବରମ୍ ପିଲାଇ, ଭାରତୀ, ମରିମଲାଇ ଆଦିଗଲ ଏବଂ ସାମ୍ବାଦିକମାନଙ୍କ ମଧ୍ୟରୁ କଲ୍ୟାଣସୁନ୍ଦର ମୁଦାଲିୟର ଏବଂ କଲକି କୃଷ୍ଣମୂର୍ତ୍ତି ଆଧୁନିକ ତାମିଲ ସାହିତ୍ୟର ଗଦ୍ୟ ରଚୟିତା ଭାବେ ସୁପ୍ରସିଦ୍ଧ ।

ରାଜମ୍ ଆୟାର ଓ ମାଧବୟ୍ୟ ଆଧୁନିକ ତାମିଲ ଉପନ୍ୟାସକୁ ବିକଶିତ କରିଅଛନ୍ତି । ବଙ୍ଗଳା, ମରାଠୀ, ଇଂରାଜୀରୁ ବହୁ ଉପନ୍ୟାସ ତାମିଲରେ ଅନୂଦିତ ହୋଇଅଛି । ତାମିଲରେ ବହୁ ବିଳମ୍ବରେ ଆଧୁନିକ କଥାସାହିତ୍ୟର ସୂତ୍ରପାତ ହୋଇଥିଲା । ଅଷ୍ଟାଦଶ ଶତାବ୍ଦୀରେ ବେସଚି ଏବଂ ଊନବିଂଶ ଶତାବ୍ଦୀରେ ଭେଦନାୟକମ ପିଲାଇ ଓ ବୀର ସାମୀ ଚେଟିଆର ପ୍ରଭୃତି ବହୁ କ୍ଷୁଦ୍ରଗଳ୍ପ ଲେଖିଥିଲେ ହେଁ ଚଳିତ ଶତାବ୍ଦୀର ପ୍ରାରମ୍ଭରେ ହିଁ ଗଳ୍ପରଚନାଶୈଳୀର ପ୍ରକୃତ ବିକାଶ ସାଧିତ ହୋଇଥିଲା । କବି ଭାରତୀ ଏବଂ ସ୍ୱଦେଶପ୍ରେମୀ ଭି. ଭି. ଏସ. ଆୟାର, ପୁଧୁମେପ ପିତ୍ତୁଥନ, କୁପେ, ରାଜଗୋପାଲନ ଏବଂ କଲକି କୃଷ୍ଣମୂର୍ତ୍ତି ଉତ୍କୃଷ୍ଟ ଗଳ୍ପରଚୟିତା ଭାବେ ସୁପ୍ରସିଦ୍ଧ । ଅନ୍ୟ ଜାତି ଓ ସଂସ୍କୃତିର ଘନିଷ୍ଠ ସଂପର୍କରେ ଆସିବା ଫଳରେ ବହୁ ବୈଦେଶିକ ଉପାଦାନକୁ ଆଧୁନିକ ତାମିଲ ସାହିତ୍ୟରେ ଗ୍ରହଣ କରାଯାଇଅଛି ଓ ବାସ୍ତବତାକୁ ହିଁ ଆଦର୍ଶ ଭାବରେ ଗ୍ରହଣ କରାଯାଉଅଛି । ବହୁ ନୂତନ ବିଷୟ ଓ ରଚନାରୀତି ଅନୁସୃତ ହେବାଯୋଗୁଁ ଆଧୁନିକ ତାମିଲସାହିତ୍ୟ ସମୃଦ୍ଧତର ହେଉଅଛି ।

---

# ମାଲୟଲମ୍ ସାହିତ୍ୟ

ଏହି ଭାଷାଭାଷୀଙ୍କ ସଂଖ୍ୟା ପ୍ରାୟ ୧୪ ନିୟୁତ । ପଶ୍ଚିମଘାଟ ପର୍ବତମାଳା ଓ ଆରବ ସାଗର ମଧ୍ୟବର୍ତ୍ତୀ କେରଳ ନାମରେ ପରିଚିତ ଏକ ଦୀର୍ଘ ସଂକୀର୍ଣ୍ଣ ରମଣୀୟ ଭୂଖଣ୍ଡର ଅଧିବାସୀଙ୍କର ଏହି ଭାଷା ମାତୃଭାଷା । ଏହି ରାଜ୍ୟ ବିଷୟରେ ପ୍ରାଚୀନ ଗ୍ରୀସ୍‌ବାସୀ ଅବହିତ ଥିଲେ । ଅଶୋକଙ୍କ ଶିଳାଲିପି, ରାମାୟଣ, ମହାଭାରତ ଓ କାଳିଦାସଙ୍କ କାବ୍ୟ ପ୍ରଭୃତିରେ ଏହି ରାଜ୍ୟର ଉଲ୍ଲେଖ ଦେଖାଯାଏ । ମାତ୍ର ନବମ ଶତାବ୍ଦୀ ପର୍ଯ୍ୟନ୍ତ ଏହି ରାଜ୍ୟର ସାହିତ୍ୟ ସଂପର୍କରେ କୌଣସି ବିବରଣୀ ମିଳେ ନାହିଁ । ଚତୁର୍ଦ୍ଦଶ ଶତାବ୍ଦୀରେ ଏହି ଭାଷା ପୂର୍ଣ୍ଣବିକଶିତ ରୂପ ଲାଭ କରିଥିଲା । ବ୍ୟାକରଣ ଓ ଭାଷାତତ୍ତ୍ୱମୂଳକ "ଲୀଲାଥିଲକମ୍" ନାମକ ଏକ ଗ୍ରନ୍ଥରେ ସନ୍ନିବିଷ୍ଟ ମାଲୟଲମ୍ ଭାଷାର ବହୁ ଉଦାହରଣରୁ ଏହା ସୁସ୍ପଷ୍ଟରୂପେ ପ୍ରମାଣିତ ହୁଏ ।

ମଧ୍ୟଯୁଗୀୟ ତାମିଲ ସାହିତ୍ୟରୁ ମାଲୟଲମ୍ ଉଦ୍ଭୂତ ହୋଇଅଛି ବୋଲି କେହି କେହି ମତପ୍ରଦାନ କରିଥାଆନ୍ତି । ମାତ୍ର ଏହା ପ୍ରମାଣଯୋଗ୍ୟ ମନେହୁଏ ନାହିଁ । ଉଦ୍ଭବ କାଳରୁ ଏହି ଭାଷାରେ ବହୁ ମୌଳିକ ଶବ୍ଦ, ଛନ୍ଦ ଓ ବ୍ୟାକରଣଗତ ନିୟମର ସ୍ୱାତନ୍ତ୍ର୍ୟ ଦେଖିବାକୁ ମିଳିଥାଏ । ପରବର୍ତ୍ତୀକାଳରେ ମାଲୟଲମ୍ ଭାଷା ସଂସ୍କୃତ ଭାଷା ଦ୍ୱାରା ପ୍ରଭାବିତ ହେଲା ଓ ମାଲୟଲମ୍ କବିତାରେ ମୁଖ୍ୟତଃ ସଂସ୍କୃତ ଛନ୍ଦ ବ୍ୟବହୃତ ହେବାକୁ ଲାଗିଲା । ତଥାପି ସମାନ୍ତରାଳ ଭାବରେ ମୌଳିକ ମାଲୟଲମ୍ ଛନ୍ଦ ଓ ଶବ୍ଦାବଳୀରେ କାବ୍ୟ ରଚନା ମଧ୍ୟ ଅବ୍ୟାହତ ରହିଥିଲା ।

ପଞ୍ଚଦଶ ଶତାବ୍ଦୀରେ ଚେରୁସେରିଙ୍କ ରଚିତ "କୃଷ୍ଣଗାଥା" ରଚନା କାଳରୁ ମାଲୟଲମ୍ ସାହିତ୍ୟରେ କ୍ଲାସିକାଲ୍ ବା ଆଦିଯୁଗର ସୂତ୍ରପାତ ହୋଇଥିଲା । ଏହା ପୂର୍ବରୁ ମାଲୟଲମ୍ ସାହିତ୍ୟରେ ତିନିଗୋଟି ରୂପ ଦେଖିବାକୁ ମିଳିଥାଏ । ପ୍ରଥମ—ତାମିଲ ପ୍ରଭାବିତ ସାହିତ୍ୟ, ଦ୍ୱିତୀୟ—ସଂସ୍କୃତ ପ୍ରଭାବିତ ସାହିତ୍ୟ, ତୃତୀୟ—ଆଞ୍ଚଳିକ ଲୋକଗୀତି ଓ ମାଲୟଲମ୍‌ର ନିଜସ୍ୱ କାବ୍ୟରୂପ । ୧୬ଶ ଶତାବ୍ଦୀରେ ଏଜୁଥଚାନ୍ ପୂର୍ବୋକ୍ତ ତ୍ରିବିଧ ଶୈଳୀର ସମନ୍ୱୟରେ ଏହି ଭାଷାକୁ ବଳିଷ୍ଠ ଭିତ୍ତିଉପରେ ପ୍ରତିଷ୍ଠିତ କରିଥିଲେ । ତାମିଲ ସାହିତ୍ୟର କମ୍ବନ ଅଥବା ହିନ୍ଦୀସାହିତ୍ୟର ତୁଳସୀ ଦାସଙ୍କ ସହ ମାଲୟଲମ୍ ସାହିତ୍ୟରେ ଏଜୁଥଚାନଙ୍କ କୃତି ତୁଳନୀୟ । ତାହାଙ୍କ ରଚିତ "ଅଧ୍ୟାତ୍ମ ରାମାୟଣମ୍" ଓ 'ମହାଭାରତମ୍' ଏହି ସାହିତ୍ୟରେ ସୁପ୍ରସିଦ୍ଧ ତଥା

ଜନପ୍ରିୟ । ଏତଦ୍‌ବ୍ୟତୀତ ତାହାଙ୍କର ଆଉ କେତେଗୋଟି ଗ୍ରନ୍ଥ ମଧ୍ୟ ଉଚ୍ଚ କବିତ୍ୱ ଓ ଦାର୍ଶନିକ ଭାବନା ଲାଗି ସୁବିଖ୍ୟାତ ।

ସପ୍ତଦଶ ଶତାବ୍ଦୀର ମଧ୍ୟଭାଗରୁ ପ୍ରାୟ ଦୁଇ ଶହ ବର୍ଷ ପର୍ଯ୍ୟନ୍ତ 'କଥାକଳି' ସାହିତ୍ୟର ପ୍ରାଧାନ୍ୟ ଦେଖିବାକୁ ମିଳେ । ଏହି ସାହିତ୍ୟ ରଚୟିତାମାନଙ୍କ ମଧ୍ୟରୁ କୋଟ୍ଟର କରା, ଥମ୍ପୂରନ୍, କୋଟାୟାମ୍, କେରଳ ବର୍ମା, ଉନ୍ନାଇ ଭରିୟର ଓ ଇରୟିମନ ଥମ୍ପିଙ୍କ ନାମ ସୁପ୍ରସିଦ୍ଧ ।

ମଧ୍ୟଯୁଗରେ ବହୁ ଲେଖକ ଆବିର୍ଭୂତ ହୋଇ ମାଲୟାଲମ୍ ସାହିତ୍ୟକୁ ସମୃଦ୍ଧ କରିଥିଲେ । ସେମାନଙ୍କ ମଧ୍ୟରୁ ପ୍ରସିଦ୍ଧତମ କବି ଭାବରେ କୁଞ୍ଚନ ନମ୍ବିଆରଙ୍କୁ ଗ୍ରହଣ କରାଯାଏ । ଅଷ୍ଟାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ସେ ଜୀବିତ ଥିଲେ । 'ତୁଲ୍ଲଲପଟ୍ଟ୍' ନାମକ କାବ୍ୟ ରୂପର ପ୍ରବର୍ତ୍ତକ ଭାବରେ ଓ କେରଳ ସାହିତ୍ୟର ପ୍ରଥମ ଲୋକକବି ଭାବରେ ସେ ପରିଗୃହୀତ । ପୁରାଣମାନଙ୍କରୁ କଥାବସ୍ତୁ ଗ୍ରହଣ କରି ତାହାକୁ ସ୍ୱତନ୍ତ୍ର ଓ ଭିନ୍ନରୂପ ଦେବାରେ ସେ ଅସାଧାରଣ କୃତିତ୍ୱ ଦର୍ଶାଇ ଯାଇଅଛନ୍ତି । ପୌରାଣିକ ବିଷୟବସ୍ତୁ ଅବଲମ୍ବନ କରି ସମାଜକୁ ବ୍ୟଙ୍ଗାତ୍ମକ ସମାଲୋଚନା କରିବାରେ ତାହାଙ୍କ କୃତିତ୍ୱ ଅତୀବ ମହତ୍ତ୍ୱପୂର୍ଣ୍ଣ । ପରିକଳ୍ପନାରେ ମୌଳିକତା ଓ ଉଚ୍ଚାଙ୍ଗ ସାହିତ୍ୟିକ ଗୁଣଗୁଡ଼ିକ ଯୋଗୁଁ ତାହାଙ୍କ କାବ୍ୟ 'କ୍ଲାସିକ୍' ମର୍ଯ୍ୟାଦା ଲାଭ କରିଅଛି ।

ଊନବିଂଶ ଶତାବ୍ଦୀ ଆଧୁନିକ ସାହିତ୍ୟର ପ୍ରସ୍ତୁତିପର୍ବ । ଚତୁର୍ଦ୍ଦଶ ଶତାବ୍ଦୀରୁ ମାଲୟାଲମ୍ ସାହିତ୍ୟରେ ଗଦ୍ୟରଚନା ସୁପ୍ରଚଳିତ ହୋଇଥିଲା । କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରର ଟୀକାରୁ ତାହାର ନିଦର୍ଶନ ମିଳିଥାଏ । ମାତ୍ର ଊନବିଂଶ ଶତାବ୍ଦୀରେ ହିଁ ଯଥାର୍ଥତଃ ଗଦ୍ୟରେ ସାହିତ୍ୟ ସୃଷ୍ଟି ହୋଇଥିଲା । ଏହି ସମ୍ପର୍କରେ ଖ୍ରୀଷ୍ଟୀୟଧର୍ମପ୍ରଚାରକମାନଙ୍କର ଉଦ୍ୟମ ସର୍ବାଦୌ ଉଲ୍ଲେଖଯୋଗ୍ୟ । କେରଳରେ ଶିକ୍ଷାର ବିସ୍ତାର ଓ ମାଲୟାଲମ୍‌ରେ ଖ୍ରୀଷ୍ଟଧର୍ମ ମୂଳକ ଗ୍ରନ୍ଥର ଅନୁବାଦ କ୍ଷେତ୍ରରେ ସେମାନେ ହିଁ ପଥ ପ୍ରଦର୍ଶକ ସ୍ୱରୂପ ।

ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ନବୀନ ଶିକ୍ଷାପଦ୍ଧତିର ପ୍ରଭାବ ଅନୁଭୂତ ହୋଇଥିଲା । ନବପ୍ରତିଷ୍ଠିତ ବିଦ୍ୟାଳୟମାନଙ୍କ ଲାଗି ବିଭିନ୍ନ ବିଷୟକ ପାଠ୍ୟପୁସ୍ତକର ଆବଶ୍ୟକତା ଏହି ସମୟରେ ଅନୁଭୂତ ହେଲା । ଏହାର ପରିଣାମସ୍ୱରୂପ କେତେକ ସଂସ୍କୃତ ମହାକାବ୍ୟକୁ ମାଲୟାଲମ୍‌ରେ ଅନୁବାଦ କରାଯାଇଥିଲା ଓ ସଂସ୍କୃତ କାବ୍ୟ-ମାନଙ୍କ ଅନୁକରଣରେ କେତେକ ମୌଳିକ କାବ୍ୟ ମଧ୍ୟ ପ୍ରଣୀତ ହୋଇଥିଲା । ଏହି ଯୁଗର ବିଶିଷ୍ଟ କବି ଭାବରେ 'ମୟୂର ସନ୍ଦେଶ' ପ୍ରଣେତା କେରଳବର୍ମାଙ୍କ (ମୃ.୧୯୧୫) ନାମ ସ୍ମରଣୀୟ ।

ସମାନ୍ତରାଳଭାବରେ ଏହି ଯୁଗରେ ଅନ୍ୟ ଏକ ପ୍ରବୃତ୍ତି ମଧ୍ୟ ମାଲୟାଲମ୍ ସାହିତ୍ୟରେ ଦେଖାଦେଇଥିଲା । କେତେକ ଲେଖକ ଜନସାଧାରଣଙ୍କ କଥୋପକଥନର ଭାଷାରେ ସାହିତ୍ୟସୃଷ୍ଟି କରିବାକୁ ଲାଗିଲେ । ଏତାଦୃଶ ଲେଖକମାନଙ୍କ ମଧ୍ୟରୁ ଭେନମନି ନମ୍ବୁଦ୍ରିପାଦ ଓ କୋଦୁଙ୍ଗଲ୍ଲୁରର ରାଜାମାନଙ୍କ ନାମ ସର୍ବାଦୌ ଉଲ୍ଲେଖଯୋଗ୍ୟ । କୋଦୁଙ୍ଗଲ୍ଲ କୁନ୍ହିକୁଟ୍ଟନ ଥମ୍ପୂରନ ଓ ତାଙ୍କର ଭାଇ ଉଭୟେ ସଂସ୍କୃତ ଭାଷାରେ ସୁପଣ୍ଡିତ ଥିଲେହେଁ, କେରଳ ବର୍ମାଙ୍କ ସଦୃଶ ସଂସ୍କୃତ ବ୍ୟାକରଣ ଆଦର୍ଶରେ କାବ୍ୟ ଲେଖିବାରେ ମନୋଯୋଗୀ ନ ହୋଇ ସରଳ ଭାଷାରେ ହିଁ କାବ୍ୟ ରଚନା କରିଥିଲେ । ଭେନମନି ସେହିପରି କେରଳର ଦେଶଜ ଓ ଗ୍ରାମ୍ୟଶବ୍ଦାବଳୀକୁ ବ୍ୟବହାର କରି ମାଲୟାଲମ୍ ଭାଷାକୁ ନୂତନ ଶକ୍ତି ଓ ପ୍ରାଣପ୍ରାଚୁର୍ଯ୍ୟ ପ୍ରଦାନ କରିଥିଲେ । ଏହି କବିମାନଙ୍କ ରଚନାବଳୀରେ ମୌଳିକତାର ଅଭାବ ଥିଲେ ହେଁ ଏହିମାନଙ୍କୁ ଆଧୁନିକ ମାଲୟାଲମ୍ ସାହିତ୍ୟର ଜନକ ଭାବରେ ଗ୍ରହଣ କରାଯାଏ ।

ଏହି କାଳର ଗଦ୍ୟରେ ମଧ୍ୟ ଅନୁରୂପ ପ୍ରବୃତ୍ତି ପରିଲକ୍ଷିତ ହୁଏ । ପଞ୍ଚଦଶ ଓ ଷୋଡ଼ଶ ଶତାବ୍ଦୀରେ ମାଲୟାଲମ୍ ସାହିତ୍ୟରେ ଯେଉଁ କେତେକ ଗଦ୍ୟସାହିତ୍ୟ ରଚିତ ହୋଇଥିଲା, ତାହାର ଶୈଳୀରେ ସଂସ୍କୃତ ଗଦ୍ୟଶୈଳୀର ଯଥେଷ୍ଟ ପ୍ରଭାବ ପରିଲକ୍ଷିତ ହେଉଥିଲା । କେରଳ ବର୍ମାଙ୍କ ଗଦ୍ୟରଚନାକୁ ମଧ୍ୟ ତାହାର ଆଦର୍ଶ ଭାବରେ ଗ୍ରହଣ କରାଯାଏ ; ମାତ୍ର ସଂସ୍କୃତ ପ୍ରଭାବିତ ଶୈଳୀ ଆଦୌ ଜନପ୍ରିୟତା ଅର୍ଜନ କରିପାରି ନ ଥିଲା । ଗଦ୍ୟସାହିତ୍ୟ ସୃଷ୍ଟିର ଉତ୍ସସ୍ୱରୂପ ସମ୍ବାଦପତ୍ର ଓ ଅନ୍ୟାନ୍ୟ ପତ୍ରପତ୍ରିକାମାନଙ୍କ ପକ୍ଷରେ ଏପରି ଶୈଳୀ ମଧ୍ୟ ଅତ୍ୟନ୍ତ କୃତ୍ରିମ ଓ ଅସୁବିଧାଜନକ ବିବେଚିତ ହୋଇଥିଲା । ଏହି ସମୟରେ ସରଳ ଲୋକପ୍ରଚଳିତ ଭାଷାର ଗଦ୍ୟରଚନା କରି ତାହାକୁ ଜନପ୍ରିୟ କରିଥିଲେ ଚନ୍ଦୁ ମେନନ । ଚନ୍ଦୁ ମେନନଙ୍କ ସୁପ୍ରସିଦ୍ଧ ଉପନ୍ୟାସ 'ଇନ୍ଦୁଲେଖା' ଏହା ହିଁ ପ୍ରମାଣିତ କରିଦେଲା ଯେ ଲୋକପ୍ରଚଳିତ ସରଳ ଭାଷାରେ ମଧ୍ୟ ସରସ ଓ ଉଚ୍ଚାଙ୍ଗ ସାହିତ୍ୟ ସୃଷ୍ଟି ସମ୍ଭବପର ।

ଗଦ୍ୟ ଓ ପଦ୍ୟ ଉଭୟ କ୍ଷେତ୍ରରେ ଶୁଦ୍ଧଭାଷା ଓ ଲୋକଭାଷା ମଧ୍ୟରେ ସମନ୍ୱୟ ସ୍ଥାପନ କରି ଏକ ନୂତନ ରଚନାରୀତିର ପ୍ରବର୍ତ୍ତକ ଭାବରେ ଏ. ଆର୍. ରାଜରାଜ ବର୍ମାଙ୍କ ନାମ ସ୍ମରଣୀୟ । କବି, ଆଲୋଚକ ଓ ମାଲୟାଲମ୍ ଭାଷାର ପ୍ରଥମ ବ୍ୟାକରଣ-ରଚୟିତା ଭାବରେ ସେ ସୁପ୍ରସିଦ୍ଧ । ତାହାଙ୍କ ରଚିତ 'କେରଳ ପାଣିନୀୟମ୍' ମାଲୟାଲମ୍ ଭାଷାର ପ୍ରାମାଣିକ ବ୍ୟାକରଣ ଭାବରେ ଏବେ ମଧ୍ୟ ପରିଗୃହୀତ ହୋଇଥାଏ । ଆଧୁନିକ ମାଲୟାଲମ୍ ଭାଷାକୁ ସେ ସଂସ୍କୃତ ତଥା ଅତି ଗ୍ରାମ୍ୟ-ଭାଷାର ପ୍ରଭାବରୁ ମୁକ୍ତକରି ବ୍ୟବସ୍ଥିତ କରିଯାଇଛନ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଆଧୁନିକ ମାଲୟାଲମ୍ ସାହିତ୍ୟର ଏହି ପ୍ରସ୍ତୁତପର୍ବ ଖ୍ରୀ: ୧୯୧୫ ପର୍ଯ୍ୟନ୍ତ ପରିବ୍ୟାପ୍ତ । ଏହି ସମୟ ମୌଳିକ ସାହିତ୍ୟ ସୃଷ୍ଟି ତଥା ସାହିତ୍ୟର ଗୁଣାତ୍ମକ ବିକାଶ ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ ନ ହେଲେ ହେଁ ଏହା ଥିଲା ସଂଗଠନର ଓ କର୍ମଚଞ୍ଚଳତାର ଯୁଗ । ସାହିତ୍ୟର ବିବିଧ ବିଭାଗ ଏହି ସମୟରେ ପ୍ରଚୁର ସୃଷ୍ଟି ସମ୍ପଦ ଦ୍ୱାରା ଋଦ୍ଧିମନ୍ତ ହୋଇଥିଲା । ସଂସ୍କୃତ ଓ ଇଂରାଜୀରୁ କାବ୍ୟ, ନାଟକ, ପୁରାଣ ପ୍ରଭୃତି ବହୁ ଗ୍ରନ୍ଥ ଏହି ସମୟରେ ମାଲୟାଲମ୍ ଭାଷାରେ ଅନୂଦିତ ହୋଇଥିଲା । ମୌଳିକ ଉପନ୍ୟାସ ଭାବରେ ଚନ୍ଦୁ ମେନନଙ୍କ 'ଇନ୍ଦୁଲେଖା', 'ଶାରଦା'; ସି. ଭି. ରମଣ ପିଲାଇଙ୍କ 'ମାର୍ତ୍ତଣ୍ଡ ବର୍ମା' ପ୍ରଭୃତି ରଚନାମାନଙ୍କର ନାମ ଉଲ୍ଲେଖଯୋଗ୍ୟ ।

ପ୍ରାଚୀନ ନାଟ୍ୟଶୈଳୀରେ ନବୀନ ଓ ଯୁଗୋପଯୋଗୀ ବିଷୟବସ୍ତୁର ଯୋଜନାକୁ ନାଟକ ରଚନାକ୍ଷେତ୍ରରେ ଏକ ନୂତନ ପଦକ୍ଷେପ ଭାବରେ ଗ୍ରହଣ କରାଯାଇପାରେ । କୋଚୁନ୍ନୀ ଥମ୍ପୁରନଙ୍କ 'କଲ୍ୟାଣୀ' ଓ ମାଭେଲିକ୍କର କୋଚପ୍ପନ ଥରକ୍କନଙ୍କ 'ମରିଅମ୍ମ ନାଟକ'ର ନାମ ଏ ସମ୍ପର୍କରେ ଉଲ୍ଲେଖଯୋଗ୍ୟ । କୁଂଜିରମନ ନାୟନାର 'କେଶରୀ' ଛଦ୍ମନାମରେ ବହୁ ହାସ୍ୟରସାତ୍ମକ କ୍ଷୁଦ୍ର ପ୍ରବନ୍ଧ ରଚନା କରି ପ୍ରବନ୍ଧ-ସାହିତ୍ୟକୁ ଜନପ୍ରିୟ କରାଇ ପାରିଥିଲେ । ପ୍ରାଚୀନ ଓ ନବାଗତ କବିମାନଙ୍କ ରଚନା ସମ୍ପର୍କରେ ପାଶ୍ଚାତ୍ୟ ମାନଦଣ୍ଡରୁ ସାହିତ୍ୟିକ ଆଲୋଚନା କରି ସୁଖ୍ୟାତି ଲାଭ କରିଥିଲେ ପି. କେ. ନାରାୟଣ ପିଲେ ଓ ଅପ୍ପନ୍ତପୋ । ସ୍ଥୂଳତଃ ଏହି ପ୍ରସ୍ତୁତି ଓ ଉଦ୍ୟମ ଫଳରେ ଭାଷା ସମୃଦ୍ଧ, ପ୍ରସାରଣଶୀଳ, ବିକାଶ ଉପଯୋଗୀ ହୋଇଥିଲା । ନୂତନ ସାହିତ୍ୟ ରୂପ ଓ ଆଙ୍ଗିକର ପ୍ରଚଳନ, ନୂତନ ଭାବଧାରାର ଅଭିବ୍ୟକ୍ତି ସାହିତ୍ୟିକ ଉଦ୍ୟମ ଲାଗି ଲେଖକମାନଙ୍କୁ ପ୍ରଭୂତ ପ୍ରେରଣା ଦେଇଥିଲା ।

ଅବଶ୍ୟ ଏହା ମଧ୍ୟ ସ୍ୱୀକାର୍ଯ୍ୟ ଯେ ଅନୁବାଦ ବ୍ୟତୀତ ଯେଉଁ ବିପୁଳ ସାହିତ୍ୟ ଏ ଯୁଗରେ ରଚିତ ହୋଇଥିଲା, ତାହାର ସ୍ଥାୟିତ୍ୱ ଗୁଣ କମ ଥିଲା । ଏ ଯୁଗରେ ରଘୁବଂଶ ଓ ନୈଷଧ ସଦୃଶ ମହାକାବ୍ୟ ଧାରାରେ ବହୁ କବି କାବ୍ୟ ରଚନା କରି ପାଣ୍ଡିତ୍ୟ ଓ କବିତ୍ୱ ପ୍ରଦର୍ଶନ କରିଯାଇଅଛନ୍ତି । ଏହି ସବୁ କାବ୍ୟ ଭବିଷ୍ୟତରେ କେବଳ ସାହିତ୍ୟିକ କୌତୂହଳ ନିବାରଣ ଲାଗି ପଠିତ ହେବାର ସମ୍ଭାବନା ସମ୍ପନ୍ନ ହେଲେ ହେଁ, ଏହାର ଉଦ୍ୟମ ଯେ ଭାଷାକୁ ସମୃଦ୍ଧ କରିବାରେ ସହାୟତା କରିଅଛି, ଏଥିରେ ସନ୍ଦେହର ଅବକାଶ ନାହିଁ ।

**ଆଧୁନିକ ଯୁଗ** :—କୁମାରନ୍ ଆସାନଙ୍କ 'ନଳିନୀ'ର ପ୍ରକାଶନରୁ ସାହିତ୍ୟିକ ରୁଚି ପରିବର୍ତ୍ତନର ପ୍ରଥମ ସୂଚନା ମିଳିଥାଏ । ଏହା ଏକ ପ୍ରଣୟପ୍ରଧାନ କ୍ଷୁଦ୍ର କବିତା । ସମୁନ୍ନତ ଜୀବନ ଉପଲବ୍ଧିରେ ବ୍ୟକ୍ତିଗତ ପ୍ରେମ କିପରି ସୁମହତ ହୋଇପାରିଥିଲା, ତାହା ହିଁ ଏଥିରେ ସରସ ଓ ଦକ୍ଷତାର ସହିତ ଚିତ୍ରିତ । ଅତୀତର

ଗତାନୁଗତିକ ଓ ସଂସ୍କୃତ ପ୍ରଭାବିତ ନାୟକନାୟିକାଶ୍ରୟୀ ଶୃଙ୍ଗାର ବର୍ଣ୍ଣନା ଠାରୁ ଏହା ଥିଲା ସର୍ବତୋଭାବେ ପୃଥକ । ସେହିପରି ଅତୀତର ଗତାନୁଗତିକ, ଆଳଙ୍କାରିକ ଶବ୍ଦାଡ଼ମ୍ବର ବର୍ଣ୍ଣନାଶୈଳୀକୁ ପରିହାର କରି କୁମାରନ୍ ଆସାନ ସ୍ୱଚ୍ଛ, ମାର୍ଜିତ ପ୍ରକାଶଭଙ୍ଗୀ ଓ ସୂକ୍ଷ୍ମଭାବ ବ୍ୟଞ୍ଜନା ପ୍ରଚଳନ କରିଥିଲେ । ଏଣୁ ଏହି 'ନଳିନୀ' କାବ୍ୟକୁ ନୂତନ ପ୍ରବୃତ୍ତିର ପ୍ରଥମ ଅଭିବ୍ୟକ୍ତି ଭାବରେ ଗ୍ରହଣ କରାଯାଇଥାଏ । ଏହା ପ୍ରକାଶିତ ହେବାର ଅଳ୍ପ କେତେ ବର୍ଷ ମଧ୍ୟରେ ରୀତିକାଳୀନ ଶୈଳୀ ଅନାଦୃତ ହୋଇଯାଇଥିଲା ଓ ମାଲୟାଲମ୍ ସାହିତ୍ୟରେ ପ୍ରକୃତ ନବଯୁଗ ସୃଷ୍ଟି ହୋଇଥିଲା ।

ଭାଲଥୋଲଙ୍କୁ ଏହି ନବଯୁଗର ଶ୍ରେଷ୍ଠ କବି ଭାବରେ ଗ୍ରହଣ କରାଯାଏ । ତାହାଙ୍କ ରଚିତ 'ଓରୁଚରିତମ୍' (ଗୋଟିଏ ଚରିତ) ୧.୯୧୫ରେ ପ୍ରକାଶିତ ହୋଇ କାବ୍ୟକ୍ଷେତ୍ରରେ ବୈପ୍ଲବିକତା ସୃଷ୍ଟି କରିଥିଲା । ସର୍ବାଦୌ ସେ ପ୍ରାଚୀନ ରୀତିରେ ବାଲ୍ମୀକି ରାମାୟଣର ଆକ୍ଷରିକ ପଦ୍ୟାନୁବାଦ ଓ 'ଚିତ୍ରାଯୋଗମ୍' ନାମକ ୧୮ ସର୍ଗ ବିଶିଷ୍ଟ ଏକ ମହାକାବ୍ୟ ରଚନା କରିଥିଲେ । ମାତ୍ର ଦେଶବ୍ୟାପୀ ପ୍ରସାରିତ ଜାତୀୟ ଜାଗରଣ ହିଁ ତାହାଙ୍କ ସାହିତ୍ୟିକ ଜୀବନରେ ପରିବର୍ତ୍ତନ ଆଣିଥିଲା । ସେତେବେଳେ ପ୍ରଥମ ବିଶ୍ୱଯୁଦ୍ଧ ଦେଶବାସୀଙ୍କୁ ଜାତୀୟ ଜାଗରଣ ଲାଗି ଉଦ୍‌ବୁଦ୍ଧ କରିଥିଲା ଓ ସର୍ବଜ ଜନସାଧାରଣ ଏକ ନୂତନ ଜୀବନ ଲାଗି ପ୍ରୟାସୀ ହୋଇଥିଲେ । ଭାଲଥୋଲ୍ ଏହି ନବଜୀବନ ଲାଭର ଆକାଂକ୍ଷା ଓ ଜାତୀୟ ଭାବନାକୁ ସାହିତ୍ୟରେ ପ୍ରତିଫଳିତ କରିଥିଲେ । ତାହାଙ୍କ ଜାତୀୟ ଭାବନା କେବଳ ପରିହାରମୂଳକ ବା ନେତି-ବାଚକ ନ ଥିଲା । ଏହାଥିଲା ଆଦର୍ଶନିଷ୍ଠ ଓ ମନୋହର । ସଂସ୍କୃତ ଛନ୍ଦରୀତିକୁ ପରିହାର କରି ପ୍ରାଚୀନ ମାଲୟାଲମ୍ ଛନ୍ଦରେ ସେ କାବ୍ୟ ରଚନା କରିବାକୁ ଲାଗିଲେ । ପ୍ରାୟ ଦଶ ବର୍ଷ ପର୍ଯ୍ୟନ୍ତ ଜାତୀୟ ଜୀବନର ଗୁରୁତ୍ୱପୂର୍ଣ୍ଣ ବିଷୟ, ସାମାଜିକ ଓ ଆର୍ଥନୀତିକ ଅସଙ୍ଗତି ପ୍ରଭୃତିକୁ ଉପଜୀବ୍ୟ କରି ସେ ନିରବଚ୍ଛିନ୍ନ ଭାବରେ ବହୁ ଉଚ୍ଚାଙ୍ଗ କାବ୍ୟ ରଚନା କରିଥିଲେ । ଏହିପରି ଏକ ଯୁଗରେ ଭାଲଥୋଲ କେବଳ ଜାତୀୟତା ଓ ସାମାଜିକ ଅସନ୍ତୋଷକୁ ନେଇ କାବ୍ୟକବିତା ଲେଖି ନ ଥିଲେ । ଏହି ସମୟରେ ରଚିତ ତାହାଙ୍କର ସର୍ବଶ୍ରେଷ୍ଠ କୃତି 'ମାଗଡାଲେନା ମରିୟମ୍'ରେ ତାହାର ବ୍ୟତିକ୍ରମ ଦେଖିବାକୁ ମିଳିଥାଏ । ମେରି ମାଗଡାଲେନଙ୍କ ଜୀବନ ଓ ଧର୍ମାନ୍ତର ଗ୍ରହଣ ହିଁ ଏହି କାବ୍ୟର କଥାବସ୍ତୁ । ଯୀଶୁଖ୍ରୀଷ୍ଟଙ୍କୁ କେନ୍ଦ୍ରକରି ଏଥିରେ ସ୍ୱର୍ଗୀୟ ଶାନ୍ତିର ଯେଉଁ ପରିମଣ୍ଡଳ ଚିତ୍ରିତ ହୋଇପାରିଅଛି, ତାହା ଅତୁଳନୀୟ ।

ନବଯୁଗର ଶ୍ରେଷ୍ଠ ପ୍ରବର୍ତ୍ତକମାନଙ୍କ ମଧ୍ୟରୁ ତିନିଜଣଙ୍କୁ ଶ୍ରେଷ୍ଠ ସ୍ଥାନ ଦିଆଯାଇଥାଏ । ସେମାନେ ହେଉଛନ୍ତି ଭାଲଥୋଲ୍, କୁମାରନ ଆସାନ, ଉଲ୍ଲୁର ପରମେଶ୍ୱର ଆୟାର । ଉଲ୍ଲୁର ଥିଲେ ସୁପଣ୍ଡିତ । ପ୍ରାଚୀନ ରୀତିର କାବ୍ୟ

ଶୈଳୀରେ ସେ ପ୍ରଥମେ 'ଉମା କେରଳମ୍' ନାମକ ଏକ ମହାକାବ୍ୟ ରଚନା କରିଥିଲେ । ସେ ମଧ୍ୟ ନବଯୁଗର ପ୍ରବାହରେ ଅନୁପ୍ରାଣିତ ହୋଇଥିଲେ । ତଥାପି ତାଙ୍କର ଦୃଷ୍ଟି ଥିଲା ପଶ୍ଚାତ୍ ଅଭିମୁଖୀ । ପୁରାଣସାହିତ୍ୟରୁ କଥାବସ୍ତୁ ଆହରଣ କରି ଓ ଆଳଙ୍କାରିକ ସମାସବହୁଳ ସଂସ୍କୃତ ଭାଷାରେ ସେ କାବ୍ୟ ରଚନା କରିଯାଇଛନ୍ତି । ତାହାଙ୍କ 'ପିଙ୍ଗଳା', 'କର୍ଣ୍ଣଭୂଷଣମ୍' କାବ୍ୟ ତାହାର ପ୍ରକୃଷ୍ଟ ଉଦାହରଣ । ମାତ୍ର ପୂର୍ବୋକ୍ତ କାରଣରୁ ହିଁ ତାହାଙ୍କ ରଚନା ଜନପ୍ରିୟତା ଲାଭ କରିପାରି ନ ଥିଲା ।

କୁମାରନ ଆସାନଙ୍କ ସାହିତ୍ୟିକ କୃତି ଥିଲା ଏହାଠାରୁ ଭିନ୍ନ । ନବ-ଜାଗରଣର ବାର୍ତ୍ତା ତାହାଙ୍କୁ ଗଭୀର ଭାବରେ ଅନୁପ୍ରାଣିତ କରିଥିଲା । ତେଣୁ ସେ ପରଂପରାକୁ ସଂପୂର୍ଣ୍ଣଭାବରେ ପରିହାର କରିବା ବିଷୟରେ ସଂପୂର୍ଣ୍ଣ ସଚେତନ ଥିଲେ । ଏପରି କି ତାହାଙ୍କ ପ୍ରଥମ ରଚନା "ଭିଣାପୁଭୁ" (ପତିତ ପୁଷ୍ପ)ରୁ ମଧ୍ୟ ତାହା ହିଁ ସ୍ପଷ୍ଟରୂପେ ପ୍ରତିଭାତ ହୁଏ । 'ନଳିନୀ' ଓ 'ଲୀଳା' ନାମକ ତାହାଙ୍କ ରଚିତ ଦୁଇଟି ପ୍ରାଥମିକ କାବ୍ୟ ଅତିଶରୀରୀ ପ୍ରେମକୁ ଭିତ୍ତିକରି ରଚିତ ଓ ତହିଁରୁ ତାଙ୍କର ସମୁଚ୍ଚ କବିତ୍ୱର ପରିଚୟ ମିଳିଥାଏ । ଏହାପରେ ସେ ଯେତେବେଳେ ସାମାଜିକ ବିଷୟବସ୍ତୁକୁ ଅବଲମ୍ବନ କରି କାବ୍ୟରଚନା କରିବାରେ ବ୍ରତୀ ହୋଇଥିଲେ ସେତେବେଳେ ହିଁ ତାହାଙ୍କର କବିତ୍ୱର ସର୍ବୋତ୍ତମ ବିକାଶ ସାଧିତ ହୋଇଥିଲା । ତାହାଙ୍କର "ଦୁରବସ୍ଥା", 'ଚଣ୍ଡାଳଭିକ୍ଷୁ' ଓ 'କରୁଣା' ପ୍ରଭୃତି ଗ୍ରନ୍ଥଗୁଡ଼ିକ ଶ୍ରେଷ୍ଠକୃତି ଭାବେ ବିବେଚିତ ହୁଏ । ପ୍ରଥମୋକ୍ତ ଦୁଇଟି କାବ୍ୟରେ ବହୁଯୁଗ ବ୍ୟାପୀ ସାମାଜିକ କୁସଂସ୍କାରର ଶିକାର ଏକ ସମ୍ପ୍ରଦାୟର କରୁଣ ଜୀବନଧାରା ରୂପାୟିତ ହୋଇଛି । ଏକ ବ୍ରାହ୍ମଣୀ 'ମୋପ୍ଲା' ବିପ୍ଳବ ସମୟରେ ତା'ର ଗୃହ ଓ ପରିବାର-ବର୍ଗଙ୍କୁ ହରାଇ କିପରି ଦୁରବସ୍ଥାରେ ପଡ଼ି ଏକ ଅସ୍ପୃଶ୍ୟର ପତ୍ନୀଭାବରେ କାଳଯାପନ କରିଛି, ତାହା ହିଁ 'ଦୁରବସ୍ଥା' କାବ୍ୟର ବିଷୟବସ୍ତୁ । ସୁଗଭୀର ସହାନୁଭୂତି ଓ ଆନ୍ତରିକତା ପୂର୍ଣ୍ଣ ଏହି କାବ୍ୟଟି ପାଠକ ହୃଦୟରେ କରୁଣା ଓ ସୌନ୍ଦର୍ଯ୍ୟର ପ୍ରଭାବ ବିସ୍ତାର କରିଥାଏ । ତାହାଙ୍କର ଅନ୍ୟ ଏକ କାବ୍ୟ 'ଚନ୍ତାଭିଷ୍ଟା ଜାୟା ସୀତା"ରେ ସୀତାଙ୍କ ମୁଖରେ ଯେପରି କବି ନାରୀଜନୋଚିତ ସ୍ୱାଭାବିକ ଭାବନାକୁ ଅଭିବ୍ୟକ୍ତ ଦେଇଛନ୍ତି, ତାହା ରକ୍ଷଣଶୀଳ ବ୍ୟକ୍ତିମାନଙ୍କ ଦ୍ୱାରା ସମାଲୋଚିତ ହେଲେ ହେଁ ଏକ ଉଚ୍ଚକୋଟୀର କାବ୍ୟ ଭାବେ ପରିଗଣିତ ହୁଏ । ଜୀବନ୍ତ ଚରିତ୍ର ସୃଷ୍ଟିରେ ହିଁ ତାହାଙ୍କର ସର୍ବାଧିକ କୃତିତ୍ୱ ନିହିତ ।

ମାଲୟଲମ୍ କାବ୍ୟ ଏହି ରଥୀତ୍ରୟଙ୍କୁ କେନ୍ଦ୍ରକରି ବିକଶିତ ହୋଇ ଆଧୁନିକ ରୂପ ପରିଗ୍ରହ କରିଅଛି । ଏହି ଯୁଗର ଅନ୍ୟାନ୍ୟ ଖ୍ୟାତିପ୍ରାପ୍ତ ରୋମାଣ୍ଟିକ କବିମାନଙ୍କ ମଧ୍ୟରୁ ଭି. ସି. ବାଲକୃଷ୍ଣ ପଣିକ୍କାରଙ୍କର ନାମ ସର୍ବାଦୌ ଉଲ୍ଲେଖ ଯୋଗ୍ୟ ।

ଏତଦ୍‌ବ୍ୟତୀତ ନଲପପନ୍ତ୍ର ନାରାୟଣ ମେନନ, ଚଙ୍ଗମପୁଝା କୃଷ୍ଣ ପିଲ୍ଲଇଙ୍କର ନାମ ମଧ୍ୟ ଏ ସମ୍ପର୍କରେ ଉଲ୍ଲେଖଯୋଗ୍ୟ । ନଲପ୍‌ପନ୍ତ୍ର ମେନନଙ୍କର ପତ୍ନୀବିୟୋଗ ଉପଲକ୍ଷେ ଲିଖିତ ଶୋକାତ୍ମକ କାବ୍ୟ "କନ୍ନୁନୀର ଥୁଲି" ଏକ ସ୍ମରଣୀୟ ସୃଷ୍ଟି ଭାବେ ବିବେଚିତ ହୁଏ । ତାଙ୍କର 'ଚକ୍ରବାଲମ୍', 'ଓରୁ' ଓ 'ମନ ଲଥସ୍ସ' (ଧୂଳିକଣିକା) ପ୍ରଭୃତି ଗମ୍ଭୀର ଭାବୋଦ୍ଦୀପକ କାବ୍ୟ ମୁଷ୍ଟିମେୟପାଠକଙ୍କ ମଧ୍ୟରେ ତାହାଙ୍କୁ ଜନପ୍ରିୟ କରାଇଛି ।

ଚଙ୍ଗମ ପୁଝା ତରୁଣ ବୟସରେ ସ୍ୱର୍ଗାରୋହଣ କରିଥିଲେ ହେଁ ଜୀବଦ୍ଦଶାରେ ତାହାଙ୍କ କବିତା ଗୀତିମୟତା ଓ କରୁଣରସାତ୍ମକ ଅଭିବ୍ୟଞ୍ଜନା ଯୋଗୁଁ ପ୍ରଭୂତ ଜନପ୍ରିୟତା ଅର୍ଜନ କରିଥିଲି । ତାହାଙ୍କ ପ୍ରଥମ ରଚନା ହେଉଛି 'ରମନନ୍' ନାମକ ଏକ ଶୋକଗୀତ । ତାହାଙ୍କ କବିବନ୍ଧୁ ଇଡ଼ପଲ୍ଲୀ ରାଘବନ୍ ପିଲ୍ଲଇଙ୍କ ଶୋଚନୀୟ ମୃତ୍ୟୁକୁ ଉପଜୀବ୍ୟ କରି ଏହା ରଚିତ । ବହୁ କାବ୍ୟକବିତାର ରଚୟିତା ଭାବରେ ସେ ତରୁଣମାନଙ୍କର ସୁପ୍ରଶଂସା ଓ ଜନପ୍ରିୟତା ଲାଭ କରିଥିଲେ ।

ଆଧୁନିକ ଯୁଗର ମାଲୟାଲମ୍ ଭାଷାର ସାହିତ୍ୟିକମାନଙ୍କ ମଧ୍ୟରୁ ବହୁମୁଖୀ ପ୍ରତିଭାସମ୍ପନ୍ନ ଲେଖକ ଭାବରେ ସର୍ଦ୍ଦାର କେ. ଏମ୍. ପନକ୍‌କର ସୁବିଖ୍ୟାତ । ସେ କୂଟନୀତିଜ୍ଞ, ଐତିହାସିକ, ଇଂରାଜୀଭାଷାର ଲେଖକ ଭାବରେ କେରଳ ବାହାରେ ସୁପରିଚିତ ହେଲେ ହେଁ ମାଲୟାଲମ୍ ସାହିତ୍ୟରେ ଅଗ୍ରଣୀ ଲେଖକ ଭାବରେ ମଧ୍ୟ ସୁବିଖ୍ୟାତ । କବି, ନାଟ୍ୟକାର, ଔପନ୍ୟାସିକ ଓ ଆଲୋଚକ ଭାବରେ ସାହିତ୍ୟର ସମସ୍ତ ବିଭାଗକୁ ସେ ସମୃଦ୍ଧ କରିଯାଇ ଅଛନ୍ତି । ତାହାଙ୍କ ରଚିତ ମୌଳିକ କାବ୍ୟମାନଙ୍କ ମଧ୍ୟରୁ 'ଚନ୍ଦ୍ରାତରଙ୍ଗିଣୀ', 'ପଙ୍କି ପରିଣୟମ୍' ଓ 'ଅମ୍ବାପଲି' ଏବଂ ଅନୂଦିତ କାବ୍ୟମାନଙ୍କ ମଧ୍ୟରୁ 'କୁମାର ସମ୍ଭବମ୍' 'ଇଳ ପକ୍ଷୀକଳ' ଓ "ପଥନ୍ତରେ ମୁଘ" ସୁବିଖ୍ୟାତ । ନାଟକମାନଙ୍କ ମଧ୍ୟରୁ, ଭସ୍ମାର', 'ମନ୍ଦୋଦରୀ' ଓ "ଧ୍ରୁବସ୍ୱାମିନୀ"ର ନାମ ଉଲ୍ଲେଖଯୋଗ୍ୟ । ସ୍ୱଚ୍ଛ, ସାବଲୀଳ ଭାଷାରେ ତାହାଙ୍କ ଗ୍ରନ୍ଥଗୁଡ଼ିକ ରଚିତ । ସଂସ୍କୃତ ଓ ଦ୍ରାବିଡ଼ ଉଭୟବିଧ ଛନ୍ଦ ଯୋଜନାରେ ସେ କୃତିତ୍ୱ ଦର୍ଶାଇ ଯାଇଅଛନ୍ତି । ଗଦ୍ୟ ରଚନାମାନଙ୍କ ମଧ୍ୟରୁ ତାହାଙ୍କ ଆତ୍ମଜୀବନୀ ଓ ଐତିହାସିକ ଉପନ୍ୟାସ 'କେରଳସିଂହମ୍' ସର୍ବୋତ୍କୃଷ୍ଟ ବିବେଚିତ ହୁଏ । ତାହାଙ୍କ ରଚନାବଳୀରୁ ଗଭୀର ପାଣ୍ଡିତ୍ୟ ଏବଂ ପ୍ରସାରିତ ସାଂସ୍କୃତିକ ଓ ଐତିହାସିକ ଦୃଷ୍ଟିଭଙ୍ଗୀର ସ୍ୱାକ୍ଷର ମିଳିଥାଏ ।

ଏହି ଯୁଗର ବିଶିଷ୍ଟ କବି ଭାବରେ ଜି. ଶଙ୍କର କୁରୁପଙ୍କୁ ଗ୍ରହଣ କରାଯାଏ । ଗୀତିକବି ତଥା କାବ୍ୟପ୍ରଣେତାଭାବେ, ବିଶେଷତଃ କାବ୍ୟରେ ପ୍ରତୀକର ବ୍ୟବହାରକାରୀ ଭାବରେ ସେ ଅପୂର୍ବ ନୈପୁଣ୍ୟର ପରିଚୟ ପ୍ରଦାନ କରିଅଛନ୍ତି । ତରୁଣ କବି-

ଗୋଷ୍ଠୀଙ୍କୁ ହିଁ ତାହାଙ୍କ ରଚନାବଳୀ ସର୍ବାଧିକ ପ୍ରଭାବିତ କରିଅଛି । ନବଯୁଗର ସାମାଜିକ ସମସ୍ୟାବଳୀ ତାହାଙ୍କ ରଚନାରେ ସାର୍ଥକ ଭାବରେ ରୂପାୟିତ । ବାମପନ୍ଥୀ ଭାବଧାରାର ପ୍ରଭାବ ଯେପରି ତାହାଙ୍କ ରଚନାବଳୀରେ ପ୍ରତିଫଳିତ, ସେହିପରି ରକ୍ଷଣ-ଶୀଳତା ଓ ଭାରତୀୟ ସଂସ୍କୃତିର ସଂରକ୍ଷଣ ପ୍ରଭୃତି ଦୁଇ ବିରୋଧୀ ଭାବନାର ସମନ୍ୱୟ ମଧ୍ୟ ତାହାଙ୍କ ରଚନାବଳୀରୁ ପ୍ରତିଭାତ ହୁଏ ।

ଏତଦ୍‌ବ୍ୟତୀତ ନବଯୁଗର ପ୍ରାରମ୍ଭ ଭାଗରେ ବ୍ୟକ୍ତିଗତ ଭାବରେ କେତେକ କବିଙ୍କ ନାମ ମଧ୍ୟ ଉଲ୍ଲେଖଯୋଗ୍ୟ । କୃଷ୍ଣ୍‌ରୁ ନାରାୟଣ ମେନନ ଲୋକସଙ୍ଗୀତରୁ ଉପାଦାନ ଗ୍ରହଣ କରି ଇଂରାଜୀ ବାଲର୍ଡ଼ ବା କଥାକବିତା ସଦୃଶ ଗୀତିକାବ୍ୟ ପ୍ରଣେତା ଭାବରେ ଖ୍ୟାତିପ୍ରାପ୍ତ । ସେ ସଂସ୍କୃତ ଶବ୍ଦାବଳୀକୁ ପରିହାର କରି ମୁଖ୍ୟତଃ ଅବିକୃତ ବା ଶୁଦ୍ଧ (ପର୍ଯ୍ୟ) ମାଲୟଲମ୍ ଶବ୍ଦାବଳୀ ବ୍ୟବହାର କରି ଏହିସବୁ କଥା-କବିତା ରଚନା କରିଯାଇଅଛନ୍ତି । 'କୋମାପ୍‌ପନ' ତାହାଙ୍କର ସର୍ବଶ୍ରେଷ୍ଠ କୃତି-ଭାବରେ ଗୃହୀତ ହୁଏ । ଏଥିରେ ଗୋଟିଏ ହେଲେ ସଂସ୍କୃତ ଶବ୍ଦ ବ୍ୟବହୃତ ହୋଇ ନାହିଁ । ଶକ୍ତି, ସୌନ୍ଦର୍ଯ୍ୟ, ସୌଷ୍ଠବ ଓ ସ୍ୱଚ୍ଛତାର ଅପୂର୍ବ ସମାବେଶ ଦୃଷ୍ଟିରୁ ଏହା ଏକ ଅତୁଳନୀୟ କାବ୍ୟ ରୂପେ ଗୃହୀତ ହୋଇଥାଏ । କଣ୍ଟକୟଥିଲ ଚେରିଅନ୍ ମପ୍‌ପିଲାଇ ପ୍ରାଚୀନ ରୀତିରେ 'ଶ୍ରୀୟିଶୁ ଭିଜୟମ୍' (ଯିଶୁଙ୍କ ବିଜୟ) ନାମକ ଏକ ମହାକାବ୍ୟ ରଚନା କରିଥିଲେ । ଭଟ୍ଟକ୍‌କୁମକୁର ରାଜରାଜ ବର୍ମା ମଧ୍ୟ ଏହିପରି 'ରାଘବ ବାୟୁଜୟମ୍' ମହାକାବ୍ୟ ସମେତ ବହୁ ମହାକାବ୍ୟର ପ୍ରଣେତାଭାବେ ସୁପରିଚିତ ।

ବହୁ ନାରୀକବି ମଧ୍ୟ ନବଯୁଗରେ ସେମାନଙ୍କ ସାହିତ୍ୟ ସାଧନା ଯୋଗୁଁ ଚିରସ୍ମରଣୀୟ ହୋଇପାରି ଅଛନ୍ତି । ଖ୍ରୀ: ୧୯୧୫ ପୂର୍ବରୁ ନବଯୁଗର ପ୍ରାକ୍‌କାଳରେ ଥୋଟ୍ଟକ୍‌କଟ୍ଟ ଇକ୍‌କାଭ୍ୱ ଅମ୍ମା 'ସୁଭଦ୍ରାର୍ଜ୍ଜୁନମ୍' ନାମକ ଏକ ନାଟକ ପ୍ରାଚୀନ ରୀତିରେ ଗଦ୍ୟପଦ୍ୟ ସମ୍ମିଶ୍ରଣରେ ରଚନା କରିଥିଲେ । ପରବର୍ତ୍ତୀକାଳରେ ନାରୀକବି ଭାବରେ ନାଲପତ୍ତ ବାଲମଣି ଅମ୍ମା, ଲଳିଥାମ୍ବିକା ଅନ୍ତରଜନମ୍, ମେରିଜନ ଥୋଟ୍ଟମ୍ ଓ ମୁଥ୍‌କୁଲମ୍ ପାର୍ବତୀ ଅମ୍ମା ପ୍ରଭୃତି ସୁଖ୍ୟାତି ଲଭ କରିଥିଲେ । ବାଲମଣି ଅମ୍ମାଙ୍କୁ 'ମାତୃତ୍ୱର କବି' କୁହାଯାଇଥାଏ । କ୍ଷୁଦ୍ର ଗଳ୍ପ ଲେଖିକା ଭାବରେ ଲଳିତାମ୍ବିକା ଅଧିକ ସମ୍ମାନିତା ହେଲେ ହେଁ କବିଭାବରେ ମଧ୍ୟ ସୁନାମଧନ୍ୟା ।

**ନବପରିବର୍ତ୍ତନ**— ୧୯୩୬ ମସିହାରୁ ମାଲୟଲମ୍ କବିତା କ୍ଷେତ୍ରରେ ଏକ ନୂତନ ପରିବର୍ତ୍ତନର ସୂତ୍ରପାତ ହୋଇଥିଲା । ଏହି ସମୟରେ ଜାତୀୟ ଆନ୍ଦୋଳନର ଉଦ୍ଦୀପନା ମନ୍ଦୀଭୂତ ହୋଇଯାଇଥିଲା ଓ ଏହି ଅବକାଶରେ

ବାମପନ୍ଥୀ ରାଜନୈତିକ ଭାବଧାରାରେ ପ୍ରଭାବିତ ଏକ ତରୁଣଗୋଷ୍ଠୀ ଜାଗ୍ରତ ହୋଇଥିଲେ । ଆନ୍ତରିକତାହୀନ ଅଳୀକ ଭାବାଳୁତାପୂର୍ଣ୍ଣ କାବ୍ୟ ପ୍ରତି କଟାକ୍ଷ ପ୍ରଦର୍ଶନ କରି ଓ ତାହାର ନିରର୍ଥକତା ପ୍ରତିପାଦନ କରି ଏକ ବଳିଷ୍ଠ ସାହିତ୍ୟ-ସମାଲୋଚକଗୋଷ୍ଠୀ ମଧ୍ୟ ଏହି ସମୟରେ ଆବିର୍ଭୂତ ହୋଇଥିଲେ । ତଥାକଥିତ 'ପୁରୋଗମନ ବାଦ' ବା ପ୍ରଗତିଶୀଳତାକୁ ଏମାନେ ଅସ୍ୱୀକାର କରିଥିଲେ । ସମାଲୋଚନାକ୍ଷେତ୍ରରେ ଏହି ଗୋଷ୍ଠୀର ବାଲକୃଷ୍ଣ ପିଲାଇ, ଯୋସେଫ୍ ମୁଣ୍ଡେଶ୍ୱରୀ ଓ ଏମ୍. ପି. ପାଲ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ । ଏମାନଙ୍କ ମଧ୍ୟରୁ କେତେକ ଲେଖକ କବିତାକ୍ଷେତ୍ରରେ ନ ହେଲେ ହେଁ ଉପନ୍ୟାସ ଓ କ୍ଷୁଦ୍ରଗଳ୍ପ ରଚନାରେ ବିଶେଷ ଗୌରବଲାଭ କରିଅଛନ୍ତି ।

ପାଠକ ଓ ଲେଖକମାନଙ୍କୁ ନୂତନ ଦୃଷ୍ଟିକୋଣର ସନ୍ଧାନ ଦେବାରେ ଏହି ଲେଖକମାନଙ୍କ କୃତିତ୍ୱ ଅସାମାନ୍ୟ । ବିଶେଷତଃ ଭାଲ୍ଲଥୋଲ ଓ ଶଙ୍କର କୁରୁପଙ୍କୁ ଏ କ୍ଷେତ୍ରରେ ଅଗ୍ରଣୀ କୁହାଯାଏ । ସମ୍ପୂର୍ଣ୍ଣ ଅଗ୍ରଗାମୀ ଗୋଷ୍ଠୀର ବିଶିଷ୍ଟ କବିଭାବରେ ଏମ. ଭି. ବିଷ୍ଣୁ ଓ୍ୱାରିଅର, ଅକ୍କିତମେ ଓଲପମ୍ମାନା ଭୟ୍ଲର ରାମବର୍ମା, ପି: ଭାସ୍କରନ୍, କେଡ଼ାମଙ୍ଗଲମ୍ ପପ୍ପୁକୁଟ୍ଟି, ଇଡ଼ାସ୍ସେରି ଗୋବିନ୍ଦନ୍ ନାୟାର ଓ. ଏନ. ଭି. କୁରୂପ ଓ ଅନୁଜନ୍ଙ୍କ ନାମ ଉଲ୍ଲେଖ ଯୋଗ୍ୟ ।

ବିଗତ କୋଡ଼ିଏ ପଚିଶ ବର୍ଷ ମଧ୍ୟରେ ପ୍ରଗତିଶୀଳ ଭାବନାରେ ପ୍ରଭାବିତ ନ ହୋଇଥିବା ଲେଖକ ସମ୍ପୂର୍ଣ୍ଣ ବିରଳ । ତରୁଣଗୋଷ୍ଠୀର ସର୍ବପ୍ରଧାନ ପ୍ରତିନିଧି-ଭାବରେ ଉଦ୍ୟେଲେପାଲ ଶ୍ରୀଧର ମେନନ, ଭେନିକ୍କୁଲମ୍ ଗୋପାଳ କୁରୂପ ଓ ପଲଇ ନାରାୟଣନ୍ ନାୟାର ପ୍ରଭୃତି କବିଗଣ ପ୍ରଗତିଶୀଳ ଭାବଧାରାରେ ପ୍ରଭାବିତ ହେଲେ ହେଁ ପାରଂପରିକ ମାଲୟଲମ୍ କାବ୍ୟରୀତିରେ ମଧ୍ୟ କାବ୍ୟ ରଚନା କରିଥିଲେ ।

**ଆଧୁନିକ ଗଦ୍ୟ**—ପ୍ରଥମ ବିଶ୍ୱଯୁଦ୍ଧ ପରଠାରୁ ଆଧୁନିକ ମାଲୟଲମ୍ ସାହିତ୍ୟରେ ଗଦ୍ୟର ବିକାଶ ଏକ ଲକ୍ଷଣୀୟ ବୈଶିଷ୍ଟ୍ୟ । ସି. ଭି. ରମଣ ପିଲାଇଙ୍କ 'ରାମରାଜ ବାହାଦୁର' ଉପନ୍ୟାସରେ ଐତିହାସିକ ଉପନ୍ୟାସର ପୂର୍ଣ୍ଣବିକାଶ ଲକ୍ଷ୍ୟ କରାଯାଇଥାଏ । ଟିପୁସୁଲତାନଙ୍କ ଆକ୍ରମଣ ଏହି ଉପନ୍ୟାସର କଥାବସ୍ତୁ । ଅପ୍ପନ ଥମ୍ପୁରନଙ୍କ 'ଭୂତରାୟର' ଓ କେ, ଏମ୍. ପନିକ୍କରଙ୍କ 'କେରଳ ସିଂହମ୍' ପ୍ରଭୃତି ଐତିହାସିକ ଉପନ୍ୟାସଗୁଡ଼ିକ ମଧ୍ୟ ତାହାର ଉଜ୍ଜ୍ୱଳ ଦୃଷ୍ଟାନ୍ତ । ନୂତନ ଧରଣର ସାମାଜିକ ଉପନ୍ୟାସର ସୃଷ୍ଟି ମଧ୍ୟ ଆଧୁନିକ ଗଦ୍ୟକୁ ଜନପ୍ରିୟ କରାଇବାରେ ବିଶେଷ ସହାୟତା କରିଥିଲା । 'ଇନ୍ଦୁଲେଖା' ଓ 'ଶାରଦା' ଉପନ୍ୟାସରୁ ରୋମାଣ୍ଟିକ୍ ଦୃଷ୍ଟିକୋଣର ପରିଚୟ ମିଳିଥାଏ । ମାତ୍ର ପରବର୍ତ୍ତୀକାଳରେ ରୋମାଣ୍ଟିକ୍

ଭାବନା ପରିବର୍ତ୍ତିରେ ନଗ୍ନ ବାସ୍ତବତାର ଚିତ୍ରଣ ଉପନ୍ୟାସର ଆଦର୍ଶ ଭାବରେ ପରିଗୃହୀତ ହୋଇଥିଲା । ନମ୍ବୁଦ୍ରି ଓ ନାୟାର ସମ୍ପ୍ରଦାୟଙ୍କର ସମ୍ପର୍କକୁ ଉପଜୀବ୍ୟ କରି ରଚିତ ହୋଇଥିବା 'ଅପ୍‌ଫନ୍ଦେନ୍ତେ ମକଳ'କୁ ପ୍ରଥମ ବାସ୍ତବବାଦୀ ଉପନ୍ୟାସ କୁହାଯାଇପାରେ । ବସିରଙ୍କ ଲିଖିତ 'ବାଲ୍ୟକାଲ ସଖୀ' ଏତାଦୃଶ ଅନ୍ୟତମ ସଫଳ କୃତୀ ।

ବାସ୍ତବଧର୍ମୀ ସାମାଜିକ ଉପନ୍ୟାସକୁ ମହାନ ସାହିତ୍ୟିକ କୃତି ଭାବରେ ପରିଣତ ଓ ପରିଗଣିତ କରାଇବାରେ ଥକଜି ଶିବଶଙ୍କର ପିଲ୍ଲାଇଙ୍କ ନାମ ଅଗ୍ରଗଣ୍ୟ । ଥକଜି ପ୍ରଥମେ ଗଳ୍ପଲେଖକ ଭାବରେ ସୁଖ୍ୟାତି ଲାଭ କରିଥିଲେ । ଆଧୁନିକ ମାଲୟଲମ୍ ସାହିତ୍ୟରେ ତାଙ୍କୁ ଶ୍ରେଷ୍ଠ କଥାକାର ଭାବରେ ଗ୍ରହଣ କରାଯାଏ । ତାହାଙ୍କ ପ୍ରଥମ ଉପନ୍ୟାସ "ଥୋଟ୍ଟିଆଣ୍ଟେ ମାକାନ" ମଧ୍ୟ ଉଚ୍ଚାଙ୍ଗ ରଚନା ଭାବରେ ଗୃହୀତ ହୁଏ । ତାହାଙ୍କର ଅନ୍ୟତମ ଉପନ୍ୟାସ 'ରଣ୍ଡିଡଙ୍ଗଳି' (ଦୁଇ ମାଣ ଶସ୍ୟ)ରେ ଆଲେପି ନିକଟସ୍ଥ ଜଳପ୍ଲାବିତ ଅଞ୍ଚଳର ଭୂମିହୀନ କୃଷକଜୀବନର ଇତିବୃତ୍ତ ଚିତ୍ରିତ । ଚରିତ୍ରଚିତ୍ରଣରେ ଦକ୍ଷତା ଓ ସାମାଜିକ ଅବସ୍ଥାର ବାସ୍ତବ ଅନୁଧ୍ୟାନ ଯୋଗୁଁ ଏହା ଏକ ଚିରନ୍ତନ ସାହିତ୍ୟ କୋଟୀକୁ ଉନ୍ନୀତ ହୋଇପାରିଅଛି । ତାହାଙ୍କ ସଦ୍ୟତମ ଉପନ୍ୟାସ 'ଚେମୀ' (shrimps) ଆଲେପୀର ମତ୍ସ୍ୟଜୀବୀଙ୍କ ଜୀବନକୁ ଭିତ୍ତିକରି ରଚିତ । ଏତାଦୃଶ ଉପନ୍ୟାସ ମାନଙ୍କ ମଧ୍ୟରେ ମାଲୟଲମ୍ ସାହିତ୍ୟରେ ଏହାକୁ ସର୍ବଶ୍ରେଷ୍ଠ ରଚନା ଭାବରେ ଗ୍ରହଣ କରାଯାଏ ।

ମାଲୟଲମ୍ ସାହିତ୍ୟର ପ୍ରାଥମିକ ଉପନ୍ୟାସ ଓ ଗଳ୍ପ ରଚନା କ୍ଷେତ୍ରରେ ପି. କେଶବ ଦେବଙ୍କ ନାମ ଉଲ୍ଲେଖଯୋଗ୍ୟ । ତାହାଙ୍କ ରଚିତ 'ଓଭଭିଲ ନିନ୍ନୁ' ଏକ ସାର୍ଥକସୃଷ୍ଟି ଭାବରେ ପରିଗଣିତ ହୁଏ । ଏସ୍ କେ. ପୋଟ୍ଟେକ୍‌କଟଙ୍କ 'ବିଷକନ୍ୟକା' ମଧ୍ୟ ଏକ ଉଚ୍ଚାଙ୍ଗ ରଚନା । ଯୋସେଫ ମୁ ଣ୍ଡସରି ମଧ୍ୟ ତାହାଙ୍କ 'ପ୍ରଫେସର' ଉପନ୍ୟାସ ପାଇଁ ସୁବିଖ୍ୟାତ । ଶିକ୍ଷକଜୀବନର କରୁଣତା ଏଥିରେ ସୁନ୍ଦର ଭାବରେ ଚିତ୍ରିତ ହୋଇଅଛି । ତାହାଙ୍କ ଅନ୍ୟତମ ଉପନ୍ୟାସ 'କୋଣ୍ଡୟୁମ୍ କୁରୁସମ୍' ଦରିଦ୍ର ଖ୍ରୀଷ୍ଟଧର୍ମାବଲମ୍ବୀ ଓ ସେମାନଙ୍କ ଜୀବନରେ ଗୀର୍ଜାର ପ୍ରଭାବକୁ ଭିତ୍ତିକରି ଲିଖିତ ।

ମାଲୟଲମ୍ ସାହିତ୍ୟରେ ଆଧୁନିକ କ୍ଷୁଦ୍ର ଗଳ୍ପ ଅତ୍ୟନ୍ତ ଉନ୍ନତ । ବହୁ କୃତି ଲେଖକଙ୍କ ରଚନାସମ୍ଭାର ଯୋଗୁଁ କ୍ଷୁଦ୍ର ଗଳ୍ପ ଉଚ୍ଚକୋଟୀକୁ ଉନ୍ନୀତ ହୋଇ-ପାରିଅଛି । ଏମାନଙ୍କ ମଧ୍ୟରୁ ଥକଜିଙ୍କୁ ଶ୍ରେଷ୍ଠ ସମ୍ମାନ ପ୍ରଦାନ କରାଯାଇଥାଏ । ବିଶ୍ୱର ଶ୍ରେଷ୍ଠ କଥାକାରଙ୍କ ସହ ସେ ତୁଳନୀୟ । ଅନ୍ୟାନ୍ୟ କଥାକାରମାନଙ୍କ ମଧ୍ୟରୁ ପୋନକୁନ୍ନମ ଭର୍କେ, କେ. ଟି. ମହମ୍ମଦ, ବସିର, ପି. ସି. କୁଟ୍ଟିକୃଷ୍ଣନ, ପୋଟ୍ଟେକ୍‌କଟ, କଭୁର୍, କରୁର୍, ସରସ୍ୱତୀ ଆମ୍ମା ଓ ଲଳିତାମ୍ବିକା ଅନ୍ତରଜନମ୍

ପ୍ରଭୃତିଙ୍କୁ ବାମପନ୍ଥୀ କଥାକାର ଭାବରେ ଗ୍ରହଣ କରାଯାଏ । ମୁଖ୍ୟତଃ ସାମାଜିକ ଅବିଚାରଗତ ବିଷୟକୁ ଉପଜୀବ୍ୟ କରି ସେମାନେ କଥାସାହିତ୍ୟ ରଚନା କରିଅଛନ୍ତି । କୁଟ୍ଟିକୃଷ୍ଣନଙ୍କ 'ଉମଚ୍ଚୁ'କୁ ଏକ ଅଦ୍ୱିତୀୟ ଉପନ୍ୟାସ ଭାବରେ ଗ୍ରହଣ କରାଯାଏ । ଲଳିତାମ୍ବିକା ମୁଖ୍ୟତଃ ନମ୍ବୁଦ୍ରି ସମ୍ପ୍ରଦାୟର ସାମାଜିକ ଜୀବନ ଓ ସ୍ୱବିରୋଧକୁ ଗ୍ରହଣ କରିଅଛନ୍ତି । ତାହାଙ୍କ କ୍ଷୁଦ୍ର ଗଳ୍ପଗୁଡ଼ିକ ଏହି ଦୃଷ୍ଟିରୁ ଅତୁଳନୀୟ ।

**ଆଧୁନିକ ନାଟକ**—ମାଲୟାଲମ୍ ନାଟକ କ୍ଷେତ୍ରରେ ମଧ୍ୟ ବହୁ ଉଲ୍ଲେଖଯୋଗ୍ୟ ବିକାଶ ସାଧିତ ହୋଇଅଛି । କାଳିଦାସ, ଭବଭୂତି ପ୍ରଭୃତି ନାଟ୍ୟକାରଙ୍କ ରୀତିରେ ଦୃଶ୍ୟକାବ୍ୟ ବା ନାଟକ ରଚନା କରିବାରେ ମାଲୟାଲମ୍ ସାହିତ୍ୟରେ ଏକ ପରମ୍ପରା ଗଢ଼ିଉଠିଥିଲା । ମାତ୍ର ଏହି ପରମ୍ପରା ଏବେ ମଧ୍ୟ ସମ୍ପୂର୍ଣ୍ଣ ବ୍ୟାହତ ହୋଇପାରି ନାହିଁ । ନୂତନ ଆଗ୍ରହର ବିକାଶ ଫଳରେ ପାଶ୍ଚାତ୍ୟ-ରୀତିର ଅଭିନୟ-କଳା ଜନପ୍ରିୟତା ଲାଭ କଲା । ମାତ୍ର ମଞ୍ଚ ଉପଯୋଗୀ ବହୁ ନାଟକ ରଚିତ ହେଉଥିଲେ ହେଁ ସାହିତ୍ୟସୃଷ୍ଟି ଦୃଷ୍ଟିରୁ ତାହା ସମୁଚିତ ଉତ୍କର୍ଷ ଲାଭ କରିବାକୁ ସମର୍ଥ ହୋଇପାରି ନାହିଁ ।

ଆଧୁନିକ ନାଟ୍ୟକାରମାନଙ୍କ ମଧ୍ୟରୁ ସି. ଭି. ରମଣ ପିଲ୍ଲଇଙ୍କ ନାମ ସର୍ବାଦୌ ଉଲ୍ଲେଖଯୋଗ୍ୟ । ହାସ୍ୟରସାତ୍ମକ 'କୁରୁପ୍‌ପିଲ୍ଲ କଳରି' (ଶିକ୍ଷକହୀନ ବିଦ୍ୟାଳୟ) ନାଟକଟି ନାୟାର ସମ୍ପ୍ରଦାୟର ସାମାଜିକ ଜୀବନର ବିଶୃଙ୍ଖଳାକୁ ଉପଜୀବ୍ୟ କରି ରଚିତ । ଇ. ଭି. କୃଷ୍ଣପିଲ୍ଲଇ ଐତିହାସିକ ନାଟକ ରଚନା କରିଥିବା ଯୋଗୁଁ ଓ ମଞ୍ଚର ବିକାଶ ସାଧନ କରିଥିବା ଯୋଗୁଁ ସ୍ମରଣୀୟ ହୋଇ ପାରି ଅଛନ୍ତି । କଇନିକକରା ପଦ୍ମନାଭ ପିଲ୍ଲଇ 'କଲଭରି ଭିଲେ କଲ୍ପପାଦପମ୍' ନାମକ ଯୀଶୁଖ୍ରୀଷ୍ଟଙ୍କ ସମ୍ପର୍କୀୟ ଏକ ନାଟକ ରଚନା କରିଥିବା ଯୋଗୁଁ ଖ୍ୟାତିପ୍ରାପ୍ତ । ଏନ୍. କୃଷ୍ଣପିଲ୍ଲଇ ଓ ଇଡ଼ାସ୍‌ସରୀ ଗୋବିନ୍ଦନ୍ ନାୟାରଙ୍କ ନାଟକଗୁଡ଼ିକ ତାହାଙ୍କ ଉନ୍ନତ ନାଟ୍ୟପ୍ରତିଭାର ପରିଚାୟକ । ତରୁଣ ଓ କୃତିସମ୍ପନ୍ନ ନାଟ୍ୟକାରମାନଙ୍କ ମଧ୍ୟରୁ ଚେଲ୍‌ପ୍ପନ ନାୟାର, କେ. ଟି. ମହମ୍ମଦ ଓ ଟି. ଏନ୍. ଗୋପୀନାଥନ୍ ନାୟାରଙ୍କ ନାମ ଉଲ୍ଲେଖଯୋଗ୍ୟ ।

**ସାହିତ୍ୟାଲୋଚନା**—ଆଧୁନିକ ଯୁଗରେ ଆଲୋଚନାମୂଳକ ସାହିତ୍ୟରଚନାକ୍ଷେତ୍ରରେ ମଧ୍ୟ ଉଲ୍ଲେଖଯୋଗ୍ୟ ଅଗ୍ରଗତି ସାଧିତ ହୋଇଅଛି । ନବଯୁଗର ପ୍ରାରମ୍ଭରେ ସମାଲୋଚକଗଣ ମାଲୟାଲମ୍ ସାହିତ୍ୟର ପ୍ରାଚୀନ ଅମର-କାବ୍ୟ ମହାକାବ୍ୟମାନଙ୍କର ଆଲୋଚନା କରି ଏକ ସୁସ୍ଥ ଓ ବଳିଷ୍ଠ ପରମ୍ପରା ଗଠନ କରିଥିଲେ । ସେହି ଆଲୋଚକମାନଙ୍କ ମଧ୍ୟରୁ ପି. କେ. ନାରାୟଣ ପିଲ୍ଲଇ

ଓ କେ. ରାମକୃଷ୍ଣ ପିଲଇଙ୍କ ନାମ ସର୍ବାଦୌ ଉଲ୍ଲେଖଯୋଗ୍ୟ । ମାତ୍ର ମାଲୟାଲମ୍ ସାହିତ୍ୟ ସମାଲୋଚନା କ୍ଷେତ୍ରରେ ଏକ ନୂତନ ଦୃଷ୍ଟିଭଙ୍ଗୀକୁ ଅନୁପ୍ରବିଷ୍ଟ କରିଥିଲେ ଏମ୍. ପି. ପାଲ, ମୁଣ୍ଡାସରି ଓ ବାଲକୃଷ୍ଣ ପିଲଇ । ଏମ୍. ପି. ପାଲଙ୍କ ଉପନ୍ୟାସ ଓ କ୍ଷୁଦ୍ର ଗଳ୍ପର ଆଙ୍ଗିକ ସମ୍ବନ୍ଧୀୟ ମୂଲ୍ୟବାନ୍ ଆଲୋଚନା ତରୁଣ ଲେଖକମାନଙ୍କୁ ମାର୍ଗ ପ୍ରଦର୍ଶନ କରାଇଥିଲା । ମୁଣ୍ଡାସରଙ୍କ ଠାରେ ପ୍ରାଚୀନ ଶାସ୍ତ୍ରଜ୍ଞାନ ସହ ଅତ୍ୟାଧୁନିକ ଦୃଷ୍ଟିକୋଣର ସମାବେଶ ଦେଖିବାକୁ ମିଳିଥାଏ । ତାହାଙ୍କୁ ଆଧୁନିକ ସମାଲୋଚନା ପଦ୍ଧତିର ମୁଖପାତ୍ର ଭାବରେ ସମ୍ମାନିତ କରାଯାଏ । ବାଲକୃଷ୍ଣ ପିଲଇ ମାଲୟାଲମ୍ ସାହିତ୍ୟରେ ଫରାସୀ ସାହିତ୍ୟ ରୂପ ପ୍ରବର୍ତ୍ତନ କରାଇଅଛନ୍ତି ଓ ଏହାକୁ ବଳିଷ୍ଠତାର ସହିତ ସମର୍ଥନ କରିଯାଇ ଅଛନ୍ତି । ତେଣୁ ମୋପାସାଁଙ୍କ ସାହିତ୍ୟର ପ୍ରଭାବ କେରଳରେ ଅଧିକ ପରିଦୃଷ୍ଟ ହୁଏ । କୁଟ୍ଟିକ୍ରିଷ୍ଣ ମରାର ଓ ମୁର୍କୋଥ କୁହ୍ନପ୍ପା, ଗୁପ୍ତନ୍ ନାୟାର ପ୍ରଭୃତି ଆଲୋଚକଗଣ ମାଲୟାଲମ୍ ସମାଲୋଚନା ସାହିତ୍ୟରେ ନୂତନ ଭାବନା ସଂଯୋଜିତ କରିଯାଇ ଅଛନ୍ତି । ଅଧୁନା ମାଲୟାଲମ୍ ସାହିତ୍ୟ ଆଲୋଚନାରେ ପ୍ରଗତିଶୀଳତା ପ୍ରତି ବିଶେଷ ଅନୁରକ୍ତି ପରିଲକ୍ଷିତ ହେଉଥିଲେ ହେଁ ନୂତନ ଆଲୋଚନା-ସାହିତ୍ୟ ଯଥେଷ୍ଟ ସମୃଦ୍ଧ ଓ ବିଶ୍ୱସାହିତ୍ୟର ଗତି ଓ ପ୍ରବଣତା ବିଷୟରେ ସମୁଚିତ ଅବହିତ ।

**ଜୀବନୀ, ଭ୍ରମଣ ସାହିତ୍ୟ ଓ ଅନ୍ୟାନ୍ୟ**—ଗଦ୍ୟସାହିତ୍ୟର ଅନ୍ୟ ଏକ ବିଭାଗ 'ଜୀବନୀ' ଆଧୁନିକ ଯୁଗରେ ଯଥେଷ୍ଟ ଉନ୍ନତି ଲାଭ କରିଅଛି । ପି. କେ ପରମେଶ୍ୱର ନାୟାରଙ୍କ ରଚିତ ପି. କେ. ନାରାୟଣ ପିଲଇଙ୍କ ଜୀବନୀ ଏହି କ୍ଷେତ୍ରରେ ନୂତନ ଆଦର୍ଶ ପ୍ରତିଷ୍ଠା କରିଥିଲା । ନବଯୁଗର ପ୍ରାରମ୍ଭରେ ଲିଖିତ କେରଳ ବର୍ମା, ରାଜରାଜ ବର୍ମା, ଉଲ୍ଲୁର ପରମେଶ୍ୱର ଆୟାରଙ୍କ ଜୀବନୀଗୁଡ଼ିକ ଆଲୋଚନା ଓ ମତାମତବର୍ଜିତ, ଉଚ୍ଛ୍ୱସିତ ପ୍ରଶଂସାବହୁଳ ଓ ବ୍ୟକ୍ତି ନିରପେକ୍ଷ । ପରମେଶ୍ୱର ନାୟାର ନିଷ୍ଠାପର ଭାବରେ ଜୀବନୀ ରଚନାରେ ବ୍ରତୀ ହୋଇ ଯେପରି ଗବେଷଣା ଓ ଆଲୋଚନାକୁ ଜୀବନୀ ରଚନାର ଅଙ୍ଗୀଭୂତ କରିଥିଲେ, ସେହିପରି ଏହାକୁ ସାହିତ୍ୟିକ କାରୁକଳା ମଣ୍ଡିତ କରିପାରିଥିଲେ । ଜୀବନୀ ରଚନା କ୍ଷେତ୍ରରେ ଆଇ. ସି. ଚାକୋ, ଏ. ଡ଼ି. ହରିଶର୍ମା ଓ ଡକ୍ଟର କେ ଏମ୍. ଜର୍ଜଙ୍କ କୃତିତ୍ୱ ଉଲ୍ଲେଖ-ଯୋଗ୍ୟ ।

ଆତ୍ମଜୀବନୀମୂଳକ ବହୁ ଗ୍ରନ୍ଥ ମଧ୍ୟ ଏହି ସମୟରେ ଆତ୍ମପ୍ରକାଶ କରିଛି । ତନ୍ମଧ୍ୟରୁ ଆଇନଜ୍ଞ, କବି, ଆଲୋଚକ ପି.କେ. ନାରାୟଣ ପିଲଇଙ୍କ 'ସ୍ମରଣ ମଣ୍ଡଲମ୍' ଚିରନ୍ତନ ସାହିତ୍ୟର ଗୌରବଲାଭ କରିଅଛି । ଏହି ଆତ୍ମଚରିତରେ ତ୍ରିବାଙ୍କୁଡ଼ ରାଜ୍ୟର ସଜୀବ ଚିତ୍ର ଅତ୍ୟନ୍ତ ସରସତା ଓ ଦକ୍ଷତାର ସହିତ ଚିତ୍ରିତ ହୋଇଅଛି ।

ଏହାଛଡ଼ା ଇ. ଭି. କ୍ରିଷ୍ଣ ପିଲ୍ଲାଇଙ୍କ ଆତ୍ମଜୀବନ ଚରିତର ନାମ ମଧ୍ୟ ଉଲ୍ଲେଖ-ଯୋଗ୍ୟ । ଚଳିତ ଶତାବ୍ଦୀର ଶ୍ରେଷ୍ଠ ହାସ୍ୟରସ ସ୍ରଷ୍ଟା ଭାବରେ ଇ. ଭି. କ୍ରିଷ୍ଣପିଲ୍ଲାଇ ସମ୍ମାନିତ । ଏହାଛଡ଼ା ସଂଜୟନ (ଏମ୍. ଆର. ନାୟାର) କେ. ଏମ୍. ପନିକ୍କର (ଆତ୍ମକଥା), ସି. କେଶଭନ୍ ( ଜୀବିତ ସମରମ୍ ), କେ. ପି. କେଶବ ମେନନ (କଝିଞ୍ଜ କାଲଂଗଲ) ପ୍ରଭୃତିଙ୍କ ଆତ୍ମଜୀବନ କଥାଗୁଡ଼ିକ ସୁପ୍ରସିଦ୍ଧ ରଚନା ଭାବେ ପରିଗଣିତ ହୋଇଥାଏ ।

ଅତି ପ୍ରାଚୀନକାଳରୁ ମାଲୟଲମ୍ ସାହିତ୍ୟରେ ଭ୍ରମଣ ବୃତ୍ତାନ୍ତ ଲିଖିତ ହୋଇ ଆସୁଅଛି । ଅଷ୍ଟାଦଶ ଶତାବ୍ଦୀରେ ଜନୈକ ଖ୍ରୀଷ୍ଟିଆନ ପୁରୋହିତ ତାହାଙ୍କ ୟୁରୋପଯାତ୍ରାର ଏକ ଚମତ୍କାର ବିବରଣୀ ରଚନା କରିଥିଲେ । ୧୯ଶ ଶତାବ୍ଦୀରେ ଗୀତାକାରରେ ଭ୍ରମଣ ଅଭିଜ୍ଞତା ବର୍ଣ୍ଣନା କରିବା ରୀତି ପ୍ରଚଳିତ ହୋଇଥିଲା । ଆଧୁନିକ ଯୁଗରେ ପ୍ରଥମେ ଗଦ୍ୟରେ ଭ୍ରମଣ-ବୃତ୍ତାନ୍ତ ରଚିତ ହେଲା । ଏତାଦୃଶ ଗ୍ରନ୍ଥ କରିବାରେ କେ. ପି. କେଶବ ମେନନ ଉଦ୍ୟମ କରିଥିଲେ । ତାହାଙ୍କ ରଚିତ 'ବିଲାତି ବିଶେଷମ୍' ତାହାଙ୍କର ଇଂଲଣ୍ଡରେ ଛାତ୍ରଭାବରେ ଅବସ୍ଥାନ କରୁଥିବା ସମୟର ଅଭିଜ୍ଞତାକୁ ଉପଜୀବ୍ୟ କରି ଲିଖିତ । ଯାହାହେଉ, ବହୁସଂଖ୍ୟକ ଭ୍ରମଣ-ବୃତ୍ତାନ୍ତ ରଚନା କରି ସେ ଭ୍ରମଣ-ସାହିତ୍ୟକୁ ଜନପ୍ରିୟ କରିପାରିଥିଲେ । ପୋଟ୍ଟିକକାଟ୍ଟ ୟୁରୋପ ଏସିଆ, ଆଫ୍ରିକାଦି ପୃଥିବୀର ନାନାଦେଶର ଭ୍ରମଣବୃତ୍ତାନ୍ତକୁ ବର୍ଣ୍ଣନା କରିଯାଇ ଅଛନ୍ତି । କେ.ଏମ୍. ପନିକ୍କରଙ୍କର ଯୁଦ୍ଧକାଳୀନ ଭ୍ରମଣମୂଳକ 'ଆପତକରମାୟ ଯାତ୍ରା' (ଏକ ବିପଜ୍ଜନକ ଯାତ୍ରା), ଚୀନ୍‌ଭ୍ରମଣ ମୂଳକ "ଚୀନାୟାଲୀଓରୁ ଯାତ୍ରା" (ଚୀନ ଦେଶରେ ଭ୍ରମଣ) ମଧ୍ୟ ଏତାଦୃଶ ରଚନାର ସାର୍ଥକ ଉଦାହରଣ ।

**ସାହିତ୍ୟର ଇତିହାସ**—ଅଧୁନା ପାଣ୍ଡିତ୍ୟପୂର୍ଣ୍ଣ ସାହିତ୍ୟ-ଇତିହାସ ପ୍ରଣୟନରେ ଅନେକେ ଉଦ୍ୟମ କରୁଅଛନ୍ତି । ଏ କ୍ଷେତ୍ରରେ ପ୍ରାଥମିକ ଉଦ୍ୟମକାରୀ-ମାନଙ୍କ ମଧ୍ୟରୁ ପି. ଗୋବିନ୍ଦ ପିଲ୍ଲାଇଙ୍କ ନାମ ଉଲ୍ଲେଖଯୋଗ୍ୟ । ତାହାଙ୍କ 'ମାଲୟାଲ ଭାଷା ଚରିତମ୍' ବିଗତ ଶତାବ୍ଦୀର ଶେଷ ଦଶକରେ ପ୍ରକାଶିତ ହୋଇଥିଲା । ସେହି କାଳରୁ ମାଲୟଲମ ସାହିତ୍ୟର ଇତିହାସ ରଚନାକ୍ଷେତ୍ରରେ ଅବ୍ୟାହତ ଭାବରେ ବହୁ ଗବେଷଣା ଚାଲିଛି ଓ ବହୁ ପ୍ରାଚୀନ ଲୁପ୍ତ ଓ ବିସ୍ମୃତ ଲେଖକଙ୍କ ବିସ୍ମୃତିଗର୍ଭରୁ ଆଲୋକକୁ ଅଣାଯାଇ ପାରିଅଛି । ଏହିପରି ଗ୍ରନ୍ଥମାନଙ୍କ ମଧ୍ୟରୁ ୧୪ଶ ଶତାବ୍ଦୀରେ ରଚିତ ମାଲୟଲମ୍ ଭାଷାତତ୍ତ୍ୱ ଓ ଛନ୍ଦସମ୍ପର୍କୀୟ ସଂସ୍କୃତରେ ରଚିତ 'ଲୀଲାଥିଲ-କମ୍'ର ନାମ ଉଲ୍ଲେଖଯୋଗ୍ୟ । ପଞ୍ଚଦଶ ଶତାବ୍ଦୀର ପୂର୍ବବର୍ତ୍ତୀ ବହୁ କବିଙ୍କ ଲେଖାରୁ ନାନା ପ୍ରସଙ୍ଗରେ ବହୁ ଉଦାହରଣ ଏଥିରେ ସନ୍ନିବିଷ୍ଟ ହୋଇଥିବା ଯୋଗୁଁ ଏହାକୁ ମାଲୟଲମ୍ ସାହିତ୍ୟର ଏକ ସଂକଳନ ମଧ୍ୟ କୁହାଯାଇପାରେ । ଏହାଛଡ଼ା

୧୪ଶ ଶତାବ୍ଦୀରେ ରଚିତ ମେଘଦୂତ ସଦୃଶ ଏକ ଦୂତକାବ୍ୟ ଭାବରେ "ଉଣ୍ଣିନୀଲି ସନ୍ଦେଶମ୍"ର ନାମ ଉଲ୍ଲେଖଯୋଗ୍ୟ । ଅନ୍ୟାନ୍ୟ ପ୍ରାଚୀନ ରଚନାମାନଙ୍କ ମଧ୍ୟରୁ "ଉଣ୍ଣିୟଚ୍ଚି ଚରିତମ୍" ଓ ଉଣ୍ଣିୟାଡି ଚରିତମ୍' ନାମ ଉଲ୍ଲେଖଯୋଗ୍ୟ ।

ସାହିତ୍ୟ-ଇତିହାସ ପ୍ରଣେତା ଭାବରେ ଆର. ନାରାୟଣ ପନିକ୍କର ଓ ଉଲ୍ଲୁର ପରମେଶ୍ୱର ଆୟାର ସୁବିଖ୍ୟାତ । ନାରାୟଣ ପନିକ୍କରଙ୍କ ସାତଖଣ୍ଡରେ ବିଭକ୍ତ "କେରଳ ଭାଷାସାହିତ୍ୟ ଚରିତମ୍" ଓ ପରମେଶ୍ୱର ଆୟାରଙ୍କ 'କେରଳ ସାହିତ୍ୟ ଚରିତମ୍' ପାଣ୍ଡିତ୍ୟପୂର୍ଣ୍ଣ ଗ୍ରନ୍ଥ ଭାବରେ ବିବେଚିତ ହୁଏ । ଏଥିରେ କେବଳ ମାଲୟଲମ୍ ସାହିତ୍ୟ ବିଷୟ ବର୍ଣ୍ଣିତ ହୋଇନାହିଁ, କେରଳର ଯେଉଁ ଲେଖକମାନେ ସଂସ୍କୃତରେ ଗ୍ରନ୍ଥରଚନା କରିଯାଇ ଅଛନ୍ତି, ସେମାନଙ୍କ ବିଷୟ ମଧ୍ୟ ଏଥିରେ ବର୍ଣ୍ଣିତ ହୋଇଅଛି । ଭଡ଼କ୍କୁମକୁର ରାଜରାଜ ବର୍ମାଙ୍କ "କେରଳ ସଂସ୍କୃତସାହିତ୍ୟ ଚରିତମ୍" (କେରଳର ସଂସ୍କୃତ ସାହିତ୍ୟର ଇତିହାସ) ମଧ୍ୟ ଏ କ୍ଷେତ୍ରରେ ଏକ ପଥପ୍ରଦର୍ଶନକାରୀ ଗ୍ରନ୍ଥ ଭାବରେ ପରିଗଣିତ ହୁଏ ।

**ଭାଷାତତ୍ତ୍ୱ, ଇତିହାସ ଓ ଅନ୍ୟାନ୍ୟ**—ମାଲୟଲମ୍ ଭାଷା-ବିଜ୍ଞାନ ସଂପର୍କରେ ମଧ୍ୟ ଅଧୁନା ବହୁ ଗବେଷଣା ହୋଇଅଛି । ଏ କ୍ଷେତ୍ରରେ ବହୁ ପ୍ରାରମ୍ଭିକ କାର୍ଯ୍ୟ ସାଧନକାରୀ ଭାବରେ ଏ . ଆର. ରାଜରାଜ ବର୍ମା ଓ ଅଟ୍ଟୁର କୃଷ୍ଣ ପିଶାରୋଡ଼ି ଅଗ୍ରଗଣ୍ୟ । ଡକ୍ଟର କେ. ଗୋଦାଭରମ୍ ଓ କେ. ଏମ୍. ଜର୍ଜଙ୍କ ମାଲୟଲମ୍ ଭାଷାତତ୍ତ୍ୱ ସଂପର୍କୀୟ ଗବେଷଣା ମଧ୍ୟ ଉଚ୍ଚକୋଟିର ଓ ପ୍ରଶଂସନୀୟ । କେ. ନାମ୍ବାରଙ୍କ ଦ୍ୱାରା କେରଳର ଲୋକନାଟ୍ୟ, ଲୋକଗାଥାର ସଂଗ୍ରହ ହେବା ଯୋଗୁଁ ଲୋକସାହିତ୍ୟ ତଥା ଭାଷାର ଗବେଷଣା ଲାଗି ପ୍ରଚୁର ଉପାଦାନ ଓ କ୍ଷେତ୍ର ପ୍ରସ୍ତୁତ ହୋଇପାରିଅଛି ।

ମାଲୟଲମ୍ ସାହିତ୍ୟରେ ଇତିହାସ ସବୁଠାରୁ ଅବହେଳିତ । କେ. ପି. ପଦ୍ମନାଭ ମେନନଙ୍କ ଦୁଇଟି ଖଣ୍ଡରେ ବିଭକ୍ତ କୋଚିନର ଇତିହାସ (କୋଚିରାଜ୍ୟ ଚରିତମ୍) ବ୍ୟତୀତ ଅନ୍ୟ କୌଣସି ଉଲ୍ଲେଖଯୋଗ୍ୟ ଇତିହାସଗ୍ରନ୍ଥ ଆଧୁନିକ ମାଲୟଲମ୍ ସାହିତ୍ୟରେ ଲିଖିତ ହୋଇ ନାହିଁ ।

**ସାମ୍ବାଦିକତା**—ଆଧୁନିକ ମାଲୟଲମ୍ ସାହିତ୍ୟର ଦ୍ରୁତ ଅଗ୍ରଗତି ଲାଗି ସମ୍ବାଦପତ୍ରର ଦାନ ଅପରିସୀମ । ଚଳିତ ଶତାବ୍ଦୀର ପ୍ରାରମ୍ଭରେ କେ. ଭର୍ଗିଜ ମପିଲଇଙ୍କ ସଂପାଦିତ 'ମାଲୟଲମ୍ ମନୋରମା' ସାହିତ୍ୟର ଉନ୍ନତି ଲାଗି ପ୍ରଭୂତ ଉଦ୍ୟମ କରିଥିଲା । କେରଳରେ ପ୍ରଥମ ସାହିତ୍ୟ ସମ୍ମିଳନୀ ଆୟୋଜନ କରିବାରେ ମଧ୍ୟ "ମନୋରମା" ନେତୃତ୍ୱ ନେଇଥିଲା । 'ଭାଷାପୋଷିଣୀ' ସଭା

ଆନୁକୂଲ୍ୟରେ ଏହା ସାହିତ୍ୟିକ କର୍ମପ୍ରବାହକୁ ତ୍ୱରାନ୍ୱିତ କରିଥିଲା । ସୃଷ୍ଟିମୂଳକ ସାହିତ୍ୟକୁ ଉତ୍ସାହିତ କରିବା ଉଦ୍ଦେଶ୍ୟରେ 'ଭାଷାପୋଷିଣୀ' ନାମକ ଏକ ସାହିତ୍ୟ ପତ୍ରିକା ମଧ୍ୟ ପ୍ରଚଳିତ ଥିଲା । ଅନ୍ୟାନ୍ୟ ସାହିତ୍ୟ ପତ୍ରିକାମାନଙ୍କ ମଧ୍ୟରୁ ତ୍ରିଚୂରରୁ ସଂପାଦିତ 'ବିଦ୍ୟାବିନୋଦିନୀ', 'ରସିକରଞ୍ଜିନୀ'; ଭାଲଥୋଲଙ୍କ ଦ୍ୱାରା ସମ୍ପାଦିତ 'ଆତ୍ମପୋଷିଣୀ', 'ମଙ୍ଗଲୋଦୟମ୍' ପ୍ରଭୃତି ପତ୍ରିକାମାନଙ୍କର ନାମ ଉଲ୍ଲେଖ-ଯୋଗ୍ୟ । ପି. ଭି. କ୍ରିଷ୍ଣ ଭରିଅରଙ୍କ ଦ୍ୱାରା ପଚିଶ ବର୍ଷରୁ ଅଧିକ ହେବ କେବଳ କବିତା ସମ୍ପର୍କୀୟ ଏକ ମାସିକପତ୍ର (କବିତ-କୌମୁଦି) ପ୍ରକାଶିତ ହୋଇଆସୁଅଛି । ଏହି ସମୟ ମଧ୍ୟରେ କେରଳର ପ୍ରାୟ ପ୍ରତ୍ୟେକ କବିଙ୍କ ରଚନାବଳୀ ଦ୍ୱାରା ଏହା ସମୃଦ୍ଧ ହୋଇଅଛି ଓ ବହୁ ତରୁଣ କବିଙ୍କ ରଚନା ଏଥିରେ ସର୍ବାଦୌ ପ୍ରକାଶିତ ହୋଇଅଛି । ଭାଲଥୋଲ, ଉଲ୍ଲୁର, ଶଙ୍କରକୁରୁପଙ୍କ କବିତାବଳୀ ଏଥିରେ ନିୟମିତ ପ୍ରକାଶିତ ହେଉଥିଲା ।

'ସମସ୍ତ କେରଳ ସାହିତ୍ୟ ପରିଷଦ' ପକ୍ଷରୁ ମଧ୍ୟ ସାହିତ୍ୟମୂଳକ ଏକ ଉଚ୍ଚାଙ୍ଗ ପତ୍ରିକା ସଂପାଦିତ ହୋଇଥିଲା । ୧୯୩୦ ଠାରୁ ମାସିକ ସାହିତ୍ୟ ପତ୍ରିକା ବ୍ୟତୀତ ସାପ୍ତାହିକ ସାହିତ୍ୟ ପତ୍ରିକା ଗୁଡ଼ିକ ହିଁ ମାଲୟଲମ୍ ସାହିତ୍ୟକୁ ଗଠନ କରିବାରେ ସାହାଯ୍ୟ କରିଅଛି । ଜନପ୍ରିୟ ଦୈନିକ ପତ୍ରିକାମାନଙ୍କ ପକ୍ଷରୁ ହିଁ ଏହି ସାପ୍ତାହିକ ପତ୍ରଗୁଡ଼ିକ ପ୍ରକାଶିତ ହୁଏ । କୋଝିକୋଡ଼ରୁ ପ୍ରକାଶିତ 'ମାତୃଭୂମି', କୁଇଲନରୁ ପ୍ରକାଶିତ 'ମାଲୟଲ୍ ରାଜ୍ୟମ୍' ତରୁଣ ଲେଖକ ମାନଙ୍କର ମୁଖପତ୍ର ସ୍ୱରୂପ ।

**ଅନୁବାଦ**—ସର୍ବପ୍ରଥମେ ମୁଖ୍ୟତଃ ସଂସ୍କୃତ ସାହିତ୍ୟରୁ ଅନୁବାଦ ହେଉଥିଲା । ଚଳିତ ଶତାବ୍ଦୀର ପ୍ରଥମ ଦଶକ ମଧ୍ୟରେ ସଂସ୍କୃତ ସାହିତ୍ୟର ପ୍ରାୟ ସମସ୍ତ କାବ୍ୟ, ମହାକାବ୍ୟ ମାଲୟଲମ୍ ଭାଷାରେ ଅନୂଦିତ ହୋଇଯାଇଥିଲା । ଏହାପରେ ଇଂରାଜୀ ସାହିତ୍ୟର ବହୁ କ୍ଲାସିକକୁ ଅନୁବାଦ କରାଯାଇଥିଲା । ଇଂରାଜୀ ଭାଷା ମାଧ୍ୟମରେ ବଙ୍ଗଳାର କେତେକ ଗ୍ରନ୍ଥ, ବିଶେଷତଃ ବଙ୍କିମଚନ୍ଦ୍ରଙ୍କ ଉପନ୍ୟାସ ଅନୂଦିତ ହୋଇଥିଲା । ରବୀନ୍ଦ୍ରନାଥଙ୍କ ପ୍ରସିଦ୍ଧି ଫଳରେ ମୂଳ ବଙ୍ଗଭାଷାରୁ ମଧ୍ୟ ଅନୁବାଦ କରାଯାଇଥିଲା ।

ପ୍ରଥମ ବିଶ୍ୱଯୁଦ୍ଧ ପରେ ମାନବିକ ସମ୍ପର୍କ ଓ ଆଗ୍ରହ ବ୍ୟାପକତର ହେବାରୁ ଫରାସୀ, ରୁଷ ଓ ଅନ୍ୟ ଭାଷାରୁ ମଧ୍ୟ ମାଲୟଲମ୍ ଭାଷାରେ ବହୁ ଅନୁବାଦ କରାଯାଇଥିଲା । ତରୁଣ ଲେଖକମାନଙ୍କୁ ପ୍ରଭାବିତ କରିବାରେ ଏଗୁଡ଼ିକର ଦାନ ସ୍ୱଳ୍ପ ମନେହୁଏ ନାହିଁ । ତନ୍ମଧ୍ୟରୁ ନଲପ୍ପତ ନାରାୟଣ ମେନନଙ୍କ ଭିକ୍ଟର ହ୍ୟୁଗୋଙ୍କ 'ଲ ମିଜାରେ ବଲର' ଅନୁବାଦ, ଏ. ବାଲକୃଷ୍ଣ ପିଲଇଙ୍କ ମୋପାସାଁଙ୍କ ଗଳ୍ପର ଅନୁବାଦ, ଗୋବିନ୍ଦ କୁରୁପଙ୍କ ଦ୍ୱାରା ଟଲଷ୍ଟୟଙ୍କ 'ଓ୍ୱାର ଆଣ୍ଡ ପିସ୍'ର ଅନୁବାଦର ନାମ ଉଲ୍ଲେଖ-

ଯୋଗ୍ୟ । ଏତଦ୍‌ବ୍ୟତୀତ ମହାତ୍ମା ଗାନ୍ଧୀ, ଜବହରଲାଲ୍‌ ନେହରୁଙ୍କ ଆତ୍ମଜୀବନୀ ମଧ୍ୟ ଅନୂଦିତ ହୋଇଅଛି । ଓମରଖୈୟାମଙ୍କ ରୁବାୟତ୍‌ର ସାତଗୋଟି ଅନୁବାଦ ମାଲୟଲମ୍‌ ସାହିତ୍ୟରେ ଦେଖିବାକୁ ମିଳେ । ମାଲୟଲମ୍‌ରେ ପବିତ୍ର କୋରାନର ମଧ୍ୟ ସୁନ୍ଦର ଅନୁବାଦ ହୋଇଅଛି । କବି ଭାଲଥୋଲ ମଧ୍ୟ ଅନୁବାଦକ ଭାବରେ ପ୍ରଖ୍ୟାତ । ସେ ପାଞ୍ଚଗୋଟି ପୁରାଣ, କାଳିଦାସଙ୍କ ଶାକୁନ୍ତଳମ୍‌, ବତ୍ସରାଜଙ୍କ ସମସ୍ତ ନାଟକ, ଭାସଙ୍କ ଛଅଟି ନାଟକ, ପ୍ରାକୃତରୁ ହାଲଙ୍କ ଗାଥା ସପ୍ତସତୀ ଓ ସମସ୍ତ ଋକ୍‌ବେଦ ସଂହିତାକୁ ମାଲୟଲମରେ ଅନୁବାଦ କରିଅଛନ୍ତି । ଆଇ. ସି ଚାକୋଙ୍କ ପାଣିନିଙ୍କ ବ୍ୟାକରଣର ଅନୁବାଦ ଓ ବ୍ୟାଖ୍ୟା ମଧ୍ୟ ଏକ ମୂଲ୍ୟବାନ ସମ୍ପଦ ।

ପରିଶେଷରେ ଏହା ଉଲ୍ଲେଖ କରାଯାଇପାରେ ଯେ ଚଳିତ ଶତାବ୍ଦୀର ପ୍ରାରମ୍ଭରେ ସାହିତ୍ୟ ସମାଜର ଏକ ଶ୍ରେଣୀ ମଧ୍ୟରେ ସୀମାବଦ୍ଧ ଥିଲା । କେବଳ ଉଚ୍ଚଜାତିର ବ୍ୟକ୍ତିଗଣ ରାଜଦରବାର ଓ ସମ୍ଭ୍ରାନ୍ତ ବ୍ୟକ୍ତିମାନଙ୍କ ପୃଷ୍ଠପୋଷକତା ଲାଭକରି ସାହିତ୍ୟସୃଷ୍ଟିରେ ନିୟୋଜିତ ଥିଲେ । ନବଯୁଗର ପ୍ରାରମ୍ଭକାଳୀନ ଲେଖକବୃନ୍ଦ କେରଳବର୍ମା, ରାଜରାଜବର୍ମା, କୁହ୍ନିକୁଟ୍ଟନ ଅମ୍ପୁରନ ପ୍ରଭୃତି ଲେଖକଗଣ ରାଜଦରବାର ସହିତ ସଂଶ୍ଳିଷ୍ଟ ଥିଲେ । କ୍ରମଶଃ ଏହି ବୃତ୍ତ ପ୍ରଶସ୍ତତର ହେଲା । ୧୯୧୫ରୁ ୧୯୩୬ ମଧ୍ୟରେ ସାହିତ୍ୟ ମଧ୍ୟବିତ୍ତଗୋଷ୍ଠୀର ଆଶ୍ରୟ ଲାଭକଲା । ଏହି ମଧ୍ୟବିତ୍ତଗୋଷ୍ଠୀ ଇଂରାଜୀଶିକ୍ଷା ଲାଭ କରିଥିଲେ ଓ ଏକମାତ୍ର ଆତ୍ମସନ୍ତୋଷ ହିଁ ଏହିମାନଙ୍କର ସାମାଜିକ ଓ ଅର୍ଥନୈତିକ ଦୃଷ୍ଟିକୋଣ ଥିଲା । କେବଳ କୁମାରନ ଆଶାନଙ୍କୁ ଏହାର ବ୍ୟତିକ୍ରମ ଭାବରେ ଗ୍ରହଣ କରାଯାଏ । ସେ ସର୍ବାଦୌ ସାମାଜିକ ଅପରାଧ ବିରୁଦ୍ଧରେ ଦୃଢ଼ ପ୍ରତିବାଦ ଜଣାଇଥିଲେ । ଏହାପରେ ଯେଉଁ ଲେଖକମଣ୍ଡଳୀ ଆବିର୍ଭୂତ ହେଲେ, ସେମାନେ ରାଜନୈତିକ ସ୍ୱାଧୀନତାକୁ ସାହିତ୍ୟର ଲକ୍ଷ୍ୟ ଭାବରେ ଗ୍ରହଣ କରିଥିଲେ । ୧୯୩୦-୪୦ ମଧ୍ୟରେ ଏହି ଦୃଷ୍ଟିକୋଣର ମଧ୍ୟ ବୈପ୍ଳବିକ ପରିବର୍ତ୍ତନ ଦେଖାଦେଲା । କାବ୍ୟକବିତା ରାଜଦରବାର ଓ ମଧ୍ୟବିତ୍ତର ଆରାମପ୍ରଦ ଗୃହ ପରିତ୍ୟାଗ କରି ଦରିଦ୍ର, ନିର୍ଯାତିତ ନିମ୍ନଶ୍ରେଣୀର ପୃଷ୍ଠପୋଷକତା ଓ ଆଶ୍ରୟ ଲାଭକଲା । ସାହିତ୍ୟ ସଂଖ୍ୟାଗରିଷ୍ଠ ଜନସାଧାରଣଙ୍କର ଉତ୍ତରାଧିକାରରେ ପରିଣତ ହେଲା । ଯେଉଁ କେରଳ ରାଜ୍ୟରେ ଶିକ୍ଷାବିସ୍ତାର ସର୍ବାଧିକ ପରିମାଣରେ ହୋଇଅଛି, ଭାରତର ଯେଉଁ ରାଜ୍ୟରେ ସାକ୍ଷରଙ୍କ ସଂଖ୍ୟା ସର୍ବାଧିକ, ସେହି ରାଜ୍ୟରେ ସାହିତ୍ୟ ଜନସାଧାରଣଙ୍କର ବିଷୟ ହେବା ଏକାନ୍ତ ସ୍ୱାଭାବିକ । ଆଧୁନା ସମାଜର ସବୁ ଶ୍ରେଣୀ ଓ ସଂପ୍ରଦାୟର ତରୁଣ ଲେଖକ ସୃଷ୍ଟିଶୀଳ ସାହିତ୍ୟ ରଚନାରେ ମନୋନିବେଶ କରିଅଛନ୍ତି ଓ ଅତୀତର ସାହିତ୍ୟ ଅପେକ୍ଷା ଅଧିକ ବଳିଷ୍ଠ, ସ୍ୱାଭାବିକ ଓ ଜନଜୀବନଧର୍ମୀ ସାହିତ୍ୟ ରଚନାରେ ନିୟୋଜିତ ଅଛନ୍ତି ।

———

# କନ୍ନଡ଼ ସାହିତ୍ୟ

କନ୍ନଡ଼, କର୍ଣ୍ଣାଟ ଓ କର୍ଣ୍ଣାଟକ ଆଦି ଶବ୍ଦ ସମଅର୍ଥ ବୋଧକ, ଏହି କନ୍ନଡ଼ ଭାଷା ସମଗ୍ର ମହୀଶୂର ରାଜ୍ୟ, ବମ୍ବେ, ମାଡ୍ରାଜ ଓ ହାଇଦ୍ରାବାଦର କେତେକ ଜିଲା ଓ କୁର୍ଗରେ ଅଧୁନା ପ୍ରଚଳିତ । କନ୍ନଡ଼ ପଞ୍ଚଦ୍ରାବିଡ଼ ଭାଷା ଗୋଷ୍ଠୀ ମଧ୍ୟରୁ ଅନ୍ୟତମ । ବୈଦିକ ଯୁଗରୁ ଏହି ଦ୍ରାବିଡ଼ ଭାଷା ଗୋଷ୍ଠୀ ବିଦ୍ୟମାନ ଥିବା ଅନୁମେୟ । ମାତ୍ର ୯ମ ଶତାବ୍ଦୀରୁ କନ୍ନଡ଼ ଭାଷାରେ ରଚିତ ସାହିତ୍ୟର ସଂଧାନ ମିଳିଥାଏ ।

କନ୍ନଡ଼ ଭାଷାର ପ୍ରାଚୀନତମ ସାହିତ୍ୟିକ ରଚନା ଭାବରେ 'କବିରାଜ ମାର୍ଗ' ନାମକ ପୁସ୍ତକଟି ଗୃହୀତ ହୋଇଥାଏ । ଏହାର ଲେଖକ ହେଉଛନ୍ତି ରାଷ୍ଟ୍ରକୂଟ ବଂଶର ଜନୈକ ରାଜା ନୃପତୁଙ୍ଗ ବା ଅମୋଘ ବର୍ଷ (୮୧୪-୮୭୭) । ଏହି ଛନ୍ଦୋବଦ୍ଧ ରଚନାଟି କାବ୍ୟ ଓ ଅଳଙ୍କାର ସମ୍ବନ୍ଧୀୟ ଓ ଏଥିରେ ଲେଖକ ତାହାଙ୍କ ପୂର୍ବବର୍ତ୍ତୀ ବହୁ କବିଙ୍କ ରଚନାବଳୀର ଅଂଶ ବିଶେଷ ଉଲ୍ଲେଖ କରିଛନ୍ତି ।

ନବମ ଶତାବ୍ଦୀ ପୂର୍ବରୁ କୌଣସି ସାହିତ୍ୟିକ ରଚନା ଆବିଷ୍କୃତ ନ ହୋଇ ଥିଲେ ହେଁ, ପଞ୍ଚମ ଶତାବ୍ଦୀରୁ କନ୍ନଡ଼ ଭାଷାରେ ଲିଖିତ ବହୁ ଶିଳାଲେଖର ସନ୍ଧାନ ମିଳିଥାଏ । ଏହିସବୁ ଶିଳାଲେଖର ଗଦ୍ୟଶୈଳୀ ଉନ୍ନତ । ଏଣୁ ପଞ୍ଚମ ଶତାବ୍ଦୀ ପୂର୍ବରୁ କନ୍ନଡ଼ ବା କାନାଡ଼ା ଭାଷାରେ ସାହିତ୍ୟ ସୃଷ୍ଟି ହୋଇଥିବା ଅନୁମେୟ । କାଦମ୍ବ ରାଜା କାକୁତଣ ବର୍ମାଙ୍କ (ଖ୍ରୀ: ୬୯୫-୭୮୭) ରାଜତ୍ୱ କାଳୀନ ହଲମିଡ଼ି ଶିଳାଲେଖକୁ କନ୍ନଡ଼ ଭାଷାର ପ୍ରାଚୀନତମ ଶିଳାଲେଖ ଭାବେ ଗ୍ରହଣ କରାଯାଇଥାଏ ।

କନ୍ନଡ଼ ଭାଷାଭାଷୀମାନେ ଏକ ରାଜ୍ୟରେ ବାସ କରୁଥିଲେ ହେଁ, କାଳକ୍ରମେ ବିଭିନ୍ନ ଶାସନାଧୀନରେ ରହିବା ଫଳରେ କନ୍ନଡ଼ଭାଷା ତେଲୁଗୁ, ତାମିଲ ଓ ମରାଠୀ ଭାଷାମାନଙ୍କ ଦ୍ୱାରା ପ୍ରଭାବିତ ହୋଇଥିଲା ଏବଂ କନ୍ନଡ଼ ଭାଷାରେ କେତେକ ଆଞ୍ଚଳିକ ଓ ଉପଭାଷା ମଧ୍ୟ ସୃଷ୍ଟି ହୋଇଥିଲା ।

କନ୍ନଡ଼ ଭାଷାର କେତେକ ଇତିହାସ ଲେଖକ ଏହି ସାହିତ୍ୟର ଇତିହାସକୁ ମୁଖ୍ୟତଃ ତିନି ଭାଗରେ ବିଭକ୍ତ କରିଅଛନ୍ତି । (୧) ୯ମ ଶତାବ୍ଦୀରୁ ୧୨ଶ ଶତାବ୍ଦୀ ପର୍ଯ୍ୟନ୍ତ ଜୈନଯୁଗ, (୨) ୧୨ଶ ଶତାବ୍ଦୀରୁ ୧୫ଶ ଶତାବ୍ଦୀ ପର୍ଯ୍ୟନ୍ତ ବୀର ଶୈବ ବା ଲିଙ୍ଗାୟତ ଯୁଗ, (୩) ୧୫ଶ ଶତାବ୍ଦୀରୁ ୧୮ଶ ଶତାବ୍ଦୀପର୍ଯ୍ୟନ୍ତ ବୈଷ୍ଣବ ଯୁଗ ଓ

(୪) ୧୮ଶ ଶତାବ୍ଦୀରୁ ଆଧୁନିକ ଯୁଗ । ମାତ୍ର କେତେକ ଆଲୋଚକ ଏହି ବିଭାଜନକୁ ସମର୍ଥନ ନ କରି ମହାକାବ୍ୟ ଯୁଗ, ବଚୋଦ୍ଧାର ଯୁଗ (ଭକ୍ତିବାଦୀ ସାଧନାର) ଓ ନବଯୁଗ ଭେଦରେ କନ୍ନଡ଼ ସାହିତ୍ୟର ଇତିହାସକୁ ତିନି ଭାଗରେ ବିଭକ୍ତ କରି ଅଛନ୍ତି ।

## ପ୍ରାଚୀନ ବା ଆଦିଯୁଗ—

ଦଶମ ଶତାବ୍ଦୀରେ କବି ପମ୍ପା ପ୍ରଥମ ତୀର୍ଥଙ୍କରଙ୍କ ଚରିତମୂଳକ ଆଦି ପୁରାଣ (ପମ୍ପା ଭାରତ ନାମରେ ସୁପରିଚିତ) ଓ 'ବିକ୍ରମାର୍ଜୁନ ବିଜୟମ୍'ର ରଚନା କରିଥିଲେ । ଶେଷୋକ୍ତ ପୁସ୍ତକଟିକୁ କବି ମହାଭାରତର ଗଳ୍ପ ଅବଲମ୍ବନରେ ରଚନା କରିଅଛନ୍ତି । ଏହି ଯୁଗରେ ରନ୍ନା ନାମକ କବି ୨ୟ ତୀର୍ଥଙ୍କରଙ୍କ ଚରିତମୂଳକ 'ଅଜିତ ପୁରାଣ' ଓ 'ଗଦାଯୁଦ୍ଧମ୍' ରଚନା କରିଥିଲେ । ଶେଷୋକ୍ତ ପୁସ୍ତକଟି ମହାଭାରତ ବିଷୟାବଲମ୍ବନରେ ରଚିତ । ନାଗଚନ୍ଦ୍ର ଅଭିନବ ପମ୍ପା ବା ପମ୍ପା ୨ୟ ହୟଶାଳାର ବୈଷ୍ଣବଧର୍ମାବଲମ୍ବୀ ରାଜା ବିଷ୍ଣୁବର୍ଦ୍ଧନଙ୍କ ପୃଷ୍ଠପୋଷକତାରେ (ଖ୍ରୀ ୧୧୦୪-୧୧୪୧) ୧୯ଶ ତୀର୍ଥଙ୍କରଙ୍କ ଚରିତମୂଳକ 'ମଲ୍ଲୀନାଥ ପୁରାଣ' ( ୧୯ ତୀର୍ଥଙ୍କର କାହାଣୀ ) ଏବଂ ପମ୍ପା ରାମାୟଣ ନାମରେ ପରିଚିତ 'ରାମଚନ୍ଦ୍ର ଚରିତ୍ର ପୁରାଣ' ରଚନା କରିଥିଲେ ।

ନୃପତୁଙ୍ଗ ସଂସ୍କୃତ ପରିବର୍ତ୍ତେ ସ୍ୱଦେଶର କଥିତ କାନାଡ଼ା ଭାଷାରେ ସାହିତ୍ୟ ରଚନା କରିଥିଲେ । ଏତଦ୍ଦ୍ୱାରା ଜନସାଧାରଣ ସ୍ୱଦେଶର ଭାଷାର ଶକ୍ତି ଓ ସୌନ୍ଦର୍ଯ୍ୟ ବିଷୟରେ ଅବହିତ ହେଲେ । ଏଣୁ ଏହି ଯୁଗକୁ କାନାଡ଼ା ସାହିତ୍ୟର ଯୌବନ କାଳ କୁହାଯାଇପାରେ । ପମ୍ପା ଓ ରନ୍ନା ପ୍ରଭୃତି ଏହି ଯୁଗର ବିଭିନ୍ନ ସମୟର ଲେଖକଗଣ ସଂସ୍କୃତକୁ ପରିହାର କରି ଶୁଦ୍ଧ କାନଡ଼ା ଭାଷାରେ ସାହିତ୍ୟ ରଚନା କରିବାରେ ମନଯୋଗୀ ହୋଇଥିଲେ । ଏହି ସମୟର ଅଧିକାଂଶ କବି ସମ୍ଭବତଃ ସଂସ୍କୃତ ଅପେକ୍ଷା ନିଜର ସ୍ୱାତନ୍ତ୍ର୍ୟ ପ୍ରଦର୍ଶନ କରିବା ଉଦ୍ଦେଶ୍ୟରେ ଚମ୍ପୂ ଶୈଳୀରେ ଭାବ ପ୍ରକାଶ କରିବାକୁ ଶ୍ରେୟସ୍କର ମନେ କରିଥିଲେ । ଚମ୍ପୂ ଶୈଳୀ କାନାଡ଼ାର ବିଶୁଦ୍ଧ ଶୈଳୀ ଭାବେ ସମ୍ମାନିତ ହୋଇଥିଲା । ପନ୍ନା ୧୬ଶ ତୀର୍ଥଙ୍କ ଚରିତକୁ ନେଇ 'ଶାନ୍ତି ପୁରାଣ' ରଚନା କରିଥିଲେ । ପନ୍ନା ଥିଲେ ପମ୍ପା ୧ମଙ୍କର ସମସାମୟିକ । ଏହି ସମୟର ରଚନାମାନଙ୍କ ମଧ୍ୟରୁ 'ତ୍ରିଷଷ୍ଟି ଲକ୍ଷଣ ମହାପୁରାଣ' ( ଚାମୁଣ୍ଡ ରାୟ ପୁରାଣ ) ଏକ ଉଲ୍ଲେଖଯୋଗ୍ୟ ସୃଷ୍ଟି । କାରଣ ଏହା ପୂରାପୂରି ଗଦ୍ୟରେ ହିଁ ରଚିତ ଓ କାବ୍ୟ ଭାବରେ ଏହା କାନାଡ଼ା ସାହିତ୍ୟର ପ୍ରାଚୀନତମ ଗଦ୍ୟ ରଚନା ଭାବେ ପରିଗଣିତ ହୋଇଥାଏ । ଏଥିରେ ୨୪ଶ ତୀର୍ଥଙ୍କରଙ୍କ ଚରିତ ବର୍ଣ୍ଣିତ ହୋଇଅଛି । ନାଗବର୍ମା ଏହି ଯୁଗର ଅନ୍ୟତମ କବି । ସେ

କାନାଡ଼ା ଭାଷାର ବିଭିନ୍ନ ଭାଗ ଓ ଗ୍ରନ୍ଥ ସମ୍ବନ୍ଧରେ 'ଛନ୍ଦୋମ୍ବୋଧି' ଓ ବାଣଙ୍କ 'କାଦମ୍ବିରୀ' ଅନୁବାଦ କରିଥିଲେ ।

ଚତୁର୍ଦ୍ଦଶ ଶତାବ୍ଦୀର ମଧ୍ୟଭାଗରେ କେ. ସି. ରାଜ କାନାଡ଼ା ଭାଷାର ପ୍ରଥମ ବ୍ୟାକରଣ 'ଶବ୍ଦମଣି ଦର୍ପଣ' ପଦ୍ୟରେ ରଚନା କରିଥିଲେ । ଏହାପରି ଭାବରେ ତ୍ରୟୋଦଶ ଶତାବ୍ଦୀ ମଧ୍ୟରେ କାନାଡ଼ା ପଦ୍ୟ ଉନ୍ନତ ଓ ବିଭିନ୍ନ ପ୍ରୟୋଗ ଦ୍ୱାରା ଶ୍ରୀମଣ୍ଡିତ ହୋଇଥିଲା । ପମ୍ପା ୧ମଙ୍କଠାରୁ କେ. ସି. ରାଜଙ୍କ ପର୍ଯ୍ୟନ୍ତ ସମୟକୁ କାନାଡ଼ା ପଦ୍ୟର ଗୌରବମୟ ଯୁଗ କୁହାଯାଇପାରେ । ଗଙ୍ଗ, ରାଷ୍ଟ୍ରକୁଟ, ହୟଶାଳା ବଂଶୀୟ ନରପତିଗଣ ଏହି ସାହିତ୍ୟ ଚର୍ଚ୍ଚା କରି ଏହାକୁ ସମୃଦ୍ଧ କରିବା ସଙ୍ଗେ ସଙ୍ଗେ ବହୁ କବିଙ୍କୁ ପ୍ରୋତ୍ସାହିତ କରିଥିଲେ । ନେମିଚନ୍ଦ୍ର, ରୁଦ୍ରଭଟ୍ଟ, ହରିହର ଓ ରାଘବ ପ୍ରଭୃତି କବିମାନଙ୍କ ମୌଳିକ କାବ୍ୟ ରଚନା ଦ୍ୱାରା କାନାଡ଼ା ସାହିତ୍ୟ ଏହି ଯୁଗରେ ସମୃଦ୍ଧ ହୋଇଥିଲା । କାନାଡ଼ାର ପ୍ରଥମ କାଳ୍ପନିକ କାବ୍ୟ 'ଲୀଳାବତୀ' ନେମିଚନ୍ଦ୍ରଙ୍କ ଦ୍ୱାରା ରଚିତ ହୋଇଥିଲା । ଦ୍ୱାଦଶ ଶତାବ୍ଦୀର ଶେଷ ଭାଗରେ ରୁଦ୍ର-ଭଟ୍ଟ କୃଷ୍ଣଙ୍କର ଜୀବନ ଚରିତକୁ ଚମ୍ପୂ ରୀତିରେ 'ଜଗନ୍ନାଥ ବିଜୟ' କାବ୍ୟରେ ରୂପାୟିତ କରିଛନ୍ତି । ସୁପଣ୍ଡିତ ନାଗବର୍ମା ୨ୟ କାନାଡ଼ା ଭାଷା, ସାହିତ୍ୟ ଓ ବ୍ୟାକରଣ ସମ୍ବନ୍ଧରେ 'କର୍ଣ୍ଣାଟକ ଭାଷା ଭୂଷଣ', 'ବସ୍ତୁକୋଷ' ଓ 'କାବ୍ୟାବଲୋକନ' ନାମକ ତିନୋଟି ଗ୍ରନ୍ଥ ପ୍ରଣୟନ କରିଥିଲେ । ଦୁର୍ଗା ସିଂହ (୧୧୪୫) ପଞ୍ଚତନ୍ତ୍ରର ଗଳ୍ପଗୁଡ଼ିକୁ କାନାଡ଼ାରେ ନୂତନ ଭାବେ ପରିବେଷଣ କରିଥିଲେ । ଏହି ଯୁଗର କବି ହରିହରଙ୍କ ଚମ୍ପୂ କାବ୍ୟ 'ଗିରିଜା କଲ୍ୟାଣ' ଅନ୍ୟ ଏକ ସୁପ୍ରସିଦ୍ଧ ରଚନା । ରାଘବାଙ୍କ ଷଟପଦୀ ଛନ୍ଦରେ ସୁଲଳିତ 'ହରିଶ୍ଚନ୍ଦ୍ର କାବ୍ୟ' ଓ 'ସୋମନାଥ ଚରିତ' ପ୍ରଣୟନ କରିଥିଲେ । ରାଘବାଙ୍କ ଏହି ଷଟ୍‌ପଦୀ ଛନ୍ଦର ଆଦି ପ୍ରୟୋଗ କର୍ତ୍ତା ଭାବେ ସୁବିଦିତ । ଏହାପରି ୯ମ ଶତାବ୍ଦୀର ଶେଷଭାଗର କବି ନୃପତୁଙ୍ଗଙ୍କଠାରୁ ଦ୍ୱାଦଶ ଶତାବ୍ଦୀର ଶେଷଭାଗର କବି ରାଘବାଙ୍କ ପର୍ଯ୍ୟନ୍ତ ଏହି ତିନି ଶତାବ୍ଦୀ ମଧ୍ୟରେ କାନାଡ଼ା ସାହିତ୍ୟ ସଂସ୍କୃତର ପ୍ରଭାବରୁ ନିଜକୁ ମୁକ୍ତ କରି ବିଭିନ୍ନ ଦିଗରେ ନିଜର ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠା କରିବା ସଙ୍ଗେ ସଙ୍ଗେ ଶକ୍ତି ଓ ସୌନ୍ଦର୍ଯ୍ୟ ସମ୍ପନ୍ନ ହୋଇଥିଲା । ନୃପତୁଙ୍ଗଙ୍କଠାରୁ ଆରମ୍ଭ କରି ପମ୍ପା ୧ମ ( ଖ୍ରୀ. ୯୪୧), ରନ୍ନା (ଖ୍ରୀ. ୯୯୩), ଚାଭୁନ୍ଦ ରାୟ ( ଖ୍ରୀ. ୯୭୮ ) ପ୍ରଭୃତି ପ୍ରସିଦ୍ଧ କବିଗଣ ସମ୍ଭବତଃ ଜୈନଧର୍ମାବଲମ୍ବୀ ଥିଲେ ଓ ପ୍ରତ୍ୟେକେ ଜୈନ ପୁରାଣ ରଚନା କରିଥିଲେ ।

## ଜାଗରଣ ବା ଅଭ୍ୟୁଦୟ ଯୁଗ—

ଦ୍ୱାଦଶ ଶତାବ୍ଦୀରେ ବାସବେଶ୍ୱରଙ୍କ ଦ୍ୱାରା ବୈଷ୍ଣବ ଧର୍ମର ବହୁଳ ପ୍ରଚାର ଘଟିଥିଲା । ବୈଦେଶିକ ଆକ୍ରମଣକାରୀଙ୍କ ଦ୍ୱାରା କନ୍ନଡ଼ ଦେଶ ଆକ୍ରାନ୍ତ

ହେବା ଫଳରେ ଜନସାଧାରଣ ସେମାନଙ୍କ ଆତ୍ମସମ୍ମାନ ହରାଇ କ୍ରମେ ରହସ୍ୟବାଦୀ ଓ ପରଲୌକିକ ଭାବନାରେ ଆତ୍ମନିମଗ୍ନ ହେବାକୁ ବାଧ୍ୟ ହେଉଥିଲେ । ବାସବେଶ୍ୱର ଏହି ସମୟରେ ଜାତିର ଆତ୍ମସମ୍ମାନବୋଧକୁ ଜାଗ୍ରତ କରିପାରିଥିଲେ ଓ ଜନସାଧାରଣଙ୍କ ମଧ୍ୟରେ ଏକତା ପ୍ରତିଷ୍ଠା କରିପାରିଥିଲେ । ଏହା ହିଁ ତାଙ୍କର ପ୍ରଧାନ କୃତିତ୍ୱ । ତାହାଙ୍କ ଦ୍ୱାରା କାବ୍ୟରେ 'ବଚନ' ଶୈଳୀର ସୂତ୍ରପାତ ହେଲା ଓ ଏହି ସମୟରୁ ଜନସାଧାରଣଙ୍କ କଥ୍ୟ ଭାଷା କନ୍ନଡ଼ ସାହିତ୍ୟରେ ପ୍ରତିଷ୍ଠା ଲାଭ କଲା । ପରବର୍ତ୍ତୀ ପ୍ରାୟ ତିନି ଶତାବ୍ଦୀ ମଧ୍ୟରେ ବହୁ ପ୍ରସିଦ୍ଧ କବି ଏହି ଶୈଳୀରେ ହିଁ ମୁଖ୍ୟତଃ ସାହିତ୍ୟ ସାଧନା କରିଥିଲେ । ବୀର ଶୈବମାନଙ୍କ 'ବଚନ' ସମୂହ, କୁମାର ବ୍ୟାସ, ଲକ୍ଷ୍ମୀଶ ପ୍ରଭୃତି ବ୍ରାହ୍ମଣ କବିଙ୍କ ଷଟ୍‌ପଦୀ ସମୂହ, ଜୈନଧର୍ମାବଲମ୍ବୀ ରତ୍ନାକର ବର୍ଣ୍ଣୀଙ୍କ 'ସଙ୍ଗତ୍ୟ' ( ଗୀତିକାବ୍ୟ ), ଦାସ ପଦବୀଧାରୀ ଭକ୍ତମାନଙ୍କ ସଙ୍ଗୀତାବଳୀ ତାହାର ନିଦର୍ଶନ ।

କନ୍ନଡ଼ ସାହିତ୍ୟରେ 'ବଚନ'ଗୁଡ଼ିକ ବିଶେଷ ଗୁରୁତ୍ୱପୂର୍ଣ୍ଣ ଓ ସର୍ବାଦୌ ଉଲ୍ଲେଖଯୋଗ୍ୟ । ବାସବେଶ୍ୱର ବହୁ ସହସ୍ର ବଚନର ରଚୟିତା । ବୀର ଶୈବ ଧର୍ମର ତତ୍ତ୍ୱ, ଧର୍ମାଚରଣଗତ ନୀତି-ନିୟମ, ଅନ୍ଧତା ଓ କୁସଂସ୍କାରର ସମାଲୋଚନା, ଶ୍ରମର ମର୍ଯ୍ୟାଦା, ମାନବିକ ସମତା ପ୍ରଭୃତି ବିବିଧ ଭାବନା ଏହି ସମସ୍ତ ବଚନରେ ସୁପରିଚିତ ଉଦାହରଣ ଦ୍ୱାରା ଘରୋଇ ଭାଷାରେ ବର୍ଣ୍ଣିତ । ଏହି ବଚନଗୁଡ଼ିକ ଗଦ୍ୟ ବା ଛନ୍ଦୋବଦ୍ଧ ଶୈଳୀରେ ରଚିତ ନ ହୋଇଥିଲେ ହେଁ ତହିଁରେ ଏକ ବିଚିତ୍ର ଛନ୍ଦର ସ୍ପନ୍ଦନ ନିହିତ । ଜନସାଧାରଣଙ୍କ ପ୍ରାତ୍ୟହିକ ଜୀବନରେ ବ୍ୟବହୃତ ସରଳ ଭାଷାରେ ସେଗୁଡ଼ିକ ରଚିତ । ତାହାର ଭଣିତାରେ ସାଙ୍କେତିକ ଭାବରେ କବିଙ୍କ ଉପାସ୍ୟ ଦେବତାଙ୍କର ନାମ ସୂଚିତ ହୋଇଥାଏ । କାନାଡ଼ା ଭାଷାର ଶତ ଶତ ବଚନକାରଙ୍କ ମଧ୍ୟରୁ ବାସବେଶ୍ୱରଙ୍କ ବ୍ୟତୀତ ଅକ୍କା ମହାଦେବୀ, ଦେବର ଦାସିମାୟାଙ୍କ ନାମ ମଧ୍ୟ ଉଲ୍ଲେଖଯୋଗ୍ୟ । ମୁହେଁ ମୁହେଁ ଏହା ପ୍ରଚଳିତ ଥିଲା ଓ ଅଧୁନା ତାହା ସଂକଳିତ ହୋଇଅଛି । ସରଳତା, ଭାବଗତ ସୌନ୍ଦର୍ଯ୍ୟ ଯୋଗୁଁ ତାହା ପ୍ରବାଦ ବାକ୍ୟ ଓ ପ୍ରବଚନ ଭାବେ କନ୍ନଡ଼ ଭାଷାଭାଷୀ ଅଞ୍ଚଳରେ ସୁପରିଚିତ । ଏହାଛଡ଼ା କନ୍ନଡ଼ ଭାଷାଭାଷୀ ଅଞ୍ଚଳରେ 'ବିରକ୍ତ' (ବୈରାଗୀ) ନାମଧାରୀ ଏକ ସମ୍ପ୍ରଦାୟର ଯୋଗୀ ବିଭିନ୍ନ ସ୍ଥାନରେ ବୁଲି ସରଳ ଭାଷାରେ ଲିଖିତ ଗୀତାବଳୀ ମାଧ୍ୟମରେ ସେମାନଙ୍କ ତତ୍ତ୍ୱ ପ୍ରଚାର କରିଥିଲେ । ନିର୍ଗୁଣ ଯୋଗୀ, ସର୍ବଜ୍ଞଙ୍କ ଗୀତାବଳୀ ତନ୍ମଧ୍ୟରୁ ଅନ୍ୟତମ । ତ୍ରିପଦୀ ଛନ୍ଦରେ ଏହି ଗୀତଗୁଡ଼ିକ ମୁଖ୍ୟତଃ ରଚିତ । ବାସବେଶ୍ୱରଙ୍କ ରଚନାବଳୀର ମହତ୍ତ୍ୱ ଓ ତାହାଙ୍କ ଜୀବନଧାରା ପରବର୍ତ୍ତୀ କାଳରେ ବହୁ ଲେଖକଙ୍କୁ ତାହାଙ୍କ ଜୀବନ ଚରିତ ରଚନା କରିବାକୁ ଅନୁପ୍ରାଣିତ କରିଥିଲା । ନବଯୁଗ ପ୍ରବର୍ତ୍ତକ ପ୍ରତିଭାଶାଳୀ ବ୍ୟକ୍ତିଙ୍କ ଉପରେ ଦେବତ୍ୱ ଆରୋପିତ ହେବା

ସ୍ୱାଭାବିକ । ଚତୁର୍ଦ୍ଦଶ ଶତାବ୍ଦୀର ମଧ୍ୟଭାଗରେ ଭୀମ କବି 'ବାସବ ପୁରାଣ' ରଚନା କରିଥିଲେ, ଏଥିରେ ବାସବଙ୍କୁ ଶିବଙ୍କ ବାହନ ନନ୍ଦୀଙ୍କର ଅବତାର ଭାବରେ ବର୍ଣ୍ଣନା କରାଯାଇଛି ।

ବିଜୟନଗରର ରାଜାମାନେ ଏହି ଯୁଗରେ କନ୍ନଡ଼ ସାହିତ୍ୟକୁ ପ୍ରୋତ୍ସାହିତ କରିଥିଲେ । ଏଣୁ ଏହି ସମୟରେ ବହୁ ଉଚ୍ଚ କୋଟୀର ରଚନା ପ୍ରଣୀତ ହୋଇଥିଲା । ଏହି କବିମାନଙ୍କ ମଧ୍ୟରୁ କୁମାର ବ୍ୟାସ, ଲକ୍ଷ୍ମୀଶ ଓ ସଦକଶରୀ ପ୍ରସିଦ୍ଧତମ । ୧୪ଶ ଶତାବ୍ଦୀରୁ ୧୫ଶ ଶତାବ୍ଦୀ ମଧ୍ୟରେ କୁମାର ବ୍ୟାସ 'କନ୍ନଡ଼ ଭାରତ' ବା 'ଗଦୁଗିନ ଭାରତ' ଏବଂ 'ଏରାବତ' ନାମକ ଦୁଇଟି କାବ୍ୟ ରଚନା କରିଥିଲେ । କନ୍ନଡ଼ ସାହିତ୍ୟର ଏହି ସୁପ୍ରସିଦ୍ଧ ରଚନାଟି ଏବେ ମଧ୍ୟ ଜନସାଧାରଣଙ୍କ ଦ୍ୱାରା ଆଦୃତ । ଲକ୍ଷ୍ମୀଶଙ୍କ ଜନପ୍ରିୟ 'ଜୈମିନୀ ଭାରତ' ମଧ୍ୟ ଛନ୍ଦୋବଦ୍ଧ ରୀତିରେ ରଚିତ ହୋଇଅଛି । ସଦକଶରୀ ତିନଗୋଟି କାବ୍ୟର ରଚୟିତା । ଏହି ତିନଗୋଟି କାବ୍ୟ ଚମ୍ପୂ ରୀତିରେ ରଚିତ । ତାହାଙ୍କ ଶୈଳ ରାଜକୁମାର ସମ୍ବନ୍ଧୀୟ 'ରାଜ-ଶେଖର ବିଳାସ' ଏକ ସୁପ୍ରସିଦ୍ଧ ରଚନା । ତାହାଙ୍କ ଅନ୍ୟତମ ରଚନା 'ଶବର-ଶଙ୍କର ବିଳାସ'ରେ କିରାତବେଶୀ ଶିବଙ୍କ ସହ ଅର୍ଜ୍ଜୁନଙ୍କ ଯୁଦ୍ଧ ବର୍ଣ୍ଣିତ । ଏହି ସମସ୍ତ କାବ୍ୟ ୧୭ଶ ଶତାବ୍ଦୀର ୨ୟାର୍ଦ୍ଧରେ ଲିଖିତ ହୋଇଥିଲା ।

ସଦକଶରୀ ତଥା ତାହାଙ୍କ ପରବର୍ତ୍ତୀ ସମୟରୁ କନ୍ନଡ଼ ସାହିତ୍ୟ ପୁନଶ୍ଚ ସଂସ୍କୃତ ସାହିତ୍ୟ ଦ୍ୱାରା ପ୍ରଭାବିତ ହେବାକୁ ଲାଗିଲା । ସପ୍ତଦଶ ଶତାବ୍ଦୀର ଆରମ୍ଭରେ ଭଟ୍ଟାକଲଙ୍କ କନ୍ନଡ଼ ଭାଷାର ଏକ ବ୍ୟାକରଣ 'କର୍ଣ୍ଣାଟକ ଶବ୍ଦାନୁଶାସନ' (୧୬୦୪) ରଚନା କରିଥିଲେ । ଏହାକୁ ସେ କନ୍ନଡ଼ ଭାଷାରେ ରଚନା ନ କରି ୫୯୨ଟି ସଂସ୍କୃତ ସୂତ୍ର ଓ ସଂସ୍କୃତ ଟୀକାକାରରେ ପ୍ରଣୟନ କରିଥିଲେ । ମାତ୍ର ଏହି ସମୟରେ ପୁରନ୍ଦର ଦାସ, କନକ ଦାସ, ପ୍ରଭୃତି ଭକ୍ତିମାର୍ଗର କବିଗଣ ପ୍ରାଚୀନ ବଚନ ରୀତିରେ ହିଁ ସରଳ ଓ କଥ୍ୟ ଭାଷାରେ ଅସଂଖ୍ୟ ସଙ୍ଗୀତ ରଚନା କରିଥିଲେ । ଏହି ଗୀତଗୁଡ଼ିକ ଆଜି ମଧ୍ୟ ଜନପ୍ରିୟ ।

ଷୋଡ଼ଶ ଏବଂ ସପ୍ତଦଶ ଶତାବ୍ଦୀରେ ସଂସ୍କୃତ ରାମାୟଣ ଏବଂ ଭାଗବତ, କନ୍ନଡ଼ ଭାଷାରେ ଅନୂଦିତ ହୋଇଥିଲା । କନ୍ନଡ଼ ଭାଷାର ପ୍ରଥମ ନାଟକ 'ମିତ୍ରବିନ୍ଦ ଗୋବିନ୍ଦ' ଖ୍ରୀ. ୧୬୮୦ରେ ସିଙ୍ଗରାର୍ୟଙ୍କ ଦ୍ୱାରା ରଚିତ ହୋଇଥିଲା । ଏହା ଶ୍ରୀହର୍ଷଙ୍କ 'ରତ୍ନାବଳୀ' ନାଟକ ଛାୟାରେ ଲିଖିତ । ସିଙ୍ଗରାର୍ୟ ମହୀଶୂର ରାଜା ଦେବରାଜ ଉଡ଼େୟାରଙ୍କ (୧୬୭୨-୧୭୦୪) ସଭାକବି ଥିଲେ । ଏହି ରାଜାଙ୍କ ପୃଷ୍ଠପୋଷକତାରେ କନ୍ନଡ଼ ସାହିତ୍ୟର ବହୁଳ ଉନ୍ନତି ସାଧିତ ହୋଇଥିଲା ।

ଐତିହାସିକ କାରଣରୁ ଏହି ସମୟରେ ସଂସ୍କୃତ ଭାଷା କନ୍ନଡ଼ ଭାଷାଭାଷୀଙ୍କ ଦ୍ୱାରା ବିଶେଷ ସମ୍ମାନିତ, ଆଦୃତ ଓ ପ୍ରଭାବଶାଳୀ ହୋଇଥିଲା । ପଣ୍ଡିତମାନଙ୍କ ମତରେ ସଂସ୍କୃତ ପ୍ରତି ପୁନଶ୍ଚ ଆଗ୍ରହ ପ୍ରକାଶ ପାଇବାରୁ କନ୍ନଡ଼ ସାହିତ୍ୟର ବିକାଶ ପଥରେ ଘୋର ଅନ୍ତରାୟ ସୃଷ୍ଟି ହୋଇଥିଲା । ସମ୍ଭବତଃ ୧୭ଶ ଶତାବ୍ଦୀରେ ସଂସ୍କୃତର ଏହି ବିପୁଳ ପ୍ରଭାବ ଫଳରେ ଜନସାଧାରଣଙ୍କଠାରୁ ସାହିତ୍ୟ ଦୂରେଇ ଯାଇଥିଲା । ୧୭ଶ ଶତାବ୍ଦୀ ପରେ ଆଧୁନିକ ଯୁଗ ପର୍ଯ୍ୟନ୍ତ କନ୍ନଡ଼ ସାହିତ୍ୟରେ କୌଣସି ଉଲ୍ଲେଖଯୋଗ୍ୟ ସୃଷ୍ଟିର ସନ୍ଧାନ ମିଳେ ନାହିଁ । ଅଷ୍ଟାଦଶ ଶତାବ୍ଦୀରେ ରାଜନୈତିକ ଅସ୍ଥିରତା ଯୋଗୁ କନ୍ନଡ଼ ସାହିତ୍ୟ ରାଜକୀୟ ପୃଷ୍ଠପୋଷକତାରୁ ବଂଚିତ ହେଲା । ଏହିପରି ଭାବରେ ପ୍ରାୟ ୫୦୦ ବର୍ଷ ଧରି ଯେଉଁ ସାହିତ୍ୟ ବିକଶିତ ହୋଇ ଆସୁଥିଲା ଓ ଜନସାଧାରଣଙ୍କ ଆଶା ଆକାଂକ୍ଷାକୁ ଏବଂ ନୂତନ ଭାବନା ଓ ନୂତନ ଜୀବନ-ଧାରାକୁ ସହଜ ସରଳ ଭାଷାରେ ପ୍ରକାଶ କରିବାକୁ ସମର୍ଥ ହୋଇଥିଲା, ତାହାର ଗତି ଏକ ପ୍ରକାର ମନ୍ଦୀଭୂତ ହୋଇଯାଇଥିଲା । ସପ୍ତଦଶ ଶତାବ୍ଦୀରୁ ଊନବିଂଶ ଶତାବ୍ଦୀର ଶେଷଭାଗ ପର୍ଯ୍ୟନ୍ତ କାନ୍ନଡ଼ ସାହିତ୍ୟର ଅସ୍ତିତ୍ୱ ଏକ ପ୍ରକାର ଲୁପ୍ତ ହୋଇ ଯାଇଥିଲା କହିଲେ ଚଳେ ।

## ଆଧୁନିକ କନ୍ନଡ଼ ସାହିତ୍ୟ—

ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗରୁ କନ୍ନଡ଼ ସାହିତ୍ୟର ଅସ୍ତିତ୍ୱ ଲୋପ ପାଇଗଲା । ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧ ବେଳକୁ ଭାରତର ରାଜନୈତିକ ମାନଚିତ୍ରର ରୂପ ମଧ୍ୟ ବଦଳି ଯାଇଥିଲା ଓ ଏକ ଦେଶରେ ବସବାସ କରୁଥିବା କନ୍ନଡ଼ ଭାଷାଭାଷୀମାନେ ବାଧ୍ୟହୋଇ ମହୀଶୂର, ହାଇଦ୍ରାବାଦ, ବମ୍ବେ, ମାନ୍ଦ୍ରାଜ ପ୍ରଭୃତି ଅଞ୍ଚଳରେ ବିଚ୍ଛିନ୍ନ ଓ ବିଭକ୍ତ ହୋଇ ରହୁଥିଲେ । ଏଣୁ ମରହଟ୍ଟା, ତେଲୁଗୁ ଓ ତାମିଲ ଭାଷାଭାଷୀ ଅଞ୍ଚଳ ସହିତ ସମ୍ପୃକ୍ତ ରହିବା ଫଳରେ କନ୍ନଡ଼ ଭାଷାକୁ ଆତ୍ମରକ୍ଷା କରିବା ଲାଗି ବହୁ ସଂଗ୍ରାମ କରିବାକୁ ପଡ଼ୁଥିଲା । ବହୁ ପରିମାଣରେ ସଂସ୍କୃତ ଓ ପୂର୍ବୋକ୍ତ ଭାଷାମାନଙ୍କ ଦ୍ୱାରା ପ୍ରଭାବିତ ହେବା ଯୋଗୁ କନ୍ନଡ଼ ଭାଷାରେ ସାହିତ୍ୟ ସୃଷ୍ଟି କରିବାକୁ ମଧ୍ୟ କେହି ସମର୍ଥ ହୋଇପାରି ନ ଥିଲେ ।

ଯାହାହେଉ, ଊନବିଂଶ ଶତାବ୍ଦୀରେ କନ୍ନଡ଼ ସାହିତ୍ୟର ନବ ଅଭ୍ୟୁଦୟ ଲାଗି ଖ୍ରୀଷ୍ଟିୟାନ ମିସନାରୀମାନଙ୍କର କାର୍ଯ୍ୟ ସର୍ବୋଦୌ ଉଲ୍ଲେଖଯୋଗ୍ୟ । ବାଇବେଲକୁ ସେମାନେ କାନାଡ଼ା ଭାଷାରେ ଅନୁବାଦ କରିଥିଲେ । ଊନବିଂଶ ଶତାବ୍ଦୀର ମଧ୍ୟ ଭାଗରେ ସେମାନେ କନ୍ନଡ଼ ଭାଷାରେ ମୁଦ୍ରଣ ବ୍ୟବସ୍ଥା ପ୍ରବର୍ତ୍ତିନ କରିଥିଲେ । କନ୍ନଡ଼ ବ୍ୟାକରଣ ଓ ଅଭିଧାନ ମଧ୍ୟ ସେମାନଙ୍କ ଦ୍ୱାରା ପ୍ରଣୀତ ଓ ସଂକଳିତ ହୋଇଥିଲା । ରେଭରେଣ୍ଡ କିଟେଲ୍‌ଙ୍କ ସୁବିଖ୍ୟାତ କନ୍ନଡ଼ ଇଂରାଜୀ ଅଭିଧାନ

ଓ ଡକ୍ଟର କଲଡ୍‌ୱେଲଙ୍କର ଦ୍ରାବିଡ଼ ଭାଷାମାନଙ୍କର ତୁଳନାତ୍ମକ ବ୍ୟାକରଣ, ଏହି ସମୟରେ ରଚିତ ହୋଇଥିଲା । ଇଂରାଜୀ ଭାଷାରେ ଶିକ୍ଷାପ୍ରାପ୍ତ ବହୁ ଯୁବକଙ୍କ ଉଦ୍ୟମରେ କର୍ଣ୍ଣାଟକ ବିଦ୍ୟା ବର୍ଦ୍ଧକ ସଂଘ ୧୮୯୦ରେ ସ୍ଥାପିତ ହୋଇ ଆଧୁନିକ କନ୍ନଡ଼ ସାହିତ୍ୟ ବିକାଶରେ ସହାୟତା କରିଥିଲା । ଏହି ତରୁଣମାନଙ୍କ ଉଦ୍ୟମରେ ହିଁ ଇଂରାଜୀ ଓ ସଂସ୍କୃତରୁ କେତେକ ସୁବିଖ୍ୟାତ ରଚନା କନ୍ନଡ଼ ଭାଷାରେ ଅନୂଦିତ ହୋଇଥିଲା ।

ଆଧୁନିକ କନ୍ନଡ଼ ସାହିତ୍ୟର ଉନ୍ମେଷ କାଳରେ ନିମ୍ନୋକ୍ତ ପ୍ରବୃତ୍ତିଗୁଡ଼ିକ ଲକ୍ଷଣୀୟ । (୧) ଇଂରାଜୀ ଶିକ୍ଷାର ପ୍ରସାର ଫଳରେ ସଂସ୍କୃତ ପରିବର୍ତ୍ତେ ଇଂରାଜୀ ସାହିତ୍ୟ କନ୍ନଡ଼ ସାହିତ୍ୟକୁ ଅଧିକ ପରିମାଣରେ ପ୍ରଭାବିତ କରିଥିଲା । (୨) ଇଂରାଜୀ ଶିକ୍ଷାପ୍ରାପ୍ତ ବ୍ୟକ୍ତିମାନଙ୍କ ଦ୍ୱାରା ଅଥବା କନ୍ନଡ଼ ଅପେକ୍ଷା ଇଂରାଜୀକୁ ଅଧିକ ଚର୍ଚ୍ଚା କରୁଥିବା ବ୍ୟକ୍ତିମାନଙ୍କ ଦ୍ୱାରା କାନାଡ଼ା ଭାଷାରେ ସାହିତ୍ୟ ରଚିତ ହୋଇଥିଲା । (୩) ଜାତୀୟତାର ଜାଗରଣ ଓ ସ୍ୱଦେଶୀ ପ୍ରଭାବ ଆଧୁନିକ କନ୍ନଡ଼ ସାହିତ୍ୟକୁ ପ୍ରଭାବିତ କରିଥିଲା ଓ ଏହା ବଙ୍ଗ ସାହିତ୍ୟ ଅଭିମୁଖୀ ହୋଇଥିଲା । (୪) ଏହି ସମୟରେ ସାହିତ୍ୟ ରାଜକୀୟ ପୃଷ୍ଠପୋଷକତାରୁ ସମ୍ପୂର୍ଣ୍ଣ ବଞ୍ଚିତ ହେଲା ଓ ସ୍ୱଳ୍ପ ସଂଖ୍ୟକ ସାକ୍ଷର ବ୍ୟକ୍ତିମାନଙ୍କ ଲାଗି ଲେଖକମାନେ କ୍ରମଶଃ ସାହିତ୍ୟ ସୃଷ୍ଟି କରିବାକୁ ବାଧ୍ୟ ହେଲେ । (୫) କନ୍ନଡ଼ ଭାଷାଭାଷୀ ଅଞ୍ଚଳ ବିଭିନ୍ନ ଶାସନାଧୀନରେ ବିଭିନ୍ନ ଭାଗରେ ବିଭକ୍ତ ହେବା ଯୋଗୁ କନ୍ନଡ ଲେଖକମାନଙ୍କ ରଚନାବଳୀ ଏକ କ୍ଷୁଦ୍ର ଅଞ୍ଚଳରେ ହିଁ ଆବଦ୍ଧ ଓ ଆଦୃତ ହେବାକୁ ବାଧ୍ୟ ହେଲା । ଯାହାହେଉ ପୂର୍ବୋକ୍ତ ପରିସ୍ଥିତି ମଧ୍ୟରେ ଚଳିତ ଶତାବ୍ଦୀର ପ୍ରାରମ୍ଭରୁ ହିଁ ଆଧୁନିକ କନ୍ନଡ଼ ସାହିତ୍ୟ ଦ୍ରୁତ ପଦକ୍ଷେପରେ ଅଗ୍ରସର ହେଉଅଛି ।

ଆଧୁନିକ କନ୍ନଡ଼ ସାହିତ୍ୟକୁ ଦୁଇଟି ଯୁଗରେ ବିଭକ୍ତ କରାଯାଇ ପାରେ । ଭାରତର ରାଜନୀତି କ୍ଷେତ୍ରରେ ମହାତ୍ମାଗାନ୍ଧୀଙ୍କର ଆଗମନ କାଳରେ କନ୍ନଡ଼ ଭାଷାରେ ସଂସ୍କୃତ, ଇଂରାଜୀ, ବଙ୍ଗଳା, ମରାଠୀ ପ୍ରଭୃତି ଭାଷାରୁ ମୁଖ୍ୟତଃ ଅନୁବାଦ ଓ ଆହରଣ କରାଯାଇଥିଲା । ବଶବାସବ ଶାସ୍ତ୍ରୀ, ଗୁରମର, ଡି. ଏନ. ମୁଲବଗଲ ପ୍ରଭୃତି ବହୁ ଲେଖକ ସଂସ୍କୃତର ବହୁ ଉପାଦେୟ ଗ୍ରନ୍ଥ ଅନୁବାଦ କରିଥିଲେ । ଧୀରେ ଧୀରେ କନ୍ନଡ଼ ଭାଷାରେ ନୂତନ ଗଦ୍ୟଶୈଳୀର ପ୍ରବର୍ତ୍ତନ ହେଲା । ବିଗତ ଶତାବ୍ଦୀର ପ୍ରାନ୍ତଭାଗରେ କନ୍ନଡ଼ ଭାଷାର ପ୍ରଥମ ଉପନ୍ୟାସ ଜନୈକ ଇଂରାଜୀ ଅନଭିଜ୍ଞ ପ୍ରାଇମେରୀ ସ୍କୁଲର ଶିକ୍ଷକ ଭେଙ୍କଟେଶ ଟିରାକୋ କୁଲକର୍ଣ୍ଣି 'ଗଲଗନାଥ' ଛଦ୍ମନାମରେ ରଚନା କରିଥିଲେ । ନାରାନାପା ନାମକ ଜନୈକ ସ୍କୁଲ ଶିକ୍ଷକ 'ମୁଦ୍ଦନା' ନାମକ ଏକ ପ୍ରାଚୀନ କବିଙ୍କ ଛଦ୍ମନାମରେ ଗଦ୍ୟରେ 'ଅଦ୍ଭୁତ ରାମାୟଣ', 'ରାମାଶ୍ୱମେଧ', ଏବଂ ପଦ୍ୟରେ 'ରାମପଟ୍ଟାଭିଷେକମ୍' ରଚନା କରିଥିଲେ ।

ବିଂଶ ଶତାବ୍ଦୀର ପ୍ରଥମ ଦୁଇ ଦଶକ ମଧ୍ୟରେ ଏମ. ଏସ ପୁଟ୍ଟନାଙ୍କର 'ମାଡ଼ିଦ୍ଦୁନ୍ନୁ ମାରସ୍ୱା' ନାମକ କନ୍ନଡ଼ ଭାଷାର ପ୍ରଥମ ପ୍ରଖ୍ୟାତ ମୌଳିକ ଉପନ୍ୟାସ ରଚନା କରିଥିଲେ । ବଙ୍ଗଳାର ବଙ୍କିମ ଚନ୍ଦ୍ର ଚାଟାର୍ଜି ଏବଂ ମହାରାଷ୍ଟ୍ରର ହରିନାରାୟଣ ଆପ୍ଟେଙ୍କର କେତେକ ଉପନ୍ୟାସକୁ ବି. ଭେଙ୍କଟାଚାର ଏବଂ ଗଲଗନ୍ଥ କନ୍ନଡ଼ରେ ଅନୁବାଦ କରିଥିଲେ । ବାସୁଦେବାଚାର୍ଯ୍ୟ କେରୁର ବହୁ କ୍ଷୁଦ୍ର ଗଳ୍ପ, ନାଟକ, ଉପନ୍ୟାସ ଓ ପ୍ରବନ୍ଧ ତାହାଙ୍କ 'ସୁଭୋଦୟ' ସାପ୍ତାହିକ ପତ୍ରିକା ମାଧ୍ୟମରେ ପ୍ରକାଶ କରି କନ୍ନଡ଼ ସାହିତ୍ୟକୁ ସମୃଦ୍ଧ କରିଥିଲେ । ତାହାଙ୍କ ପ୍ରସିଦ୍ଧ ନାଟକ 'ପତ୍ତବଣ-କରଣ' ଗୋଲ ଡ଼ ସ୍ମିଥଙ୍କର 'ସିଟଷ୍ଟୁ ପସ୍ କଙ୍କର' ଅବଲମ୍ବନରେ ରଚିତ ହେଲେ ହେଁ ମୌଳିକ ନାଟକଭଳି ଏହା ଲେଖକଙ୍କର ମୌଳିକତାରେ ଉଦ୍ଭାସିତ । କେରୁର ସେକ୍ସପିଅରଙ୍କର ରୋମିଓ ଜୁଲିଏଟ, ମର୍ଚ୍ଚାଣ୍ଟ ଅଫ ଭେନିସ୍ ଏବଂ ମିଡ଼୍ ସମର ନାଇଟସ୍ ଡ୍ରିମ୍ କୁ ଅନୁବାଦ କରିଥିଲେ । ତାହାଙ୍କର ତିନୋଟି ଉପନ୍ୟାସ ବହୁ କ୍ଷୁଦ୍ର ଗଳ୍ପ ଏବଂ ଏକ ମୌଳିକ ନାଟକ 'ନଳଦମୟନ୍ତୀ' ହାସ୍ୟରସାତ୍ମକ ରଚନା ଶୈଳୀ ଯୋଗୁଁ ସୁପ୍ରସିଦ୍ଧ । ପାଞ୍ଜେମଙ୍ଗେସ ରାଓ, ମୁଲେ ତିମ୍ମାପ୍ପାୟା ବହୁ କ୍ଷୁଦ୍ର ଗଳ୍ପ ଓ କବିତା ଲେଖିଥିଲେ ହେଁ ମଙ୍ଗେସ ରାଓ କନ୍ନଡ଼ ସାହିତ୍ୟର ଶିଶୁ କବିତା ଓ ଶିଶୁ ସାହିତ୍ୟ ସୃଷ୍ଟିକ୍ଷେତ୍ରରେ ମାର୍ଗ ପ୍ରଦର୍ଶକ । ପରବର୍ତ୍ତୀ କାଳରେ ଜି. ପି. ରାଜରତ୍ନମା 'ମେଭୁଣ୍ଡି ମାଲ୍ଲାରି' ନାମକ ଶିଶୁ ସାହିତ୍ୟ ରଚନା କରି ପ୍ରସିଦ୍ଧି ଅର୍ଜନ କରିଥିଲେ ।

ଏହି ସମୟରେ ସମ୍ବାଦପତ୍ର ଓ ସାହିତ୍ୟ ପତ୍ରିକାମାନଙ୍କର ପ୍ରଚଳନ ଫଳରେ ଗଦ୍ୟର ବିକାଶ ଘଟିଥିଲା । କନ୍ନଡ଼ ଭାଷା ପୁନର୍ବାର ଗଦ୍ୟ ଓ ପଦ୍ୟ ଉଭୟ କ୍ଷେତ୍ରରେ ଶକ୍ତିସମ୍ପନ୍ନ ଓ ସମୃଦ୍ଧ ହୋଇଥିଲା । ଗାନ୍ଧୀବାଦୀ ଆନ୍ଦୋଳନ ଓ ଅସହଯୋଗ ଆନ୍ଦୋଳନ ଏହି ଜାଗରଣକୁ ଉଜ୍ଜୀବିତ କରିଥିଲା । ବ୍ୟକ୍ତିର ଆତ୍ମସମ୍ମାନ-ବୋଧ ଓ ଜାତୀୟ ସ୍ୱାଧୀନତା ଆକାଂକ୍ଷା ତରୁଣ ଲେଖକଙ୍କର କଳ୍ପନାକୁ ଦୀପ୍ତ କଲା । ଅତୀତର ବନ୍ଧନକୁ ଛିନ୍ନ କରିବା ହିଁ ସେତେବେଳର ବହୁ ତରୁଣଙ୍କର ସ୍ୱପ୍ନ ଥିଲା । ସେମାନଙ୍କ ମଧ୍ୟରୁ ଡି: ଆର: ବେନ୍ଦ୍ରେ, କେ: ଭି: ପୁଟ୍ଟାପା, କେ: ଶଙ୍କର ଭଟ୍ଟ ଏହି ତିନିଜଣଙ୍କର ନାମ ଉଲ୍ଲେଖଯୋଗ୍ୟ । ସେମାନଙ୍କର ଗୀତି କବିତା ଏବଂ ଗାଥା ଗୀତିକା କନ୍ନଡ଼ ଭାଷାଭାଷୀ ଅଞ୍ଚଳକୁ ପରିପ୍ଲାବିତ କରିଥିଲା । ଏହି ସମୟରେ ରବୀନ୍ଦ୍ରନାଥ ଠାକୁରଙ୍କର କବିତା ମଧ୍ୟ କେ: ଭି: ପୁଟ୍ଟାପା ପ୍ରଭୃତି ତରୁଣ କବିମାନଙ୍କୁ ପ୍ରଭାବିତ କରିଥିଲା । ବେନ୍ଦ୍ରେଙ୍କର 'ମେଘଦୂତ' ଓ ପି. ଟି. ନରସିଂହା ଚାରଙ୍କ 'ଗଣେଶ ଦର୍ଶନ' କନ୍ନଡ଼ ସାହିତ୍ୟର ଏକ ମନୋରମ ଗୀତିକାବ୍ୟ ।

ଆଧୁନିକ ଗୀତି କବିମାନେ ମୁଖ୍ୟତଃ କ୍ଷୁଦ୍ର କବିତାକୁ ହିଁ ଭାବ ପ୍ରକାଶର ମାଧ୍ୟମ ଭାବେ ଗ୍ରହଣ କରନ୍ତି । ତିରିଶ ବର୍ଷ ପୂର୍ବର କାବ୍ୟକବିତାର ରଚନାଶୈଳୀ

ଭାବଧାରା ଅଧୁନା ପରିବର୍ତ୍ତିତ ହୋଇଯାଇଅଛି । ଗୋପାଳକୃଷ୍ଣ ଆଡ଼ିଗା, ଶିବରୁଦ୍ରପ୍ପା, ପି. ଟି. ନରସିଂହାଚାର୍, ବି: କେ: ଦୀକ୍ଷିତ୍ ପ୍ରଭୃତି କାବ୍ୟକବିତା ରଚନା କ୍ଷେତ୍ରରେ ଅଗ୍ରଗଣ୍ୟ । ୧୯୬୦ ଖ୍ରୀଷ୍ଟାବ୍ଦରୁ ୧୯୩୦ ଖ୍ରୀଷ୍ଟାବ୍ଦ ମଧ୍ୟରେ କବିମାନେ ମୁଖ୍ୟତଃ ଆତ୍ମସମ୍ମାନର ପୁନର୍ଜାଗରଣ, ଦେଶାତ୍ମବୋଧ, ସତ୍ୟ ଓ ସୌନ୍ଦର୍ଯ୍ୟକୁ ପ୍ରକାଶ କରିବା ଲାଗି ସଚେଷ୍ଟ ହୋଇଥିଲେ । ଏହି ଆଧୁନିକ କବିମାନଙ୍କ ମଧ୍ୟରୁ ଏନ୍: ଗୋବିନ୍ଦ ପାଇ, ଭି: କେ: ଗୋକକ୍, କେ: ସୀତାରାମାୟା, ଆର୍: ଏସ୍: ମୁଗଲି, ବେଟଗେରି କୃଷ୍ଣଶର୍ମା, ପି: ଟି: ନରସିଂହାଚାର୍ ପ୍ରଭୃତିଙ୍କର ନାମ ବିଶେଷଭାବେ ଉଲ୍ଲେଖଯୋଗ୍ୟ ।

**ଆଧୁନିକ କନ୍ନଡ଼ କ୍ଷୁଦ୍ରଗଳ୍ପ ଓ ଉପନ୍ୟାସ**—ମସ୍ତି ଭେଙ୍କଟେଶ୍ ଅୟ୍ୟାଙ୍ଗାର (ଶ୍ରୀନିବାସ) ସରଳ ଭାଷାରେ ଏବଂ ସରୋଇ ଶୈଳୀରେ ଦୈନନ୍ଦିନ ଜୀବନର ଘଟଣାବଳୀକୁ କ୍ଷୁଦ୍ର ଗଳ୍ପାକାରରେ ରୂପ ଦେଇ ପ୍ରସିଦ୍ଧି ଓ ଜନପ୍ରିୟତା ଅର୍ଜନ କରିଅଛନ୍ତି । ସ୍ୱଳ୍ପ ପରିସରରେ ଓ ସ୍ୱଳ୍ପ ପରିମିତ ସମୟ ମଧ୍ୟରେ ଜୀବନ୍ତ ଚରିତ୍ର ଚିତ୍ରଣରେ ସେ ସୁଦକ୍ଷ । ତାହାଙ୍କର 'ସୁବ୍ବନା' କ୍ଷୁଦ୍ରଗଳ୍ପଟି ସର୍ବଶ୍ରେଷ୍ଠ ରଚନା ଭାବେ ପରିଗଣିତ ହୁଏ । ତାହାଙ୍କ ରଚନା ଶୈଳୀ ବହୁ ତରୁଣ ଲେଖକଙ୍କୁ କ୍ଷୁଦ୍ରଗଳ୍ପ ରଚନା କରିବାକୁ ଅନୁପ୍ରାଣିତ କରିଥିଲା । ତାହାଙ୍କର ଶୈଳୀକୁ ଅନୁସରଣ କରି କ୍ଷୁଦ୍ରଗଳ୍ପ ରଚନା କରିଥିବା ଲେଖକମାନଙ୍କ ମଧ୍ୟରୁ ଏ: ସିଥାରାମ (ଆନନ୍ଦ) ଅଗ୍ରଗଣ୍ୟ । ଏତଦ୍‌ବ୍ୟତୀତ ଜୀବିତ କ୍ଷୁଦ୍ରଗଳ୍ପ ଲେଖକମାନଙ୍କ ମଧ୍ୟରୁ ସି: କେ: ଭେଙ୍କଟରାମାୟା, ଏ ଏନ୍. କୃଷ୍ଣାରାଓ, ତା, ରା, ସୁ, ବାସବରାଜ, କଟ୍ଟିମନି ବେଟଗେରି କୃଷ୍ଣଶର୍ମା ପ୍ରଭୃତିଙ୍କର ନାମ ଉଲ୍ଲେଖଯୋଗ୍ୟ ।

ଏତଦ୍‌ବ୍ୟତୀତ ଗୋରୁର ରାମସ୍ୱାମୀ ଆୟ୍ୟାଙ୍ଗାର କ୍ଷୁଦ୍ରଗଳ୍ପ ଲେଖକ ଭାବେ ମଧ୍ୟ ସୁପ୍ରସିଦ୍ଧ । ଗ୍ରାମ୍ୟ ଜୀବନର ଘଟଣାକୁ ଆଧୁନିକ ସାହିତ୍ୟରେ ହାସ୍ୟରସପୂର୍ଣ୍ଣ ଶୈଳୀରେ ଓ ସରଳ ଶୈଳୀରେ ଅଭିବ୍ୟକ୍ତ କରିବାରେ ସେ ଯଶସ୍ୱୀ ।

ବିଳମ୍ବରେ କନ୍ନଡ଼ ସାହିତ୍ୟରେ ଉପନ୍ୟାସର ଆବିର୍ଭାବ । ଚଳିତ ଶତାବ୍ଦୀର ପ୍ରାରମ୍ଭରେ ବି. ଭେଙ୍କଟାଚାର୍ ଓ ଗଳଗନ୍ଥ ଅନ୍ୟ ଭାଷାରୁ ଆହରଣ କରି ଉପନ୍ୟାସ ରଚନା କରିଥିଲେ । କେରୁର ବାସୁଦେବାଚାର୍ ତିନିଗୋଟି ଉପନ୍ୟାସ ସାଧୁ ଭାଷାରେ ରଚନା କରିଥିଲେ । ବିଗତ ପ୍ରାୟ ପଚିଶ ବର୍ଷ ମଧ୍ୟରେ ହିଁ କନ୍ନଡ଼ ଉପନ୍ୟାସ-ସାହିତ୍ୟର ବିକାଶ ସାଧିତ ହୋଇଅଛି । ଉକ୍ତ ଲେଖକମାନଙ୍କ ମଧ୍ୟରୁ ଏ. ଏନ୍. କୃଷ୍ଣରାଓ, କେ: ଶିଭରାମ କାରାନ୍ତ, ଭି. ଏମ୍. ଇନାମଦାର୍, ବାସବରାଜ, କଟ୍ଟିମନି, ମିରଜି ଆନ୍ନାରାଓ ପ୍ରଭୃତି ଅଗ୍ରଗଣ୍ୟ । ଏମାନଙ୍କ ବ୍ୟତୀତ ବେଟଗେରି କୃଷ୍ଣଶର୍ମା, ଭି. କେ. ଗୋକକ, ଆର. ଏସ୍. ମୁଗଲି ମଧ୍ୟ କେତୋଟି ଉତ୍କୃଷ୍ଟ ଉପନ୍ୟାସ ରଚନା କରିଅଛନ୍ତି । ଚରିତ୍ର ଚିତ୍ରଣ

ଅପେକ୍ଷା ପରିଷ୍କିତ ବିଶ୍ଳେଷଣରେ ଇନାମ୍‌ଦାର୍ ଅଧିକ କୃତିତ୍ୱ ଅର୍ଜନ କରିଅଛନ୍ତି । ବିଗତ କେତେବର୍ଷ ମଧ୍ୟରେ କାନଡ଼ା ଭାଷାଭାଷୀଙ୍କ ମଧ୍ୟରେ ଉପନ୍ୟାସ ଜନପ୍ରିୟତା ଲାଭ କରିଅଛି ।

**ଗଦ୍ୟ**—ପଣ୍ଡିତ ତାରାନାଥ, ଡ଼ଃ ଭିଃ ସୀତାରାମ୍ଇୟା, ସୁଣ୍ଡାପ୍ପା ଏବଂ ଶ୍ରୀରଙ୍ଗା, ଭି. କେ. ଗୋକୁଳ କାରନ୍ତ, ଏନ୍. କସ୍ତୁରୀ, ଏ. ଏନ୍. ମୂର୍ତ୍ତୀ ରାଓ, ପ୍ରବନ୍ଧ ଲେଖକ ଭାବରେ ଆଧୁନିକ କନ୍ନଡ଼ ସାହିତ୍ୟରେ ପ୍ରଖ୍ୟାତ ।

**ଆଧୁନିକ କନ୍ନଡ଼ ନାଟକ**—ଆଧୁନିକ କାଳ ପର୍ଯ୍ୟନ୍ତ କନ୍ନଡ଼ ସାହିତ୍ୟରେ ନାଟକ ରଚିତ ହୋଇ ନ ଥିଲା । ଅବଶ୍ୟ ସପ୍ତମ ଶତାବ୍ଦୀରେ ରଚିତ 'ମିତ୍ରବିନ୍ଦ ଗୋବିନ୍ଦ'କୁ ଏ କ୍ଷେତ୍ରରେ ଏକ ବ୍ୟତିକ୍ରମ ଭାବରେ ଗ୍ରହଣ କରାଯାଏ । ଚଳିତ ଶତାବ୍ଦୀର ପ୍ରାରମ୍ଭରେ କନ୍ନଡ଼ ଭାଷାରେ କେତୋଟି ନାଟକ ଲିଖିତ ହୋଇଥିଲେ ହେଁ ତାହା କେବଳ ସଂସ୍କୃତ ବା ଇଂରାଜୀରୁ ହିଁ ଅନୂଦିତ ହୋଇଥିଲା । ସମ୍ଭବତଃ କେରୁର ବାସୁଦେବାଚାରଙ୍କର 'ନଳଦମୟନ୍ତୀ' ହେଉଛି ପ୍ରଥମ ମୌଳିକ କନ୍ନଡ଼ ନାଟକ ।

ଲିଖିତ ନାଟକ ନ ଥିଲେ ହେଁ କର୍ଣ୍ଣାଟକରେ ବହୁ ପ୍ରାଚୀନ କାଳରୁ ଗ୍ରାମ୍ୟ ମଞ୍ଚମାନଙ୍କରେ ପୌରାଣିକ ବିଷୟ ସମ୍ବନ୍ଧୀୟ 'ଗଣ' ନାମରେ ପରିଚିତ ଗ୍ରାମ୍ୟ ଅଭିନୟ ପ୍ରଦର୍ଶିତ ହେଉଥିଲା । ଏହାର ଅଭିନୟକାରୀମାନେ ନିରକ୍ଷର ଥିବାରୁ ତାହା ଲିଖିତ ରୂପେ ସଂରକ୍ଷିତ ହୋଇପାରି ନ ଥିଲା । ଚଳିତ ଶତାବ୍ଦୀର ତୃତୀୟ ଦଶକର ପ୍ରାରମ୍ଭରୁ ନାଟକ ରଚନା ଓ ଅଭିନୟର ସୂତ୍ରପାତ ହେଲା । ଏଚ୍. ନାରାୟଣ ରାଓ 'ସ୍ତ୍ରୀ ଧର୍ମ ରହସ୍ୟ' ଓ ଟି. ପି କୈଳାସଙ୍କର 'ତୋଳୁଗୋଷ୍ଠି' ଉପନ୍ୟାସ ଦୁଇଟିକୁ ଆଧୁନିକ କନ୍ନଡ଼ ନାଟକର ପ୍ରାଥମିକ ଉଦ୍ୟମ ଭାବରେ ଗ୍ରହଣ କରାଯାଇଛି ।

ଏତଦ୍‌ବ୍ୟତୀତ କେ. ଏସ୍. କରନ୍ତଙ୍କ ଓ ଶ୍ରୀରଙ୍ଗାଙ୍କ ନାମ ମଧ୍ୟ ଏ ସମ୍ପର୍କରେ ଉଲ୍ଲେଖଯୋଗ୍ୟ । ଶ୍ରୀରଙ୍ଗା ଆଧୁନିକ ନାଟ୍ୟକାରମାନଙ୍କ ମଧ୍ୟରୁ ସମସାମୟିକ ମଧ୍ୟବିତ୍ତ ଶ୍ରେଣୀର ଜୀବନଧାରା, ବେକାରି, ସାମାଜିକ ପ୍ରତାରଣା, ଯୌଥ ପରିବାର, ସାଧାରଣ ଜୀବନର ଦୁର୍ନୀତିକୁ ରୂପ ଦେବାରେ ଯଶସ୍ୱୀ । କୈଳାସ ଏବଂ ଶ୍ରୀରଙ୍ଗା ନାଟକରେ ହାସ୍ୟରସାତ୍ମକ ଶୈଳୀକୁ ଜନପ୍ରିୟ କରିବାରେ ଅପ୍ରତିଦ୍ୱନ୍ଦ୍ୱୀ । ଗୀତିନାଟ୍ୟ ରଚନା କରିବାରେ କେ. ଭି. ପୁଟ୍ଟାପା, ଏନ୍. କେ. କୁଲ୍‌କର୍ଣ୍ଣି, ଏମ୍. ଗୋବିନ୍ଦ ପାଇ ଓ ଶ୍ରୀନିବାସଙ୍କ ନାମ ମଧ୍ୟ ଉଲ୍ଲେଖଯୋଗ୍ୟ ।

ବିଗତ ଅର୍ଦ୍ଧଶତାବ୍ଦୀ ମଧ୍ୟରେ ଏହିପରି ବହୁ ପ୍ରତିବନ୍ଧକ ସତ୍ତ୍ୱେ କନ୍ନଡ଼ ସାହିତ୍ୟର ବଳିଷ୍ଠ ଏବଂ ବହୁମୁଖୀ ବିକାଶ ସାଧିତ ହେବା ଯୋଗୁଁ ଏହା ଆଧୁନିକ ଭାରତୀୟ ଭାଷା ଓ ସାହିତ୍ୟ କ୍ଷେତ୍ରରେ ଏକ ସୁପ୍ରତିଷ୍ଠିତ ଆସନ ଲାଭ କରିବାକୁ ସମର୍ଥ ହୋଇଅଛି ।

---

# ବଙ୍ଗଳା ସାହିତ୍ୟ

ଭାରତୀୟ ଆର୍ଯ୍ୟଭାଷାଗୋଷ୍ଠୀର ଅନ୍ୟତମ ଶାଖା ପୂର୍ବ ପ୍ରାକୃତ ଭାଷାରୁ ବଙ୍ଗଳାଭାଷା ଉଦ୍ଭୂତ । ନେପାଳ ଦରବାରରୁ ପ୍ରାପ୍ତ ମହାଯାନ ମତାବଲମ୍ବୀ ତାନ୍ତ୍ରିକ ବୌଦ୍ଧଭାବନାଶ୍ରିତ ଚର୍ଯ୍ୟାପଦକୁ ମଧ୍ୟ ବଙ୍ଗସାହିତ୍ୟର ପ୍ରାଚୀନତମ ରଚନା ଭାବରେ ଗ୍ରହଣ କରାଯାଇଥାଏ । ଆଲୋଚକମାନଙ୍କ ମତରେ ଏହି କ୍ଷୁଦ୍ର ଗୀତଗୁଡ଼ିକ ଦଶମରୁ ଦ୍ୱାଦଶ ଶତାବ୍ଦୀ ମଧ୍ୟରେ ରଚିତ ହୋଇଥିଲା । ସେତେବେଳେ ବଙ୍ଗଦେଶ ପ୍ରଧାନତଃ ସେନ ରାଜବଂଶ (ଖ୍ରୀ: ୧୦୦୦—ଖ୍ରୀ:୧୨୦୦) ଦ୍ୱାରା ଶାସିତ ହେଉଥିଲା ।

**ବଙ୍ଗଳା ସାହିତ୍ୟର ଯୁଗ ବିଭାଗ** — ଦଶମ ଶତାବ୍ଦୀରୁ ଦ୍ୱାଦଶ ଶତାବ୍ଦୀ ଅର୍ଥାତ୍ ବଙ୍ଗଳାରେ ମୁସଲମାନ ରାଜତ୍ୱ ପ୍ରତିଷ୍ଠା ସମୟକୁ ବଙ୍ଗ-ସାହିତ୍ୟରେ 'ଆଦିଯୁଗ' କୁହାଯାଇଥାଏ । ଏହାପରେ ତ୍ରୟୋଦଶ ଶତାବ୍ଦୀରୁ ଅଷ୍ଟାଦଶ ଶତାବ୍ଦୀର ଶେଷ ବା ଇଂରେଜ ରାଜତ୍ୱର ପ୍ରତିଷ୍ଠା ପର୍ଯ୍ୟନ୍ତ ସମୟକୁ ବଙ୍ଗସାହିତ୍ୟର 'ମଧ୍ୟଯୁଗ' କୁହାଯାଏ ।

ଇଂରେଜ ରାଜତ୍ୱ ପ୍ରତିଷ୍ଠାର ପରବର୍ତ୍ତୀ ସମୟ ବଙ୍ଗସାହିତ୍ୟର 'ଆଧୁନିକ ଯୁଗ' ଭାବରେ ଗୃହୀତ ହୁଏ । କେହି କେହି ପ୍ରାଚୀନ ସାହିତ୍ୟକୁ 'ଚୈତନ୍ୟ ପୂର୍ବଯୁଗ' ଓ 'ଚୈତନ୍ୟୋତ୍ତର ଯୁଗ' ଭାବରେ ମଧ୍ୟ ନାମିତ କରିଥାନ୍ତି । ଆଧୁନିକ ଭାରତୀୟ ସାହିତ୍ୟଗୋଷ୍ଠୀ ମଧ୍ୟରୁ ବଙ୍ଗଳା ସାହିତ୍ୟର ଆଧୁନିକ ଯୁଗ ସବୁଠାରୁ ପ୍ରଗତିଶୀଳ ଓ ସମୃଦ୍ଧତମ । ବଙ୍ଗସାହିତ୍ୟର ଆଧୁନିକ ଯୁଗକୁ 'ବଙ୍କିମଚନ୍ଦ୍ର ଯୁଗ' ବା ପ୍ରାକ୍ ରବୀନ୍ଦ୍ରନାଥ ଯୁଗ, ରବୀନ୍ଦ୍ରଯୁଗ ଓ ରବୀନ୍ଦ୍ରୋତ୍ତର ଯୁଗ, ଏହିପରି ତିନି ଭାଗରେ ବିଭକ୍ତ କରାଯାଇଥାଏ ।

ମଧ୍ୟଯୁଗର ପ୍ରଥମାର୍ଦ୍ଧ ଅର୍ଥାତ୍ ଚୈତନ୍ୟଙ୍କ ପୂର୍ବବର୍ତ୍ତୀ ଯୁଗର ସୁପ୍ରସିଦ୍ଧ କବି ଭାବରେ ଚଣ୍ଡୀଦାସ, କୃତ୍ତିବାସ ଓଝା, ମାଳାଧର ବସୁ, ବିଜୟଗୁପ୍ତ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ । ଆନୁମାନିକ ଷୋଡ଼ଶ ଶତାବ୍ଦୀର ପ୍ରଥମ ଭାଗରେ ମୁକୁନ୍ଦରାମ ଚକ୍ରବର୍ତ୍ତୀ 'ଚଣ୍ଡିମଙ୍ଗଳ' କାବ୍ୟ ରଚନା କରିଥିଲେ । ଏଥିରେ ତତ୍କାଳୀନ ନରନାରୀଙ୍କ ଯଥାଯଥ ରୂପାୟନ ଏବଂ ଚଣ୍ଡୀ ଉପାସନାର ମହତ୍ତ୍ୱ ପ୍ରତିପାଦିତ ହୋଇଅଛି । ଏହି କାବ୍ୟରେ ଦୁଇଟି କାହାଣୀ, ଯଥା—ବ୍ୟାଧ କାଳକେତୁ ଓ ଧନପତି ସଦାଗର (ସୌଦାଗର)ର କାହାଣୀ ବର୍ଣ୍ଣିତ ହୋଇଅଛି । ଏହାର କିଛି ପୂର୍ବରୁ ରାଧାକୃଷ୍ଣଙ୍କ

ପ୍ରେମଲୀଳାକୁ ଉପଜୀବ୍ୟ କରି ବଡ଼ୁ ଚଣ୍ଡୀ ଦାସ 'ଶ୍ରୀକୃଷ୍ଣକୀର୍ତ୍ତିନ' ରଚନା କରିଥିଲେ । ଜୟଦେବଙ୍କ 'ଗୀତଗୋବିନ୍ଦ' ପ୍ରଭାବରେ ତାହାଙ୍କର ଏହି ଗୀତଗୁଡ଼ିକ ଯେ ରଚିତ, ଏହା କହିବା ଅନାବଶ୍ୟକ ।

ଦୟିତର ବଂଶୀଧ୍ୱନି ରାଧାଙ୍କ ପ୍ରାଣକୁ କପରି ଅଭିଭୂତ କରିଥିଲା, ତାହାକୁ ବର୍ଣ୍ଣନା କରି ଚଣ୍ଡୀଦାସ ଲେଖିଛନ୍ତି—

'କେ ନା ବାଁଶୀ ବାଏ ବାଡ଼ାୟି କାଳନୀ ନଈ କୂଲେ
କେ ନା ବାଁଶୀ ବାଏ ବଡ଼ାୟି ଏ ଗୋଠ ଗୋକୁଲେ ।
ଆକୁଲ ଶରୀର ମୋର ବେଆକୁଲ ମନ
ବାଁଶୀର ଶବଦେଁ ମୋ ଆଉଲାଇଲୋଁ ରାନ୍ଧନ ।
କେ ନା ବାଁଶୀ ବାଏ ବଡ଼ାୟି ସେ ନା କୋନ ଜନା
ଦାସୀ ହୁଆଁ ତା'ର ପାଏ ନଶିବୋଁ ଆପନା ।
କେ ନା ବାଁଶୀ ବାଏ ବଡ଼ାୟି ଚିତ୍ତେର ହରିଷେ
ତାର ପାଏ ବଡ଼ାୟି ମୈଁ କୈଲୋଁ କୋନ ଦୋଷେ ।
ଅଝାର ଝରଏ ମୋର ନୟନେର ପାନୀ
ବାଁଶୀର ଶବଦେଁ ବଡ଼ାୟି ହାରାଇଲୋଁ ପରାଣୀ ।
ଆକୁଲ କରିତେଁ କିବା ଆହ୍ମାର ମନ
ବାଜାଏ ସୁସର ବାଁଶୀ ନନ୍ଦେର ନନ୍ଦନ ।
ପାଖି ନ ହେଁ। ତାର ଠାଇ ଉଡ଼ି ପଡ଼ି ଜାଓଁ
ମେଦନୀ ବିଦାର ଦେଉ ପସିଆଁ ଲୁକାଓଁ ।
ବନପୋଡ଼େ ଆଗ ବଡ଼ାୟି ଜଗ ଜନେ ଜାନୀ
ମୋର ମନ ପୋଡ଼େ ଯେହ୍ନ କୁମ୍ଭାରେର ପଣୀ ।

ପଞ୍ଚଦଶ ଶତାବ୍ଦୀର ଶେଷଭାଗରେ ଅଥବା ଷୋଡ଼ଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ କବି କୃତ୍ତିବାସ ଓଝା ବଙ୍ଗଭାଷାରେ ରାମାୟଣ ଓ ଷୋଡ଼ଶ ଶତାବ୍ଦୀର ଶେଷାର୍ଦ୍ଧରେ କବି କାଶୀରାମ ଦାସ ମହାଭାରତ ପ୍ରଣୟନ କରିଥିଲେ । ବଙ୍ଗ-ସାହିତ୍ୟର ସର୍ବାପେକ୍ଷା ଜନପ୍ରିୟ ଏହି କାବ୍ୟଦ୍ୱୟ ସହଜ ସରଳ ଲୋକପ୍ରଚଳିତ ଭାଷାରେ ରଚିତ ।

ଉଦାହରଣସ୍ୱରୂପ କୃତ୍ତିବାସଙ୍କ ରାମାୟଣରୁ କିୟଦଂଶ ପ୍ରାଚୀନ ବଙ୍ଗ ଭାଷାର ନମୁନା ଭାବରେ ଏଠାରେ ଉଦ୍ଧୃତ ହେଲା । କୃତ୍ତିବାସ ଗୌଡ଼ରାଜଙ୍କ ଦରବାରରେ କିପରି ସମ୍ବର୍ଦ୍ଧିତ ହୋଇଥିଲେ, ତାହା ଏଠାରେ ବର୍ଣ୍ଣିତ ହୋଇଅଛି ।

'ପାଣ ମିଣ ସଭେ ବଲେ ପୁନ ଦ୍ୱିଜରାଜେ
ଯତ ଝୁଜ ତତ ଦତେ ପାରେ ମହାରାଜେ ।
କାର କିଛୁ ନାଞି ଲଇ କରି ପରିହାର
ଯଥା ଯାଇ ତଥାୟ ଗୌରବ ମାଣ ସାର ।
ଆକୃତ ପ୍ରକୃତ ଆମି ଯତ ଅଛିତ
ପାଟ ପାଛଡ଼ା ପାଇଲୁ ଆମି ଚନ୍ଦନେ ଭୂଷିତ ।
ଧନ ଆଜ୍ଞା କୈଲେ ରାଜା ଧନ ନାଞି ଲଇ
ଯଥା ଯଥା ଯାଇ ଆମି ଗୌରବ ସେ ଗ୍ରହି ।
ଯତ ଯତ ମହା ପଣ୍ଡିତ ଆଛୟେ ସଂସାରେ
ଆମାର କବିତା କେହ ନନ୍ଦିତେ ନା ପାରେ ।
ପ୍ରସାଦ ପାଇୟା ବାହର ହଇଲୁ ରାଜାର ଦୁୟାରେ
ଅପୂର୍ବ ଜ୍ଞାନେ ଧାୟ ଲୋକେ ଆମା ଦେଖିବାରେ ।
ଚନ୍ଦନେ ଭୂଷିତ ଆମି ଲୋକେ ଆନନ୍ଦିତ
ସବେ ବଲେ ଧନ୍ୟ ଧନ୍ୟ ଫୁଲିୟା ପଣ୍ଡିତ ।'

ସଂସ୍କୃତ ଭାଗବତର ବିଷୟ ଓ ଭାବଧାରାକୁ ଅବଲମ୍ବନ କରି ମାଲାଧର ବସୁ (ଗୁଣରାଜ ଖାନ୍) 'ଶ୍ରୀକୃଷ୍ଣବିଜୟ' (ଖ୍ରୀ. ୧୪୮୦) ରଚନା କରିଥିଲେ । ସ୍ୱୀୟ ଗ୍ରନ୍ଥରଚନାର ଉଦ୍ଦେଶ୍ୟ ବର୍ଣ୍ଣନା କରି କବି ଲେଖିଛନ୍ତି—

'ଭାଗବତ ଅର୍ଥ ଯତ ପୟାରେ ବାଁଧିୟା
ଲୋକ ନିସ୍ତାରିତେ କରି ପାଁଚାଲି ରଚିୟା ।
ଭାଗବତ କଥା ଯତ ଲୋକ ବୁଝାଇତେ
ଲୌକିକ କରିୟା କହି ଲୌକିକେର ମତେ ।'

ପ୍ରାକ୍ ଚୈତନ୍ୟଯୁଗର ଅନ୍ୟ ଏକ ବିଶିଷ୍ଟ ରଚନା ଭାବରେ ବିଜୟ ଗୁପ୍ତଙ୍କର 'ମନସା ମଙ୍ଗଲ' (୧୪୮୪) ସୁବିଖ୍ୟାତ । 'ଚଣ୍ଡୀମଙ୍ଗଲ' ଓ 'ମନସା ମଙ୍ଗଲ' ପ୍ରଭୃତି କାବ୍ୟମାନଙ୍କୁ ବଙ୍ଗଳାରେ 'ମଙ୍ଗଲ କାବ୍ୟ' ନାମରେ ଅଭିହିତ କରାଯାଇଥାଏ । ମଙ୍ଗଲ କାବ୍ୟଗୁଡ଼ିକରେ ଦେବତାଙ୍କ ମହାତ୍ମ୍ୟ ଓ ପୂଜାପ୍ରଚାର ବିବରଣୀ ବର୍ଣ୍ଣିତ ହୋଇଅଛି । ଏତଦ୍‌ବ୍ୟତୀତ ଏଥିରେ ବାର ମାସର ବର୍ଣ୍ଣନା, ସ୍ୱାମୀ-ସ୍ତ୍ରୀ ଏବଂ ଦୁଇ ସପତ୍ନୀଙ୍କ ମଧ୍ୟରେ କଳହ ପ୍ରଭୃତି ମଧ୍ୟ ବର୍ଣ୍ଣନା କରାଯାଏ । 'ମନସା ମଙ୍ଗଲ' କାବ୍ୟରେ ଚାନ୍ଦ ସୌଦାଗର ଓ ବେହୁଲାର କାହାଣୀ ବର୍ଣ୍ଣିତ ହୋଇଅଛି । ସର୍ପଦେବୀ ମନସାଙ୍କ ମହତ୍ତ୍ୱ ଏହି ମନସା ମଙ୍ଗଲ କାବ୍ୟରେ ଉଦ୍‌ଘୋଷିତ ।

ଖ୍ରୀ ୧୪୮୬ରେ ଚୈତନ୍ୟଦେବଙ୍କ ଆବିର୍ଭାବ ହୋଇଥିଲା ଓ ତାହାଙ୍କ ପ୍ରେମଭକ୍ତି ଧର୍ମର ପ୍ରଚାର ବଙ୍ଗଳାସାହିତ୍ୟକୁ ବିପୁଳ ପରିମାଣରେ ସମୃଦ୍ଧ କରିଥିଲା । ଚୈତନ୍ୟଙ୍କ ଜୀବନ ଓ ଧର୍ମମତକୁ ଅବଲମ୍ବନ କରି ବହୁ ଉଚ୍ଚକୋଟିର ଗ୍ରନ୍ଥ ବଙ୍ଗଳାରେ ରଚିତ ହୋଇଅଛି । ତନ୍ମଧ୍ୟରୁ ଚୈତନ୍ୟଙ୍କ ଜୀବନୀ-କାବ୍ୟ ଭାବରେ ବୃନ୍ଦାବନ ଦାସଙ୍କର 'ଚୈତନ୍ୟ ଭାଗବତ', ଜୟାନନ୍ଦ ଓ ଲୋଚନ ଦାସଙ୍କର 'ଚୈତନ୍ୟ ମଙ୍ଗଳ' ଓ କୃଷ୍ଣଦାସ କବିରାଜଙ୍କ 'ଚୈତନ୍ୟ ଚରିତାମୃତ' ସୁପ୍ରସିଦ୍ଧ । ଚୈତନ୍ୟଙ୍କୁ ବିଷ୍ଣୁଙ୍କର ଅବତାର ଭାବେ ଗ୍ରହଣ କରି ଚୈତନ୍ୟଙ୍କ ଜୀବନ ଓ କାର୍ଯ୍ୟାବଳୀକୁ କବି ବୃନ୍ଦାବନ ଦାସ କୃଷ୍ଣଲୀଳା ସହିତ ମିଳାଇ 'ଚୈତନ୍ୟ ଭାଗବତ' ରଚନା କରିଥିଲେ । ଜୟାନନ୍ଦଙ୍କର 'ଚୈତନ୍ୟ ମଙ୍ଗଳ'ରେ ବହୁ ପୌରାଣିକ କାହାଣୀ ସଂଯୋଜିତ ହୋଇଥିବାର ଦେଖାଯାଏ । ଚୈତନ୍ୟଙ୍କ ଜୀବନୀକୁ ଏଥିରେ ଯଥାଯଥ ଭାବରେ ଚିତ୍ରଣ କରାଯାଇ ନ ଥିଲେ ହେଁ ଜନସାଧାରଣଙ୍କୁ ତତ୍ତ୍ୱସମ୍ପର୍କୀୟ ଗୀତ ଗାଇ ଶୁଣାଇବା ଲାଗି ହିଁ ଏହି କାବ୍ୟ ରଚିତ ହୋଇଥିବା ଜଣାଯାଏ । ଜୟାନନ୍ଦଙ୍କ 'ଚୈତନ୍ୟ ମଙ୍ଗଳ' ଅପେକ୍ଷା ଲୋଚନ ଦାସଙ୍କ 'ଚୈତନ୍ୟ ମଙ୍ଗଳ' ଅଧିକ କବିତ୍ୱପୂର୍ଣ୍ଣ ଓ ଏହା ମଧ୍ୟ ଗୀତ ହେବା ଉଦ୍ଦେଶ୍ୟରେ ରଚିତ ହୋଇଥିଲା ।

ଚୈତନ୍ୟଙ୍କର ଜୀବନୀମୂଳକ ରଚନାମାନଙ୍କ ମଧ୍ୟରୁ କୃଷ୍ଣଦାସ କବିରାଜଙ୍କ 'ଚୈତନ୍ୟ ଚରିତାମୃତ' ସର୍ବଶ୍ରେଷ୍ଠ । ସମଗ୍ର ବଙ୍ଗସାହିତ୍ୟର ଏହା ଏକ ଅତୁଳନୀୟ ଗ୍ରନ୍ଥ । ଦୁରୂହ ଦାର୍ଶନିକ ତତ୍ତ୍ୱାବଳୀ ସହଜ ସରଳ ଭାଷାରେ ଓ ଅପୂର୍ବ ସ୍ପଷ୍ଟତା ସହକାରେ କବି ଏଥିରେ ବର୍ଣ୍ଣନା କରିଯାଇଅଛନ୍ତି ।

ଉଦାହରଣ ସ୍ୱରୂପ କାମ ଓ ପ୍ରେମର ବିଶ୍ଳେଷଣ କରିବାକୁ ଯାଇ କୃଷ୍ଣଦାସ କବିରାଜ ଲେଖିଛନ୍ତି—

'କାମ ପ୍ରେମ ଦୋଁହାକାର ବିଭିନ୍ନ ଲକ୍ଷଣ
ଲୌହ ଆର ହେମ ଯୈଛେ ସ୍ୱରୂପ ବିଲକ୍ଷଣ ।
ଆତ୍ମେନ୍ଦ୍ରିୟ ପ୍ରୀତି ବାଞ୍ଛା ତାରେ ବଲି କାମ
କୃଷ୍ଣେନ୍ଦ୍ରିୟ ପ୍ରୀତି ବାଞ୍ଛା ଧରେ ପ୍ରେମ ନାମ ।'

ଏବଂ

'କୃଷ୍ଣ ପ୍ରେମ ସୁନିର୍ମଳ          ଯେନ ଶୁଦ୍ଧ ଗଙ୍ଗାଜଳ
ସେଇ ପ୍ରେମ ଅମୃତେର ସିନ୍ଧୁ
ନିର୍ମଳ ସେ ଅନୁରାଗେ          ନା ଲୁକାୟ ଅନ୍ୟ ଦାଗେ
ଶୁକ୍ଳ ବସ୍ତ୍ରେ ଯୈଛେ ମସୀବିନ୍ଦୁ ॥

× × × ×

ସେଇ ପ୍ରେମ ଆସ୍ୱାଦନ ତପ୍ତ ଇକ୍ଷୁ ଚର୍ବଣ
ମୁଖ ଜ୍ୱଳେ ନା ଯାୟ ତ୍ୟଜନ ।

ଚୈତନ୍ୟଙ୍କ ଜୀବନ ଚରିତର ବର୍ଣ୍ଣନାଦୃଷ୍ଟିରୁ ମଧ୍ୟ ଏହି ଗ୍ରନ୍ଥର ମହତ୍ତ୍ୱ ଅତୁଳନୀୟ । ବିଶେଷତଃ ଚୈତନ୍ୟଙ୍କ ଜୀବନର ଅନ୍ତିମ ପର୍ଯ୍ୟାୟ ଏହି ଗ୍ରନ୍ଥରେ ବିସ୍ତୃତ ଓ ଯଥାଯଥ ଭାବରେ ବର୍ଣ୍ଣିତ ହୋଇଅଛି । ଚୈତନ୍ୟଙ୍କ ଜୀବନର ପ୍ରାୟ ଶେଷ କୋଡ଼ିଏ ବର୍ଷ ଓଡ଼ିଶାରେ ଅତିବାହିତ ହୋଇଥିଲା । ତହିଁରୁ ଷୋଡ଼ଶ ଶତାବ୍ଦୀର ପ୍ରଥମାର୍ଦ୍ଧର ଉତ୍କଳର ବହୁ ସାମାଜିକ ଓ ସାଂସ୍କୃତିକ ଜୀବନର ବିବରଣୀ ମିଳିଥାଏ । 'ଗୋବିନ୍ଦ ଦାସେର କଡ଼ଚା' କାବ୍ୟରୁ ଚୈତନ୍ୟଦେବଙ୍କର ଦାକ୍ଷିଣାତ୍ୟ ଭ୍ରମଣ କାଳୀନ ଦୈନନ୍ଦିନ ବିବରଣୀ ମିଳିଥାଏ । ଚୈତନ୍ୟଙ୍କ ଶିଷ୍ୟ ତଥା ଦାକ୍ଷିଣାତ୍ୟ ଭ୍ରମଣସଙ୍ଗୀ ଗୋବିନ୍ଦ ଦାସ କର୍ମକାର ରଚିତ ଏହି ଦିନଲିପିମୂଳକ ରଚନାଟି ସରସ ହେଲେ ହେଁ ଏହା ଏକ ପରବର୍ତ୍ତୀକାଳୀନ କପୋଳକଳ୍ପିତ ଗ୍ରନ୍ଥ ବୋଲି କେତେକ ଆଲୋଚକ ମତପ୍ରକାଶ କରିଥାନ୍ତି ।

ପୂର୍ବରୁ ବର୍ଣ୍ଣିତ ହୋଇଅଛି ଯେ ଚୈତନ୍ୟଙ୍କର ଜନ୍ମପୂର୍ବରୁ କୃତ୍ତିବାସ ବଙ୍ଗଳାରେ 'ରାମାୟଣ' ଓ ଷୋଡ଼ଶ ଶତାବ୍ଦୀର ଶେଷଭାଗରେ କାଶୀରାମ ଦାସ ବଙ୍ଗଳାରେ ବହୁଜନପ୍ରିୟ 'ମହାଭାରତ' ସହଜ ଓ ସରଳ ଭାଷାରେ ରଚନା କରିଥିଲେ । କେତେକଙ୍କ ମତରେ କବୀନ୍ଦ୍ରଙ୍କ ରଚିତ 'ପାଣ୍ଡବ ବିଜୟ କଥା' ବା 'ଭାରତ ପାଞ୍ଚାଳୀ' ମହାଭାରତର ପ୍ରଥମ ଭାବାଶ୍ରୟୀ ଅନୁବାଦ । ମହାଭାରତର ବିଷୟ ଏଥିରେ ସଂକ୍ଷେପରେ ବର୍ଣ୍ଣିତ ହୋଇଅଛି । ଗୌଡ଼େଶ୍ୱର ( ବଙ୍ଗଦେଶ ପ୍ରାଚୀନ କାଳରେ 'ଗୌଡ଼' ନାମରେ ପରିଚିତ ଥିଲା) ହୋସେନ ସାହାଙ୍କର ସେନାପତି ପରାଗଲ ଖାନ୍‌ଙ୍କର ଆଦେଶରେ କବୀନ୍ଦ୍ର ଏହି ଗ୍ରନ୍ଥଟି ରଚନା କରିଥିଲେ । ଏହା 'ପରାଗଲ ମହାଭାରତ' ନାମରେ ମଧ୍ୟ ପରିଚିତ । ମଧ୍ୟଯୁଗରେ ମହାଭାରତର କଥାବସ୍ତୁ ଅବଲମ୍ବନରେ ଶ୍ରୀକର ନନ୍ଦୀ, ରାମଚନ୍ଦ୍ର ଖାନ୍, ଦ୍ୱିଜ ରଘୁନାଥ, ଯଦୁନନ୍ଦନ, ଗଦାଧର ପ୍ରଭୃତି ବହୁ କବି କାବ୍ୟ ରଚନା କରିଯାଇଅଛନ୍ତି ।

ମଧ୍ୟଯୁଗରେ ଚୈତନ୍ୟ ପରବର୍ତ୍ତୀ କାଳରେ ବହୁ କବି ଚଣ୍ଡୀମଙ୍ଗଳ କାବ୍ୟ ରଚନାରେ ଆପଣାର କୃତିତ୍ୱ ଦର୍ଶାଇ ଅଛନ୍ତି । ସେମାନଙ୍କ ମଧ୍ୟରୁ ମାଧବାଚାର୍ଯ୍ୟ, ଭବାନୀ ପ୍ରସାଦ (ଦୁର୍ଗାମଙ୍ଗଳ), ରୂପରାମ (ଧର୍ମମଙ୍ଗଳ) ପ୍ରଭୃତିଙ୍କ ନାମ ଉଲ୍ଲେଖ-ଯୋଗ୍ୟ । କିନ୍ତୁ ଏହି ଚଣ୍ଡୀମଙ୍ଗଳ କାବ୍ୟମାନଙ୍କ ମଧ୍ୟରୁ ପୂର୍ବରୁ ବର୍ଣ୍ଣିତ ହୋଇଥିବା ମୁକୁନ୍ଦରାମଙ୍କ ଚଣ୍ଡୀମଙ୍ଗଳ ସର୍ବୋତ୍କୃଷ୍ଟ । ମଙ୍ଗଳ କାବ୍ୟର ଏକ ଶାଖା ଭାବରେ 'ଧର୍ମମଙ୍ଗଳ' କାବ୍ୟଗୁଡ଼ିକୁ ଗ୍ରହଣ କରାଯାଇଥାଏ । ଏହି ଧର୍ମମଙ୍ଗଳ କାବ୍ୟଗୁଡ଼ିକରେ

ଧର୍ମଠାକୁର'ଙ୍କର ମହାତ୍ମ୍ୟ ଅଭିବ୍ୟକ୍ତ ହୋଇଥାଏ । ଧର୍ମମଙ୍ଗଳ କାବ୍ୟରଚୟିତା ଭାବେ ଘନରାମ, ରୂପରାମ, ସୀତାରାମ, ମହାଦେବ, ମାଣିକରାମ ପ୍ରଭୃତି କବି ଧର୍ମମଙ୍ଗଳ କାବ୍ୟ ରଚନା କରିଯାଇଅଛନ୍ତି । ତନ୍ମଧ୍ୟରୁ କବିଚନ୍ଦ୍ର ଘନରାମଙ୍କର 'ଧର୍ମମଙ୍ଗଳ' ସର୍ବୋତ୍କୃଷ୍ଟ । ଅଷ୍ଟାଦଶ ଶତାବ୍ଦୀରେ ବର୍ଦ୍ଧମାନ ରାଜା କୀର୍ତ୍ତିଚନ୍ଦ୍ରଙ୍କ ଆଗ୍ରହରେ ରହି ସେ ଏହି କାବ୍ୟ ରଚନା କରିଥିଲେ । ଏହି କାବ୍ୟରେ ଧର୍ମଠାକୁରଙ୍କ ଭକ୍ତ ଲଉସେନ ଧର୍ମଠାକୁରଙ୍କ ଅନୁଗ୍ରହରୁ କିପରି ଅନାୟାସରେ ବହୁ ବିପଦରୁ ଉଦ୍ଧାରଲାଭ କରିଥିଲେ ଓ କିପରି ବହୁ ଅଲୌକିକ କାର୍ଯ୍ୟ ସଂପାଦନ କରିବାକୁ ମଧ୍ୟ ସମର୍ଥ ହୋଇ ପାରିଥିଲେ, ସେହି ବିଷୟ ସବୁ ବର୍ଣ୍ଣିତ ହୋଇଅଛି ।

ମଙ୍ଗଳକାବ୍ୟର ଅନ୍ୟ ଏକ ଶାଖାଭାବେ 'ଶିବମଙ୍ଗଳ' ବା 'ଶିବାୟନ' କାବ୍ୟଗୁଡ଼ିକୁ ଗ୍ରହଣ କରାଯାଇଥାଏ । ଏହି ସମସ୍ତ କାବ୍ୟରେ ଶିବ-ପାର୍ବତୀଙ୍କୁ ଅବଲମ୍ବନ କରି ବହୁ ଲୌକିକ ଉପାଖ୍ୟାନ ପରିକଳ୍ପିତ ଓ ବର୍ଣ୍ଣିତ ହୋଇଥିବାର ଦେଖାଯାଏ । ରାମେଶ୍ୱରଙ୍କୁ ବଙ୍ଗସାହିତ୍ୟରେ ଶ୍ରେଷ୍ଠ ଶିବାୟନ କାବ୍ୟରଚୟିତା ଭାବେ ଗ୍ରହଣ କରାଯାଏ ।

ଚୈତନ୍ୟଙ୍କ ପରବର୍ତ୍ତୀ କାଳରେ କୃଷ୍ଣଲୀଳାତ୍ମକ ବହୁ ସଂଗୀତ ବଙ୍ଗଳାରେ ରଚିତ ହୋଇଥିଲା । ଏହି ବୈଷ୍ଣବପଦାବଳୀ ରଚୟିତା ଭାବରେ ଜ୍ଞାନ ଦାସ, ଗୋବିନ୍ଦ ଦାସ, ଗୋବିନ୍ଦଚନ୍ଦ୍ର ଚକ୍ରବର୍ତ୍ତୀ, ଲୋଚନ ଦାସ, ବଳରାମ ଦାସ, ଅନନ୍ତ ଦାସ, ନରୋତ୍ତମ ଦାସ, ଶ୍ରୀନିବାସ ଆଚାର୍ଯ୍ୟ, ଦୀନ ଚଣ୍ଡୀଦାସ, କବିରଂଜନ ପ୍ରଭୃତି ସୁବିଖ୍ୟାତ । ରାଧାକୃଷ୍ଣ ପ୍ରେମଲୀଳାର ନିପୁଣ ଚିତ୍ରକର ଭାବରେ ଜ୍ଞାନ ଦାସଙ୍କର ଗୋଟିଏ ପଦ ଏଠାରେ ଉଲ୍ଲେଖ କରାଯାଇପାରେ—

"ରୂପରେ ସାୟରେ ଆଁଖି ଡୁବିୟା ରହିଲ
ଯୌବନେର ବନେ ମନ ହାରାଇୟା ଗେଲ ।
ହିଭଙ୍ଗ ହଇୟା ରୂପ ଅନ୍ତରେ ପଶିଲ
ଅନେକ ଯତନ କୈଲ ବାହିର ନା ହୈଲ ।
ଲମ୍ପଟିୟା ବ୍ୟାଧ ଯେନ ଧରେ ବନେ ପାଖୀ
ତେମତି ଠେକିଲମ ଗୋ ଉପାୟ ବଲ ସଖି ।
ଘର ଯାଇତେ ପଥ ମୋର ହଇଲ ହାରାନ
ଅନ୍ତରେ ବିଦରେ ହିୟା କି ଜାନି କି କରେ ପ୍ରାଣ ।
କି କରିତେ କି ନା କରି କତ ଉଠେ ମନେ
ତିଲେକ ନା ରହେ ପ୍ରାଣ ଦରଶନ ବିନେ ।
ଜ୍ଞାନ ଦାସ କହେ ଆମି ଇଏସେ କହିବ
ଶ୍ୟାମବନ୍ଧୁ ଲାଗି ଆମି ଯମୁନାୟ ପଶିବ ।"

ଜ୍ଞାନ ଦାସଙ୍କ ଆଉ ଗୋଟିଏ ସୁବିଖ୍ୟାତ ପୂର୍ବରାଗ ଭାବାଶ୍ରିତ ପଦ ହେଉଛି—

'ରୂପ ଲାଗି ଆଁଖି ଝୁରେ ଗୁଣେ ମନ ଭୋର
ପ୍ରତି ଅଙ୍ଗ ଲାଗି କାନ୍ଦେ ପ୍ରତି ଅଙ୍ଗ ମୋର' ।

ବିରହିଣୀ ରାଧାଙ୍କ ଉକ୍ତି ଉପରେ ମାନବିକ ବିରହ ଉପସ୍ଥିତ, ତାହା ଚଣ୍ଡୀଦାସଙ୍କ ନିମ୍ନୋକ୍ତ ପଦରୁ ଅନୁମେୟ—

"କି ମୋହିନୀ ଜାନ ବନ୍ଧୁ କି ମୋହିନୀ ଜାନ
ଅବଲାର ପ୍ରାଣ ନିତେ ନାହିଁ ତୋମା ହେନ ।
ରାତି କୈଲ୍ ଦିବସ ଦିବସ କୈଲ୍ ରାତି
ବୁଝିତେ ନାରିନ ବଂଧୁ ତୋମାର ପୀରିତି ।
ଘର କୈଲ୍ ବାହିର—ବାହିର କୈଲ୍ ଘର
ପର କୈଲ୍ ଆପନ ଆପନ କୈଲ୍ ପର ।

ସପ୍ତଦଶ ଶତାବ୍ଦୀରେ ଦୁଇ ଜଣ ମୁସଲମାନ କବି ଦୌଲତ କାଜି ଓ ସୟଦ ଆଲଓଲ ବଙ୍ଗସାହିତ୍ୟକ୍ଷେତ୍ରରେ ସ୍ୱନାମଧନ୍ୟ । ଦେବଦେବୀ ପ୍ରଧାନ ବଙ୍ଗ ସାହିତ୍ୟ କ୍ଷେତ୍ରରେ ମାନବିକ ପ୍ରଣୟକୁ ଉପଜୀବ୍ୟ କରି ଏହି ଦୁଇ କବି କାବ୍ୟ ରଚନା କରି ବଙ୍ଗସାହିତ୍ୟରେ ଆପଣା ସୃଷ୍ଟିର ବୈଶିଷ୍ଟ୍ୟ ପ୍ରତିପାଦନ କରିଯାଇ-ଅଛନ୍ତି । ଆରାକାନର ମଗ ରାଜାଙ୍କ ପୃଷ୍ଠପୋଷକତା ଲାଭକରି ଦୌଲତ କାଜି 'ଲୋର ଚନ୍ଦ୍ରାଣୀ' ବା ସତୀ ମୟନାବତୀ ଓ ଆଲଓଲ 'ପଦ୍ମାବତୀର ପାଞ୍ଚାଲୀ' ରଚନା କରିଥିଲେ । ଶେଷୋକ୍ତ କାବ୍ୟଟି ହିନ୍ଦୀ କାବ୍ୟ ମହମ୍ମଦ ଯସୁସୀଙ୍କ 'ପଦୁମାବତ' ଅନୁକରଣରେ ରଚିତ ଓ ଏଥିରେ ଚିତୋର ରାଣୀ ପଦ୍ମିନୀ ଓ ଦିଲ୍ଲୀର ରାଜା ଆଲାଉଦ୍ଦୀନଙ୍କ ପ୍ରଣୟ ବିଷୟ ବର୍ଣ୍ଣିତ ହୋଇଅଛି । ଏତଦ୍‌ବ୍ୟତୀତ ସୟଦ ସୁଲତାନ, ମହମ୍ମଦ ଖାନ୍ ମଧ୍ୟ ଧର୍ମନିରପେକ୍ଷ ବା ଧର୍ମମୂଳକ ନ ହୋଇଥିବା କାବ୍ୟ ରଚନା କରିଅଛନ୍ତି ।

ମଧ୍ୟଯୁଗର ଶେଷ ଓ ସୁବିଖ୍ୟାତ କବିଭାବେ ଭାରତ ଚନ୍ଦ୍ରଙ୍କୁ ଗ୍ରହଣ କରା-ଯାଇଥାଏ । ଅଷ୍ଟାଦଶ ଶତାବ୍ଦୀର ଶେଷଭାଗରେ ନବଦ୍ୱୀପ ରାଜା କୃଷ୍ଣଚନ୍ଦ୍ରଙ୍କ ସଭାକବି ଭାବରେ ଅବସ୍ଥାନ କରି କବି ତାହାଙ୍କର ସୁବିଖ୍ୟାତ 'ଅନ୍ନଦା ମଙ୍ଗଳ' (୧୭୫୨-୫୩) ରଚନା କରିଥିଲେ ଓ 'ରାୟଗୁଣାକର' ଉପାଧିପ୍ରାପ୍ତ ହୋଇଥିଲେ । ଭାରତଚନ୍ଦ୍ର ଉତ୍କଳର ସୁବିଖ୍ୟାତ କବି ଉପେନ୍ଦ୍ରଭଞ୍ଜଙ୍କ ସମକାଳୀନ । ଭାରତଚନ୍ଦ୍ର ପୁରୀକୁ ଆଗମନ କରି ସେଠାରେ ଅବସ୍ଥାନ କରିଥିବା ଜଣାଯାଏ । ଉପେନ୍ଦ୍ରଭଞ୍ଜଙ୍କର 'ରସପଞ୍ଚକ' ସଦୃଶ ସେ 'ରସମଞ୍ଜରୀ' (୧୭୫୦ ପୂର୍ବରୁ) ନାମକ ଏକ ରସ-ଅଲଙ୍କାର

ସଂପର୍କୀୟ ଗ୍ରନ୍ଥ ରଚନା କରିଅଛନ୍ତି । ୧୭୧୨ ଖ୍ରୀଷ୍ଟାବ୍ଦରେ ହୁଗୁଲି ଜିଲ୍ଲାରେ ସେ ଜନ୍ମଗ୍ରହଣ କରିଥିଲେ । ସଂସ୍କୃତ ଓ ପାର୍ସି ଭାଷାରେ ସେ ବ୍ୟୁତ୍ପତ୍ତିଲାଭ କରିଥିଲେ । ପ୍ରାୟ ଏକ ଶତାବ୍ଦୀରୁ ଅଧିକକାଳ ତାହାଙ୍କର ଜନପ୍ରିୟ ରଚନାବଳୀ ବଙ୍ଗସାହିତ୍ୟକୁ ପ୍ରଭାବିତ କରିଥିଲା । ଏକ ବିଳୟମୁଖୀ ଯୁଗରେ ତଥା ଏକ ଯୁଗ ସନ୍ଧିକ୍ଷଣରେ ଭାରତଚନ୍ଦ୍ର ସାହିତ୍ୟ ସାଧନା କରିଥିବାରୁ ତାହାଙ୍କର ରଚନାରେ ପ୍ରାଚୀନ ଓ ମଧ୍ୟଯୁଗୀୟ ଭାବନା ସହିତ ନବଯୁଗର ଆଭାସ ପରିଲକ୍ଷିତ ହୋଇଥାଏ । 'ବିଦ୍ୟା-ସୁନ୍ଦର', 'ମାନସିଂହ', 'ଚୌରପଞ୍ଚାଶତ' ଓ ବହୁ କ୍ଷୁଦ୍ର କବିତାର ରଚୟିତା ଭାବେ ସେ ସୁବିଖ୍ୟାତ । ଭାରତଚନ୍ଦ୍ର ଚଣ୍ଡିଙ୍କର ମହତ୍ତ୍ୱ ସୂଚକ 'ଅନ୍ନଦାମଙ୍ଗଳ' ରଚନା କରିଥିଲେ ହେଁ ତହିଁରୁ କବିଙ୍କର ସାଧାରଣ ମନୁଷ୍ୟ ପ୍ରତି ଶ୍ରଦ୍ଧା ଓ ଅନୁରାଗର ପରିଚୟ ମିଳିଥାଏ । ସଂସ୍କୃତର ବିଭିନ୍ନ ଛନ୍ଦରେ ସେ ବଂଗଭାଷାରେ ବହୁ ଗୀତି ରଚନା କରିଯାଇଅଛନ୍ତି । ବଂଗସାହିତ୍ୟରେ ନାନାବିଧ ଛନ୍ଦର ଅନୁପ୍ରବେଶ-କାରୀଭାବେ ଭାରତଚନ୍ଦ୍ର ସୁବିଖ୍ୟାତ । ବ୍ରଜବୋଲି, ହିନ୍ଦୀ, ସଂସ୍କୃତ ଓ ପାରସି ଭାଷାରେ ମଧ୍ୟ ସେ ବହୁ କବିତା ରଚନା କରିଥିବାରୁ ତାହାଙ୍କର ବହୁଭାଷା ଓ ପାଣ୍ଡିତ୍ୟ ସହଜରେ ଅନୁମେୟ । ଖ୍ରୀ. ୧୭୬୦ରେ ମଧ୍ୟଯୁଗର ଏହି ବିଶିଷ୍ଟ ବଂଗକବି ସ୍ୱର୍ଗାରୋହଣ କରିଥିଲେ ।

ଏହାପରେ ୧୭୫୭ର ପଲାସି ଯୁଦ୍ଧରେ ବଙ୍ଗଳାର ମୁସଲମାନ ରାଜତ୍ୱର ଅବସାନ ଏବଂ ଇଂରେଜ ରାଜତ୍ୱର ପ୍ରତିଷ୍ଠା ହେଲା ।

## ଆଧୁନିକ ସାହିତ୍ୟର ପ୍ରଥମ ପର୍ଯ୍ୟାୟ—(ରବୀନ୍ଦ୍ର-ପୂର୍ବ ଯୁଗ)

ଊନବିଂଶ ଶତାବ୍ଦୀର ପ୍ରାରମ୍ଭରେ ଖ୍ରୀଷ୍ଟିୟାନ ପାଦ୍ରୀମାନେ ବଙ୍ଗଳାରେ ଖ୍ରୀଷ୍ଟଧର୍ମ ପ୍ରଚାର ଲାଗି ଉଦ୍ୟମ କରିଥିଲେ । ଇଂରାଜୀ ଶିକ୍ଷା ବିସ୍ତାର ଲାଗି କଲିକତାରେ ଫୋର୍ଟ ଉଇଲିୟମ୍ କଲେଜ ପ୍ରତିଷ୍ଠା ହୋଇଥିଲା ଓ ତାହାର ଅବ୍ୟବହିତ ପୂର୍ବରୁ କେରିଙ୍କ ଉଦ୍ୟମରେ ମୁଦ୍ରଣଯନ୍ତ୍ରର ପ୍ରତିଷ୍ଠା ହୋଇଥିଲା । ମିସନାରୀମାନଙ୍କର ବାଇବେଲର ବଙ୍ଗାନୁବାଦରୁ ଆଧୁନିକ ବଙ୍ଗଳା ଗଦ୍ୟ ରଚନାର ସୂତ୍ରପାତ ହୋଇଅଛି । ଏହି ମିସନାରୀମାନେ ହିଁ ପ୍ରଥମେ ବଙ୍ଗଭାଷାରେ ସମ୍ବାଦପତ୍ର ସମ୍ପାଦନା କରିଥିଲେ । ଇଂରାଜୀ ଶିକ୍ଷା ବିସ୍ତାର ଓ ଫୋର୍ଟ ଉଇଲିଅମ କଲେଜରେ ବଙ୍ଗଳା ଭାଷା ଓ ସାହିତ୍ୟ ଅନୁଶୀଳନ ଫଳରେ ବଙ୍ଗସାହିତ୍ୟରେ ନବଯୁଗ ପ୍ରବର୍ତ୍ତିତ ହୋଇଥିଲା ଓ କ୍ରମେ ଗଦ୍ୟ, ଉପନ୍ୟାସ, ନାଟକ, କ୍ଷୁଦ୍ରଗଳ୍ପ ପ୍ରଭୃତି ବିବିଧ ବିଭାବରେ ବଙ୍ଗସାହିତ୍ୟ ପରିପୁଷ୍ଟ ହେବାକୁ ଲାଗିଲା ।

ଇଂରେଜୀ ଶିକ୍ଷା ବିସ୍ତାର ପୂର୍ବରୁ ବଙ୍ଗଭାଷାରେ ଗଦ୍ୟରେ ସାହିତ୍ୟ ସୃଷ୍ଟି ହେବାର ନିଦର୍ଶନ ଦେଖିବାକୁ ମିଳେ ନାହିଁ । ଫୋର୍ଟ ଉଇଲିୟମ କଲେଜର ବଙ୍ଗଳା ବିଭାଗର ମୁଖ୍ୟ ଉଇଲିୟମ କେରିଙ୍କ ଉଦ୍ୟମରେ ଗଦ୍ୟରେ ପାଠ୍ୟପୁସ୍ତକ ଭାବରେ କେତେକ ଗ୍ରନ୍ଥ ରଚିତ ହୋଇଥିଲି । ତନ୍ମଧ୍ୟରୁ ରାମରାମ ବସୁଙ୍କ 'ରାଜା ପ୍ରତାପାଦିତ୍ୟେର ଚରିତ' ପୁସ୍ତକଟି (ଖ୍ରୀ. ୧୮୦୧) ପ୍ରଥମ ବଙ୍ଗଳା ଗଦ୍ୟ ଗ୍ରନ୍ଥ ଭାବରେ ଗୃହୀତ ହୋଇଥାଏ । ମାତ୍ର ବଙ୍ଗଳା ଗଦ୍ୟକୁ ପାଠ୍ୟପୁସ୍ତକ ସ୍ତରରୁ ସାହିତ୍ୟ ସ୍ତରକୁ ଉନ୍ନୀତ କରିଥିଲେ ବ୍ରାହ୍ମଧର୍ମର ଅନ୍ୟତମ ପ୍ରବର୍ତ୍ତକ ରାଜା ରାମମୋହନ ରାୟ । ହିନ୍ଦୁଧର୍ମର ସମାଲୋଚନା ଉଦ୍ଦେଶ୍ୟରେ ହିଁ ସେ ପ୍ରଥମେ ଗଦ୍ୟରେ ପ୍ରବନ୍ଧ ରଚନା କରିଥିଲେ । ତତ୍କାଳୀନ ବଙ୍ଗଳା ସମ୍ବାଦପତ୍ର ମଧ୍ୟ ଗଦ୍ୟ ରଚନାକୁ ପରିପୁଷ୍ଟ କରି ଗଦ୍ୟରେ ସାହିତ୍ୟ ସୃଷ୍ଟିର ପଥକୁ ପରିଷ୍କାର କରି ଦେଇଥିଲି ।

ଖ୍ରୀଷ୍ଟିୟାନ ମିସନାରୀମାନଙ୍କ ଉଦ୍ୟମରେ ଶ୍ରୀରାମପୁରରୁ ଖ୍ରୀ. ୧୮୧୮ରେ ବଙ୍ଗଳାର ସର୍ବପ୍ରଥମ ମାସିକ ପତ୍ର 'ଦିଗ୍‌ଦର୍ଶନ' ଓ ସାପ୍ତାହିକ ପତ୍ରିକା 'ସମାଚାର ଦର୍ପଣ' ପ୍ରକାଶ ପାଇଥିଲି । ବଙ୍ଗୀୟମାନଙ୍କ ଉଦ୍ୟମରେ ଖ୍ରୀ. ୧୮୩୧ରେ ଈଶ୍ୱର ଗୁପ୍ତଙ୍କ ସମ୍ପାଦନାରେ 'ସଂବାଦ ପ୍ରଭାକର' ପ୍ରକାଶିତ ହେଲି । ରବୀନ୍ଦ୍ରପୂର୍ବ ଯୁଗର ରଙ୍ଗଲାଲ ବାନାର୍ଜୀ, ଅକ୍ଷୟକୁମାର ଦତ୍ତ, ଦୀନବନ୍ଧୁ ମିତ୍ର, ବଙ୍କିମଚନ୍ଦ୍ର ଚଟ୍ଟୋପାଧ୍ୟାୟ ପ୍ରଭୃତି ବିଶିଷ୍ଟ ସାହିତ୍ୟିକମାନଙ୍କ ସାହିତ୍ୟ ସୃଷ୍ଟି ମୁଖ୍ୟତଃ ଏହି ପତ୍ରିକାକୁ ହିଁ ଭିତ୍ତି କରି ଗଢ଼ିଉଠିଥିଲି । ଏହାପରେ 'ତତ୍ତ୍ୱବୋଧିନୀ', (୧୮୪୩) 'ବଙ୍ଗ ଦର୍ଶନ', (୧୮୭୩) ପତ୍ରିକା ମାଧ୍ୟମରେ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର, ମହର୍ଷି ଦେବେନ୍ଦ୍ରନାଥ ଠାକୁର, ଦ୍ୱିଜେନ୍ଦ୍ରନାଥ ଠାକୁର ଓ ବଙ୍କିମଚନ୍ଦ୍ର ପ୍ରଭୃତି ଲେଖକଗଣ ଧର୍ମ, ସମାଜ, ଦର୍ଶନ, ବିଜ୍ଞାନ ପ୍ରଭୃତି ବିବିଧ ବିଷୟରେ ଗଦ୍ୟରେ ବହୁ ଉପାଦେୟ ଗ୍ରନ୍ଥ ରଚନା କରିବା ସଙ୍ଗେ ସଙ୍ଗେ ଗଦ୍ୟ ରଚନାକୁ ସରସ, ସମୁନ୍ନତ ଓ ଜନପ୍ରିୟ କରାଇ ପାରିଥିଲେ । ରବୀନ୍ଦ୍ରପୂର୍ବ ଯୁଗର ବିଶିଷ୍ଟ ଗଦ୍ୟରଚୟିତା ଭାବରେ ଈଶ୍ୱରଚନ୍ଦ୍ର ଓ ବଙ୍କିମଚନ୍ଦ୍ର ଚିରସ୍ମରଣୀୟ ।

## ଉପନ୍ୟାସ—

ଇଂରାଜୀ ଉପନ୍ୟାସ ଆଦର୍ଶରେ ପ୍ୟାରୀଚାନ୍ଦ ମିତ୍ର 'ଟେକଚାନ୍ଦ ଠାକୁର' ଛଦ୍ମନାମରେ 'ଆଲାଲେର ଘରେ ଦୁଲାଲ' ନାମକ ଏକ ଉପନ୍ୟାସ ରଚନା କରିଥିଲେ । ଏହାକୁ ବଙ୍ଗଳାର ପ୍ରଥମ ଉପନ୍ୟାସ ଭାବରେ ଗ୍ରହଣ କରାଯାଇଥାଏ । ମାତ୍ର ବଙ୍ଗଳାର ପ୍ରଥମ ଓ ସାର୍ଥକ ଉପନ୍ୟାସ ରଚୟିତା ଭାବରେ ବଙ୍କିମଚନ୍ଦ୍ର ହିଁ

ସ୍ୱୀକୃତ ହୋଇଥାନ୍ତି । 'ଦୁର୍ଗେଶ ନନ୍ଦନୀ' ନାମକ ଐତିହାସିକ ଉପନ୍ୟାସଟି ତାହାଙ୍କ ରଚିତ ପ୍ରଥମ ଉପନ୍ୟାସ । ଏତଦ୍‌ବ୍ୟତୀତ ସେ ରାଜସିଂହ, 'ଚନ୍ଦ୍ରଶେଖର' ନାମକ ଦୁଇଟି ଐତିହାସିକ ଉପନ୍ୟାସ ଓ 'ବିଷବୃକ୍ଷ', 'କୃଷ୍ଣକାନ୍ତେର ଉଇଲ', ଇନ୍ଦିରା, ମୃଣାଳିନୀ, ସୀତାରାମ, ରାଧାରାଣୀ, କପାଳ କୁଣ୍ଡଳା, ମୁଗଲାଙ୍ଗୁରୀୟ, ଆନନ୍ଦ ମଠ, ଦେବୀ ଚୌଧୁରାଣୀ, 'ରଜନୀ' ପ୍ରଭୃତି ସାମାଜିକ ଓ ବିବିଧ ଉପନ୍ୟାସ ରଚନା କରି ବଙ୍ଗଳା ଉପନ୍ୟାସକୁ ସ୍ୱଳ୍ପକାଳ ମଧ୍ୟରେ ସମୁନ୍ନତ କରିପାରିଥିଲେ । ବଙ୍କିମଚନ୍ଦ୍ରଙ୍କ ପରେ 'ବଙ୍ଗ ବିଜେତା', 'ମହାରାଷ୍ଟ୍ର ଜୀବନ ସନ୍ଧ୍ୟା' ଓ 'ମହାରାଷ୍ଟ୍ର ଜୀବନ ପ୍ରଭାତ' ପ୍ରଭୃତି ଐତିହାସିକ ଉପନ୍ୟାସ ରଚନା କରିଥିଲେ ରମେଶଚନ୍ଦ୍ର ଦତ୍ତ । ଐତିହାସିକ ଉପନ୍ୟାସ ରଚୟିତା ଭାବରେ ରମେଶ ଚନ୍ଦ୍ରଙ୍କୁ ବିଶିଷ୍ଟ ସ୍ଥାନ ପ୍ରଦାନ କରାଯାଇଥାଏ । ଏତଦ୍ ବ୍ୟତୀତ 'ସ୍ୱର୍ଣ୍ଣଲତା' ଉପନ୍ୟାସର ରଚୟିତା ତାରକାନାଥ ଗଙ୍ଗୋପାଧ୍ୟାୟ ଓ 'ଦୀପ ନିର୍ବାଣ' ରଚୟିତା ସ୍ୱର୍ଣ୍ଣକୁମାରୀ ଦେବୀଙ୍କୁ ରବୀନ୍ଦ୍ରପୂର୍ବ ଯୁଗର ବିଶିଷ୍ଟ ଉପନ୍ୟାସ ରଚୟିତା ଭାବରେ ମଧ୍ୟ ଗ୍ରହଣ କରାଯାଇଥାଏ ।

### କାବ୍ୟ କବିତା—

ପାଶ୍ଚାତ୍ୟ ବା ଇଂରାଜୀ କାବ୍ୟ କବିତାରୁ ପ୍ରେରଣାଲାଭ କରି ଊନବିଂଶ ଶତାବ୍ଦୀରେ ନୂତନ ରୀତିରେ ଗୀତ ପରିବର୍ତ୍ତେ ପାଠ ଉପଯୋଗୀ କାବ୍ୟ-କବିତା ରଚିତ ହୋଇଥିଲା । ଈଶ୍ୱର ଗୁପ୍ତଙ୍କୁ (ଜ. ୧୮୧୨-୧୮୫୮) ଆଧୁନିକ ବଙ୍ଗଳା ସାହିତ୍ୟର ପ୍ରଥମ କବି ଭାବରେ ଗ୍ରହଣ କରାଯାଇଥାଏ । ଈଶ୍ୱର ଗୁପ୍ତ ହିଁ ପ୍ରଥମେ ବଙ୍ଗସାହିତ୍ୟରେ ଦେଶପ୍ରେମର ଭାବନା ଅନୁପ୍ରବିଷ୍ଟ କରିଥିଲେ । ଏହାଙ୍କ ପରେ ରଙ୍ଗଲାଲଙ୍କ ରଚନାବଳୀରେ ଦେଶପ୍ରୀତି ଅଧିକ ଗଭୀର ଭାବରେ ପ୍ରକାଶିତ ହୋଇଥିଲା । ରଙ୍ଗଲାଲ ହିଁ ପ୍ରଥମେ ଶୁଣାଇଥିଲେ—

'ସ୍ୱାଧୀନତା ହୀନତାୟ କେ ବାଁଚିତେ ଚାୟ ରେ'

ରଙ୍ଗଲାଲଙ୍କ ବିଖ୍ୟାତ କାବ୍ୟ 'କାଞ୍ଚି-କାବେରୀ' ଓଡ଼ିଶାର ରାଜା ପୁରୁଷୋତ୍ତମ ଦେବଙ୍କ କାଞ୍ଚି ଅଭିଯାନ ବିଷୟକୁ ଉପଜୀବ୍ୟ କରି ଲିଖିତ । ଡେପୁଟି ମାଜିଷ୍ଟ୍ରେଟ ଭାବେ ରଙ୍ଗଲାଲ ଓ ବଙ୍କିମଚନ୍ଦ୍ରଙ୍କ କର୍ମଜୀବନ କେତେକ ବର୍ଷ ଯେ ଓଡ଼ିଶାରେ ଅତିବାହିତ ହୋଇଥିଲା ତାହା ଏଠାରେ ଉଲ୍ଲେଖ କଲେ ଅପ୍ରାସଙ୍ଗିକ ହେବ ନାହିଁ । ରବୀନ୍ଦ୍ରପୂର୍ବ ଯୁଗର ବିଶିଷ୍ଟତମ କବି ଭାବରେ ମାଇକେଲ ମଧୁସୂଦନ ଦତ୍ତଙ୍କର (୧୮୨୪-୭୩) ନାମ ଉଲ୍ଲେଖଯୋଗ୍ୟ । ସେ ସେହି ଯୁଗର ପ୍ରଗତିଶୀଳ ବା ବିଦ୍ରୋହୀ କବି ଭାବରେ ପରିଗଣିତ ହୁଅନ୍ତି । କାବ୍ୟରେ ନୂତନ ରଚନା ରୀତି ତଥା ନୂତନ ଦୃଷ୍ଟିଭଙ୍ଗୀ ଅନୁପ୍ରବିଷ୍ଟ କରି ମାଇକେଲ ବଙ୍ଗ ସାହିତ୍ୟରେ ଅମରତ୍ୱ ଲାଭ କରିଅଛନ୍ତି । ଇଂରାଜୀ

ସାହିତ୍ୟ ଅନୁକରଣରେ ସେ ବଙ୍ଗ ସାହିତ୍ୟରେ ସର୍ବପ୍ରଥମେ ଅମିତ୍ରାକ୍ଷର ଛନ୍ଦ ପ୍ରବର୍ତ୍ତନ କରି 'ତିଲୋତ୍ତମା ସମ୍ଭବ' କାବ୍ୟ ରଚନା କରିଥିଲେ । ଏହି ଛନ୍ଦରେ ତାହାଙ୍କ ସୁବିଖ୍ୟାତ 'ମେଘନାଦ ବଧ' ଓ 'ବୀରାଙ୍ଗନା' କାବ୍ୟ ରଚିତ । ବଙ୍ଗ ଭାଷାରେ ସେ ପ୍ରଥମ ସନେଟ୍ ବା ଚତୁର୍ଦ୍ଦଶପଦୀ କବିତା ରଚୟିତା । ବଙ୍ଗ ଭାଷାରେ ବୀରରସାତ୍ମକ କାବ୍ୟ ରଚନା କରିବା ସଙ୍ଗେ ସଙ୍ଗେ ସେ ବଙ୍ଗ ଭାଷାରେ ଓଜସ୍ୱିତା ଓ ଗାମ୍ଭୀର୍ଯ୍ୟ ସଞ୍ଚାର କରିବାରେ ସଫଳତା ଲାଭ କରିଥିଲେ ।

ରବୀନ୍ଦ୍ରପୂର୍ବ ଯୁଗର ଅନ୍ୟତମ ବିଶିଷ୍ଟ କବି ଭାବରେ ନବୀନଚନ୍ଦ୍ର ସେନ (୧୮୪୭-୧୯୦୯) ସୁପ୍ରସିଦ୍ଧ । ତାହାଙ୍କ କାବ୍ୟମାନଙ୍କ ମଧ୍ୟରୁ 'ପଲାସିର ଯୁଦ୍ଧ', 'ରୈବତକ', 'କୁରୁକ୍ଷେତ୍ର' ଓ 'ପ୍ରଭାସ' ସର୍ବୋତ୍କୃଷ୍ଟ । ମହାଭାରତର କୃଷ୍ଣ ଉପାଖ୍ୟାନକୁ ଅବଲମ୍ବନ କରି ଲିଖିତ ତାହାଙ୍କ ରୈବତକ, କୁରୁକ୍ଷେତ୍ର ଓ 'ପ୍ରଭାସ'କୁ ଗୋଟିଏ ମହା କାବ୍ୟର ତିନଗୋଟି ବିଭାଗ କୁହାଯାଇପାରେ । ସମୁଚ୍ଚ କଳ୍ପନା, ମାନବ ପ୍ରୀତି ଓ ଦୃଷ୍ଟିକୋଣର ଉଦାରତା ତାହାଙ୍କ କାବ୍ୟ ଓ ମହା-କାବ୍ୟରେ ଉତ୍ତମ ରୂପରେ ପ୍ରତିଫଳିତ । କୃଷ୍ଣଙ୍କୁ ସେ ଏକ ମହାମାନବ ରୂପରେ ହିଁ ଚିତ୍ରଣ କରି ତାହାଙ୍କ ଅପୂର୍ବ କଳ୍ପନାବୈଶିଷ୍ଟ୍ୟର ପରିଚୟ ଦେଇ ଯାଇଅଛନ୍ତି । ତାହାଙ୍କର ପ୍ରାୟ ସମକାଳୀନ କବି ହେମଚନ୍ଦ୍ର (୧୮୩୮-୧୯୦୩) ମଧ୍ୟ 'ବୃତ୍ର ସଂହାର' ନାମକ ଏକ ଉଚ୍ଚକୋଟିର ମହାକାବ୍ୟ ରଚନା କରି ସୁଖ୍ୟାତି ଲାଭ କରିଅଛନ୍ତି ।

ରବୀନ୍ଦ୍ରପୂର୍ବ ଯୁଗର ଶ୍ରେଷ୍ଠ ଗୀତିକବି ଭାବରେ ବିହାରୀଲାଲ ଚକ୍ରବର୍ତ୍ତୀଙ୍କୁ ଗ୍ରହଣ କରାଯାଇଥାଏ । ଇଂରାଜୀ ରୋମାଣ୍ଟିସିଜମ୍‌ର ଲକ୍ଷଣାବଳୀ ସର୍ବପ୍ରଥମେ ଏହି କବିଙ୍କ ରଚନାବଳୀରେ ହିଁ ପ୍ରତିଫଳିତ ହୋଇଥିବା ଲକ୍ଷ୍ୟ କରାଯାଏ । ତାହାଙ୍କ ରଚନାମାନଙ୍କ ମଧ୍ୟରେ 'ସାରଦା ମଙ୍ଗଳ' ସର୍ବଶ୍ରେଷ୍ଠ । ପରବର୍ତ୍ତୀକାଳର ଯୁଗ ପ୍ରବର୍ତ୍ତକ କବି ରବୀନ୍ଦ୍ରନାଥ ମଧ୍ୟ ବିହାରୀଲାଲଙ୍କୁ ଆପଣାର କବିଗୁରୁ ଭାବରେ ଗ୍ରହଣ କରିଥିଲେ ।

## ନାଟକ—

ପ୍ରାଚୀନ କାଳରୁ ବଙ୍ଗଦେଶରେ ଗୀତ ଓ ନୃତ୍ୟବହୁଳ 'ଯାତ୍ରା' ମାନଙ୍କର ପ୍ରଚଳନ ଥିଲା । ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ହିଁ ବଙ୍ଗଳା ନାଟକ କ୍ଷେତ୍ରରେ ଆଧୁନିକତାର ସୂତ୍ରପାତ ହୋଇଅଛି । ବଙ୍ଗଳାରେ ନାଟକ ରଚନାର ଆଦି କାଳରେ ସଂସ୍କୃତ ନାଟକମାନଙ୍କ ଅବଲମ୍ବନ କରି କମ୍ପ୍ଟକମାକାର ନାଟକ ସମୂହ ରଚିତ

ହୋଇଥିଲା । ମାତ୍ର ଇଂରାଜୀ ଶିକ୍ଷା ପ୍ରାପ୍ତ ବ୍ୟକ୍ତିଗଣ ତାଦୃଶ ନାଟକ ରଚନା ରୀତିକୁ ପରିହାର କରି ଇଂରାଜୀ ନାଟକ ଆଦର୍ଶରେ ନୂତନ ନାଟକ ରଚନାରେ ବ୍ରତୀ ହେଲେ ଓ କାଳକ୍ରମେ ଏହି ନୂତନ ନାଟକ ସମୂହ ଜନପ୍ରିୟତା ଲାଭ କରିଥିଲା ।

ନୂତନ ନାଟକ ପ୍ରଣେତା ଭାବରେ ସର୍ବାଦୌ ରାମନାରାୟଣ ତର୍କରତ୍ନ ( ନାଟୁକେ ରାମନାରାୟଣ )ଙ୍କ ନାମ ଉଲ୍ଲେଖଯୋଗ୍ୟ । ଏହି ବ୍ରାହ୍ମଣ ପଣ୍ଡିତ ସଂସ୍କୃତ ନାଟକ ଆଦର୍ଶରେ 'ରତ୍ନାବଳୀ' ନାଟକ ପ୍ରଣୟନ କରିଥିଲେ ହେଁ ତାହାଙ୍କ 'କୁଳୀନ କୁଳ ସର୍ବସ୍ୱ' ନାଟକଟି ସାମାଜିକତା ଓ ବ୍ୟଙ୍ଗ ପ୍ରବଣତା ଯୋଗୁଁ ସର୍ବପ୍ରଥମ ଆଧୁନିକ ନାଟକର ଗୌରବ ଲାଭ କରିଥାଏ । ଏହାପରେ ଆଧୁନିକ ନାଟକ ରଚୟିତା ଭାବରେ ମାଇକେଲ ମଧୁସୂଦନ ଦତ୍ତଙ୍କ ନାମ ଉଲ୍ଲେଖଯୋଗ୍ୟ । ସେ 'କୃଷ୍ଣକୁମାରୀ', 'ଶର୍ମିଷ୍ଠା', 'ଏକେଇ କି ବଲେ ସଭ୍ୟତା', 'ବୁଡୋ ଶାଲିଖେର ଘାଡେ ରୌଁ' ପ୍ରଭୃତି ନାଟକ ଓ ବ୍ୟଙ୍ଗ ନାଟକ ରଚନା କରି ବଙ୍ଗସାହିତ୍ୟରେ ଆଧୁନିକ ନାଟକ ରଚନାର ଭିତ୍ତି ସ୍ଥାପନ କରିଥିଲେ । ସେ ସଂସ୍କୃତ ନାଟ୍ୟରୀତି ବିରୋଧୀ ବିୟୋଗାନ୍ତ ( Tragedy ) 'କୃଷ୍ଣକୁମାରୀ' ନାମକ ନାଟକ ରଚନା କରି ନୂତନତା ପ୍ରତିଷ୍ଠା କରି ଯାଇଅଛନ୍ତି । ଏହା ହିଁ ବଙ୍ଗ ସାହିତ୍ୟର ପ୍ରଥମ ବିୟୋଗାନ୍ତକ ନାଟକ । ତାହାଙ୍କ ରଚିତ ଶେଷୋକ୍ତ ନାଟକ ଦୁଇଟି ବ୍ୟଙ୍ଗାତ୍ମକ ।

ମଧୁସୂଦନଙ୍କ ପରେ ଦୀନବନ୍ଧୁ ମିତ୍ର ବଙ୍ଗ ସାହିତ୍ୟର ନାଟକ ରଚନା କ୍ଷେତ୍ରରେ ଯୁଗାନ୍ତର ସୃଷ୍ଟି କରିଥିଲେ । ନାଟ୍ୟକାର ଭାବରେ ଏଣୁ ତାଙ୍କୁ ସମୁଚ୍ଚ ଆସନ ପ୍ରଦାନ କରାଯାଇଥାଏ । ବାସ୍ତବବାଦୀ ଦୃଷ୍ଟିଭଙ୍ଗୀ, ସମାଜର ଜନସାଧାରଣଙ୍କ ପ୍ରତି ଗଭୀର ସହାନୁଭୂତି, ଜୀବନ୍ତ ଚରିତ୍ରସୃଷ୍ଟି ଦୃଷ୍ଟିରୁ ତାହାଙ୍କ ନାଟକଗୁଡ଼ିକ ଅନବଦ୍ୟ । 'ସଧବାର ଏକାଦଶୀ', 'ଲୀଳାବତୀ', 'ନୀଳ ଦର୍ପଣ', 'ଜାମାଇ ବାରିକ' ପ୍ରଭୃତି ବହୁ ନାଟକ ରଚନା କରି ସେ ବଙ୍ଗ ସାହିତ୍ୟକୁ ସମୃଦ୍ଧ କରିଛନ୍ତି । ତାଙ୍କ ନାଟକମାନଙ୍କ ମଧ୍ୟରୁ 'ନୀଳ ଦର୍ପଣ' ସୁପ୍ରସିଦ୍ଧ । ନୀଳ ବ୍ୟବସାୟୀ ସାହେବମାନେ କୃଷକମାନଙ୍କୁ କିପରି ଉତ୍ପୀଡ଼ନ କରୁଥିଲେ, ତାହାର ବିବରଣୀ ଉକ୍ତ ନାଟକରେ ସୁନ୍ଦର ଭାବେ ବର୍ଣ୍ଣିତ ହୋଇଅଛି । ନୀଳ ଚାଷ କରୁଥିବା ଅତ୍ୟାଚାରୀ ସାହେବମାନଙ୍କ ଅତ୍ୟାଚାର ଦୂରୀକରଣରେ ଏହି ରଚନା ଯେ ପ୍ରଭୂତ ପ୍ରଭାବ ବିସ୍ତାର କରିଥିଲା, ଏହା କହିବା ଅନାବଶ୍ୟକ ।

ଏହାପରେ ମନମୋହନ ବସୁ, ଜ୍ୟୋତିରୀନ୍ଦ୍ରନାଥ ଠାକୁର, ଗିରୀଶଚନ୍ଦ୍ର ଘୋଷ (୧୮୪୪-୧୯୧୧), ଅମୃତଲାଲ ବସୁ, ଦ୍ୱିଜେନ୍ଦ୍ରଲାଲ ରାୟ ପ୍ରଭୃତି ବହୁ

ନାଟକ ରଚନା କରି ରବୀନ୍ଦ୍ରପୂର୍ବ ଯୁଗର ନାଟ୍ୟସାହିତ୍ୟକୁ ସମୁନ୍ନତ କରିଯାଇଛନ୍ତି ।

ରବୀନ୍ଦ୍ରପୂର୍ବ ଯୁଗର ଶ୍ରେଷ୍ଠ ନାଟ୍ୟକାର ଭାବେ ଗିରୀଶଚନ୍ଦ୍ର ସ୍ୱନାମଧନ୍ୟ । ପୌରାଣିକ, ଐତିହାସିକ ଓ ପାରିବାରିକ ଏବଂ ପ୍ରହସନ, ଗୀତିନାଟ୍ୟ ପ୍ରଭୃତି ବିବିଧ ମୋଟ ଅଶୀ ଖଣ୍ଡ ନାଟକ ସେ ରଚନା କରିଯାଇଛନ୍ତି । ତାହାଙ୍କର ସୁପ୍ରସିଦ୍ଧ ନାଟକମାନଙ୍କ ମଧ୍ୟରୁ 'ପ୍ରଫୁଲ୍ଲ', 'ଜନା', 'ବିଲ୍ୱମଙ୍ଗଳ', 'ଶିବାଜୀ', 'ସିରାଜ-ଉଦ୍ଦୌଲ୍', 'ମିରକାଶୀମ', 'ପାଣ୍ଡବ ଗୌରବ' ପ୍ରଭୃତି ଉଲ୍ଲେଖଯୋଗ୍ୟ । ଗିରୀଶଚନ୍ଦ୍ର ଅସାଧାରଣ ନାଟ୍ୟପ୍ରତିଭାର ଅଧିକାରୀ ଥିଲେ ଓ ପ୍ରାୟ ବହୁ ଶତାଧିକ ବିଭିନ୍ନ ଚରିତ୍ର ସୃଷ୍ଟିରେ ଆପଣାର ଅସାଧାରଣ କୃତିତ୍ୱ ଦେଖାଇ ଯାଇଅଛନ୍ତି ।

ସେକ୍ସପିଅରଙ୍କର 'ମାକବେଥ୍' ନାଟକଟିକୁ ସେ ମଧ୍ୟ ବଙ୍ଗଭାଷାରେ ଦକ୍ଷତାର ସହିତ ଅନୁବାଦ କରିଥିଲେ । ତାହାଙ୍କର ନାଟକାବଳୀରେ ସେକ୍ସପିଅରଙ୍କ ପ୍ରଭାବ ସୁପରିସ୍ଫୁଟ ।

ଏ ଯୁଗର ଅନ୍ୟତମ ବିଶିଷ୍ଟ ନାଟ୍ୟକାର ଭାବେ ଐତିହାସିକ ନାଟକ ପ୍ରଣେତା ଦ୍ୱିଜେନ୍ଦ୍ରଲାଲ ରାୟଙ୍କ ନାମ ପ୍ରଣିଧାନଯୋଗ୍ୟ । 'ସାହାଜାହାନ', 'ଚନ୍ଦ୍ରଗୁପ୍ତ', 'ମେବାର ପତନ' ପ୍ରଭୃତି ନାଟକଗୁଡ଼ିକ ତାଙ୍କର ସର୍ବାଧିକ ଜନପ୍ରିୟ ନାଟକଭାବେ ପରିଚିତ ।

**ପ୍ରବନ୍ଧ**—ଇଂରାଜୀ ପ୍ରବନ୍ଧ ସାହିତ୍ୟର ଆଦର୍ଶରେ ବଙ୍ଗଭାଷାରେ ପ୍ରବନ୍ଧ ରଚନା ପ୍ରବର୍ତ୍ତିତ ହୋଇଥିଲା । ସାମୟିକ ପତ୍ରିକାମାନଙ୍କର ପ୍ରକାଶ ଯୋଗୁଁ ପ୍ରବନ୍ଧ ରଚନାର କ୍ଷେତ୍ର ପ୍ରଶସ୍ତତର ହୋଇଥିଲା । ରବୀନ୍ଦ୍ରପୂର୍ବ ଯୁଗର ପ୍ରବନ୍ଧ ରଚୟିତା-ଭାବେ ଅକ୍ଷୟକୁମାର ଦତ୍ତ, ରାଜେନ୍ଦ୍ରଲାଲ ମିତ୍ର, ଭୂଦେବ ମୁଖୋପାଧ୍ୟାୟ, ରାଜନାରାୟଣ ବସୁ ଓ ବଙ୍କିମଚନ୍ଦ୍ର ସୁପରିଚିତ । ଅକ୍ଷୟକୁମାର ଦତ୍ତଙ୍କୁ ବଙ୍ଗଳାର ସର୍ବପ୍ରଥମ ଓ ବିଶିଷ୍ଟତମ ବିଜ୍ଞାନ ସମ୍ବନ୍ଧୀୟ ପ୍ରବନ୍ଧ ରଚୟିତାଭାବେ ଗ୍ରହଣ କରା-ଯାଇଥାଏ । ଏହି ସମୟର ପ୍ରବନ୍ଧରଚୟିତାଭାବେ ବଙ୍କିମଚନ୍ଦ୍ର ସର୍ବଶ୍ରେଷ୍ଠ ବିବେଚିତ ହୁଅନ୍ତି । ତାହାଙ୍କର ବିବିଧ ପ୍ରବନ୍ଧ ଓ 'କମଲାକାନ୍ତେର ଦପ୍ତର' ବଙ୍ଗଳା ସାହିତ୍ୟର ଅମର କୃତୀଭାବେ ବିବେଚିତ ହୁଏ । ଇଂରାଜୀ 'ଫାମିଲିଆର ଏସେ'ର ଅନୁକରଣରେ ସେ ସର୍ବପ୍ରଥମେ ହାସ୍ୟରସାତ୍ମକ 'କମଲାକାନ୍ତେର ଦପ୍ତର' ପ୍ରବନ୍ଧ ରଚନା କରିଥିଲେ ।

# ଆଧୁନିକ ବଙ୍ଗ ସାହିତ୍ୟର ଦ୍ୱିତୀୟ ପର୍ଯ୍ୟାୟ (ରବୀନ୍ଦ୍ର ଯୁଗ)

ରବୀନ୍ଦ୍ରନାଥଙ୍କ ଅର୍ଦ୍ଧଶତାବ୍ଦୀ ବ୍ୟାପୀ ନିରବଚ୍ଛିନ୍ନ ଅପୂର୍ବ ସାହିତ୍ୟ ସୃଷ୍ଟିର ପ୍ରଭାବ ବଙ୍ଗ ସାହିତ୍ୟରେ ଯୁଗାନ୍ତର ସୃଷ୍ଟି କରିବା ସଙ୍ଗେ ସଙ୍ଗେ ବଙ୍ଗ ସାହିତ୍ୟକୁ ସମୃଦ୍ଧ, ସମୁନ୍ନତ ଓ ପୃଥିବୀର ଅନ୍ୟତମ ବିଶିଷ୍ଟ ସାହିତ୍ୟ ରୂପେ ଗୌରବାନ୍ୱିତ କରିଅଛି । ଏହି ବିରାଟ, ଅତୁଳନୀୟ ପ୍ରତିଭାର କାଞ୍ଚି ସ୍ପର୍ଶରେ ବଙ୍ଗଳା ସାହିତ୍ୟର କାବ୍ୟ ଓ ଗୀତିକାବ୍ୟ, ନାଟକ, ଉପନ୍ୟାସ, କ୍ଷୁଦ୍ରଗଳ୍ପ ଓ ପ୍ରବନ୍ଧ ପ୍ରଭୃତି ସକଳ ବିଭାବ ଆଶ୍ଚର୍ଯ୍ୟଜନକ ଭାବରେ ପରିବର୍ତ୍ତିତ ହୋଇଯାଇଥିଲା । ସାହିତ୍ୟର ସର୍ବବିଧ ବିଭାବରେ ସମାନ କୃତିତ୍ୱ ପ୍ରଦର୍ଶନକାରୀ ସ୍ରଷ୍ଟାଭାବେ ରବୀନ୍ଦ୍ରନାଥଙ୍କ କୃତିତ୍ୱ ଅନନ୍ୟ ଓ ଅସାଧାରଣ । ରବୀନ୍ଦ୍ରପୂର୍ବ ଯୁଗର ସଦ୍ୟଜାତ ଆଧୁନିକ ସାହିତ୍ୟର ସମସ୍ତ ବିଭାବ ରବୀନ୍ଦ୍ରନାଥଙ୍କ ରଚନାରେ ପରିପୂର୍ଣ୍ଣତା ଲାଭ କରିଥିଲା । ସେ ଏକାଧାରରେ କବି, ଔପନ୍ୟାସିକ, ନାଟ୍ୟକାର, ପ୍ରାବନ୍ଧିକ, କ୍ଷୁଦ୍ରଗଳ୍ପ ରଚୟିତାଭାବେ କେବଳ ବଙ୍ଗ ସାହିତ୍ୟରେ କାହିଁକି ସମଗ୍ର ବିଶ୍ୱ ସାହିତ୍ୟରେ ଚିରସ୍ମରଣୀୟ ।

ଗୀତାଞ୍ଜଳିର ରଚୟିତାଭାବେ ୧୯୧୩ ମସିହାରେ ତାଙ୍କୁ ନୋବେଲ୍ ପୁରସ୍କାର ଦ୍ୱାରା ସମ୍ମାନିତ କରାଯାଇଥିଲା । ରବୀନ୍ଦ୍ରନାଥ ତାହାଙ୍କ ସାହିତ୍ୟ ସୃଷ୍ଟିର ଆଦିକାଳରେ ପୂର୍ବବର୍ତ୍ତୀ କବିମାନଙ୍କ ଆଦର୍ଶରେ ଆଖ୍ୟାନ କାବ୍ୟ ରଚନା କରିବାରେ ମନୋନିବେଶ କରିଥିଲେ ହେଁ ତାହାଙ୍କ ବୈଶିଷ୍ଟ୍ୟର ସ୍ୱର 'ସଂଧ୍ୟାସଂଗୀତ'ରେ ହିଁ ପ୍ରଥମେ ଧ୍ୱନିତ ହୋଇ ଉଠିଥିଲା । ଏହାପରେ 'ପ୍ରଭାତ ସଙ୍ଗୀତ' 'କଡ଼ି ଓ କୋମଳ' 'ଛବି ଓ ଗାନ','ମାନସୀ','ଚିତ୍ରା','ସୋନାର ତରୀ','ଚଇତାଲୀ','କଥା ଓ କାହାଣୀ', 'କ୍ଷଣିକା', ନୈବେଦ୍ୟ, ସ୍ମରଣ, ଖେୟା, 'ଗୀତାଞ୍ଜଳି', 'ଗୀତିମାଲ୍ୟ', ଉତ୍ସର୍ଗ ପ୍ରଭୃତି କାବ୍ୟ କବିତା ପୁସ୍ତକ ରଚନା କରିଥିଲେ । ଉତ୍ତର ଜୀବନରେ ସେ 'ବଲାକା', 'ପଲାତକ', 'ପୂରବୀ','ଶିଶୁ ଭୋଲାନାଥ', 'ପୁନଶ୍ଚ', 'ଶେଷସପ୍ତକ' ପ୍ରଭୃତି ବହୁବିଧ ଗୀତିକାବ୍ୟ ସଂଗ୍ରହ ରଚନା କରିଥିଲେ । ପ୍ରାଚୀନ ବୈଷ୍ଣବ କବିମାନଙ୍କ ଭାବରେ ସେ ମୈଥିଳୀ ଓ ବଙ୍ଗ ଭାଷା ସମ୍ମିଶ୍ରଣରେ 'ଭାନୁସିଂହ ପଦ୍ୟାବଳୀ' ନାମକ ଏକ ଗୀତିଗୁଚ୍ଛ ପ୍ରାରମ୍ଭ ଜୀବନରେ ରଚନା କରିଥିଲେ । ପ୍ରେମ, ସୌନ୍ଦର୍ଯ୍ୟ, ଶିଲ୍ପ, ଜୀବନ, ପ୍ରକୃତି, ସମାଜ, ଶୈଶବ, ଈଶ୍ୱର ପ୍ରଭୃତି ବହୁ ବିଷୟକୁ ଉପଜୀବ୍ୟ କରି ତାହାଙ୍କର ବିଚିତ୍ର କଳ୍ପନା ଅପୂର୍ବ ବର୍ଣ୍ଣୋଜ୍ଜ୍ୱଳ କାବ୍ୟାଲୋକ ସୃଷ୍ଟି କରିଅଛି । ବହୁ ବିଚିତ୍ର ଛନ୍ଦର ପରୀକ୍ଷାରେ କବିଙ୍କର ଗୀତିକାବ୍ୟ ସରସ ଓ ରମଣୀୟ ।

ତାହାଙ୍କର ବହୁ ଜନପ୍ରିୟ ଓ ବିଶ୍ୱପ୍ରସିଦ୍ଧ କବିତାମାନଙ୍କ ମଧ୍ୟରୁ 'ଉର୍ବଶୀ', ଛବି', 'ସାହାଜାହାନ','ଏବାର ଫିରାଓ ମୋରେ', 'ଜୀବନ ଦେବତା', 'ସ୍ୱର୍ଗ ହଇତେ

ବିଦାୟ', 'ଚଉଦଶହ ସାଲ', 'ସୋନାର ତରୀ' 'ଯେତେ ନାହିଁ ଦିବ', 'ବସୁନ୍ଧରା', 'ଦେବତାର ଗ୍ରାସ', 'ଭାରତ ତୀର୍ଥ' 'ବଳାକା', 'ଦୁଇବିଘେ ଜମି'ର ନାମ ଉଲ୍ଲେଖ କରାଯାଇପାରେ । ପ୍ରାଚୀନ ଭାରତର ଐତିହାସିକ କାହାଣୀ, କିମ୍ବଦନ୍ତୀ ଓ ସାମାଜିକ କଥାବସ୍ତୁକୁ ଅବଲମ୍ବନ କରି 'କଥା ଓ କାହିନୀ', 'କଳ୍ପନା', 'କ୍ଷଣିକା' ପ୍ରଭୃତି କବିତା ସଂଗ୍ରହରେ ରଚନା କରିଥିଲେ । ରବୀନ୍ଦ୍ରନାଥଙ୍କ କବିତାରେ ଭାରତୀୟ ଆଧ୍ୟାତ୍ମିକତାର ସ୍ୱର ମୁଖ୍ୟସ୍ଥାନ ଲାଭ କରିଅଛି । ନୈବେଦ୍ୟ, ଗୀତାଞ୍ଜଳି, ଗୀତିମାଲ୍ୟ, ଗୀତାଲୀ ପ୍ରଭୃତି କାବ୍ୟ ଗ୍ରନ୍ଥରେ ଏହା ସୁସ୍ପଷ୍ଟ ଭାବେ ବ୍ୟଞ୍ଜିତ, ମୃତ୍ୟୁର ଅବ୍ୟବହିତ ପର୍ଯ୍ୟନ୍ତ ସେ ତାଙ୍କର କାବ୍ୟ ସୃଷ୍ଟିକୁ ଅବ୍ୟାହତ ଓ ଗତିଶୀଳ ରଖିଥିଲେ ।

ବଙ୍ଗଳା ସାହିତ୍ୟରେ ବହୁବିଧ ଛନ୍ଦର ସଫଳ ପ୍ରୟୋଗକାରୀ ଭାବେ ରବୀନ୍ଦ୍ରନାଥ ଅଦ୍ୱିତୀୟ । ଇଂରାଜୀ ମୁକ୍ତ ଛନ୍ଦ ରୀତିରେ ବଙ୍ଗଳା ସାହିତ୍ୟରେ ସେ ମୁକ୍ତ ଛନ୍ଦ ଓ ଗଦ୍ୟ ଛନ୍ଦର ପ୍ରଥମ ପ୍ରବର୍ତ୍ତକ । ସବୁ ମହାକବିମାନଙ୍କ ଭଳି ରବୀନ୍ଦ୍ରନାଥଙ୍କୁ କୌଣସି ଏକ ସାହିତ୍ୟିକ ମତ ବା ପର୍ଯ୍ୟାୟଭୁକ୍ତ କରିବା ସମ୍ଭବପର ନୁହେଁ । ତାହାଙ୍କ ରଚନାରେ ଯେପରି ରୋମାଣ୍ଟିକ ଭାବନା ଓ ସ୍ୱପ୍ନବାଦୀ କଳ୍ପନା ବିଳାସର ଅଭିବ୍ୟକ୍ତ ପରିଲକ୍ଷିତ ହୁଏ, ସେହିପରି ବାସ୍ତବ ଚେତନା, ସମାଜବାଦୀତା ସମୁଚ୍ଚ ମାନବବାଦତା, ଆଧ୍ୟାତ୍ମିକ ରହସ୍ୟବାଦତା, ଉଦାର ଜାତୀୟତାବୋଧ, ବିଶ୍ୱ-ପ୍ରେମ ପ୍ରଭୃତି ଆପାତବିରୋଧୀ ଗୁଣାବଳୀର ପ୍ରତିଫଳନ ଦେଖିବାକୁ ମିଳିଥାଏ ।

ରବୀନ୍ଦ୍ରନାଥ କିପରି ସମସ୍ତ ଜାତୀୟ ଓ ଦେଶୀୟ ସଂକୀର୍ଣ୍ଣତାର ଊର୍ଦ୍ଧ୍ୱରେ ବିଶ୍ୱ ମୈତ୍ରୀର ସ୍ୱପ୍ନ ଦେଖିଥିଲେ ତାହା ତାଙ୍କର ବହୁ କବିତାରୁ ଉପଲବ୍ଧି ହୁଏ । କବି ଲେଖିଥିଲେ—

'ସବୁଠାଇଁ ମୋର ଘର ଆଛେ ଆମି ସେଇ ଘର ମରି ଖୁଜିୟା
ଦେଶେ ଦେଶେ ମୋର ଦେଶ ଆଛେ ଆମି ସେଇ ଦେଶ ଲବ ଯୁଝିଆ'

ଅର୍ଥାତ୍ ;

'ସବୁଠାରେ ମୋର ଘର ଅଛି ମୁହିଁ ସେଇ ଘର ମରେ ଖୋଜିଣ
ଦେଶେ ଦେଶେ ମୋର ଦେଶ ଅଛି ମୁହିଁ ସେଇ ଦେଶ ନେବି ଯୁଝିଣ ।'

ଆପଣା ଜୀବନର ଅନନ୍ତ ଓ ଅଖଣ୍ଡ ସତ୍ତାକୁ କବି 'ଜୀବନ ଦେବତା' ଭାବରେ ଗ୍ରହଣ କରି ବହୁ କବିତା ରଚନା କରିଅଛନ୍ତି । ଭାରତବର୍ଷ ତାହାଙ୍କ

ନାଟକରେ 'ମହାମାନବର ସାଗର ତୀର', ମିଳନର ପୀଠ ରୂପେ ପ୍ରତୀୟମାନ ହୋଇଅଛି । ସମାଜର ଦୁଃସ୍ଥ ଦଳିତ ଜନସାଧାରଣଙ୍କ ପ୍ରତି ଅସୀମ ଅନୁକମ୍ପା ପ୍ରକାଶ କରି ସେ ଲେଖିଛନ୍ତି

'ଏଇ ସବ ମୂଢ଼ ମ୍ଳାନ ମୂକ ମୁଖେ
ଦିତେ ହବେ ଭାଷା, ଏଇ ସବ ଶ୍ରାନ୍ତ ଶୁଷ୍କ ଭଗ୍ନ ବୁକେ
ଧ୍ୱନିୟା ତୁଲିତେ ହବେ ଆଶା, ଡାକିୟା ବଲିତେ ହବେ
ମୁହୂର୍ତ୍ତେ ତୁଲିୟା ଶିର ଏକତ୍ର ଦାଁଡ଼ାଓ ଦେଖି ସବେ ।'

ମୋଟ ଉପରେ ଇଂରାଜୀ କବି ଶେଲିଙ୍କ ବୈପ୍ଳବିକତା, ବାୟରନଙ୍କ ଉଦ୍ଦାମ ପ୍ରେମ, ଓ୍ୱାର୍ଡ଼ସଓ୍ୱାର୍ଥଙ୍କ ଶୈଶବପ୍ରୀତି ଓ କିଟ୍‌ସ୍‌ଙ୍କ ସୌନ୍ଦର୍ଯ୍ୟବୋଧର ସମନ୍ୱୟ ରବୀନ୍ଦ୍ରନାଥଙ୍କ କାବ୍ୟ କବିତାରେ ହିଁ ସାର୍ଥକ ହୋଇଅଛି କହିଲେ ଅତ୍ୟୁକ୍ତି ହେବନାହିଁ ।

ବହୁ ଗୀତିନାଟ୍ୟ, ପ୍ରତୀକନାଟ୍ୟ ଓ ମଞ୍ଚୋପଯୋଗୀ ନାଟକ ରଚନା କରି ରବୀନ୍ଦ୍ରନାଥ ବଙ୍ଗଳା ନାଟ୍ୟସାହିତ୍ୟରେ ମଧ୍ୟ ଅମରତ୍ୱର ନିଦର୍ଶନ ରଖିଯାଇ ଅଛନ୍ତି । 'ବିସର୍ଜନ','ରାଜା ଓ ରାଣୀ', 'ଚିରକୁମାର ସଭା' ପ୍ରଭୃତିକୁ ମଞ୍ଚୋପଯୋଗୀ ନାଟକ, 'ଡାକଘର'କୁ ପ୍ରତୀକ ନାଟକ ଓ 'ବାଲ୍ମୀକି ପ୍ରତିଭା', 'ମାୟାର ଖେଳା'କୁ ଗୀତିନାଟ୍ୟ ଭାବରେ ଗ୍ରହଣୀୟ । ତ୍ରିପୁରାର ଇତିହାସକୁ ଭିତ୍ତିକରି ତାହାଙ୍କ 'ବିସର୍ଜନ' ନାଟକ ରଚିତ । ଏଥିରେ ପ୍ରେମ ଓ ସଂସ୍କାରର ଦ୍ୱନ୍ଦ୍ୱ ସୁନ୍ଦର ଭାବରେ ଅଭିବ୍ୟକ୍ତି ଲାଭ କରିଅଛି । ହାସ୍ୟରସାତ୍ମକ ନାଟକଭାବରେ 'ଚିରକୁମାର ସଭା' ଏକ ମନୋରମ ସୃଷ୍ଟି । ତାହାଙ୍କ ପ୍ରାଥମିକ ନାଟକଗୁଡ଼ିକର କଥାବସ୍ତୁ ମଞ୍ଚୋପଯୋଗୀ ଓ ଚରିତ୍ରପ୍ରଧାନ ହେଲେହେଁ ତାହାଙ୍କ ପରିଣତ ବୟସରେ ଲିଖିତ ନାଟକଗୁଡ଼ିକରେ ଭାବର ପ୍ରାଧାନ୍ୟ ପରିଲକ୍ଷିତ ହୁଏ । 'ଅଚଳାୟତନ', 'ରକ୍ତକରବୀ', 'ମୁକ୍ତଧାରା', 'ଡାକଘର','ଫାଲ୍‌ଗୁନୀ', 'ରାଜା', 'ତାସେର ଦେଶ' ପ୍ରଭୃତି ନାଟକ ଗୁଡ଼ିକ ତାହାର ପ୍ରକୃଷ୍ଟ ଉଦାହରଣ । 'ମୁକ୍ତଧାରା', 'ରକ୍ତ କରବୀ' ନାଟକରେ ଯନ୍ତ୍ର ସଭ୍ୟତାର ନିର୍ମମ ପରିଣତି ବିଷୟ ଚିତ୍ରିତ ହୋଇଅଛି । ଏହି ଭାବ-ପ୍ରଧାନ, ରୂପକ ନାଟକଗୁଡ଼ିକ ଅଭିନୟ ଦୃଷ୍ଟିରୁ ଅନୁପଯୁକ୍ତ ଓ ମଞ୍ଚୋପଯୋଗୀ ନ ହେଲେ ହେଁ ସାହିତ୍ୟ ସୃଷ୍ଟି ଭାବରେ ତାହା ଉଚ୍ଚକୋଟୀର ବିବେଚିତ ହୁଏ ।

ରବୀନ୍ଦ୍ରନାଥଙ୍କ ରଚିତ ଉପନ୍ୟାସମାନଙ୍କ ମଧ୍ୟରୁ 'ଗୋରା','ଘରେ ବାହିରେ', 'ନୌକାଡୁବି','ଚୋଖେର ବାଲି','ଶେଷେର କବିତା','ଯୋଗାଯୋଗ','ଦୁଇବୋନ',

‘ମାଳଞ୍ଚ’, ‘ଚାର୍ ଅଧ୍ୟାୟ’, ‘ଚତୁରଙ୍ଗ’ ପ୍ରଭୃତି ବିଶିଷ୍ଟତମ । ସର୍ବାଦୌ ସେ ‘ବୌ ଠାକୁରାଣୀର ହାଟ’ ଓ ‘ରାଜର୍ଷି’ ନାମକ ଦୁଇଟି ଉପନ୍ୟାସ ରଚନା କରିଥିଲେ । ମନସ୍ତତ୍ତ୍ୱମୂଳକ ଉପନ୍ୟାସ ରଚନା କରିବାରେ ରବୀନ୍ଦ୍ରନାଥଙ୍କୁ ବଙ୍ଗଳା ଉପନ୍ୟାସ କ୍ଷେତ୍ରରେ ସର୍ବପ୍ରଥମ ଲେଖକ ଭାବରେ ଗ୍ରହଣ କରାଯାଇଥାଏ । ‘ଚୋଖେର ବାଲି’ ଉପନ୍ୟାସ ହିଁ ତାହାର ପ୍ରକୃଷ୍ଟ ଉଦାହରଣ । ‘ଗୋରା’ ଉପନ୍ୟାସଟିକୁ ତାହାଙ୍କର ସର୍ବଶ୍ରେଷ୍ଠ ଉପନ୍ୟାସ ଭାବରେ ଗ୍ରହଣ କରାଯାଇଥାଏ । ଦେଶ ପ୍ରେମ ଯେ ବିଶ୍ୱ ପ୍ରେମର ବିରୋଧୀ ନୁହେଁ ତାହା ହିଁ ଗୋରା ଚରିତ୍ର ମାଧ୍ୟମରେ ରବୀନ୍ଦ୍ରନାଥ ଦର୍ଶାଇ ଅଛନ୍ତି । କେହି କେହି ତାହାଙ୍କ ‘ଚତୁରଙ୍ଗ’ ଉପନ୍ୟାସଟିକୁ ସର୍ବୋତ୍କୃଷ୍ଟ ଉପନ୍ୟାସ ଭାବରେ ଗ୍ରହଣ କରିଥାନ୍ତି । ଭାଷା, ଭାବ, ଚରିତ୍ରସୃଷ୍ଟି ଓ ରଚନାରୀତି ଦୃଷ୍ଟିରୁ ତାହାଙ୍କ ଉପନ୍ୟାସ ବଙ୍ଗ ଉପନ୍ୟାସ ସାହିତ୍ୟକୁ ସୁବିଖ୍ୟାତ କରିଅଛି । ତାହାଙ୍କ ‘ଘରେ ବାହିରେ’ ଉପନ୍ୟାସଟି (ଇଂରାଜୀ ଅନୁବାଦ—Home and world) ଜର୍ମାନ, ଫରାସୀ ସ୍ପିନସ୍, ପ୍ରଭୃତି ବହୁ ଭାଷାରେ ଅନୂଦିତ ହୋଇଅଛି ।

କଥାଶିଳ୍ପୀ ଭାବରେ ରବୀନ୍ଦ୍ରନାଥଙ୍କୁ ବଙ୍ଗ ସାହିତ୍ୟର ପ୍ରଥମ ଓ ଶ୍ରେଷ୍ଠ ଲେଖକ ଭାବରେ ଗ୍ରହଣ କରାଯାଇଥାଏ । ତାହାଙ୍କର ସୁପ୍ରସିଦ୍ଧ ଗଳ୍ପସଂଗ୍ରହ ‘ଗଳ୍ପ ଗୁଚ୍ଛ’ର ବହୁ ଗଳ୍ପ ବହୁ ଭାଷାରେ ଅନୂଦିତ ଓ ବିଶ୍ୱର ଶ୍ରେଷ୍ଠ ଗଳ୍ପମାନଙ୍କ ମଧ୍ୟରୁ ଅନ୍ୟତମ ଭାବରେ ବିବେଚିତ ହୋଇଥାଏ । ତାହାଙ୍କର ସୁପ୍ରସିଦ୍ଧ ଗଳ୍ପ-ମାନଙ୍କ ମଧ୍ୟରୁ ‘କାବୁଲିଓ୍ୱାଲା’, ‘ନଷ୍ଟନୀଡ଼’, ‘କ୍ଷୁଧିତପାଷାଣ’, ‘ନିଶୀଥେ’, ‘ଶୁଭା’, ‘କଙ୍କାଳ’, ‘ମଧ୍ୟବର୍ତ୍ତିନୀ’ ପ୍ରଭୃତି ଉଲ୍ଲେଖଯୋଗ୍ୟ ।

ବହୁ ବିଷୟକ ପ୍ରବନ୍ଧ ରଚନା କରି ବଙ୍ଗ ସାହିତ୍ୟକୁ ସମୃଦ୍ଧ କରିବାରେ ରବୀନ୍ଦ୍ରନାଥଙ୍କ ଦାନ ମଧ୍ୟ ଅପରିସୀମ । ସାହିତ୍ୟ, ସଂସ୍କୃତି, ସମାଜ, ରାଜନୀତି, ଆଧ୍ୟାତ୍ମିକତା ପ୍ରଭୃତି ବହୁବିଧ ବିଷୟକୁ ଉପଜୀବ୍ୟକରି ସେ ବହୁ ପ୍ରବନ୍ଧ ରଚନା କରିଯାଇଅଛନ୍ତି । ଏତଦ୍‌ବ୍ୟତୀତ ତାହାଙ୍କର ଭ୍ରମଣ ବୃତ୍ତାନ୍ତ, ଜୀବନ ସ୍ମୃତି, ଡାଏରୀ, ଚିଠିପତ୍ର ମଧ୍ୟ ଉଚ୍ଚାଙ୍ଗ ପ୍ରବନ୍ଧ ଓ ଶିଳ୍ପ ସୃଷ୍ଟି ଭାବରେ ବିବେଚିତ ହୋଇଥାଏ । ସାହିତ୍ୟ ତତ୍ତ୍ୱ ଓ ଆଲୋଚନାମୂଳକ ଗ୍ରନ୍ଥ ଭାବରେ ତାହାଙ୍କ ରଚିତ ‘ପ୍ରାଚୀନ ସାହିତ୍ୟ’,‘ଆଧୁନିକ ସାହିତ୍ୟ’ ‘ସାହିତ୍ୟେରପଥେ’ ପ୍ରଭୃତି ସରସ, ତଥ୍ୟପୂର୍ଣ୍ଣ ରଚନା ଭାବରେ ସୁବିଦିତ । ତତ୍ତ୍ୱସମ୍ବଳିତ ବିଷୟକୁ ସରସ, ସୁଖପାଠ୍ୟ କରାଇବାରେ ରବୀନ୍ଦ୍ରନାଥ କିପରି ସଫଳତା ଲାଭ କରିଥିଲେ ତାହାଙ୍କ ପ୍ରବନ୍ଧା-ବଳୀରୁ ତାହା ଉପଲବ୍ଧ ହୋଇଥାଏ । ମହାତ୍ମାଗାନ୍ଧୀଙ୍କ ପ୍ରବର୍ତ୍ତିତ ବିଦେଶୀ ବସ୍ତ୍ର ବର୍ଜନ ନୀତି ବିରୁଦ୍ଧରେ ‘ସ୍ୱରାଜ ସାଧନ’ ଶୀର୍ଷକ ପ୍ରବନ୍ଧ ରଚନା କରି ସେ ଏ ବିଷୟରେ

ତାହାଙ୍କ ପ୍ରତିକୂଳ ମତବାଦକୁ ବଳିଷ୍ଠ ଭାବରେ ଲିପିବଦ୍ଧ କରିଥିଲେ । ତାହାଙ୍କ ପ୍ରବନ୍ଧ ଭାଷା ଓ ପ୍ରକାଶଭଙ୍ଗି ଦୃଷ୍ଟିରୁ କେପରି ଅନବଦ୍ୟ ଓ ଚିତ୍ତାକର୍ଷକ 'ଜୀବନ ସ୍ମୃତି' 'ରସିଆର ଚିଠି', 'ଯାତ୍ରୀ', 'ଜାପାନ ଯାତ୍ରୀ' ପ୍ରଭୃତିରୁ ହିଁ ତାହାର ପ୍ରମାଣ ମିଳିଥାଏ ।

## ରବୀନ୍ଦ୍ରୋତ୍ତର ବଙ୍ଗଳା ଉପନ୍ୟାସ—

ରବୀନ୍ଦ୍ରନାଥଙ୍କ ସାହିତ୍ୟ ସାଧନା କାଳରେ ରବୀନ୍ଦ୍ର ପ୍ରତିଭାକୁ ଅସ୍ୱୀକାର କରି ସ୍ୱକୀୟ ବୈଶିଷ୍ଟ୍ୟରେ ବଙ୍ଗଳା ଉପନ୍ୟାସ ସାହିତ୍ୟକୁ ଉଦ୍ଭାସିତ କରିଥିଲେ ଶରତ୍‌ଚନ୍ଦ୍ର ଚଟ୍ଟୋପାଧ୍ୟାୟ । ଜନପ୍ରିୟତା ଦୃଷ୍ଟିରୁ ଶରତ୍‌ଚନ୍ଦ୍ରଙ୍କ ଖ୍ୟାତି ଓ ସମ୍ମାନ ଅସାମାନ୍ୟ ଓ ବିସ୍ମୟକର । ଶରତ୍‌ଚନ୍ଦ୍ରଙ୍କ ଉପନ୍ୟାସରେ ବଙ୍ଗୀୟ ସମାଜ ଓ ଜୀବନର ବାସ୍ତବ ଓ ସମ୍ବେଦନଶୀଳ ଚିତ୍ର ଯେପରି ପ୍ରତିଫଳିତ ହୋଇପାରିଥିଲା ତାହା ସମ୍ପୂର୍ଣ୍ଣ ଅଭିନବ ତଥା ବିଚିତ୍ର । ଶରତ୍‌ଚନ୍ଦ୍ରଙ୍କୁ ଆଧୁନିକ ବଙ୍ଗଳା ସାହିତ୍ୟର ଶ୍ରେଷ୍ଠ ଔପନ୍ୟାସିକ ଭାବେ ଗ୍ରହଣ କରାଯାଇଥାଏ । ସୂକ୍ଷ୍ମ କାରୁକାର୍ଯ୍ୟମୟ ଗଭୀର ଭାବପୂର୍ଣ୍ଣ ଓ କବିତ୍ୱ ସମ୍ବଳିତ ଉପନ୍ୟାସ ରଚନା କରି ରବୀନ୍ଦ୍ରନାଥ ଏକ ମୁଷ୍ଟିମେୟ ଗୋଷ୍ଠୀର ମନୋରଞ୍ଜନ କରିବାକୁ ସମର୍ଥ ହୋଇଥିଲେ; କିନ୍ତୁ ଶରତ୍‌ଚନ୍ଦ୍ରଙ୍କର ଉପନ୍ୟାସ ବଙ୍ଗଳାର ଶିକ୍ଷିତ ଓ ଅର୍ଦ୍ଧଶିକ୍ଷିତ ନିର୍ବିଶେଷରେ ସମସ୍ତ ପାଠକଙ୍କ ମନୋରଞ୍ଜକ ହୋଇଥିଲା । ଶରତ୍‌ଚନ୍ଦ୍ର ମନସ୍ତତ୍ତ୍ୱମୂଳକ, ସମସ୍ୟାମୂଳକ, ବିଦ୍ରୋହାତ୍ମକ ପ୍ରଭୃତି ବହୁବିଧ ଉପନ୍ୟାସ ରଚନା କରିଯାଇଅଛନ୍ତି । ତାହାଙ୍କ ରଚନାମାନଙ୍କ ମଧ୍ୟରୁ 'ଶେଷ ପ୍ରଶ୍ନ', 'ପଥେର ଦାବୀ' 'ଚରିତ୍ରହୀନ' 'ଦେବଦାସ' 'ଶ୍ରୀକାନ୍ତ' 'ଦତ୍ତା' 'ଗୃହଦାହ' 'ବିନ୍ଦୁର ଛେଲେ' 'ବୈକୁଣ୍ଠେର ଉଇଲ'' 'ବିରାଜବୌ' ପ୍ରଭୃତି ଉଲ୍ଲେଖଯୋଗ୍ୟ ।

ଉପନ୍ୟାସର ଚରିତ୍ରମାନଙ୍କୁ ସେ ଅତ୍ୟନ୍ତ ଦରଦ ଓ ସହାନୁଭୂତିର ସହିତ ଚିତ୍ରଣ କରିଥିବା ଯୋଗୁ ସେମାନଙ୍କର ସୁଖଦୁଃଖ ପାଠକମାନଙ୍କ ହୃଦୟକୁ ଦ୍ରବୀଭୂତ କରିଥାଏ । ବଙ୍ଗୀୟ ସମାଜର ରୀତିନୀତି, ଆଚାର ବ୍ୟବହାର, ଅଭାବ ଅଭିଯୋଗ, ପଲ୍ଲୀ ଜୀବନର ତିକ୍ତ ମଧୁର ଘଟଣାବଳୀକୁ ତାହାଙ୍କ ଲେଖନୀ ଅତ୍ୟନ୍ତ ଦକ୍ଷତା ଓ ସରସତାର ସହିତ ଫୁଟାଇ ପାରିଛି । ତାଙ୍କ ଉପନ୍ୟାସଗୁଡ଼ିକରେ ଚରିତ୍ରମାନଙ୍କର ମାନସିକ ସଂଘର୍ଷର ଚିତ୍ର ବହୁଳଭାବେ ଦେଖାଯାଏ । ବିଶେଷତଃ ନାରୀଚରିତ୍ର ଚିତ୍ରଣରେ ଓ ସେମାନଙ୍କର ଅନ୍ତର୍ଦ୍ୱନ୍ଦ୍ୱ ଫୁଟାଇବା ସଙ୍ଗେ ଭାରତୀୟ ନାରୀର ସହଜାତ ସ୍ନେହ, ପ୍ରେମ, ଦୟା, କ୍ଷମା, ସହନଶୀଳତା ପ୍ରଭୃତି ଗୁଣାବଳୀର ଚିତ୍ରଣରେ ଶରତ୍‌ଚନ୍ଦ୍ର ଅସାମାନ୍ୟ ଦକ୍ଷତାର ପରିଚୟ ଦେଇଯାଇଛନ୍ତି ।

ଶରଚ୍ଚନ୍ଦ୍ରଙ୍କ ପରେ ଶୈଳଜାନନ୍ଦ ମୁଖର୍ଜୀ, ନରେଶଚନ୍ଦ୍ର ସେନ, ଉପେନ୍ଦ୍ର-ନାଥ ଗଙ୍ଗୋପାଧ୍ୟାୟ, ଅନ୍ନଦାଶଙ୍କର, ବିଭୂତି ଭୂଷଣ ବନ୍ଦୋପାଧ୍ୟାୟ, ସୁବୋଧ ଘୋଷ, ପ୍ରବୋଧ ସାନ୍ୟାଲ, ତାରାଶଙ୍କର ବନ୍ଦୋପାଧ୍ୟାୟ, ମାନିକ୍ ବନ୍ଦୋପାଧ୍ୟାୟ, ସତିନାଥ ଭାଦୁଡ଼ି, ନରେନ୍ଦ୍ର ମିତ୍ର ପ୍ରଭୃତି ଉପନ୍ୟାସ ରଚୟିତା ଭାବେ ସୁପ୍ରସିଦ୍ଧ । ଏମାନଙ୍କ ମଧ୍ୟରୁ ବିଭୂତି ଭୂଷଣଙ୍କ 'ଆରଣ୍ୟକ' ଓ 'ପଥେର ପାଞ୍ଚାଲି' ସର୍ବଭାରତୀୟ ସ୍ତରରେ ଉଚ୍ଚ କୋଟୀର ଉପନ୍ୟାସ ଭାବେ ସମ୍ମାନିତ । ତାଙ୍କର ପ୍ରକୃତିପ୍ରୀତି, ପଲ୍ଲୀଜୀବନ ପ୍ରତି ଅନୁରାଗ ଓ ଶିଶୁ ଚରିତ୍ର ଚିତ୍ରଣର ଦକ୍ଷତା ଅଧିକାଂଶ ଉପନ୍ୟାସରେ ପ୍ରତିଫଳିତ । ବଙ୍କିମଚନ୍ଦ୍ର ଓ ଶରଚ୍ଚନ୍ଦ୍ରଙ୍କ ପ୍ରଭାବରେ ପ୍ରଭାବିତ ହୋଇ ଯଥାକ୍ରମେ ନିରୂପମା ଦେବୀ ଓ ଅନୁରୂପା ଦେବୀ ଉପନ୍ୟାସ ରଚୟିତ୍ରୀ ଭାବେ ଖ୍ୟାତି ଅର୍ଜନ କରିଛନ୍ତି । ହାସ୍ୟରସାତ୍ମକ ଉପନ୍ୟାସ ରଚନା କରିବାରେ କେଦାରନାଥ ବନ୍ଦୋପାଧ୍ୟାୟ, ଅସମଞ୍ଜ ମୁଖୋପାଧ୍ୟାୟଙ୍କ ନାମ ମଧ୍ୟ ଉଲ୍ଲେଖ ଯୋଗ୍ୟ ।

ଶୈଳଜାନନ୍ଦ ଆଦିବାସୀ ଜୀବନର ଚିତ୍ର ଅଙ୍କନ କରିବାରେ ସଫଳକାମ ହୋଇଅଛନ୍ତି । ସମାଜର ନିମ୍ନ ଶ୍ରେଣୀର ଜୀବନଚିତ୍ର ଅଙ୍କନରେ ପ୍ରେମେନ୍ଦ୍ର ମିତ୍ରଙ୍କ କୃତିତ୍ୱ ଉଲ୍ଲେଖଯୋଗ୍ୟ । ଆଧୁନିକ ଔପନ୍ୟାସିକମାନଙ୍କ ମଧ୍ୟରୁ ଅନ୍ନଦାଶଙ୍କର ଅଧିକ ଉଚ୍ଚାଭିଳାପୀ ମନେ ହୁଅନ୍ତି । ସେ ଛଅଟି ଖଣ୍ଡରେ ବିଭକ୍ତ ଏକ ବିରାଟ ଉପନ୍ୟାସ ରଚନା କରି ଯାଇଅଛନ୍ତି । ଆଧୁନିକ ଔପନ୍ୟାସିକମାନଙ୍କ ମଧ୍ୟରୁ ତାରାଶଂକର ସର୍ବାଧିକ ଜନପ୍ରିୟ ଓ କୃତି କଳାକାର । ଆଞ୍ଚଳିକ ଜୀବନ ତଥା ସମାଜର ଚିତ୍ର ଅଙ୍କନରେ ସେ ସର୍ବାପେକ୍ଷା ଅଧିକ କୃତିତ୍ୱ ପ୍ରଦର୍ଶନ କରିଅଛନ୍ତି । ଚରିତ୍ର ଓ ଘଟଣାର ଯଥାଯଥ ଚିତ୍ରାଙ୍କନରେ ତାରାଶଂକରଙ୍କ ଦକ୍ଷତା ଅପରିସୀମ । ସତୀନାଥ ଭାଦୁଡ଼ି ଉପନ୍ୟାସରେ ମନସ୍ତାତ୍ତ୍ୱିକ ବିଶ୍ଳେଷଣ ପାଇଁ ସୁବିଖ୍ୟାତ ।

ମାନିକ୍ ବନ୍ଦୋପାଧ୍ୟାୟଙ୍କୁ ବାମପନ୍ଥୀ ଔପନ୍ୟାସିକ ଗୋଷ୍ଠୀର ଅଗ୍ରଣୀ ଭାବେ ଗ୍ରହଣ କରାଯାଏ । ତାହାଙ୍କ 'ପୁତୁଲ୍ ନାଚେର ଇତିକଥା' ପାଇଁ ସେ ବିପୁଳ ପ୍ରତିଷ୍ଠା ଅର୍ଜନ କରିଅଛନ୍ତି । ବାମପନ୍ଥୀ ଔପନ୍ୟାସିକ ଭାବରେ ଅମରେନ୍ଦ୍ର ଘୋଷ ମଧ୍ୟ ଏ ଯୁଗର ଅନ୍ୟତମ କୃତି କଳାକାର । ତାହାଙ୍କ 'ଚରକସମ' ଏ ଯୁଗର ଅନ୍ୟତମ ସଫଳ କୃତି । ଏତଦବ୍ୟତୀତ ଗୋପାଲ ହାଲଦାରଙ୍କ 'ଏକଦା', 'ଅନ୍ୟଦିନ', 'ଆରେକ ଦିନ' ପ୍ରଭୃତି ଭାବପ୍ରଧାନ ଉପନ୍ୟାସର ନାମ ମଧ୍ୟ ଏ ସମ୍ପର୍କରେ ଉଲ୍ଲେଖଯୋଗ୍ୟ ।

## କ୍ଷୁଦ୍ର ଗଳ୍ପ—

ଆଧୁନିକ ବଙ୍ଗ ସାହିତ୍ୟର କ୍ଷୁଦ୍ର ଗଳ୍ପ ମଧ୍ୟ ବହୁ ଖ୍ୟାତନାମା ଲେଖକଙ୍କ ସୃଷ୍ଟି ସମ୍ଭାର ଦ୍ୱାରା ସମୁନ୍ନତ ଓ ଉଚ୍ଚକୋଟୀର ହୋଇ ପାରିଅଛି । ପ୍ରଭାତ କୁମାର ମୁଖୋପାଧ୍ୟାୟ, ପ୍ରବୋଧ କୁମାର ସାନ୍ୟାଲ, ତାରାଶଙ୍କର ବନ୍ଦୋପାଧ୍ୟାୟ, ପ୍ରେମେନ୍ଦ୍ର ମିତ୍ର, ମନୋଜ ବସୁ, ବଳାଇଚାନ୍ଦ ମୁଖୋପାଧ୍ୟାୟ (ବନଫୁଲ), ବିଭୂତିଭୂଷଣ, ନାରାୟଣ ଗଙ୍ଗୋପାଧ୍ୟାୟ ପ୍ରଭୃତି ଏ କ୍ଷେତ୍ରରେ ଅମରତ୍ୱର ସ୍ୱାକ୍ଷର ରଖିଯାଇଅଛନ୍ତି । ହାସ୍ୟ ଓ ବ୍ୟଙ୍ଗାତ୍ମକ ଗଳ୍ପରଚନା କରି ସୁଖ୍ୟାତି ଅର୍ଜନ କରିଛନ୍ତି ରାଜଶେଖର ବସୁ (ପରଶୁରାମ) ଓ ପ୍ରଭାତକୁମାର । ରବୀନ୍ଦ୍ରନାଥ ମୁଖ୍ୟତଃ କଳ୍ପନାପ୍ରଧାନ ଗଳ୍ପ ରଚନା କରିଯାଇଥିଲେ ହେଁ ତାହାଙ୍କ ପରବର୍ତ୍ତୀ କଥାକାରଗଣ ଏ ଯୁଗର ବିଚିତ୍ର ଜୀବନଲୀଳା ଓ ନାନା ସମସ୍ୟାକୁ ଉପଜୀବ୍ୟ କରି ଉଚ୍ଚାଙ୍ଗ ଗଳ୍ପ ରଚନାରେ ନିୟୋଜିତ । ବୈଦେଶିକ ପୃଷ୍ଠଭୂମିକାଯୁକ୍ତ ଓ ସୂକ୍ଷ୍ମ ମାର୍ଜିତ ହାସ୍ୟରସାତ୍ମକ ସାର୍ଥକ ଗଳ୍ପ ରଚନା କରି ପ୍ରତିଷ୍ଠା ଲାଭ କରିଛନ୍ତି ପ୍ରମଥ ଚୌଧୁରୀ । ସ୍ୱଳ୍ପ ପରିସର ମଧ୍ୟରେ ବ୍ୟଞ୍ଜନାଧର୍ମୀ ଗଳ୍ପ ରଚନାରେ ଅପୂର୍ବ କଳାନୈପୁଣ୍ୟର ପରିଚୟ ଦେଇଛନ୍ତି 'ବନଫୁଲ' । ଆଧୁନିକ ବରିଷ୍ଠ କଥାଶିଳ୍ପୀମାନଙ୍କ ମଧ୍ୟରୁ ତାରାଶଙ୍କରଙ୍କ ନାମ ଉଲ୍ଲେଖଯୋଗ୍ୟ । 'ମନ ପବନ'କୁ ତାହାଙ୍କ ଶ୍ରେଷ୍ଠ ଗଳ୍ପସଂଗ୍ରହ ଭାବରେ ଗ୍ରହଣ କରାଯାଏ । ରବୀନ୍ଦ୍ରନାଥଙ୍କ ପରେ ପ୍ରେମେନ୍ଦ୍ର ମିତ୍ରଙ୍କୁ ମଧ୍ୟ କେହି କେହି ଶ୍ରେଷ୍ଠ କଥାଶିଳ୍ପୀ ଭାବରେ ଗ୍ରହଣ କରିଥାଆନ୍ତି ।

## ଆଧୁନିକ ବଙ୍ଗଳା କବିତା—

ରବୀନ୍ଦ୍ର ଯୁଗର ଅନ୍ୟାନ୍ୟ ଖ୍ୟାତନାମା କବି ଭାବରେ ସତ୍ୟେନ୍ଦ୍ରନାଥ ଦତ୍ତ, କାଜୀ ନଜରୁଲ ଇସଲାମ ସୁପ୍ରସିଦ୍ଧ । ବଙ୍ଗଳା ଗୀତିକାବ୍ୟ କ୍ଷେତ୍ରରେ ବହୁ ନୂତନ ଛନ୍ଦ ସଫଳତାର ସହିତ ପ୍ରବର୍ତ୍ତନ କରି ସତ୍ୟେନ୍ଦ୍ରନାଥ ଚିରସ୍ମରଣୀୟ । ତାହାଙ୍କ 'କୁହୁ ଓ କେକା', 'ବେଣୁ ଓ ବୀଣା', 'ତୀର୍ଥ ସଲିଳ' ପ୍ରଭୃତି କବିତା ସଙ୍କଳନ ବହୁ ଜନପ୍ରିୟ । ବିଦ୍ରୋହୀ କବି ଭାବରେ ନଜରୁଲ ବଙ୍ଗ ସାହିତ୍ୟରେ ଅମରତ୍ୱ ଲାଭ କରିଅଛନ୍ତି । ଭାଷାର ଓଜସ୍ୱୀତା ଓ ବୈପ୍ଳବିକ ଭାବନା ଓ ଭାବ ଅନୁରୂପ ଛନ୍ଦ ଯୋଗୁଁ ତାହାଙ୍କ ରଚନା ବହୁ ଜନପ୍ରିୟ । ତାହାଙ୍କ ଗୀତିକାବ୍ୟ ସଂଗ୍ରହମାନଙ୍କ ମଧ୍ୟରୁ 'ଅଗ୍ନିବୀଣା' ସୁବିଖ୍ୟାତ । ପଲ୍ଲୀ ପ୍ରକୃତି ଓ ପଲ୍ଲୀ ଜୀବନର ଦୁଃଖ ସୁଖ, ସ୍ନେହ ପ୍ରୀତିର ସ୍ୱଭାବସଙ୍ଗତ ଓ ନିପୁଣ ବର୍ଣ୍ଣନା ସମ୍ବଳିତ କବିତା ରଚୟିତା ଭାବରେ ଜସିମ ଉଦ୍ଦିନ ଓ ଶିଶୁ ଉପଯୋଗୀ କବିତା ରଚୟିତା ଭାବରେ ସୁକୁମାର ରାୟ ମଧ୍ୟ ଆଧୁନିକ ବଙ୍ଗ ସାହିତ୍ୟରେ ଜନପ୍ରିୟତା ଅର୍ଜନ କରିଅଛନ୍ତି । ଏତଦ୍‌ବ୍ୟତୀତ ଆଧୁନିକ ବଙ୍ଗଳା କାବ୍ୟସାହିତ୍ୟକୁ ସମୃଦ୍ଧ କରିଥିବା କବିମାନଙ୍କ ମଧ୍ୟରୁ କୁମୁଦ-

ରଞ୍ଜନ ମଲ୍ଲିକ, କାଳିଦାସ ରାୟ, ଅତୁଲ ପ୍ରସାଦ ସେନ, କରୁଣାନିଧାନ ବନ୍ଦୋପାଧ୍ୟାୟ କାମିନୀ ରାୟ, ମାନକୁମାରୀ ବସୁଙ୍କ ନାମ ଉଲ୍ଲେଖଯୋଗ୍ୟ ।

ଅତ୍ୟାଧୁନିକ କବି ଭାବରେ ଗୋକୁଳ ନାଗ, ପ୍ରେମେନ୍ଦ୍ର ମିତ୍ର, ଜୀବନାନନ୍ଦ ଦାସ, ବୁଦ୍ଧଦେବ ବସୁ ଓ ଅଚିନ୍ତ୍ୟ ସେନଗୁପ୍ତଙ୍କୁ ଶ୍ରେଷ୍ଠ ସ୍ଥାନ ପ୍ରଦାନ କରାଯାଇଥାଏ । ଜୀବନାନନ୍ଦ ଦାସଙ୍କ 'ଶ୍ରେଷ୍ଠ କବିତା' ଖ୍ରୀ: ୧୯୫୫ରେ କବିଙ୍କ ଅକାଳ ଆକସ୍ମିକ ମୃତ୍ୟୁ ପରେ ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଥିଲା । ପ୍ରକୃତିପ୍ରାଣତା, ଆଧୁନିକ ଜୀବନର ନିଃସଙ୍ଗତା ଓ ଆତ୍ମନିମଗ୍ନତାକୁ ଜୀବନାନନ୍ଦ ଅତ୍ୟନ୍ତ ଦକ୍ଷତାର ସହିତ ତାହାଙ୍କ କବିତାରେ ଚିତ୍ରଣ କରିପାରିଅଛନ୍ତି । ଅତ୍ୟାଧୁନିକ କବିତାର ଆଦର୍ଶ ପ୍ରକଟନ କରିବାକୁ ଯାଇ ପ୍ରେମେନ୍ଦ୍ର ମିତ୍ର ଲେଖିଥିଲେ—'ଆମି କବି ମୁଟେ ମଜୁରେର' ।

ମାତ୍ର ପ୍ରେମେନ୍ଦ୍ର ମିତ୍ର ତାହାଙ୍କର ଏତାଦୃଶ ମନୋଭାବକୁ ବଳିଷ୍ଠ ଭାବରେ ପ୍ରତିପାଦନ କରିବାକୁ ସମର୍ଥ ହୋଇପାରି ନ ଥିଲେହେଁ ତାହାଙ୍କ କବିତାରୁ ଏକ ବଳିଷ୍ଠ ରୋମାଣ୍ଟିକ ଦୃଷ୍ଟିକୋଣ ପ୍ରତିଭାତ ହୋଇଥାଏ । ବୁଦ୍ଧଦେବ ବସୁ ତାହାଙ୍କ ଆନନ୍ଦମୟ ସଚେତନା ଲାଗି ପ୍ରସିଦ୍ଧି ଅର୍ଜନ କରିଅଛନ୍ତି । ଏତଦ୍‌ବ୍ୟତୀତ ଅଜିତ ଦତ୍ତ, ସୁଧୀନ୍ଦ୍ର ଦତ୍ତ, ବିଷ୍ଣୁ ଦେ, ଅମିୟ ଚକ୍ରବର୍ତ୍ତୀ ପ୍ରଭୃତି ଗୀତିକାବ୍ୟରେ ବଳିଷ୍ଠ ଶବ୍ଦଯୋଜନା ଓ ପ୍ରଜ୍ଞାର ଅନୁପ୍ରବେଶ କରି ଅଭିନବତ୍ୱ ଦର୍ଶାଇଅଛନ୍ତି । ଗଦ୍ୟଛନ୍ଦ ଓ ମୁକ୍ତଛନ୍ଦ ମଧ୍ୟ ଏହିମାନଙ୍କ କୃତିରେ ଅଧିକ ସହଜ ଓ ବଳିଷ୍ଠତର ହୋଇଅଛି । ସମ୍ପ୍ରତି ନରେଶ ଗୁପ୍ତ, ଦିନେଶ ଦାସ, ଗୋବିନ୍ଦ ଚକ୍ରବର୍ତ୍ତୀଙ୍କ କବିତାରେ ବଳିଷ୍ଠତାର ସ୍ୱର ଦେଖିବାକୁ ମିଳୁଅଛି । ଆଧୁନିକ ଯୁଗର ଦୋଷତ୍ରୁଟି, ବ୍ୟଥା ଓ ବିକାରକୁ ରୂପଦେବା ହିଁ ଆଧୁନିକ କବିମାନଙ୍କର ଏକମାତ୍ର ଉପଜୀବ୍ୟ ମନେହୁଏ ।

ସାମ୍ପ୍ରତିକ ବାମପନ୍ଥୀ କବି ଭାବରେ ସୁକାନ୍ତ ଭଟ୍ଟାଚାର୍ଯ୍ୟ ବିଶିଷ୍ଟତମ । ତାହାଙ୍କୁ ବାମପନ୍ଥୀ ଅପେକ୍ଷା ମାନବବାଦୀ ଭାବରେ ଗ୍ରହଣ କରିବା ଅଧିକ ସମୀଚୀନ ମନେହୁଏ । ଅନ୍ୟ ବାମପନ୍ଥୀ କବିମାନଙ୍କ ମଧ୍ୟରୁ ସୁଭାସ ମୁଖାର୍ଜୀ, ମଣୀନ୍ଦ୍ର ରାୟ ଓ ପୂର୍ଣ୍ଣେନ୍ଦୁ ପତ୍ରୀଙ୍କ କବିତାବଳୀ ମହତ୍ତ୍ୱପୂର୍ଣ୍ଣ ।

## ନାଟକ—

ରବୀନ୍ଦ୍ରନାଥଙ୍କ ପରବର୍ତ୍ତୀ କାଳରେ ବହୁ ନାଟ୍ୟକାର ନାଟକ ରଚନା କରିଥିଲେ ହେଁ ନାଟ୍ୟସାହିତ୍ୟ କ୍ଷେତ୍ରରେ ସେପରି ଯୁଗାନ୍ତକାରୀ ନାଟ୍ୟକାରଙ୍କର ଆବିର୍ଭାବ ହୋଇନାହିଁ ବୋଲି ସମାଲୋଚକମାନେ ମନ୍ତବ୍ୟକ୍ତ କରିଥାଆନ୍ତି । ଆଧୁନିକ ନାଟ୍ୟକାରମାନେ ପୌରାଣିକ ଓ ଐତିହାସିକ ନାଟକ ରଚନା କରିବା ପରିବର୍ତ୍ତେ ସାମାଜିକ ଓ ପାରିବାରିକ ନାଟକ ରଚନା ଲାଗି ସବିଶେଷ ଅନୁରାଗୀ ।

ରବୀନ୍ଦ୍ରୋତ୍ତର ନାଟ୍ୟକାରମାନଙ୍କ ମଧ୍ୟରୁ କ୍ଷୀରୋଦ ପ୍ରସାଦ ବିଦ୍ୟାବିନୋଦ, ଅପରେଶଚନ୍ଦ୍ର ମୁଖୋପାଧ୍ୟାୟ, ମନ୍ମଥ ରାୟ, ଶଚୀନ ସେନଗୁପ୍ତ, ବିଧାୟକ ଭଟ୍ଟାଚାର୍ଯ୍ୟ, ଯୋଗେଶ ଚୌଧୁରୀ, ମହେନ୍ଦ୍ର ଗୁପ୍ତ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ । ଆଲୋଚ୍ୟ କାଳ ମଧ୍ୟରେ ସିନେମା, ରେଡ଼ିଓର ବହୁଳ ପ୍ରସାର ଫଳରେ ଗୁରୁତ୍ୱପୂର୍ଣ୍ଣ ନାଟ୍ୟସାହିତ୍ୟ ସୃଷ୍ଟି ହେବା ପରିବର୍ତ୍ତେ ଲଘୁ ଆମୋଦପ୍ରଦ ନାଟ୍ୟ ରଚନାର ପ୍ରସାର ଘଟିଅଛି କହିଲେ ଅତ୍ୟୁକ୍ତି ହେବନାହିଁ । ଏକାଙ୍କ ନାଟକ ରଚନା କ୍ଷେତ୍ରରେ ସାଫଲ୍ୟକୁ ଆଲୋଚ୍ୟ କାଳର ଅନ୍ୟତମ ବୈଶିଷ୍ଟ୍ୟ ଭାବରେ ଗ୍ରହଣ କରାଯାଇପାରେ ।

## ସମାଲୋଚନା—

ପ୍ରମଥ ଚୌଧୁରୀଙ୍କ ପ୍ରତିଷ୍ଠିତ ସବୁଜ ପତ୍ରକୁ କେନ୍ଦ୍ରକରି ବଙ୍ଗଳା ସମାଲୋଚନା ସାହିତ୍ୟର ଦିଗ ପରିବର୍ତ୍ତିତ ହୋଇଥିଲା । ସାହିତ୍ୟର ଭାଷାକୁ ସହଜ, ସ୍ୱାଭାବିକ ଓ କଥାଭାଷା ସମ୍ବଳିତ କରାଇବା 'ସବୁଜ ପତ୍ର'ର ଲକ୍ଷ୍ୟ ଥିଲା । ଏହାକୁ ହିଁ ଆଦର୍ଶ କରି ପ୍ରମଥ ଚୌଧୁରୀ ରସଗର୍ଭକ, ଚିନ୍ତାମୂଳକ ବହୁ ପ୍ରବନ୍ଧ ରଚନା କରିଥିଲେ । ଜ୍ଞାନବିଜ୍ଞାନର ପ୍ରସାର ଫଳରେ ନାନା ବିଷୟକ ବହୁ ପ୍ରବନ୍ଧଦ୍ୱାରା ବଙ୍ଗଳା ସମାଲୋଚନା ସାହିତ୍ୟ ସମୃଦ୍ଧ ହୋଇଥିଲା । ଭୂଦେବ ମୁଖାର୍ଜୀ, ବିପିନଚନ୍ଦ୍ର ପାଲ, ରାମେନ୍ଦ୍ର ସୁନ୍ଦର ତ୍ରିବେଦୀ, ଅତୁଳଚନ୍ଦ୍ର ଗୁପ୍ତ, ମୋହିତଲାଲ ମଜୁମଦାର, ଶ୍ରୀକୁମାର ବନ୍ଦୋପାଧ୍ୟାୟ, ସୁବୋଧ ସେନ, ଗୋପାଳ ହାଲଦାର, ପ୍ରମଥ ବିଶୀ ପ୍ରଭୃତି ଏ କ୍ଷେତ୍ରରେ ବିଖ୍ୟାତ । ଦୀନେଶ ଚନ୍ଦ୍ର ସେନ ବଙ୍ଗଳା ସାହିତ୍ୟର ଇତିହାସ 'ବଙ୍ଗଭାଷା ଓ ସାହିତ୍ୟ' ରଚନା କରିଥିବା ଯୋଗୁଁ ବଙ୍ଗ ସାହିତ୍ୟରେ ସ୍ମରଣୀୟ । ଏତଦବ୍ୟତୀତ ବଙ୍ଗ ଭାଷା ଓ ସାହିତ୍ୟର ଇତିହାସ ପ୍ରଣୟନ କ୍ଷେତ୍ରରେ ସୁକୁମାର ସେନ, ସୁନୀତି କୁମାର ଚାଟର୍ଜୀ, ମହମ୍ମଦ ସହିଦୁଲ୍ଲା, ସଜନୀକାନ୍ତ ଦାସ ପ୍ରଭୃତିଙ୍କ କୃତି ମଧ୍ୟ ଏକାନ୍ତ ମହତ୍ତ୍ୱପୂର୍ଣ୍ଣ ।

ରମ୍ୟରଚନା ଲେଖକ ଭାବରେ ଯାଯାବର, ସୟଦ ମୁଜତବା ଅଲ୍ଲୀ ଓ ଅବଧୂତଙ୍କ ରଚନା ବହୁ ଜନପ୍ରିୟତା ଅର୍ଜନ କରିଅଛି ।

ରବୀନ୍ଦ୍ରନାଥ ଶିଶୁ ଉପଯୋଗୀ ଗୀତିକାବ୍ୟ ରଚନା କରିଥିଲେ ହେଁ ରବୀନ୍ଦ୍ରୋତ୍ତର ଯୁଗରେ ଅବନୀନ୍ଦ୍ରନାଥ ଠାକୁର, ଦକ୍ଷିଣା ରଞ୍ଜନ ମିତ୍ର, ଉପେନ୍ଦ୍ର କିଶୋର ରାୟଚୌଧୁରୀ, ଯୋଗୀନ୍ଦ୍ରନାଥ ବୋଷ, ସୁକୁମାର ରାୟ, ସୁଖଲତା ରାଓ ଓ

ସୁନର୍ମଳ ବୋଷ ପ୍ରଭୃତ ଗଳ୍ପ, କବିତା ପ୍ରଭୃତ ରଚନା କର ଆଧୁନକ ବଙ୍ଗୀୟ ଶିଶୁ ସାହିତ୍ୟକୁ ସମୃଦ୍ଧ କରଅଛନ୍ତ ।

ଏହିପର ଭାବରେ ରବୀନ୍ଦ୍ରୋତ୍ତର କାଳରେ ବଙ୍ଗ ସାହିତ୍ୟ ପରିବର୍ତ୍ତିତ କାଳର ପଦଧ୍ୱନକୁ ବକ୍ଷରେ ଧାରଣ କର ଅଗ୍ରସର ହେଉଅଛି ।

———

# ହିନ୍ଦୀ ସାହିତ୍ୟ

ପଞ୍ଜାବର ପଶ୍ଚିମ ସୀମାନ୍ତରୁ ବିହାରର ପୂର୍ବ ସୀମାନ୍ତ ପର୍ଯ୍ୟନ୍ତ ଓ ଭାରତ ନେପାଳର ସୀମାରୁ ମଧ୍ୟପ୍ରଦେଶ ପର୍ଯ୍ୟନ୍ତ ପରିବ୍ୟାପ୍ତ ଅଞ୍ଚଳରେ ପ୍ରଚଳିତ କଥ୍ୟ ଭାଷାକୁ ପାରମ୍ପରିକ ଭାବରେ ସାଧାରଣତଃ ହିନ୍ଦୀ ଭାଷା କୁହାଯାଏ। ଭାଷାଭିତ୍ତିକ ଅନ୍ୟାନ୍ୟ ଅଞ୍ଚଳ ପରି ଏହି ଅଞ୍ଚଳ କୌଣସି ଗୋଟିଏ ନାମରେ ଅଭିହିତ ନୁହେଁ। ଆଧୁନିକ ହିନ୍ଦୀ ସାହିତ୍ୟ କେବଳ ଦିଲ୍ଲୀ, ମୀରଟ ଅଞ୍ଚଳରେ ପ୍ରଚଳିତ 'ଖଡ଼ିବୋଲି' ଭାଷାରେ ହିଁ ଲିଖିତ ହେଉଅଛି ଓ ପ୍ରାୟ ୧୦୦ ବର୍ଷ ମଧ୍ୟରେ ଲିଖିତ ଏହି ସାହିତ୍ୟ ହିନ୍ଦୀ ନାମରେ ଅଭିହିତ ହେଉଅଛି। ମୁଖ୍ୟତଃ ଚଳିତ ଶତାବ୍ଦୀର ପ୍ରାରମ୍ଭରୁ ହିଁ ଏହି ଖଡ଼ିବୋଲିରେ ହିନ୍ଦୀ କାବ୍ୟକବିତା ଲିଖିତ ହେଲା । ମାତ୍ର ଏହା ପୂର୍ବରୁ ଆଗ୍ରା, ମଥୁରା ପ୍ରଭୃତି ଅଞ୍ଚଳରେ ପ୍ରଚଳିତ ବ୍ରଜଭାଷା ହିଁ ମୁଖ୍ୟତଃ କାବ୍ୟକବିତାରେ ବ୍ୟବହୃତ ହେଉଥିଲା। ଅବଧି, ମୈଥିଳୀ ଓ ଅନ୍ୟାନ୍ୟ ଆଞ୍ଚଳିକ ଭାଷାରେ ଲିଖିତ ରଚନାକୁ ମଧ୍ୟ ମୋଟାମୋଟି ଭାବରେ ହିନ୍ଦୀ କୁହାଯାଇଥାଏ । ୮ମ ଶତାବ୍ଦୀର ଅପଭ୍ରଂଶ ଭାଷା ସହିତ ଏହାର ସମ୍ବନ୍ଧ ନିର୍ଦ୍ଧାରିତ ହୋଇଅଛି ଏବଂ ହିନ୍ଦୀ ସାହିତ୍ୟର ଆଲୋଚକଗଣ ବୌଦ୍ଧଗାନ ଓ ଦୋହା ରଚନା କାଳରୁ ଏହା ସୃଷ୍ଟ ହୋଇଅଛି ବୋଲି ମତବ୍ୟକ୍ତ କରିଥାନ୍ତି।

ଅଷ୍ଟମ ଶତାବ୍ଦୀରେ ବହୁ ଅପଭ୍ରଂଶ ଭାଷା ଭାରତରେ ପ୍ରଚଳିତ ଥିଲେହେଁ ସମଗ୍ର ଉତ୍ତର ଭାରତରେ ଏକ ସାଧାରଣ ଓ ବ୍ୟବସ୍ଥିତ ଅପଭ୍ରଂଶ ଭାଷା ବିଦ୍ୟମାନ ଥିବା ଅନୁମେୟ। ଏହି ଅପଭ୍ରଂଶ ଭାଷାରୁ ପୁରାତନ ବା 'ପୁରାଣୀ ହିନ୍ଦୀ' ଆନୁମାନିକ ଅଷ୍ଟମ ଶତାବ୍ଦୀରେ ଉଦ୍ଭୂତ ହୋଇଥିବା ଅନୁମେୟ ।

## ହିନ୍ଦୀ ସାହିତ୍ୟର ଯୁଗ ବିଭାଗ:—

ବିଷୟବସ୍ତୁ ଦୃଷ୍ଟିରୁ ହିନ୍ଦୀ ସାହିତ୍ୟର ବିକାଶ ଧାରାକୁ ସାଧାରଣତଃ ଚାରିଭାଗରେ ବିଭକ୍ତ କରାଯାଇଥାଏ। ଯଥା :—

(୧) ବୀରଗାଥାକାଳ—ଖ୍ରୀ. ୧୦୦୦-ଖ୍ରୀ. ୧୩୨୫ ପର୍ଯ୍ୟନ୍ତ
(୨) ଭକ୍ତିକାଳ— ଖ୍ରୀ. ୧୩୨୫-ଖ୍ରୀ. ୧୬୫୦ ପର୍ଯ୍ୟନ୍ତ
(୩) ରୀତିକାଳ— ଖ୍ରୀ. ୧୬୫୦-ଖ୍ରୀ. ୧୮୫୦ ପର୍ଯ୍ୟନ୍ତ
(୪) ଆଧୁନିକ କାଳ —ଖ୍ରୀ. ୧୮୫୦-ଆଜି ପର୍ଯ୍ୟନ୍ତ ।

## ବୀରଗାଥା କାଳ (ଖ୍ରୀ. ୧୦୦୦-ଖ୍ରୀ. ୧୩୨୫)—

ଉତ୍ତର-ଭାରତରେ ଏକାଦଶ ଶତାବ୍ଦୀ ଠାରୁ ଚତୁର୍ଦ୍ଦଶ ଶତାବ୍ଦୀ ପର୍ଯ୍ୟନ୍ତ ବହୁ କ୍ଷୁଦ୍ର ବୃହତ୍ ରାଜ୍ୟ ମଧ୍ୟରେ ବିଶେଷତଃ ରାଜପୁତାନା ପ୍ରଭୃତିରେ ଅନ୍ତର୍ଯୁଦ୍ଧ ଓ ବୈଦେଶିକ ଆକ୍ରମଣ ଲାଗି ରହିଥିଲା । ଏହି ସମୟରେ ସୈନିକମାନଙ୍କୁ ଉତ୍ସାହ ଦେବାଲାଗି ଓ ରାଜାମାନଙ୍କର ଯୁଦ୍ଧଗାରିମା ପ୍ରଭୃତି ବର୍ଣ୍ଣନା କରିବା ଲାଗି ରାଜପୁତାନାର ଦରବାରମାନଙ୍କରେ ବହୁ ଭାଟ ଓ ଚାରଣ ନିଯୋଜିତ ହେଉଥିଲେ । ଶାନ୍ତି ସମୟରେ ସେମାନେ ଆଶ୍ରୟଦାତା ରାଜାଙ୍କର ରୂପ, ଗୁଣ, ଦାନଶୀଳତା ଓ ଐଶ୍ୱର୍ଯ୍ୟ ପ୍ରଭୃତିକୁ ଗୀତାକାରରେ ବର୍ଣ୍ଣନା କରି ତାହାଙ୍କର ମନୋରଞ୍ଜନ କରୁଥିଲେ । ଏହି ଭାଟମାନଙ୍କ କବିତାରେ ବୀରରସର ପ୍ରାଧାନ୍ୟ ଦେଖିବାକୁ ମିଳୁଥିବାରୁ ଏହି ଯୁଗକୁ "ବୀରଗାଥା କାଳ" କୁହାଯାଏ ।

ଏହି ଯୁଗର ରଚନାମାନଙ୍କ ମଧ୍ୟରୁ 'ବିସଲ ଦେବରାସୋ', 'ପୃଥ୍ୱୀରାଜ ରାସୋ' ଓ 'ଆଲ୍‌ହା' ଏହି ତିନିଗୋଟି ରଚନା ସୁପ୍ରସିଦ୍ଧ । ଆନୁମାନିକ ଖ୍ରୀ ୧୧୫୫ରେ ରାଜା ନାଲହ 'ବିସଲଦେବ ରାସୋ' ରଚନା କରିଥିଲେ । ରାଜା ବିସଲଦେବ ଏକ ପ୍ରଧାନ ଯୁଦ୍ଧରେ ବିଜୟୀ ହେବା ପରେ କିପରି ସ୍ୱଇଚ୍ଛାରେ ବିବାହ କରିଥିଲେ ଓ ପରେ ପତ୍ନୀଙ୍କ ଉପରେ ବିରକ୍ତ ହୋଇ ଉଡ଼ୀସା ଚାଲିଯାଇ-ଥିଲେ, ତାହା ଏହି କାବ୍ୟରେ ବର୍ଣ୍ଣିତ ।

ଦ୍ୱାଦଶ ଶତାବ୍ଦୀରେ କବି ଚନ୍ଦ ବରଦାଇଙ୍କ ରଚିତ 'ପୃଥ୍ୱୀରାଜ ରାସୋ'କୁ ଏକ ମହାକାବ୍ୟ କୁହାଯାଏ । ଏଥିରେ ଜୟଚନ୍ଦ୍ରଙ୍କ କନ୍ୟା ସଂଯୋଗିତା (ସଂଯୁକ୍ତା) ସହ ପୃଥ୍ୱୀରାଜଙ୍କ ପ୍ରଣୟ ଓ ବିବାହ ବର୍ଣ୍ଣିତ । କବି ଜଗନିକଙ୍କ ରଚିତ 'ଆଲହା'ରେ ମହୋବାର ପ୍ରସିଦ୍ଧ ବୀର ଆଲ୍‌ହା ଓ ଉଦଲଙ୍କ ବୀରତ୍ୱର ବର୍ଣ୍ଣନା ଲିପିବଦ୍ଧ । କବି ଜଗନିକ କାଳଞ୍ଜରର ରାଜା ପରମାଲଙ୍କ ଦରବାରର ଭାଟ ଥିଲେ ।

ପୁରାତନ ଅପଭ୍ରଂଶ ଭାଷାର ପରିବର୍ତ୍ତିତ ରୂପରେ ଅଥବା ଜନସାଧାରଣଙ୍କର କଥୋପକଥନର ଭାଷାରେ ଏହି ଗ୍ରନ୍ଥଗୁଡ଼ିକ ରଚିତ । ପ୍ରଥମୋକ୍ତ ଭାଷାକୁ 'ଡିଙ୍ଗଲ' ଓ ଶେଷୋକ୍ତ ଭାଷାକୁ 'ପିଙ୍ଗଲ' କୁହାଯାଏ । ଏହି 'ପିଙ୍ଗଲ' ବା କଥୋପକଥନର ଭାଷା ବିକଶିତ ହୋଇ 'ବ୍ରଜଭାଷା' ନାମରେ ପ୍ରସିଦ୍ଧିଲାଭ କଲା । ଏହି ଯୁଗର କାବ୍ୟ କବିତାରେ ବିଶେଷ ଭାବରେ ଦୋହା, କବିତ୍ତ, ଛପ୍‌ପୟ, ତୋମର ପ୍ରଭୃତି ଛନ୍ଦମାନଙ୍କର ଓ ଉତ୍ପ୍ରେକ୍ଷା, ରୂପକ, ଅତିଶୟୋକ୍ତି, ଅର୍ଥାନ୍ତ୍ର ପ୍ରଭୃତି ଅଳଙ୍କାରର ବହୁଳ ପ୍ରୟୋଗ ପରିଲକ୍ଷିତ ହୁଏ । ଶାନ୍ତରସ ବ୍ୟତୀତ ଅନ୍ୟାନ୍ୟ

ରସର ବର୍ଣ୍ଣନା ଏହି ଯୁଗର ବୀରରସାତ୍ମକ କାବ୍ୟର ବିଷୟୀଭୂତ ହୋଇଅଛି । ଚାରଣ କବିମାନେ ସ୍ୱୀୟ ପ୍ରଭୁମାନଙ୍କ ସହ ସ୍ୱୟଂ ଯୁଦ୍ଧକ୍ଷେତ୍ରକୁ ଯାଉଥିବାରୁ ସେମାନେ ପ୍ରତ୍ୟକ୍ଷଦର୍ଶୀ ଭାବରେ ଯୁଦ୍ଧର ଯେଉଁ ଚିତ୍ର ଅଙ୍କନ କରିଯାଇଅଛନ୍ତି ତାହା ଅତ୍ୟନ୍ତ ମନୋଜ୍ଞ ଓ ବାସ୍ତବତାମୂଳକ । ସୈନ୍ୟସଜ୍ଜା, ଯୁଦ୍ଧଯାତ୍ରା, ବ୍ୟୂହରଚନା, ଆକ୍ରମଣ ପଦ୍ଧତି, ସୈନ୍ୟମାନଙ୍କର ଉତ୍ସାହ, ଯୁଦ୍ଧର କୋଲାହଳ ପ୍ରଭୃତି ପ୍ରତ୍ୟେକ ବିଷୟ ଅତ୍ୟନ୍ତ ଜୀବନ୍ତ ଏବଂ ଓଜସ୍ୱିନୀ ଭାବରେ ଏହି କାବ୍ୟମାନଙ୍କରେ ଚିତ୍ରିତ ହୋଇଅଛି । ଏହି କାରଣରୁ ବାସ୍ତବ ବୀରରସାତ୍ମକ ବର୍ଣ୍ଣନା ଦୃଷ୍ଟିରୁ ଏହି କାବ୍ୟମାନଙ୍କରେ ମହତ୍ତ୍ୱ ଓ ଅଭିନବତ୍ୱ ସ୍ୱୀକାର୍ଯ୍ୟ । ଉଦାହରଣ ସ୍ୱରୂପ 'ପୃଥ୍ୱୀରାଜ ରାସୋ'ର ଗୋଟିଏ ପଦ ଏଠାରେ ଉଲ୍ଲେଖଯୋଗ୍ୟ—

"ବାଜିୟ ଘୋର ନିସାନ ରାଜ ଚୌହାନ ଚହୌଦିସ
ସକଲ ସୂର ସାମନ୍ତ ବଲ୍ ଢଂହ ମଂହ ତିସ ।
ଉଟ୍ଠିରାଜ ପ୍ରିଥିରାଜ ବାଗମନୋ ଲଗ୍ଗ ବୀର ନଟ
ବଢ଼ତ ତେଗ ମନବେଗ ଲଗତ ମନୋ ବିଜୁ ଝଟ୍ଟ ଘଟ ।"

ଏହି ଯୁଗରେ ବୀରରସ-ପ୍ରଧାନ ଦରବାରୀ କାବ୍ୟ ବ୍ୟତୀତ କଥିତ ଭାଷାରେ ମଧ୍ୟ କେତେକ କାବ୍ୟ କବିତା ରଚିତ ହୋଇଥିଲା । ଏତାଦୃଶ କାବ୍ୟ ରଚୟିତା-ମାନଙ୍କ ମଧ୍ୟରେ ଅମୀର ଖସ୍ରୁ (ଖ୍ରୀ. ୧୨୮୦-ଖ୍ରୀ. ୧୩୨୪) ସର୍ବଶ୍ରେଷ୍ଠ ବିବେଚିତ ହୁଅନ୍ତି । ସେ ବହୁ ଦୋହା, ଗୀତ ଓ ପହେଲି (ପ୍ରହେଳିକା) ରଚନା କରିଥିଲେ । ମୈଥିଲୀ କବି ବିଦ୍ୟାପତିଙ୍କୁ ମଧ୍ୟ ଏହି ଯୁଗର କବି ଭାବରେ ହିନ୍ଦୀ ଆଲୋଚକମାନେ ଗ୍ରହଣ କରିଥାନ୍ତି ।

## ଭକ୍ତିକାଳ (ଖ୍ରୀ ୧୩୨୫-ଖ୍ରୀ ୧୬୮୦)—

ଚତୁର୍ଦ୍ଦଶ ଶତାବ୍ଦୀରେ ମୁସଲମାନ ଶାସନ ପ୍ରତିଷ୍ଠିତ ହୋଇସାରିଥିଲା । ହିନ୍ଦୁ ରାଜାମାନେ ମୁସଲମାନ ରାଜାଙ୍କର ବଶ୍ୟତା ସ୍ୱୀକାର କରିଥିଲେ । ଏଣୁ ବୀରରସାତ୍ମକ ଚାରଣ କବିତା ରଚନା ଧୀରେ ଧୀରେ ଏକପ୍ରକାର ଶିଥିଳ ହୋଇ ପଡ଼ିଥିଲା ।

ବୌଦ୍ଧ ଧର୍ମର ଅବସାନ ପରେ ବହୁ ସିଦ୍ଧ ଯୋଗୀ ବହୁ ନୂତନ ପୁରାତନ ବିଷୟ ସଂଯୋଜିତ କରି ନୂତନ ପନ୍ଥା ସମୂହ ପ୍ରଚଳନ କରିଥିଲେ । ବ୍ରାହ୍ମଣମାନଙ୍କ ସହ ସେମାନଙ୍କର ବିରୋଧ ମଧ୍ୟ ହେଉଥିଲା । ମୁସଲମାନମାନେ ମଧ୍ୟ ହିନ୍ଦୁମନ୍ଦିର

ଧ୍ୱଂସ କରି ଆପଣା ଧର୍ମଗତ ପ୍ରଚାର ଲାଗି ଉଦ୍ୟମ କରୁଥିଲେ । ଦେଶରେ ସେତେବେଳେ ମୁଖ୍ୟତଃ ଧର୍ମଚର୍ଚ୍ଚା ଚାଲିଥିଲା କହିଲେ ଚଳେ ।

ଏହିପରି ଧାର୍ମିକ ସଂଘର୍ଷବହୁଳ ଯୁଗରେ କେତେକ ସାଧୁ ମହାତ୍ମା ଏହି ଧର୍ମବିରୋଧର ସମନ୍ୱୟ ସାଧନ ଲାଗି ମଧ୍ୟ ପ୍ରଯତ୍ନ କରିଥିଲେ । ସେମାନେ ଜନସାଧାରଣଙ୍କ ସମ୍ମୁଖରେ ଧର୍ମର ପ୍ରକୃତ ରୂପ ଉପସ୍ଥାପିତ କରିଥିଲେ; ଜଗତର ସବୁ ଧର୍ମ ସମାନ ବୋଲି ହିନ୍ଦୁ ଓ ମୁସଲମାନମାନଙ୍କୁ ବୁଝାଇଥିଲେ । ସବୁ ଧର୍ମରେ ଈଶ୍ୱରଙ୍କୁ ଭକ୍ତି କରାଯାଏ: ଏକ ଈଶ୍ୱର ହିଁ ସମସ୍ତ ପ୍ରାଣୀଙ୍କୁ ଜାତ କରିଅଛନ୍ତି; ଦାନ, ଦୟା, ସତ୍ୟଭାଷଣ ସବୁ ଧର୍ମର ସାର କଥା ଓ ବାହ୍ୟ ଆଚରଣରେ ଭିନ୍ନତା ଥିଲେ ହେଁ ସବୁ ଧର୍ମରେ ତାତ୍ତ୍ୱିକ ସିଦ୍ଧାନ୍ତ ମଧ୍ୟ ଏକ । ଏଣୁ ବାହ୍ୟ ଆଡ଼ମ୍ବର ଓ ଆଚରଣ ଯୋଗୁଁ ଭେଦଭାବ ସୃଷ୍ଟି କରିବା ଅନୁଚିତ—ଏହା ହିଁ ସେମାନଙ୍କ ପ୍ରଚାରର ମୂଳମନ୍ତ୍ର ଥିଲା ।

ଏହି ଭକ୍ତିକାଳର ହିନ୍ଦୀ କାବ୍ୟକବିତା ପ୍ରାୟ ଏକ ସମୟରେ ଚାରିଗୋଟି ଧାରାରେ ଅଭିବ୍ୟକ୍ତି ଲାଭ କରିଥିଲା । ତାହା (୧) ସଂତ (ସନ୍ଥ) କାବ୍ୟଧାରା, (୨) ସୁଫୀ କାବ୍ୟଧାରା, (୩) କୃଷ୍ଣ କାବ୍ୟଧାରା, (୪) ରାମ କାବ୍ୟଧାରା ନାମରେ ବିଦିତ ।

## (କ) ସଂତ କାବ୍ୟଧାରା :—

ସଂତ କାବ୍ୟଧାରାର ବିଶିଷ୍ଟ କବି ଭାବରେ କବୀର ( ୧୪୦୦-? ) ନାନକ (୧୪୬୯-୧୫୩୯), ଦାଦୁ ଦୟାଲ (୧୫୪୬-୧୬୦୩), ସୁନ୍ଦର ଦାସ (୧୫୯୬-୧୬୮୯), ମୁଲକ ଦାସ (୧୫୭୪-୧୬୮୨) ପ୍ରଭୃତି ସ୍ୱନାମଧନ୍ୟ । ବ୍ରାହ୍ମଣ ଧର୍ମ ପ୍ରତି ବିରୋଧ ଏହି ଧର୍ମପ୍ରଚାରକ ଓ ଭକ୍ତ କବିମାନଙ୍କର ମୂଳ ଲକ୍ଷ୍ୟ ଥିଲା । ସେତେବେଳେ ବହୁ ଜାତିଭେଦରେ ବିଭକ୍ତ ହିନ୍ଦୁମାନଙ୍କ ମଧ୍ୟରେ ନିମ୍ନଜାତିର ଲୋକମାନଙ୍କୁ ଧର୍ମାଚରଣର ସୁଯୋଗ ମିଳୁ ନ ଥିଲା ; କେତେକ ପତିତ ଓ ନୀଚ ବିବେଚିତ ହେଉଥିଲେ । ବୌଦ୍ଧଧର୍ମ ସମାଜର ଅଧସ୍ତନ ଶ୍ରେଣୀକୁ ଧର୍ମାଚରଣର ସୁଯୋଗ ଦେଇଥିଲେ ହେଁ ବୌଦ୍ଧଧର୍ମର ପତନ ପରେ ଅଧସ୍ତନ ଶ୍ରେଣୀ ପୁନର୍ବାର ହୀନ ବିବେଚିତ ହେଉଥିଲେ । ସମାଜର ଏହି ଅବଜ୍ଞାତ ସମ୍ପ୍ରଦାୟ ଏହାର ବିରୋଧ କରିବା ସ୍ୱାଭାବିକ । ଏମାନଙ୍କ ମଧ୍ୟରୁ କେହି କେହି ନୂତନ ଧର୍ମ ସମ୍ପ୍ରଦାୟ ଗଠନ କରିଥିଲେ ଓ ଈଶ୍ୱର ସବୁ ଜାତି ସୃଷ୍ଟି କରିଅଛନ୍ତି ଓ ସମସ୍ତେ ସମାନ ଏହା ପ୍ରଚାର କରିଥିଲେ । ଜାତିଭେଦ, ବର୍ଣ୍ଣ ବ୍ୟବସ୍ଥା, ସ୍ପୃଶ୍ୟାସ୍ପୃଶ୍ୟ ଭେଦକୁ ଏମାନେ ସ୍ୱୀକାର

କରୁ ନ ଥିଲେ । ମୁସଲମାନଙ୍କ ରୋଜା, ନମାଜ, ହଜ୍, ତାଜିଆଦାରି ତଥା ହିନ୍ଦୁମାନଙ୍କ ବ୍ରତ, ଶ୍ରାଦ୍ଧ, ତୀର୍ଥଯାତ୍ରା ପ୍ରଭୃତିକୁ ଏମାନେ ନିରର୍ଥକ ବିବେଚନା କରିଥିଲେ । ସେମାନେ, ଈଶ୍ୱରଙ୍କୁ ରାମ, ରହିମ, ଗୋବିନ୍ଦ, ହରି ପ୍ରଭୃତି ବିଭିନ୍ନ ନାମରେ ଯେପରି ସମ୍ବୋଧନ କରିଅଛନ୍ତି, ସେହିପରି ସତ୍‌ପୁରୁଷ (ନିର୍ଗୁଣ ବ୍ରହ୍ମ), ସଦ୍‌ଗୁରୁ, ଈଶ୍ୱର ନାମ, ସତ୍‌ସଙ୍ଗ, ଧୈର୍ଯ୍ୟ, କ୍ଷମା, ଦୟା, ସାଧୁତା ପ୍ରଭୃତିର ମହିମା ଗାନ କରିଅଛନ୍ତି । ଜୀବନକୁ ସରଳ, କଳୁଷମୁକ୍ତ ଓ ସହିଷ୍ଣୁ କରାଇବା ଲାଗି ସେମାନେ ଉପଦେଶ ଦେଇଅଛନ୍ତି । ଏହିପରି ସବୁ ଧର୍ମର ମହତ୍ ବିଷୟମାନଙ୍କୁ ହିଁ ସେମାନେ ଆଦର୍ଶ ଭାବରେ ଗ୍ରହଣ କରିଥିଲେ ।

ଅଧିକାଂଶ ସନ୍ଥକବି ଏକଦା ନୀଚ ବିବେଚିତ ହେଉଥିବା ଜାତିର ଲୋକ ଥିଲେ । ସେମାନଙ୍କୁ ଲେଖାପଢ଼ା କରିବାକୁ ସୁଯୋଗ ମିଳି ନ ଥିଲା । ସେମାନଙ୍କ ରଚନାବଳୀରେ ତେଣୁ ଶାସ୍ତ୍ରଜ୍ଞାନର ପରିଚୟ ପରିବର୍ତ୍ତେ ସତ୍‌ସଙ୍ଗର ପ୍ରଭାବ ଓ ସ୍ୱୀୟ ବିଦ୍ୟାନୁଭବର ପରିଚୟ ମିଳିଥାଏ । କାବ୍ୟରେ ଛନ୍ଦ, ଅଳଙ୍କରଣ ବା ଭାଷାର ସୌଷ୍ଠବ ବିଷୟରେ ମଧ୍ୟ ସେମାନେ ଅନବହିତ ଥିଲେ ।

କବିରଙ୍କୁ ନିର୍ଗୁଣ ଭକ୍ତିର ଓ ଜ୍ଞାନାଶ୍ରୟୀ ଶାଖାର ସର୍ବଶ୍ରେଷ୍ଠ କବି ଭାବରେ ଗଣନା କରାଯାଏ । ସେ ଯେପରି ହିନ୍ଦୁ କର୍ମକାଣ୍ଡର ଅସାରତା ଦର୍ଶାଇଅଛନ୍ତି ସେହିପରି ବ୍ରାହ୍ମଣ ପଣ୍ଡିତ ଓ ମୁସଲମାନ ମୌଲବୀମାନଙ୍କୁ ମଧ୍ୟ ଉପହାସ କରିଯାଇ-ଅଛନ୍ତି । ସେ ଶୁଦ୍ଧଭକ୍ତି ଉପାସନା, ନିଃସ୍ୱାର୍ଥପରତା, ସରଳ ଆଚରଣ ଓ ସତ୍ୟର ସମର୍ଥକ ଥିଲେ । ତାହାଙ୍କ ରଚନାବଳୀ ମୁଖ୍ୟତଃ ଜ୍ଞାନ-ଉପଦେଶ ମୂଳକ । ବେଦାନ୍ତ ସାଧନାର କଠିନତା, ପ୍ରେମ ମହିମା, ହୃଦୟଶୁଦ୍ଧି, ସତ୍ୟାଚରଣ, ନାମ-ମହିମା, ସତ୍‌ପୁରୁଷ ନିରୂପଣ, ମାୟା-ବର୍ଣ୍ଣନ, ଗୁରୁମହିମା, ସତ୍‌ସଙ୍ଗ, କର୍ମକାଣ୍ଡ ଓ ବିଧର୍ମୀର ନିନ୍ଦା ପ୍ରଭୃତି ବିଷୟରେ ପଦ ଓ 'ସାଖି' ସମୂହ ଓ ରଚନା କରିଅଛନ୍ତି । ଏହିସବୁ ବିଷୟରେ ନୂତନତା ନ ଥିଲେ ହେଁ ତାହାଙ୍କ କହିବା ଭଙ୍ଗିରେ ମୌଳିକତା ପରିଲକ୍ଷିତ ହୁଏ । ଚମତ୍କାର ରୂପକ, ଅନ୍ୟୋକ୍ତି ଓ ବ୍ୟଞ୍ଜନା ସଂଯୋଗରେ ତାହା ଅତ୍ୟନ୍ତ ସରସ ଓ ପ୍ରଭାବଶାଳୀ । କବିରଙ୍କ ଭାଷାକୁ 'ମଧୁକକ୍‌ଡ଼ୀ' କୁହାଯାଏ । ଏଥିରେ ରାଜସ୍ଥାନୀ, ପଞ୍ଜାବୀ, ଖଡ଼ିବୋଲି ଓ ବ୍ରଜଭାଷା ଶବ୍ଦାବଳୀର ସମ୍ମିଶ୍ରଣ ପରିଲକ୍ଷିତ ହୁଏ ।

ତାହାଙ୍କ ରଚନାର ନିଦର୍ଶନ—

(କ) କାଁକର ପଥର ଜୋରି କୈ ମସଜିଦ୍ ଲଈ ବନାୟ
ତା ଚଢ଼ି ମୁଲ୍ଲା ବାଁଗି ଦୈ, ବହିରା ଭୟା ଖୁଦାୟ

ବକରୀ ପାତୀ ଖାତହେ, ତାକୀ କାଢ଼ୀ ଖାଲ
ଜେ ନର ବକରୀ ଖାତ ହୈ, ଉନକା କୌନ ହବାଲ ।
(ଖାଲ = ଚର୍ମ ହବାଲ = ଖବର)

(ଖ) ମନ ନ ରଙ୍ଗାଏ ରଙ୍ଗାଏ ଯୋଗୀ କପଡ଼ା
ଆସନ ମାରି ମନ୍ଦିର ମେ ବୈଠ ନାମ ଛାଡ଼ି ପୂଜନ ଲଗେ ପଥରା ।

(ଗ) ପାହନ ପୂଜେ ହରି ମିଲୈ ତୋ ମୈ ପୂଜୁ ପହାର ।
(ପାହନ—ପଥର । ପହାର—ପାହାଡ଼)

କବିରଙ୍କ ଭଳି ଶିକ୍ଷାଲାଭ କରି ନ ଥିବା ନାନକ ପଞ୍ଜାବୀ ଭାଷାରେ ଓ ଖଡ଼ିବୋଲି ଏବଂ ପଞ୍ଜାବୀ ଭାଷା ମିଶ୍ରିତ ବ୍ରଜଭାଷାରେ ସରଳ ସହଜ ଭାବରେ ବହୁ ପଦ ରଚନା କରିଥିଲେ । ଯଥା—

'ଜୋ ନର ଦୁଃଖ ମେ ଦୁଖ ନହିଁ ମାନେ
ସୁଖ ସନେହ ଅରୁ ଭୟ ନହି ଜାକେ କଂଚନ ମାଟୀ ଜାନୈ
ଗୁରୁ କିରପା ଜୋହି ନର ପୈ କିହ୍ନି ତିନ୍ହ ଯହ ଜୁଗୁତି ପିଛାନି
ନାନକ ଲୀନ ଭୟୋ ଗୋବିନ୍ଦ ସୋ' ଜ୍ୟୋ ପାନୀ ସଙ୍ଗ ପାନୀ ।'

ଦାଦୁଦୟାଲ ରାଜସ୍ଥାନରେ ଭ୍ରମଣ କରି 'ଦାଦୁ ପନ୍ଥ' ନାମରେ ଏକ ନୂତନ ଧର୍ମମତ ପ୍ରଚାର କରିଥିଲେ । ସେ ବହୁ 'ଦୋହା' ଓ 'ପଦ' ରଚନା କରିଅଛନ୍ତି । ଏହାର ଭାଷାରେ ରାଜସ୍ଥାନୀ ଭାଷାର ଅଧିକ ପ୍ରଭାବ ଅନୁଭୂତ ହୁଏ । ପଞ୍ଜାବୀ ଓ ଗୁଜରାଟ ଭାଷାରେ ଏହାଙ୍କ ରଚିତ କେତେକ ପଦର ମଧ୍ୟ ସନ୍ଧାନ ମିଳିଅଛି ।

ଘିବ ଦୁଧମେ ରମି ରହ୍ୟା ବ୍ୟାପକ ସବହୀ ଠୌର
ଦାଦୁ ବକତା ବହୁତ ହୈ ମଥିକାଢୈ ତେ ଔର ।'

ଭକ୍ତକବି ସୁନ୍ଦର ଦାସ ବହୁ ଶ୍ରେଷ୍ଠବଡ଼ ଗ୍ରନ୍ଥ ରଚନା କରିଯାଇଅଛନ୍ତି ; ତନ୍ମଧ୍ୟରୁ 'ସୁନ୍ଦର ବିଲାସ' ସର୍ବଶ୍ରେଷ୍ଠ ବିବେଚିତ ହୁଏ । ଶୁଦ୍ଧ ସାହିତ୍ୟିକ ଭାଷାରେ ଓ ସବୈୟା ଓ କବିତ୍ୱ ଛନ୍ଦରେ ଆଲଂକାରିକ ସୌଷ୍ଠବ ରକ୍ଷାକରି ସେ ତାହାଙ୍କ ଗ୍ରନ୍ଥଗୁଡ଼ିକ ରଚନା କରିଅଛନ୍ତି । ଉଦାହରଣ ସ୍ୱରୂପ—

'ଗେହ ତଜ୍ୟୋ ଅରୁ ନେହ ତଜ୍ୟୋ ପୁନି ଖେଇ ଲଗାଇକେ ଦେହ ସଁବାରୀ
ମେହ ସହେ ସିର, ସୀତ ସହେ ତନ, ଧୂପ ସହୈ ଜୋ ପଁଚାଗିନୀ ବାରୀ ।
ଭୂଖ ସହୀ ରହି ରୂଖ ତରେ, ପର ସୁନ୍ଦର ଦାସ ସବୈ ଦୁଃଖ ଭାରୀ ।
ଡାସନ ଛାଁଡ଼ିକେ କାସନ ଉପରି ଆସନ ମାରେୟା ପୈ ଆସ ନ ମାରୀ ।'

ବ୍ରଜଭାଷା ଓ ଖଡ଼ିବୋଲିରେ ମଲ୍‌କ ଦାସ ମଧ୍ୟ ବହୁ ଭକ୍ତିମୂଳକ ଗୀତିକା ରଚନା କରିଅଛନ୍ତି ।

## (ଖ) ସୁଫିକାବ୍ୟ ଧାରା—

ସୁଫିମାନେ ମୁସଲମାନ ସମ୍ପ୍ରଦାୟଭୁକ୍ତ । ସେମାନେ ଜୀବ ଓ ଈଶ୍ୱରଙ୍କ ସମ୍ପର୍କକୁ ସାମାଜିକ ନରନାରୀଙ୍କ ସମ୍ପର୍କ ସଦୃଶ ଚିତ୍ରଣ କରିଯାଇଅଛନ୍ତି । କାହାଣୀ-ବର୍ଣ୍ଣିତ ରାଜକୁମାରୀର ରୂପ ଗୁଣରେ ମୁଗ୍‌ଧ ହୋଇ ରାଜକୁମାର ଯେପରି ଘରସଂସାର ତ୍ୟାଗ କରି ଅସୀମ କଷ୍ଟସ୍ୱୀକାର ପୂର୍ବକ ଅବଶେଷରେ ତାହାକୁ ଲଭ କରେ, ଜୀବ ସେହିପରି ଈଶ୍ୱରଙ୍କର ଅଲୌକିକତାରେ ବିମୋହିତ ହୋଇ ତାହାଙ୍କୁ ପାଇବାଲାଗି ପ୍ରଯତ୍ନ କରେ ଓ ସମସ୍ତ ବାଧା ବିପତ୍ତିକୁ ଲଙ୍ଘନ କରିଥାଏ । ଏହା ହିଁ ସୁଫି କବି-ମାନଙ୍କର ବର୍ଣ୍ଣନୀୟ ବିଷୟ ।

ସୁଫି କବି ମାନେ ଅବଧି ଭାଷାରେ ଦୋହା ଓ ଚୌପାଇ ଛନ୍ଦରେ କବିତା ରଚନା କରିଯାଇଅଛନ୍ତି । ସୁଫି କବିମାନଙ୍କ ମଧ୍ୟରୁ କୁତବନ, ମଂଝନ, ଜାୟସୀ, ଓସମାନ ଓ ଶେଖ ନବୀଙ୍କ ନାମ ସୁପ୍ରସିଦ୍ଧ । ଏମାନଙ୍କ ମଧ୍ୟରୁ ମାଲିକ ମୁହମ୍ମଦ ଜାୟସୀଙ୍କୁ ସର୍ବଶ୍ରେଷ୍ଠ କବି ଭାବରେ ଗଣନା କରାଯାଏ । ପ୍ରେମଭକ୍ତି ଧାରାର ସର୍ବଶ୍ରେଷ୍ଠ କବି ଭାବରେ ମଧ୍ୟ ସେ ପରିଗଣିତ ହୁଅନ୍ତି । ରାୟବରେଲୀ ଜିଲ୍ଲାର ଜାୟସ ନାମକ ସ୍ଥାନର ଅଧିବାସୀ ଥିବାରୁ ସେ 'ଜାୟସୀ' ନାମରେ ସୁବିଦିତ । ସେ 'ପଦ୍‌ମାବତ', 'ଅଖରାବଟ' ଓ 'ଆଖିରୀ କଲାମ' ନାମକ ତିନିଗୋଟି ଗ୍ରନ୍ଥ ରଚନା କରିଅଛନ୍ତି । ତାହାଙ୍କ ସର୍ବଶ୍ରେଷ୍ଠ କୃତି ପଦ୍‌ମାବତ କାବ୍ୟଟି ଚିତୋରର ରାଣୀ ପଦ୍‌ମାବତୀ (ପଦ୍‌ମିନୀ)ଙ୍କ ସମ୍ପର୍କୀୟ ଐତିହାସିକ ଗାଥାକୁ ଭିତ୍ତିକରି ରଚିତ । 'ଅଖରାବଟ'ରେ ବର୍ଣ୍ଣମାଳାର ପ୍ରତ୍ୟେକ ଅକ୍ଷରକୁ ନେଇ ସିଦ୍ଧାନ୍ତ ତତ୍ତ୍ୱ, ଈଶ୍ୱର ସୃଷ୍ଟି, ଜୀବର ସମ୍ବନ୍ଧ ବର୍ଣ୍ଣିତ ହୋଇଅଛି । ଓଡ଼ିଶାରେ ଏତାଦୃଶ କାବ୍ୟରୂପକୁ ଚଉତିଶା କୁହାଯାଏ । 'ଅଖିରୀ କଲାମ'ରେ 'କୟାମତ'ର ବର୍ଣ୍ଣନା ହୋଇଅଛି । ଏହି ଗ୍ରନ୍ଥମାନଙ୍କରେ କବି ସୁଫି କବିମାନଙ୍କ ଭଳି ଇସଲାମଧର୍ମରେ ପୂର୍ଣ୍ଣ ଆସ୍ଥା ସ୍ଥାପନ କରିଥିଲେ ହେଁ ମନୁଷ୍ୟ ଜୀବନର ଏକତାକୁ ପ୍ରକଟିତ କରାଇବାରେ ପ୍ରଯତ୍ନ କରିଅଛନ୍ତି । ମୁସଲମାନ ହେଲେ ହେଁ ହିନ୍ଦୁମାନଙ୍କ ଭାଷା ଓ ଛନ୍ଦକୁ ଯେପରି ସେ ଆପଣାର କରିନେଇଥିଲେ ସେହିପରି ହିନ୍ଦୁ ମୁସଲମାନ ଭେଦଭାବ ଓ ଧର୍ମାନ୍ଧ ଭାବନାକୁ ଦୂର କରିବାକୁ ଉଦ୍ୟମ କରିଥିଲେ । ସମ୍ଭବତଃ ସଂସ୍କୃତ ସହ ପରିଚିତ ହୋଇ ନ ଥିବା ଯୋଗୁଁ ସେ ଭାରତୀୟ ପ୍ରବନ୍ଧ କାବ୍ୟର ସର୍ଗବନ୍ଧ ପଦ୍ଧତିକୁ ଅନୁସରଣ ନ କରି ଫାରସୀ 'ମସନବୀ' ଶୈଳୀରେ 'ପଦ୍‌ମାବତ' କାବ୍ୟ ରଚନା କରିଅଛନ୍ତି । ଏତାଦୃଶ ଶୈଳୀ ଅନୁଯାୟୀ

କାବ୍ୟର ପ୍ରାରମ୍ଭରେ ଈଶ୍ୱର, ପୈଗମ୍ବର, ସମକାଳୀନ ଶାସକ, ଗୁରୁ ପ୍ରଭୃତିଙ୍କର ସ୍ତୁତି ବର୍ଣ୍ଣିତ ହୋଇଥାଏ । ମାତ୍ର ତାହାଙ୍କ କାବ୍ୟ ବର୍ଣ୍ଣନାଶୈଳୀରେ ଭାରତୀୟତାର ଗଭୀର ପ୍ରଭାବ ମଧ୍ୟ ନିହିତ । ଏହିପରି ଦ୍ୱିବିଧ ପଦ୍ଧତିର ସମନ୍ୱୟ ଯୋଗୁଁ ତାହାଙ୍କ କାବ୍ୟର ମହତ୍ତ୍ୱ ଅନସ୍ୱୀକାର୍ଯ୍ୟ ।

ପ୍ରେମପୂର୍ଣ୍ଣ ମାନବୀୟ ସମ୍ବନ୍ଧ, ଈଶ୍ୱର ଓ ପ୍ରାଣୀଙ୍କ ମଧୁର ସମ୍ବନ୍ଧକୁ ହିଁ କବି ତାହାଙ୍କ କାବ୍ୟରେ ବର୍ଣ୍ଣନା କରିଅଛନ୍ତି । ଜୀବ ଯେପରି ଈଶ୍ୱରଙ୍କୁ ପାଇବା ଲାଗି ବ୍ୟାକୁଳ ହୋଇଥାଏ, ତାହାଙ୍କ କାବ୍ୟର ନାୟକ ଆପଣା ପ୍ରେମିକା ପ୍ରତି ସେହିପରି ବିମୋହିତ ଓ ତାହାକୁ ପାଇବା ଲାଗି ସେହିପରି ବ୍ୟାକୁଳ ଓ ପ୍ରଯତ୍ନଶୀଳ ହୋଇଅଛି । ସେଥିପାଇଁ ପଦ୍‌ମାବତ କାବ୍ୟର ଉପସଂହାରରେ ସବୁ ରହସ୍ୟର ସମାଧାନ କରି କବି କହିଛନ୍ତି—

‘ତନ ଚିତ ଉର, ମନ ରଜା କୀହ୍ନା
ହିୟ ସିଂହଲ ବୁଦ୍ଧି ପଦମିନୀ ଚହ୍ନା
ଗୁରୁ ସୁଆ, ଜେଇ ପଂଥ ଦିଖାବା
ବିନ ଗୁରୁ ଜଗତ କୋ ନିରଗୁଣ ପାବା
ନାଗମତୀ ଯହ୍ ଦୁନିୟାଁ—ଧନ୍ଧା
ବାଁଧା ସୋଇ ନ ଏହି ଚିତ ବନ୍ଧା ।
ରାଘବ ଦୂତ ସୋଇ ସୈତାନ
ମାୟା ଆଲଉଦିନ ସୁଲତାନ ।’

ପଦ୍‌ମାବତକୁ ହିନ୍ଦୀ ସାହିତ୍ୟର ସର୍ବୋତ୍ତମ ପ୍ରେମ କାବ୍ୟ ଭାବରେ ଗ୍ରହଣ କରିଯାଏ । ଦୋହା ଓ ଚୌପାଇ ଛନ୍ଦରେ ଅବଧି ଭାଷାରେ ଏହା ରଚିତ । ୧୬ଶ ଶତାବ୍ଦୀର ପ୍ରଥମ ପାଦରେ ଏହି କାବ୍ୟ ରଚିତ ହୋଇଥିବା ଅନୁମେୟ ।

## (ଗ) କୃଷ୍ଣଭକ୍ତି ଧାରା

ପଞ୍ଚଦଶ ଶତାବ୍ଦୀରେ ସଂସ୍କୃତ ସୁପଣ୍ଡିତ ସ୍ୱାମୀ ବଲ୍ଲଭାଚାର୍ଯ୍ୟ କୃଷ୍ଣଭକ୍ତିଭାବ ପ୍ରଚାର କରିଥିଲେ । ତାହାଙ୍କ ଶିଷ୍ୟମାନଙ୍କ ମଧ୍ୟରୁ କେତେକ ଭକ୍ତକବି କୃଷ୍ଣଙ୍କ ବାଲ୍ୟଲୀଳା ଓ ଗୋପୀ ପ୍ରେମଲୀଳାକୁ ଉପଜୀବ୍ୟ କରି କବିତା ରଚନା କରିଥିଲେ । ହିନ୍ଦୀ ସାହିତ୍ୟର ପ୍ରାୟ ସମସ୍ତ କୃଷ୍ଣକାବ୍ୟ ବ୍ରଜ ଭାଷାରେ ହିଁ ରଚିତ । ଏହି ଭକ୍ତକବି-ମାନଙ୍କ ଭାଷାର କୋମଳତା, ମଧୁରତା ଓ ସରସତା ଦୃଷ୍ଟିରୁ ସୁଫିକବିମାନଙ୍କ ଅପେକ୍ଷା ଉତ୍କୃଷ୍ଟତର । ହିନ୍ଦୀ ସାହିତ୍ୟରେ କୃଷ୍ଣଲୀଳାତ୍ମକ ଆଖ୍ୟାନ କାବ୍ୟ ପରିଲକ୍ଷିତ ହୁଏ ନାହିଁ । ହିନ୍ଦୀ କୃଷ୍ଣଭକ୍ତ କବିମାନେ କୃଷ୍ଣଙ୍କର ଗୋପଲୀଳାକୁ

ଉପଜୀବ୍ୟ କରି କେବଳ ଗୀତକାବ୍ୟ ରଚନା କରିଯାଇଅଛନ୍ତି । ଏଣୁ ଏଥିରେ ବହୁ ରାଗ ରାଗିଣୀର ପ୍ରୟୋଗ ହେବା ସ୍ୱାଭାବିକ । କେହି କେହି ଦୋହା, ଚୌପାଇ, ସବୈୟା ଛନ୍ଦରେ ମଧ୍ୟ କବିତା ରଚନା କରିଅଛନ୍ତି । ଏହି କବିମାନଙ୍କ ରଚନାରେ ଅଳଂକାରର ପ୍ରୟୋଗ ଥିଲେହେଁ ତାହାର ବହୁଳତା ପରିଲକ୍ଷିତ ହୁଏନାହିଁ । କୃଷ୍ଣଭକ୍ତ କବିମାନଙ୍କ ମଧ୍ୟରୁ ସୁରଦାସ, ନନ୍ଦଦାସ, ମୀରାବାଈ, ରସଖାନ ହିନ୍ଦୀ ସାହିତ୍ୟରେ ସୁପ୍ରସିଦ୍ଧ ।

## ସୁରଦାସ—(୧୪୮୦-?)

କୃଷ୍ଣଭକ୍ତ ଶାଖାର ସର୍ବଶ୍ରେଷ୍ଠ କବି ଭାବରେ ସୁରଦାସ ହିନ୍ଦୀ ସାହିତ୍ୟରେ ପ୍ରଖ୍ୟାତ । 'ସୁର ସାଗର', 'ସୁର ସାରାବଳୀ', 'ସାହିତ୍ୟ ଲହରୀ' ନାମକ ତିନଗୋଟି ସଂଗ୍ରହରେ ଏହାଙ୍କ ରଚିତ ପ୍ରାୟ ୬ ହଜାର ପଦ (ସଙ୍ଗୀତ) ମିଳିଅଛି । 'ସୁରସାଗର' ତାହାଙ୍କର ସର୍ବୋତ୍କୃଷ୍ଟ ଗ୍ରନ୍ଥ ରୂପରେ ବିବେଚିତ ହୁଏ । ଏଥିରେ କୃଷ୍ଣଙ୍କ ବାଲଲୀଳା, ମଥୁରା ପ୍ରବାସ, ଗୋପୀ ବିରହ, ଉଦ୍ଧବ ଗୋପୀ ସମ୍ବାଦ ପ୍ରଭୃତି ବିଷୟସମ୍ବଳିତ ଗୀତ ସନ୍ନିବିଷ୍ଟ । ସୁରଦାସ ସଂସ୍କୃତ ଶବ୍ଦାବଳୀର ସାହାଯ୍ୟ ନ ନେଇ ବ୍ରଜଭୂମିର ଚଳନ୍ତି ଭାଷାକୁ ପରିମାର୍ଜିତ ରୂପରେ ପ୍ରୟୋଗ କରି ଯାଇଅଛନ୍ତି । ହୃଦୟର ସ୍ୱାଭାବିକ ମନୋଭାବ—ବାତ୍ସଲ୍ୟ, ପ୍ରେମ, ବିରହ, ବେଦନା ବିଜଡ଼ିତ ତାହାଙ୍କର ସରସ, ସୁଲଳିତ 'ପଦ'ଗୁଡ଼ିକ ଅତୀବ ଜନପ୍ରିୟ । ସାହିତ୍ୟପ୍ରେମୀ ତଥା ଭକ୍ତ ଉଭୟବିଧ ବ୍ୟକ୍ତିଙ୍କୁ ଏହା ବିମୋହିତ କରିଥାଏ । ହୃଦୟର ନିଗୂଢ଼ ଭାବନା ଓ ପ୍ରବୃତ୍ତିର ବ୍ୟଞ୍ଜନା ଏବଂ ବହୁ ଅଭିନବ ବିଷୟ ଓ ପ୍ରସଙ୍ଗର ଉଦ୍ଭାବନା ତାହାଙ୍କ ଅଦ୍ଭୁତ କବି ପ୍ରତିଭାର ପରିଚାୟକ । ସରସତା, ମଧୁରତା, କୋମଳତା ଓ ସ୍ପଷ୍ଟତା ପ୍ରଭୃତି ତାହାଙ୍କ କବିତାର ବିଶେଷ ଗୁଣ । ତାହାଙ୍କ ପରବର୍ତ୍ତୀ ବହୁ କବି ସୁରଦାସଙ୍କ ଅପୂର୍ବ ଭାବ, ଭାଷା ଓ ବର୍ଣ୍ଣନା ଶୈଳୀକୁ ହିଁ ଅସଫଳ ଅନୁକରଣ କରିବାରେ ଆତ୍ମନିୟୋଗ କରିଥିଲେ ।

## ନନ୍ଦଦାସ (୧୫୧୩-୧୫୮୩)

ଗୋସାଇଁ ବିଠଲ ଦାସଙ୍କ ଶିଷ୍ୟ ନନ୍ଦଦାସ ପ୍ରାୟ ୬୦ରୁ ଅଧିକ ସଂଖ୍ୟକ ଗ୍ରନ୍ଥ ରଚନା କରିଅଛନ୍ତି । ତନ୍ମଧ୍ୟରୁ 'ରାସ ପଞ୍ଚାଧ୍ୟାୟୀ' ଓ 'ଭ୍ରମର ଗୀତ' ପ୍ରସିଦ୍ଧ । ଅତ୍ୟନ୍ତ ସରଳ ଭାଷାରେ କ୍ଷୁଦ୍ର ସୁପ୍ରଚଳିତ ଶବ୍ଦାବଳୀ ପ୍ରୟୋଗ କରି ଓ ତହିଁରେ ବିବିଧ ପ୍ରବାଦବାକ୍ୟ, ରୂଢ଼ିପ୍ରୟୋଗ ସଂଯୋଜିତ କରି ସେ ତାହାଙ୍କ

ଗ୍ରନ୍ଥଗୁଡ଼ିକ ରଚନା କରିଅଛନ୍ତି । ଉଦାହରଣ ସ୍ୱରୂପ ତାହାଙ୍କ ନିମ୍ନୋକ୍ତ ପଂକ୍ତି ଉଲ୍ଲେଖଯୋଗ୍ୟ—

'କୌ ଉନକେ ଗୁନ ନାହିଁ ଔର ଗୁନ ଭଏ କହାଁ ତେଂ
ବୀଜ ବିନା ତରୁ ଜମୈଂ ମୋହି ତୁମ କହୌ କହାଁ ତେଂ ।'

## ମୀରାବାଈ ( ୧୪୯୮-? )

ରାଜବଧୂ ମୀରା କୃଷ୍ଣଙ୍କୁ ପତିରୂପରେ ହିଁ ଉପାସନା କରିଥିଲେ । 'ଜାକେ ସିର ମୋର ମୁକୁଟ ମେରେ ପତି ସୋଇ' ଏହାହିଁ ଥିଲା ତାଙ୍କର ମର୍ମକଥା । କୃଷ୍ଣ ବିଚ୍ଛେଦରେ ଗୋପୀମାନଙ୍କ ସଦୃଶ ସେ କୃଷ୍ଣ ବିଚ୍ଛେଦରେ ଦୁଃଖାନୁଭବ କରୁଥିଲେ । ମୀରାଙ୍କ ଗୀତାବଳୀ ବ୍ରଜଭାଷାରେ ରଚିତ ହେଲେହେଁ ରାଜସ୍ଥାନୀ ଭାଷାସହ ତାହାର ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । ତାହାଙ୍କ ଗୀତାବଳୀରେ ସ୍ଥାନେ ସ୍ଥାନେ ଗୁଜରାଟି, ପଞ୍ଜାବୀ ଓ ଖଡ଼ିବୋଲି ଶବ୍ଦ ମଧ୍ୟ ପରିଦୃଷ୍ଟ ହୋଇଥାଏ । ହିନ୍ଦି ବ୍ୟତୀତ ଗୁଜରାଟି ଭାଷାରେ ଲିଖିତ ତାହାଙ୍କ ଗୀତାବଳୀ ମଧ୍ୟ ଅତ୍ୟନ୍ତ ସରସ ଓ ସୁଲଳିତ । ଯଥା—

'ବସୋ ମେରେ ନୈନନ ମେଁ ନଁଦଲାଲ ।
ମୋହନୀ ମୂରତି, ସାଁବରୀ ସୂରତି, ନୈନ ବନେ ରସାଲ । ୦ ।
ମୋର ମୁକୁଟ ମକରାକୃତ କୁଣ୍ଡଳ, ଅରୁଣ ତିଲକ ଦିଏ ଭାଲ ।
ଅଧର ସୁଧାରସ ମୁରଲୀ ରାଜତି, ଓର ବୈଜଂତୀ ମାଲ୍ ।
କ୍ଷୁଦ୍ର ଘଂଟିକା କଟିତଟ ଶୋଭିତ, ନୂପୁର ଶବ୍ଦ ରସାଲ
ମୀରା ପ୍ରଭୁ ସଂତତ ସୁଖଦାଇ, ଭଗତ ବଛଲ ଗୋପାଲ ।'

**ରସଖାନ**—ଦିଲ୍ଲୀର ଏହି ମୁସଲମାନ କବି କୃଷ୍ଣଭକ୍ତିରେ ତନ୍ମୟ ହୋଇ ବହୁ କବିତ୍ତ, ସବୈୟ ଓ ଦୋହା ଛନ୍ଦରେ 'ପ୍ରେମ-ବାଟିକା' ନାମକ ଗ୍ରନ୍ଥ ରଚନା କରି ଚିରସ୍ମରଣୀୟ ହୋଇଅଛନ୍ତି ।

## (ଘ) ରାମକାବ୍ୟ ଧାରା—

ପଞ୍ଚଦଶ ଶତାବ୍ଦୀରେ ସ୍ୱାମୀ ରାମାନନ୍ଦ ରାମଭକ୍ତି ପ୍ରଚାର କରିଥିଲେ । ତାହାଙ୍କର ଭକ୍ତ ଓ ଶିଷ୍ୟମାନଙ୍କ ଦ୍ୱାରା ରାମଭକ୍ତିମୂଳକ ସାହିତ୍ୟ ରଚିତ ହୋଇଥିଲା । ରାମକାବ୍ୟ ଉଭୟ ଅବଧୀ ଓ ବ୍ରଜଭାଷାରେ ରଚିତ । ମୁଖ୍ୟତଃ ଅବଧୀ ଭାଷାକୁ ରାମଭକ୍ତ କବିମାନେ ହିଁ ସମୁନ୍ନତ କରିଯାଇ ଅଛନ୍ତି । ଜାୟସୀ ଅବଧୀ ଭାଷାରେ ପ୍ରଥମେ ସାହିତ୍ୟ ରଚନା କରିଥିଲେ ହେଁ ଏହି ରାମଭକ୍ତ

କବିମାନେ ହିଁ ସର୍ବପ୍ରଥମ ଅବଧୀ ଭାଷାର ରୂଢ଼ି ପ୍ରୟୋଗ ଓ ପ୍ରବାଦ ପ୍ରବଚନକୁ ସେମାନଙ୍କ ରଚନାବଳୀରେ ସନ୍ନିବିଷ୍ଟ କରି ସାହିତ୍ୟ ସୃଷ୍ଟିରେ କୃତିତ୍ୱ ଦର୍ଶାଇ ଯାଇଅଛନ୍ତି । ରାମଭକ୍ତ କବିମାନଙ୍କ ମଧ୍ୟରୁ ତୁଳସୀ ଦାସଙ୍କୁ ସର୍ବଶ୍ରେଷ୍ଠ ତଥା ହିନ୍ଦୀ କବିମାନଙ୍କ ମଧ୍ୟରେ ତାହାଙ୍କୁ ସମୁଚ୍ଚ ଆସନ ପ୍ରଦାନ କରାଯାଇଥାଏ ।

## ତୁଳସୀ ଦାସ—(୧୪୯୭ ଅଥବା ୧୫୩୨)

ତାହାଙ୍କର ରଚିତ ସତରଗୋଟି ଗ୍ରନ୍ଥ ମଧ୍ୟରୁ 'ରାମଚରିତ ମାନସ', 'ବିନୟ ପତ୍ରିକା' 'ଗୀତାବଳୀ','କବିତାବଳୀ','ସତସଈ','ଦୋହାବଳୀ','କୃଷ୍ଣ ଗୀତାବଳୀ', 'ଜାନକୀ ମଙ୍ଗଳ','ପାର୍ବତୀ ମଙ୍ଗଳ','ରାମାଜ୍ଞା ପ୍ରଶ୍ନ','ରାମଲଲା ନହଛୁ' 'ବରବୈ ରାମାୟଣ', 'ବୈରାଗ୍ୟ ସଂଦୀପନୀ' ପ୍ରଭୃତି ହିନ୍ଦୀ ସାହିତ୍ୟରେ ସୁପ୍ରସିଦ୍ଧ । ତୁଳସୀ ଦାସଙ୍କ ପୂର୍ବରୁ ବ୍ରଜ ଓ ଅବଧୀ ଦୁଇଟି ଭାଷା ପ୍ରଚଳିତ ଥିଲା କବିମାନେ କେବଳ ଏହାମଧ୍ୟରୁ ଯେ କୌଣସି ଗୋଟିଏ ଭାଷାରେ ସାହିତ୍ୟ ରଚନା କରୁଥିଲେ । କିନ୍ତୁ ତୁଳସୀ ଦାସ ବ୍ରଜ ଓ ଅବଧୀ ଦୁଇଟିଯାକ ଭାଷାରେ ସାହିତ୍ୟ ରଚନା କରିଥିଲେ । ତାଙ୍କ ରଚନା ମଧ୍ୟରୁ 'ମାନସ', 'ଜାନକୀ ମଙ୍ଗଳ', 'ପାର୍ବଣ ମଙ୍ଗଳ' 'ରାମଲଲାନହଛୁ' 'ବରବୈରାମାୟଣ' ଇତ୍ୟାଦିର ଭାଷା ଶୁଦ୍ଧ ଅବଧୀ ଏବଂ 'ବିନୟ ପତ୍ରିକା','ଗୀତାବଳୀ', 'କୃଷ୍ଣଗୀତାବଳୀ' ଏବଂ 'କବିତାବଳୀ' ଶୁଦ୍ଧ ବ୍ରଜଭାଷାରେ ରଚିତ । ତୁଳସୀଦାସଙ୍କ ରଚନାରେ ବୀରଗାଥା କାଳର ଛପ୍‌ପୟ ଶୈଳୀ, ଭାଟଙ୍କର କବିତ୍ୱ, ସବୈୟା, ବିଦ୍ୟାପତି ଓ ସୁରଦାସଙ୍କର ଗୀତଶୈଳୀ, ସୁଫି କବିମାନଙ୍କ ଦୋହା ଓ ଚୌପାୟୀ ଶୈଳୀର ସମାବେଶ ପରିଲକ୍ଷିତ ହୁଏ ।

ତାହାଙ୍କର ସର୍ବଶ୍ରେଷ୍ଠ କାବ୍ୟ 'ରାମଚରିତ ମାନସ'। ମହାକାବ୍ୟର ବନ୍ଧନରେ ଏହା ତାହାଙ୍କର ଅପୂର୍ବ କବିପ୍ରତିଭାର ସୃଜନଶୀଳତା ଓ ଭକ୍ତିମତ୍ତାର ପରିଚାୟକ । ହିନ୍ଦୀ ସାହିତ୍ୟ ତଥା ହିନ୍ଦି ଭାଷାଭାଷୀ ଜନସାଧାରଣଙ୍କ ଜୀବନରେଏହି ଗ୍ରନ୍ଥର ପ୍ରଭାବ ଓଡ଼ିଆ ଭାଗବତ ପରି ସୁବିପୁଳ । ସାମାଜିକ ଓ ଧାର୍ମିକ ଜୀବନର ଉଚ୍ଚ ଆଦର୍ଶ ପ୍ରକଟନରେ ଏହି ଗ୍ରନ୍ଥ ପ୍ରକୃତ ସହାୟତା କରି ଆସୁଅଛି । ସାହିତ୍ୟିକ କଳା ଓ ଭାବ ଦୃଷ୍ଟିରୁ ଏହାର ମହତ୍ତ୍ୱ ଅନସ୍ୱୀକାର୍ଯ୍ୟ । ହିନ୍ଦୀ ସାହିତ୍ୟର ପ୍ରତ୍ୟେକ ଆଲୋଚକ ଏହି କବିଙ୍କୁ ହିନ୍ଦୀ ସାହିତ୍ୟର ସର୍ବୋତ୍ତମ କବି ହିସାବରେ ଗ୍ରହଣ କରିଆସିଅଛନ୍ତି । ଉଦାହରଣ ସ୍ୱରୂପ ଛପ୍‌ପୟ ପଦ୍ଧତିରେ ରଚିତ ତାହାଙ୍କର ରଚନାର କିୟଦଂଶ ଏହିପରି—

'କତହୁଁ ବିଟପ ଭୂଧର ଉପାରି ପରସେନ ବରବଖତ,
କହେ ବାଜସୋ ବାଜି ମର୍ଦ୍ଦି ଗଜରାଜ କରଛତ ।
ଚରନ-ଚୋଟ ଚଟକନ ଚକୋଟ ଅରି ଉର ସିର ବଜ୍ଜତ ।
ବିକଟ କଟକ ବିଦ୍ଦରତ ବୀର ବାରିଦ ଜିମି ଗଜ୍ଜତ ।

ଲଙ୍ଗର ଲପେଟତ ପଟକ ଭଟ ଜୟତ ରାମ ଜୟ ଉଚରତ,
ତୁଲସୀଦାସ ପବନ ନନ୍ଦନ ଅଟଲ ଯୁଦ୍ଧ, କ୍ରୁଦ୍ଧ କୌତୁକ କରତ ।'

## ଭକ୍ତିକାଳର ଅନ୍ୟ କେତେକ ପ୍ରବୃତ୍ତି

ଅନ୍ତର୍ଦ୍ୱନ୍ଦ୍ୱ ପରେ ଉତ୍ତର ଭାରତରେ ମୁସଲମାନ ଶାସନ ସୁପ୍ରତିଷ୍ଠିତ ହୋଇଥିଲା ଓ କେତେକ ମୁସଲମାନ ଶାସକ କ୍ରମେ ହିନ୍ଦୀ କାବ୍ୟ କବିତା ପ୍ରତି ମଧ୍ୟ ଅନୁରକ୍ତି ପ୍ରଦର୍ଶନ କରିଥିଲେ । ରାଜଦରବାରମାନଙ୍କରେ ଆଶ୍ରିତ ଦରବାରୀ କବିମାନେ ଏହି ସମୟରେ ସ୍ୱୀୟ ଆଶ୍ରୟଦାତାଙ୍କ ପ୍ରଶଂସା ଓ ତାହାଙ୍କ ମନୋରଞ୍ଜନ ଲାଗି ଶୃଙ୍ଗାର ଅଥବା ନୀତିବର୍ଣ୍ଣନାତ୍ମକ ସାହିତ୍ୟ ସୃଷ୍ଟିରେ ମନୋନିବେଶ କରିଥିଲେ । ଏହି ସମୟରେ ସବୈୟା, ଛପ୍ପୟ ପ୍ରଭୃତି ଛନ୍ଦରେ ବହୁ କ୍ଷୁଦ୍ର କବିତା ରଚିତ ହୋଇଥିଲା । ଏଥିପାଇଁ ବ୍ରଜଭାଷା ମୁଖ୍ୟତଃ ବ୍ୟବହୃତ ହେଉଥିଲା । ଆଦିରସ ଓ କୃତ୍ରିମତାକୁ ଏହି ଯୁଗର ଅନ୍ୟତମ ବିଶିଷ୍ଟ ବିଭାବ ଭାବରେ ଗ୍ରହଣ କରାଯାଇପାରେ । ଏ ଯୁଗର ପ୍ରାୟ ସମସ୍ତ କବି କାବ୍ୟରେ ଶବ୍ଦ ଓ ଅର୍ଥାଲଂକାର ଯୋଜନା ବିଷୟରେ ଏକାନ୍ତ ଅନୁରାଗୀ ଥିଲେ । ଅଲଙ୍କାରପ୍ରିୟ କବି ଭାବରେ ନରୋତ୍ତମ ଦାସ (୧୫୧୦-୫୦), କେଶବ ଦାସ (୧୫୫୫-୧୬୦୭), ଓ ରହିମଙ୍କୁ ସମୁଚ୍ଚ ଆସନ ପ୍ରଦାନ କରାଯାଇଥାଏ ।

ନରୋତ୍ତମ ଦାସ ବ୍ରଜଭାଷାରେ 'ସୁଦାମା ଚରିତ' ଖଣ୍ଡକାବ୍ୟ ରଚନା କରିଥିଲେ । ସୁପଣ୍ଡିତ କେଶବ ଦାସ 'ରସିକ ପ୍ରିୟା', 'କବି ପ୍ରିୟା', 'ବିଜ୍ଞାନ ଗୀତା', 'ବୀର ସିଂହଦେବ ଚରିତ', 'ଜହାଁଗୀର ଜସ-ଚନ୍ଦ୍ରିକା' ଓ 'ରାମଚନ୍ଦ୍ରିକା' ପ୍ରଭୃତି କାବ୍ୟ ରଚନାକରି ଆଲଂକାରିକ କାବ୍ୟ ରଚନାରେ ଅପୂର୍ବ କୃତିତ୍ୱ ଦର୍ଶାଇ ଯାଇ-ଅଛନ୍ତି । ସଂସ୍କୃତର କାବ୍ୟଗତ ସିଦ୍ଧାନ୍ତ ଓ ରସ-ରୀତି, ଅଲଙ୍କାର ଲକ୍ଷଣାବଳୀକୁ ସେ ହିନ୍ଦୀଭାଷାରେ ଅଭିବ୍ୟକ୍ତି ପ୍ରଦାନ କରି ନୂତନ ପରମ୍ପରା ସୃଷ୍ଟି କରିଥିଲେ । କାବ୍ୟରେ ସର୍ବତ୍ର ଆଲଂକାରିକ କୃତିତ୍ୱ ପ୍ରଦର୍ଶନ କରିବାକୁ ପ୍ରଯତ୍ନ କରିଥିବା ଯୋଗୁଁ ତାହାଙ୍କ ରଚନା କ୍ଲିଷ୍ଟ ଓ କୃତ୍ରିମତାପୂର୍ଣ୍ଣ । ଫଳତଃ ତାହାଙ୍କ ରଚନା ଶାବ୍ଦିକ ଚମତ୍କାରିତାରେ ପରିପୂର୍ଣ୍ଣ ହେଲେହେଁ ତାହା କୋମଳତାବର୍ଜିତ ଓ ମାଧୁର୍ଯ୍ୟହୀନ ହୋଇପଡ଼ିଅଛି । ତାହାଙ୍କ 'ସମ୍ବାଦ' ବା ଉକ୍ତିପ୍ରତ୍ୟୁକ୍ତିମୂଳକ କାବ୍ୟ 'ରାମଚନ୍ଦ୍ରିକା'କୁ ଆଲୋଚକମାନେ ଏକ ସଫଳ ସୃଷ୍ଟି ଭାବରେ ଗ୍ରହଣ କରିଥାଆନ୍ତି ।

ପ୍ରସିଦ୍ଧ ମୋଗଲ ସରଦାର ବୈରାମ ଖାଁଙ୍କ ପୁତ୍ର ରହିମ ଆକବରଙ୍କ ଦରବାରରେ ବୀର, ନୀତିକୁଶଳ ବ୍ୟକ୍ତି ଓ କବି ଭାବରେ ସମ୍ମାନିତ । ସଂସ୍କୃତ ଓ ହିନ୍ଦୀ

ଭାଷାରେ ସେ ସୁପଣ୍ଡିତ ଥିଲେ । ସେହାଙ୍କ କବିତା ସହଜ, ସରଳ କୃତ୍ରିମତାମୁକ୍ତ ସୁମଧୁର ଓ କୋମଳ ଶବ୍ଦାବଳୀ ବିଜଡ଼ିତ । ଜୀବନର ବାସ୍ତବ ଓ ସତ୍ୟ ରୂପର ଚିତ୍ରଣ ତାହାଙ୍କ କବିତାରେ ପରିଲକ୍ଷିତ ହୁଏ । ସାଧାରଣ ଜୀବନର ଦୋଷଗୁଣ, ଉଚିତ-ଅନୁଚିତ ପ୍ରଭୃତ ବସ୍ତୁ ନୀତି ଓ ଜ୍ଞାନର ପରିପ୍ରକାଶ ଯୋଗୁଁ ତାହାଙ୍କ କବିତା ବିଶେଷ ସମାଦୃତ ହୋଇଥାଏ । ଏତଦ୍‌ବ୍ୟତୀତ ତାହାଙ୍କ 'ବରବୈ ନାୟିକା ଭେଦ' ଗ୍ରନ୍ଥରେ ଆଦିରସାତ୍ମକ ସରସ ଓ ମନୋହର ବର୍ଣ୍ଣନା ପରିଲକ୍ଷିତ ହୁଏ । ତୁଳସୀଦାସଙ୍କ ଭଳି ରହିମ ଅବଧୀ ଓ ବ୍ରଜ ଉଭୟ ଭାଷାରେ ମୁଖ୍ୟତଃ ତାହାଙ୍କ କାବ୍ୟ କବିତା ରଚନା କରିଅଛନ୍ତି । ଏତଦ୍‌ବ୍ୟତୀତ ତାହାଙ୍କ 'ରହିମ କାବ୍ୟ'ରେ ହିନ୍ଦୀ ଓ ସଂସ୍କୃତ ଏବଂ 'ଖେଟ କୌତୁକମ୍'ରେ ସଂସ୍କୃତ ଓ ଫାରସୀ ଭାଷାର ବ୍ୟବହାର ପରିଲକ୍ଷିତ ହୁଏ । ତାହାଙ୍କ ରଚିତ ଗ୍ରନ୍ଥମାନଙ୍କ ମଧ୍ୟରୁ 'ଦୋହାବଳୀ', 'ନଗର ଶୋଭା', 'ମଦନାଷ୍ଟକ', 'ଫୁଟକର ପଦ', 'ଶୃଙ୍ଗାର ସୋରଠ', 'ରାସ ପଞ୍ଚାଧ୍ୟାୟୀ' ପ୍ରଭୃତିର ନାମ ଉଲ୍ଲେଖଯୋଗ୍ୟ । ଦରବାରୀ କବିମାନଙ୍କ ମଧ୍ୟରେ ରହିମଙ୍କୁ ସର୍ବଶ୍ରେଷ୍ଠ ଭାବରେ ଗଣନା କରାଯାଏ । ତାହାଙ୍କ ରଚନାର ଉଦାହରଣ—

(କ) 'ତବହୀ ଲଗି ଜୀବୋ ଭଲୋ ଦୀବୋ ପରେ ନ ଧୀମ
ବିନ ଦୀବୋ ଜୀବେ ଜଗତ ହମହିଁ ନ ରୁଚୈ ରହୀମ ।'

(ଖ) 'ସର ସୁଖେ ପଂଛୀ ଉଡ଼ୈ, ଔରୈ ସରନ ସମାହିଁ
ଦୀନ ମୀନ ବିନ ପଂଖ କେ କହୁ ରହିମ କହୁ ଜାହିଁ ।
ମାଁଗତ ମୁକରି ନ କୋ ଗୟୋ, କେହି ନ ତ୍ୟାଗିୟୋ ସାଥ
ମାଁଗତ ଆଗେ ସୁଖ ଲହ୍ୟୋ, ତେ ରହିମ ରଘୁନାଥ ।'

## ରୀତିକାଳ

ଭକ୍ତିଯୁଗରେ କେଶବ ଦାସ ରସ, ଅଳଂକାର ଓ ଶାସ୍ତ୍ରୀୟ ବିଧାନମୂଳକ ରୀତିକାବ୍ୟ ରଚନା ପ୍ରବର୍ତ୍ତନ କରିଥିଲେ । ତାହାଙ୍କ ପରେ ବିହାରୀଲାଲ, ମତିରାମ, ଭୂଷଣ ଦେବ ଓ ପଦ୍ମାକର ପ୍ରଭୃତି ରୀତିକାବ୍ୟ ରଚନା କରି ହିନ୍ଦୀ ସାହିତ୍ୟରେ ପ୍ରସିଦ୍ଧିଲାଭ କରିଅଛନ୍ତି ।

## ବିହାରୀଲାଲ (୧୬୦୩-?)

କବି ସାହିତ୍ୟ ସୃଷ୍ଟି ଲାଗି ଜୟପୁର ରାଜାଙ୍କ ପୃଷ୍ଠପୋଷକତା ଲାଭ କରିଥିଲେ । ସାତଶହ ଦୋହା ବିଶିଷ୍ଟ, 'ବିହାରୀ ସତସଈ' ତାହାଙ୍କର ସର୍ବଶ୍ରେଷ୍ଠ ଗ୍ରନ୍ଥ । ଏଥିରେ ଭକ୍ତି, ପ୍ରକୃତି, ଜ୍ୟୋତିଷ, ଗଣିତ, ଚିକିତ୍ସା, ପଶୁପକ୍ଷୀ ପ୍ରଭୃତି ବିବିଧ ବିଷୟର ବର୍ଣ୍ଣନା ପରିଲକ୍ଷିତ ହୁଏ । ଉଦାହରଣ ସ୍ୱରୂପ—

(କ) 'କହିଁ ପରାଗ ନହିଁ ମଧୁର ମଧୁ, ନହିଁ ବିକାସ ଯହି କାଲ
ଅଲୀ କଲୀ ହୀ ସୋଂ ବିଁଧ୍ୟୋଂ, ଆଗେ କୌନ ହବାଲ'
(ଖ) 'ଅଧର ଧରତ ହରିକେ ପରତ ଓଠ ଡ଼ୀଠି ପଟ ଜୋତ
ହରିତ ବାଁସକୀ ବାଁସୁରୀ ଇନ୍ଦ୍ରଧନୁଷ ରଙ୍ଗ ହୋତ ।'

ମୁଖ୍ୟତଃ ସୌନ୍ଦର୍ଯ୍ୟ ଓ ପ୍ରଣୟକୁ ଭିତ୍ତିକରି ବିହାରୀ କାବ୍ୟ ରଚନା କରିଅଛନ୍ତି । ଉର୍ଦ୍ଦୁ କବିମାନଙ୍କ ଭଳି ବିହାରୀଙ୍କର ନାୟକ ନାୟିକାଙ୍କ ବିରହ ବର୍ଣ୍ଣନାରେ ଅତିଶୟୋକ୍ତି ଓ ଅତ୍ୟୁକ୍ତି ପରିଲକ୍ଷିତ ହୁଏ । ତାହାଙ୍କ ପ୍ରକୃତିଚିତ୍ରଣ ମଧ୍ୟ ସୁନ୍ଦର ଓ ସୂକ୍ଷ୍ମ ପ୍ରକୃତି ନିରୀକ୍ଷଣର ପରିଚାୟକ । ପ୍ରଚଳିତ ବ୍ରଜଭାଷାର ସାହିତ୍ୟିକ ରୂପରେ ତାହାଙ୍କ ସତସଇ ରଚିତ । ତଥାପି ସେ ଏଥିରେ ସ୍ଥାନେ ସ୍ଥାନେ ଆରବୀ, ଫାରସୀ, ତୁର୍କୀ, ବୁନ୍ଦେଲଖଣ୍ଡୀ, ରାଜପୁତାନୀ ପ୍ରଭୃତି ଆଞ୍ଚଳିକ ଭାଷାର ଶବ୍ଦ ବ୍ୟବହାର କରିବାକୁ ସଙ୍କୋଚବୋଧ କରିନାହାନ୍ତି । କାବ୍ୟରେ ଅଳଂକାରର ବହୁଳ ପ୍ରୟୋଗକାରୀ ଭାବରେ ମଧ୍ୟ ବିହାରୀ ପ୍ରସିଦ୍ଧ । ମୋଟ ଉପରେ ଭାଷା ବ୍ୟବହାରରେ ଅସାଧାରଣ କୃତିତ୍ୱ, ଶବ୍ଦ ଯୋଜନାରେ ଅଦ୍‌ଭୁତ କୌଶଳ, ସଂକ୍ଷେପରେ ବହୁ ଭାବର ଅଭିବ୍ୟକ୍ତି ଓ ସୂକ୍ଷ୍ମ ଅନ୍ତର୍ଦୃଷ୍ଟି ଯୋଗୁଁ ବିହାରୀଙ୍କୁ ହିନ୍ଦୀ ସାହିତ୍ୟର ଅନ୍ୟତମ ଶ୍ରେଷ୍ଠ ଶୃଙ୍ଗାରୀ କବି ଭାବରେ ଗ୍ରହଣ କରାଯାଏ ।

ଏଠାରେ ତାହାଙ୍କ ରଚନାର ନିମ୍ନୋକ୍ତ ପଙ୍‌କ୍ତି ଉଦାହରଣୀୟ—

(କ) 'ବତରସ ଲାଲଚ ଲାଲ କୀ ମୁରଲୀ, ଧରୀ ଲୁକାଇ
ସୌହ କରୈ ଭୌହନ ହସୈ, ଦେନକହୈ ନଟିଜାଇ ।'
(ଖ) 'ଧୀରଘ ସାସ ନ ଲେହ ଦୁଖ, ସୁଖ ସାଇଁହିଁ, ନ ଭୂଲ
ଦଇ ଦଇ କ୍ୟୋ କରତୁ ହେ ଦଇ ଦଇ ସୁ କବୁଲ ।
କବି କେଁ ଟେରତ ଦୀନ ରଟ, ହୋତ ନ ସ୍ୟାମ ସହାଇ
ତୁମହୁଁ ଲାଗୀ ଜଗତଗୁରୁ ଜଗ ନାଇକ ଜଗବାଇ ।'

## ମତିରାମ—(ଜ. ୧୬୧୩-?)

ଏହାଙ୍କ ରଚିତ ଗ୍ରନ୍ଥମାନଙ୍କ ମଧ୍ୟରୁ 'ଲଳିତ ଲଲାମ' ଓ 'ରସରାଜ' ପ୍ରସିଦ୍ଧ । ସେ ସରଳ ବ୍ରଜଭାଷାରେ ଅଳଙ୍କାରହୀନ ରୀତିରେ କାବ୍ୟ ରଚନା କରିଅଛନ୍ତି ।

## ଭୂଷଣ (୧୬୨୦-୧୭୧୫)

ରୀତିକାଳୀନ କବିମାନଙ୍କ ମଧ୍ୟରୁ ବୀରରସ ଚିତ୍ରଣକାରୀ ଭାବେ କବି ବିବେଚିତ ହୁଅନ୍ତି । ବ୍ରଜଭାଷାରେ ରଚିତ 'ଶିବରାଜ ଭୂଷଣ', 'ଶିବା ବାବନୀ'

'ଶିବା ବାବନୀ' 'ଛତ୍ରସାଲ ଦଶାକ' ନାମଧେୟ ଉକ୍ତଗୋଟି ପୁସ୍ତକ ତାହାଙ୍କର ଶ୍ରେଷ୍ଠ କୃତି । ଶେଷୋକ୍ତ ଗ୍ରନ୍ଥ ଦୁଇଟିରେ କବି ଯଥାକ୍ରମେ ଶିବାଜୀ ଓ ଛତ୍ରଶାଲଙ୍କ ବୀରତ୍ୱ ଓ ଶୌର୍ଯ୍ୟର ବର୍ଣ୍ଣନା କରିଅଛନ୍ତି । ଯଥା—

"ନିକସତ ମ୍ୟାନ ତେଁ ମୟୁଖେଁ ପଲୈ—ଭାନୁ କୀ ସୀ
ଫାରେଁ ତମ ତୋମ ସେ ଗୟନ୍ଦନ କେ ଜାଲ କୋ ।
ଲଗତି ଲପକ କଣ୍ଠ ବୈରିନ କେ ନାଗିନ ସୀ
ରୁଦ୍ର ହିଁ ରିଝାବେ ଦୈ ଦୈ ମୁଂଡନ କୀ ମାଲ କୋ ।
ଲାଲ୍ ଛିତପାଲ୍ ଛତ୍ରସାଲ ମହା ବାହୁବଲୀ
କହୋ ଲୌ ବଖାନ କରୁଁ ତେରି କରବାଲ୍ କୋ ।"

**ଦେବଦତ୍ତ**—ବିହାରୀଲାଲଙ୍କ ଭଳି କବି ବହୁ ଶୃଙ୍ଗାରୁ ରସାଶ୍ରିତ କାବ୍ୟ କବିତା ରଚନା କରି ଯାଇଅଛନ୍ତି । ତାହାଙ୍କ କାବ୍ୟ ସଂଖ୍ୟା ଦୃଷ୍ଟିରୁ ସର୍ବାଧିକ; ପ୍ରାୟ ୭୦।୭୨ଟି ଗ୍ରନ୍ଥ ସେ ରଚନା କରିଥିବା ଜଣାଯାଏ । ତନ୍ମଧ୍ୟରୁ 'ଭାବ ବିଳାସ', 'କାବ୍ୟ ରସାୟନ', 'ପ୍ରେମତରଙ୍ଗ' 'ସୁଖ ସାଗର ତରଙ୍ଗ', 'ଅଷ୍ଟଯାମ' 'ସୁଜାନ ବିନୋଦ' ଉତ୍କୃଷ୍ଟ ବିବେଚିତ ହୁଏ । ବ୍ରଜଭାଷାରେ ହିଁ ସେ ତାହାଙ୍କ କାବ୍ୟସମୂହ ରଚନା କରିଅଛନ୍ତି । ତାହାଙ୍କ ରଚନା ଅନୁପ୍ରାସଯୁକ୍ତ କୋମଳ ଓ ରସପୂର୍ଣ୍ଣ । ତାହାଙ୍କ ସର୍ବାଧିକ ଜନପ୍ରିୟ ଏକ ସବୈୟା ଏହିପରି—

'ସୁନି କେ ଧୁନି ଚାତକ ମୋରନି କୀ, ଚହୁ ଓରନ କୋକିଲ କୂକନ ସୌ
ଅନୁରାଗ ଭରେ ବନ-ବାଗନ ମେଂ, ହରି ରାଗ ବିରାଗ ଅଚୂକନ ସୌ
କବି ଦେବ ଘଟା ଉନଇ ଜୁ ନଇ, ବନଭୂମି ଭଇ ଦଲ-ଦୂଲନ ସୌ
ରଙ୍ଗ-ରତି ହରୀ ହରରାତି ଲତା, ଝୁକି ଜାତି ସମୀର କେ ଝୂକନ ସୌ'

କବି ପଦ୍ମାକର—(୧୭୫୩—୧୮୩୩) ମଧ୍ୟ ସରସ ମଧୁର ବ୍ରଜଭାଷାରେ 'ଜଗଦ୍ ବିନୋଦ' ନାମକ କାବ୍ୟ ରଚନା କରିଥିଲେ ।

ରୀତିକାଳରେ ବହୁ କବି କ୍ଷୁଦ୍ର କବିତା ବା ମୁକ୍ତକ ଲେଖିବାରେ ମନୋନିବେଶ କରିଥିବାର ଜଣାଯାଏ । ରଚନା ପ୍ରଣାଳୀ, ଅଳଙ୍କାର, ରସ ଓ ଭାଷା ଦୃଷ୍ଟିରୁ ଏହି କବିମାନଙ୍କ ଗୀତି କବିତାରେ ରୀତିକାଳୀନ ପ୍ରଭାବ ସୁସ୍ପଷ୍ଟ । କେଶବଦାସ, ଘନାନନ୍ଦ (୧୬୮୯-୧୭୩୯) ପ୍ରଭୃତି କବି ପ୍ରଣୟ-ପ୍ରଧାନ ଗୀତି କବିତା ରଚନାରେ, ବୃନ୍ଦ ( ୧୬୮୦-୧୭୬୦ ), ଗିରିଧର ( ୧୭୧୩—? ), ଦୀନ

ଦୟାଲ ଗିରି (୧୮୦୨—୫୮) ନୀତି-ପ୍ରଧାନ କ୍ଷୁଦ୍ର କବିତା ରଚନାରେ, ଭକ୍ତି ଓ ଜ୍ଞାନମୂଳକ ଗୀତି କବିତା ରଚନାରେ ନାଗରୀଦାସ (୧୭୨୦-୬୧) ଓ ରାଜପ୍ରଶସ୍ତି ମୂଳକ ଗୀତି କବିତା ରଚୟିତା ଭାବରେ ଲାଲକବି, ଠାକୁର ଦାସ (୧୭୬୬-୧୮୨୦) ସୁପ୍ରସିଦ୍ଧ । ଦୀନଦୟାଲ ଗିରିଙ୍କ ଅନ୍ୟୋକ୍ତି ସଂଗ୍ରହ 'ଅନ୍ୟୋକ୍ତି କଳ୍ପଦ୍ରୁମ' ହିନ୍ଦୀ ସାହିତ୍ୟ କ୍ଷେତ୍ରରେ ସୁପ୍ରସିଦ୍ଧ । ଲାଲକବି ନାମରେ ପରିଚିତ ଗୋରେଲାଲ ପୁରୋହିତ ଇତିହାସ ପ୍ରସିଦ୍ଧ ମହାରାଜ ଛତ୍ରସାଲଙ୍କ ଜୀବନ କାହାଣୀକୁ ଉପଜୀବ୍ୟ କରି ସରଳ ଭାଷାରେ 'ଛତ୍ରପ୍ରକାଶ' ଗ୍ରନ୍ଥ ରଚନା କରିଥିଲେ ।

## ଆଧୁନିକ ଯୁଗ

ଆନୁମାନିକ ଭାବରେ ୧୮୬୦ରୁ ହିନ୍ଦୀ ସାହିତ୍ୟ କ୍ଷେତ୍ରରେ କେତେକ ନୂତନତାର ସୂତ୍ରପାତ ହୋଇଥିଲା । ଇଂରାଜୀ ଶାସନ ବ୍ୟବସ୍ଥା ପ୍ରଚଳନ, ପାଶ୍ଚାତ୍ୟ ସଭ୍ୟତାର ପ୍ରସାର ଫଳରେ ଦେଶର ରାଜନୈତିକ ପରିସ୍ଥିତିରେ ଆମୂଳ ପରିବର୍ତ୍ତନ ସଙ୍ଘଟିତ ହୋଇଥିଲା । ଏହି ସମୟରୁ କବିମାନେ ରାଜଦରବାର, ପୌରାଣିକତା ଓ ଆତ୍ମମୁଖୀନତା ପରିହାର କରି ସମାଜ ଜୀବନରୁ ସାହିତ୍ୟ ସୃଷ୍ଟିର ଉପାଦାନ ଆହରଣ କରିବାକୁ ଲାଗିଲେ । ଫଳତଃ ସାମାଜିକ ଓ ରାଜନୈତିକ ସମସ୍ୟା ଚିତ୍ରଣ ସାହିତ୍ୟ ସୃଷ୍ଟିର ଆଦର୍ଶ ଭାବରେ ବିବେଚିତ ହେଲା । ଆଶ୍ରୟଦାତାଙ୍କ ମନୋରଞ୍ଜନ ଅଥବା ଆତ୍ମପ୍ରଚାର ପରିବର୍ତ୍ତେ ସମାଜକୁ ପ୍ରଭାବିତ କରିବା ଉଦ୍ଦେଶ୍ୟରେ କବିମାନେ ସାହିତ୍ୟ ସୃଷ୍ଟି କରିବାକୁ ଲାଗିଲେ । ଏଣୁ ଜାତି, ସମାଜ, ଧର୍ମ, ସ୍ୱଦେଶ ପ୍ରଭୃତି ଗୁରୁଗମ୍ଭୀର ବିଷୟକ ବିଚାରବିବେଚନା ପୂର୍ଣ୍ଣ କାବ୍ୟ କବିତା ପ୍ରଣୀତ ହେବାକୁ ଲାଗିଲା ଓ ଦେଶପ୍ରେମ, ଧର୍ମ ସଂସ୍କାର, ସାମାଜିକ ସଂସ୍କାର ପ୍ରଭୃତି ସାହିତ୍ୟର ଉପଜୀବ୍ୟ ବିଷୟରେ ପରିଣତ ହେଲା । ତଥାପି ଏହି ଯୁଗରେ କେହି କେହି ଭକ୍ତି ବା ରୀତି-କାଳୀନ ଆଦର୍ଶରେ ଅନୁପ୍ରାଣୀତ ହୋଇ କାବ୍ୟ ସୃଷ୍ଟି କରିଥିଲେ ହେଁ ଦେଶର ତତ୍କାଳୀନ ଆବଶ୍ୟକତାକୁ ଦୃଷ୍ଟିରେ ରଖି ନୂତନ ରୀତିରେ କାବ୍ୟ ସୃଷ୍ଟି କରିବା ଏହି ଯୁଗର ମୁଖ୍ୟ ପ୍ରବୃତ୍ତିରେ ପରିଣତ ହୋଇଥିଲା ।

ଭକ୍ତିକାଳରୁ ଅବଧୀ ଓ ବ୍ରଜଭାଷାରେ କବିତା ରଚନା ପ୍ରଚଳିତ ଥିଲା । ରୀତିକାଳରେ ବ୍ରଜଭାଷା ପ୍ରାଧାନ୍ୟ ଲାଭ କରିବାରୁ ଅବଧୀର କ୍ଷେତ୍ର ସୀମିତ ହୋଇଗଲା । ମାତ୍ର ଏହି ଭାଷା ମଧ୍ୟ ଅତ୍ୟନ୍ତ କୋମଳ, ମଧୁର ହୋଇଥିବା ଯୋଗୁ ଏହାକୁ ନବୀନ କବିଗଣ ଗୁରୁଗମ୍ଭୀର ଭାବ ପ୍ରକାଶ ଲାଗି ଅନୁପଯୋଗୀ ମନେକଲେ ଓ ତତ୍ପରିବର୍ତ୍ତେ 'ଖଡ଼ିବୋଲି' ଭାଷାକୁ ହିଁ ସାଗ୍ରହରେ ଗ୍ରହଣ କରିନେଲେ । ପଦ୍ୟ ଓ ଗଦ୍ୟ ଉଭୟତ୍ର ଏହି ଖଡ଼ିବୋଲି ବ୍ୟାପକ ଭାବରେ ବ୍ୟବହୃତ ହେବାକୁ ଲାଗିଲା ।

ପ୍ରାୟ ୭୫ ବର୍ଷ ମଧ୍ୟରେ ବ୍ରଜଭାଷାର ମୋହ ଧୀରେ ଧୀରେ ଅପସୃତ ହେଲ ଓ ଖଡ଼ିବୋଲିର ବ୍ୟବହାର କାବ୍ୟ କ୍ଷେତ୍ରରେ ସୁପ୍ରତିଷ୍ଠିତ ହୋଇଗଲା ।

କାବ୍ୟ ରଚନା ପ୍ରଣାଳୀ ଓ ଛନ୍ଦକ୍ଷେତ୍ରରେ ମଧ୍ୟ ବିପୁଳ ପରିବର୍ତ୍ତନର ସୂତ୍ରପାତ ହେଲ । ଏହି ସମୟର କବିମାନେ ଦୋହା, ସବୈୟା, କବିତ୍ତ ପ୍ରଭୃତି ଛନ୍ଦକୁ ପରିହାର କରି ସଂସ୍କୃତ ଛନ୍ଦ ଓ କେତେକ ନୂତନ ଛନ୍ଦକୁ ଗ୍ରହଣ କଲେ । ବହିଃପ୍ରକୃତିକୁ ମଧ୍ୟ ନୂତନ ଦୃଷ୍ଟିକୋଣରୁ ଚିତ୍ରଣ କରାଗଲା । ଇଂରାଜୀ ଓ ବଙ୍ଗ କବି ରବୀନ୍ଦ୍ରନାଥଙ୍କ ପ୍ରଭାବକୁ ମଧ୍ୟ ବହୁ କବି ସ୍ୱାଗତ କରିଥିଲେ । ହିନ୍ଦୀ ସାହିତ୍ୟରେ ଏହି ସବୁ ନୂତନତାର ପ୍ରବର୍ତ୍ତକ ଭାବରେ ଭାରତେନ୍ଦୁ ହରିଶ୍ଚନ୍ଦ୍ରଙ୍କ ନାମ ସର୍ବାଦୌ ଉଲ୍ଲେଖଯୋଗ୍ୟ ।

ତଥାପି ଆଧୁନିକ ଯୁଗରେ ମଧ୍ୟ କେତେକ କବି ପ୍ରାଚୀନ କାବ୍ୟ ଧାରାର ବଶବର୍ତ୍ତୀ ହୋଇ କାବ୍ୟ ରଚନା କରିଥିଲେ । ସେମାନଙ୍କ ମଧ୍ୟରୁ ରେବାର ରାଜା ରଘୁରାଜ ସିଂହ (୧୮୨୩-୭୯), ସରଦାର (୧୮୪୫ ମୃ), ରାଜା ଲକ୍ଷ୍ମଣ ସିଂହ (୧୮୨୩-୯୬), ଲଲ ସୀତାରାମ (୧୮୫୪-୬୮), ଜଗନ୍ନାଥ ପ୍ରସାଦ ରତ୍ନାକର (୧୮୬୩—?), ପଣ୍ଡିତ ରାମଚନ୍ଦ୍ର ଶୁକ୍ଳ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ ।

ସରଦାର 'ସାହିତ୍ୟ ସରସୀ' 'ବ୍ୟଙ୍ଗ ବିଳାସ', 'ଶୃଙ୍ଗାର ସଂଗ୍ରହ', 'ରାମ ରତ୍ନାକର', 'ସାହିତ୍ୟ ସୁଧା', 'ରାମଲୀଳା ପ୍ରକାଶ', ରଚୟିତା ଭାବରେ, ରାଜା ଲକ୍ଷ୍ମଣ ସିଂହ କାଳିଦାସଙ୍କ ଶକୁନ୍ତଳା, ମେଘଦୂତ, ରଘୁବଂଶର ସରଳ ବ୍ରଜଭାଷାରେ ପଦ୍ୟାନୁବାଦକ ଭାବରେ, ଲଲ ସୀତାରାମ ସେକ୍ସପିଅରଙ୍କ ବହୁ ଗ୍ରନ୍ଥର ସରଳ ବ୍ରଜଭାଷାରେ ଅନୁବାଦକ, ଓ ଆର୍ନୋଲ୍ଡଙ୍କ ଲାଇଟ୍ ଅଫ୍ ଏସିଆକୁ ଅବଲମ୍ବନ କରି 'ବୁଦ୍ଧ ଚରିତ' କାବ୍ୟର ରଚୟିତା ଓ ନୂତନରୀତିରେ ପ୍ରକୃତି ବର୍ଣ୍ଣନା ମୂଳକ କବିତା ରଚୟିତା ଭାବରେ ଏବଂ ପଣ୍ଡିତ ସତ୍ୟନାରାୟଣ (୧୮୮୪—୧୯୧୮) ଭବଭୂତିଙ୍କ ଦୁଇଟି ପ୍ରସିଦ୍ଧ ନାଟକ ଉତ୍ତର ରାମଚରିତ ଓ ମାଳତୀ ମାଧବର ଅନୁବାଦକ ଭାବରେ ସୁଖ୍ୟାତି ଲଭ କରିଅଛନ୍ତି ।

ଆଧୁନିକ ଯୁଗରେ ବ୍ରଜଭାଷାରେ ଲେଖିଥିବା କବିମାନଙ୍କ ମଧ୍ୟରେ ଜଗନ୍ନାଥ ପ୍ରସାଦ 'ରତ୍ନାକର'ଙ୍କୁ ସର୍ବଶ୍ରେଷ୍ଠ କବି ଭାବରେ ଗ୍ରହଣ କରାଯାଏ । ଇଂରାଜୀ, ସଂସ୍କୃତ, ଫାରସୀ, ଉର୍ଦ୍ଦୁ ଓ ଖଡ଼ିବୋଲିରେ ସେ ସୁପଣ୍ଡିତ ଥିଲେ ହେଁ ପ୍ରାଚୀନ ବ୍ରଜଭାଷାର ମୋହ ପରିତ୍ୟାଗ କରିପାରି ନଥିଲେ । ତାହାଙ୍କ ରଚିତ 'ହିଣ୍ଡୋଲ', 'ହରିଶ୍ଚନ୍ଦ୍ର କାବ୍ୟ', 'ଗଙ୍ଗାବତରଣ', 'ଉଦ୍ଧବ ଶତକ', ପ୍ରଭୃତି କାବ୍ୟ କବିତା ସୁପ୍ରସିଦ୍ଧ । ଏତଦ୍ ବ୍ୟତୀତ 'ଶୃଙ୍ଗାର ଲହରୀ', 'ବୀରାଷ୍ଟକ', 'ରତ୍ନାଷ୍ଟକ'

ପ୍ରଭୃତି ଗ୍ରନ୍ଥ ସେ ରଚନା କରିଥିଲେ ଓ ବିହାରୀଲାଲଙ୍କ 'ସତସଇଟୀକା' 'ବିହାରୀ ରତ୍ନାକର' ଓ ବହୁପ୍ରାଚୀନ କାବ୍ୟ କବିତାର ସଂପାଦନ କରି ସେ ହିନ୍ଦୀ-ସାହିତ୍ୟକୁ ସମୁନ୍ନତ କରିଯାଇଅଛନ୍ତି । ବ୍ରଜଭାଷା ତାହାଙ୍କ ରଚନା ଶକ୍ତି ଯୋଗୁ ମାର୍ଜିତ ଓ ସମୁନ୍ନତ ହୋଇଅଛି । ତାହାଙ୍କ ରଚନାରେ ଅଲଙ୍କାରର ବହୁଳ ପ୍ରୟୋଗ ମଧ୍ୟ ଦେଖିବାକୁ ମିଳିଥାଏ । ରୋଲା ଓ କବିତ୍ତ ଛନ୍ଦର ବହୁଳ ପ୍ରୟୋଗ ତାହାଙ୍କ ରଚନାରେ ପରିଲକ୍ଷିତ ହୁଏ । ପ୍ରକୃତି ବର୍ଣ୍ଣନାରେ ମଧ୍ୟ ତାହାଙ୍କ ଅପୂର୍ବ କୃତିତ୍ୱ ଦେଖିବାକୁ ମିଳେ । ତଥାପି ତାହାଙ୍କ କାବ୍ୟର ବର୍ଣ୍ଣନା ଶୈଳୀ ରୀତିକାଳୀନ ପରଂପରାକୁ ହିଁ ଅନୁସରଣ କରିଅଛି । ଉଦାହରଣ ସ୍ୱରୂପ—

'ଯୋଗିନ କୀ ଭୋଗିନ କୀ ବିକଲ୍ ବିୟୋଗିନୀ କୀ
ଜଗ ମେଁ ନ ଜାଗତୀ ଜମା ତୈଁ ରହି ଜାୟଁ ଗୀ ।
"କହେ ରତ୍ନାକର ନ ସୁଖ କେ ରହେ ଯୋ ଦିନ
ତୌ ଯେ ଦୁଃଖ ଦ୍ୱଂଦ୍ୱ କୀ ନ ରାତୌଁ ରହି ଯାୟେଁଗୀ
ପ୍ରେମ-ନେମ୍ ଛାଡ଼ି ଜ୍ଞାନଛେମ୍ ଯୋ ବତାବତ ସୋ
ଭୀତି ହି ନହିଁ ତୌ କହା ଛାତୈଂ ରହି ଜାୟଁଗୀ ।
ଘାତୈଂ ରହି ଜାୟଁଗୀଂ ନ କାହ୍ନ କୀ କୃପା ତୈ ଇତି
ଉଧୋ କହିବେ କୀ ବସ ବାତୈ ରହି ଜାୟଁଗୀ ।'

## ଆଧୁନିକ କାବ୍ୟଧାରା—

ଆଧୁନିକ ହିନ୍ଦୀ କାବ୍ୟରଚନାର ଆଦି ପର୍ବରେ ବା ପ୍ରାଚୀନତା ଓ ଆଧୁନିକତାର ସନ୍ଧିକ୍ଷଣରେ ବହୁ କବିଙ୍କ କାବ୍ୟରେ ପ୍ରାଚୀନ ଯୁଗର କେତେକ ବୈଶିଷ୍ଟ୍ୟ ସହି ନବୀନ କାବ୍ୟ ରୀତିର ସମ୍ମିଶ୍ରଣ ପରିଲକ୍ଷିତ ହେବା ଏକାନ୍ତ ସ୍ୱାଭାବିକ । ଏହି କବିମାନେ ବ୍ରଜଭାଷା ଓ ଖଡ଼ିବୋଲି ଉଭୟ ଭାଷାରେ କାବ୍ୟ କବିତା ରଚନା କରିଥିଲେ । କ୍ରମେ ଖଡ଼ିବୋଲିହିଁ ନବଯୁଗରେ ଭାବ ଅଭିବ୍ୟକ୍ତିର ମୁଖ୍ୟ ମାଧ୍ୟମରେ ପରିଣତ ହେଲା । ଏହି ନୂତନ କାବ୍ୟ ଧାରାର ପ୍ରବର୍ତ୍ତକ ଭାବରେ ଭାରତେନ୍ଦୁ ହରିଶ୍ଚନ୍ଦ୍ର (୧୮୫୦— )ଅଗ୍ରଗଣ୍ୟ । ତାହାଙ୍କର ବହୁମୁଖୀ ପ୍ରତିଭା ଯୋଗୁହିଁ ଆଧୁନିକ ହିନ୍ଦୀ ସାହିତ୍ୟର କାବ୍ୟ କବିତା, ନାଟକ ପ୍ରଭୃତି ବିବିଧ ବିଭାବରେ ସମୃଦ୍ଧି ଓ ନବୀନତା ସଙ୍ଘଟିତ ହୋଇଅଛି । ଶୃଙ୍ଗାର, ପ୍ରେମ ସୌନ୍ଦର୍ଯ୍ୟ, ବିରହ, ବହିଃପ୍ରକୃତି, ଈଶ୍ୱର ଭକ୍ତି ପ୍ରଭୃତି ବିଷୟରେ ପ୍ରାଚୀନ କବିମାନଙ୍କ ଭଳି ସେ ଯେପରି କାବ୍ୟ କବିତା ରଚନା କରିଅଛନ୍ତି, ସେହିପରି ଜାତୀୟତା, ଦେଶ ପ୍ରୀତି ଓ ସମାଜ ସଂସ୍କାର ପ୍ରଭୃତି ସମକାଳୀନ ବିଷୟ ମାନଙ୍କୁ ଉପଜୀବ୍ୟ କରି ମଧ୍ୟ ନୂତନ

ଖାରେ ମହତ୍ତ୍ୱପୂର୍ଣ୍ଣ କାବ୍ୟ ରଚନା କରି ଯାଇଅଛନ୍ତି । ଦେଶପ୍ରେମର ପବିତ୍ର ଭାବନାରେ ତାହାଙ୍କ ହୃଦୟ ପରିପୂର୍ଣ୍ଣ ଥିଲା । ଏଣୁ ଅବନତ ଭାରତର ଦୀନ ଦଶାର ମର୍ମସ୍ପର୍ଶୀ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ସମୁନ୍ନତ ପ୍ରାଚୀନ ଭାରତ ବର୍ଷର ବିପୁଳ ବିଭବ ଓ ମହାନ ଗୌରବକୁ ମଧ୍ୟ ସେ ବର୍ଣ୍ଣନା କରିଯାଇଅଛନ୍ତି ।

ତାହାଙ୍କ ରଚିତ ସ୍ୱଦେଶ ପ୍ରୀତି ମୂଳକ କବିତା ଭାବରେ ନିମ୍ନୋକ୍ତ ପଂକ୍ତି ଉଲ୍ଲେଖ ଯୋଗ୍ୟ—

‘ରୋ ଅହୁ ସବ ମିଲ୍‌କୈ ଆବହୁ ଭାରତ ଭାଇ ।
ହାହା ! ଭାରତ-ଦୁର୍ଦ୍ଦଶା ନ ଦେଖି ଯାଇ
ସବକେ ପହିଲେ ଯେହି ଈଶ୍ୱର ଧନ ବଲ ଦିନ୍‌ହୋ
ସବ୍‌କେ ପହିଲେ ଯୋହି ସଭ୍ୟ ବିଧାତା କିନ୍ ହୋ ।
ସବକେ ପହିଲେ ଯୋ ରୂପ ରଙ୍ଗରସ ଭୀନୋ
ସବକେ ପହିଲେ ବିଦ୍ୟା ଫଲ ଜିନ ଗହି ଲୀନୋ
ଅବ ସବକେ ପୀଛେ ସୋଇ ପରତ ଲଗାଈ ।’

ଭାରତେନ୍ଦୁଙ୍କ ସମୟରୁ ଖଡ଼ିବୋଲିରେ ଅଧିକ ପରିମାଣରେ ଗଦ୍ୟରେ ସାହିତ୍ୟ ଲିଖିତ ହେଲା । ଭାରତେନ୍ଦୁ ଖଡ଼ିବୋଲିରେ ପଦ୍ୟ ରଚନା କରିବାରେ ମନୋଯୋଗୀ ହୋଇଥିଲେ । ପୂର୍ବରୁ ବ୍ରଜଭାଷାରେ ସେ ବହୁ କବିତା ରଚନା କରିଥିଲେ । ତାହାଙ୍କ ଖଡ଼ିବୋଲିରେ ରଚିତ କବିତାରେ ମଧ୍ୟ ବ୍ରଜଭାଷାର ସମ୍ମିଶ୍ରଣ ଦେଖିବାକୁ ମିଳେ । ସେ ବହୁ ଗୀତ, କବିତ୍ୱ ସବୈୟ୍ୟ, ଦୋହା, କୁଣ୍ଡଲୀ, ଲବନି, ଗଜଲ ପ୍ରଭୃତି ରଚନା କରିଯାଇ ଅଛନ୍ତି ।

ଭାରତେନ୍ଦୁଙ୍କ ପରେ ପ୍ରତାପ ନାରାୟଣ ମିଶ୍ର, ବଦରିନାରାୟଣ ‘ପ୍ରେମ ଘନ’, ଅଯୋଧ୍ୟାସିଂହ ଉପାଧ୍ୟାୟ (ହରିଔଧ), ଶ୍ରୀଧର ପାଠକ, ଶ୍ରୀରାୟ ଦେବୀପ୍ରସାଦ ‘ପୂର୍ଣ୍ଣ’, ପଣ୍ଡିତ ନାଥୂରାମ ଶର୍ମା, ମହାବୀର ପ୍ରସାଦ ଦ୍ୱିବେଦୀ, ମୈଥିଳୀ ଶରଣ ଗୁପ୍ତ, ରାମଚରିତ ଉପାଧ୍ୟାୟ, ଲାଲ ଭଗବାନ ଦୀନ, ଗୟାପ୍ରସାଦ ଶୁକ୍ଳ, ରାମ ନରେଶ ତ୍ରିପାଠୀ, ରୂପ ନାରାୟଣ ପାଣ୍ଡେୟ, ଜୟଶଙ୍କର ପ୍ରସାଦ, ସୂର୍ଯ୍ୟକାନ୍ତ ତ୍ରିପାଠୀ- ‘ନିରାଲ’, ସୁମିତ୍ରାନନ୍ଦନ ପନ୍ତ, ସିୟାରାମ ଶରଣ ଗୁପ୍ତ, ଅନୂପ ଶର୍ମା, ଗୋପାଳଶରଣ ସିଂହ, ମାଖନ ଲାଲ ଚତୁର୍ବେଦୀ, ବିୟୋଗୀ ହରି, ବାଲକୃଷ୍ଣ ଶର୍ମା (ନବୀନ), ମହାଦେବୀ ବର୍ମା, ସୁଭଦ୍ରା କୁମାରୀ ଚୌହାନ, ରାମକୁମାର ବର୍ମା, ଜୟଶଙ୍କର ଭଟ୍ଟ, ଭଗବତୀ ଚରଣ ବର୍ମା, ଶ୍ୟାମନାରାୟଣ ପାଣ୍ଡେୟ, ଗୁରୁଭକ୍ତ ସିଂହ, ହରିକୃଷ୍ଣ ପ୍ରେମୀ

ଚଳିତ ଶତାବ୍ଦୀରେ ହିନ୍ଦୀ କାବ୍ୟ ସାହିତ୍ୟକୁ ସ୍ୱୀୟ ରଚନା ଦ୍ୱାରା ସମୃଦ୍ଧ କରିଯାଇ ଅଛନ୍ତି ।

**ହରିଓଧ (୧୮୬୯— )** କୃଷ୍ଣକଥା ସୀତାବନବାସ ସମ୍ପର୍କରେ ନୂତନ ଶୈଳୀରେ କାବ୍ୟ ରଚନା କରିବା ବ୍ୟତୀତ ସାମାଜିକ ସମସ୍ୟା ସମ୍ପର୍କରେ ମଧ୍ୟ ସେ କାବ୍ୟ ରଚନା କରିଅଛନ୍ତି । 'ପ୍ରିୟ ପ୍ରବାସ', 'ବୈଦେହୀ ବନବାସ', ପୌରାଣିକ କାବ୍ୟ ଭାବରେ, 'ବୋଲଚାଲ, 'ଚୁଭତେ ଚୌପଦେ', 'ଚୋଖେ ଚୌପଦେ', 'ପଦ୍ମ ପ୍ରସୂନ', 'ପାରିଜାତ' ପ୍ରଭୃତି ତାହାଙ୍କ ପଦ୍ୟ ସଙ୍କଳନ ଭାବରେ ସୁପ୍ରସିଦ୍ଧ । କୃଷ୍ଣ କଥା ମୂଳକ 'ପ୍ରିୟ ପ୍ରବାସ' ତାହାଙ୍କର ସର୍ବଶ୍ରେଷ୍ଠ ରଚନା ଭାବେ ପରିଗୃହୀତ ହୁଏ । ଏଥିରେ କୃଷ୍ଣ ରାଧା ଆଦର୍ଶ ପ୍ରେମିକ ପ୍ରେମିକା ରୂପରେ ଚିତ୍ରିତ ହୋଇଅଛନ୍ତି । ସାର୍ବଜନୀନ ଓ ସାମୂହିକ ଉନ୍ନତି ଲାଗି ସେମାନେ ଆପଣାର ବ୍ୟକ୍ତିଗତ ସୁଖକୁ ତ୍ୟାଗ କରିଅଛନ୍ତି । ପ୍ରିୟ କୃଷ୍ଣଙ୍କ ବିୟୋଗରେ ରାଧା ନୈରାଶ୍ୟରେ ହାହାକାର ନ କରି ପୀଡ଼ିତର ସେବାଲାଗି ଜୀବନ ନିୟୋଜିତ କରିଛନ୍ତି । ତାହାଙ୍କ 'ଯଶୋଦା ବିଳାପ' ହିନ୍ଦୀ-ସାହିତ୍ୟର ଏକ ଅମୂଲ୍ୟ ସମ୍ପଦ । 'ପ୍ରିୟ ପ୍ରବାସ' କାବ୍ୟରେ ସେ ବିବିଧ ସଂସ୍କୃତ ବୃତ୍ତ ମାନଙ୍କର ସଫଳ ପ୍ରୟୋଗ କରି ଛନ୍ଦ ଯୋଜନାରେ ଆପଣାର କୃତିତ୍ୱ ମଧ୍ୟ ଦର୍ଶାଇଯାଇଅଛନ୍ତି । ଆଖ୍ୟାନ କାବ୍ୟ ଓ ଗୀତି କାବ୍ୟ ଉଭୟ କ୍ଷେତ୍ରରେ ତାହାଙ୍କର କୃତିତ୍ୱ ମହତ୍ତ୍ୱପୂର୍ଣ୍ଣ ।

**ଶ୍ରୀଧର ପାଠକ (୧୮୬୦— )** ପ୍ରକୃତି ବର୍ଣ୍ଣନାତ୍ମକ କାବ୍ୟକବିତା ରଚୟିତା ଭାବରେ ସୁପ୍ରସିଦ୍ଧ । ଇଂରାଜୀ ଓ ସଂସ୍କୃତରୁ ବହୁ କବିତା ସେ ଅନୁବାଦ କରିଅଛନ୍ତି । ତାହାଙ୍କ 'ହିମାଳୟ', 'ବନାଷ୍ଟକ' ଉଚାଙ୍ଗ କବିତା ଭାବରେ ପରିଗୃହୀତ । ଏତଦବ୍ୟତୀତ ସାମୟିକ ସମସ୍ୟା, ସମାଜସେବା, ଧର୍ମସଂସ୍କାର, ମାତୃଭାଷା ଉନ୍ନତି ପ୍ରଭୃତି ବିଷୟରେ ମଧ୍ୟ ସେ କବିତା ରଚନା କରିଅଛନ୍ତି । ଇଂରାଜୀ କବି ପର୍ନେଲଙ୍କ 'ହର୍ମିଟ' କବିତାର ଅନୁବାଦ 'ଏକାନ୍ତବାସୀ ଯୋଗୀ' ଓ ଗୋଲଡ଼ସ୍ମିଥ୍‌ଙ୍କ 'ଡେଜାର୍ଟେଡ଼୍ ଭିଲେଜ' ଓ 'ଟ୍ରାଭେଲର'ର ଅନୁବାଦ 'ଉଜଡ଼ ଗ୍ରାମ' ଓ 'ଭ୍ରାନ୍ତ ପଥିକ' ତାହାଙ୍କର ଅନ୍ୟତମ କୃତି । ତାହାଙ୍କର ମୌଳିକ କୃତିମାନଙ୍କ ମଧ୍ୟରୁ 'ଭାରତ ଗୀତ', 'କାଶ୍ମୀର ବର୍ଣ୍ଣନ', 'ଦେହରାଦୂନ' ସୁପ୍ରସିଦ୍ଧ ।

ଶ୍ରୀ ରାୟଦେବୀ ପ୍ରସାଦ 'ପୂର୍ଣ୍ଣ' ଖଡ଼ିବୋଲି ଓ ବ୍ରଜଭାଷା ଉଭୟକୁ ବ୍ୟବହାର କରି ବିବିଧ ବିଷୟକ କବିତା ରଚନା କରି ଏବଂ କାଳିଦାସଙ୍କ ମେଘଦୂତର ଅନୁବାଦ କରି ପ୍ରସିଦ୍ଧି ଲାଭ କରିଅଛନ୍ତି ।

ମହାବୀର ପ୍ରସାଦ ଦ୍ୱିବେଦୀ ମଧ୍ୟ ପୂର୍ବୋକ୍ତ ଉଭୟ ଭାଷାରେ 'ବିନୟ ବିନୋଦ', 'କାବ୍ୟ ମଞ୍ଜୁଷା', 'ସୁମନ' ପ୍ରଭୃତି ଉପଦେଶ ପ୍ରଧାନ କବିତା ସଂଗ୍ରହର ପ୍ରଣେତା ଭାବରେ ସୁବିଦିତ ।

**ମୈଥିଲୀ ଶରଣ ଗୁପ୍ତ (୧୮୮୭— )** ଭାରତୀୟ ସାମୟିକ ସମସ୍ୟା ସ୍ୱାଧୀନତା ସଂଗ୍ରାମ, ସତ୍ୟାଗ୍ରହ, ସମାଜବାଦ, ବିଶ୍ୱପ୍ରେମ, ଅସ୍ପୃଶ୍ୟତା ନିବାରଣ, ଗ୍ରାମୋନ୍ନତି ପ୍ରଭୃତି ସମ୍ପର୍କରେ ସାର୍ଥକ କବିତା ରଚନା କରିଥିବା ଯୋଗୁଁ ସୁବିଖ୍ୟାତ । ମୌଳିକ ଓ ଅନୁବାଦିତ ପ୍ରାୟ ପଚାଶଗୋଟି ଗ୍ରନ୍ଥ ମଧ୍ୟରୁ ତାହାଙ୍କ 'ସାକେତ', 'ପଞ୍ଚବଟି' ସର୍ବଶ୍ରେଷ୍ଠ । 'ଭାରତ ଭାରତୀ', 'ହିନ୍ଦୁ', 'ସ୍ୱଦେଶ ସଙ୍ଗୀତ'ରେ ପ୍ରାଚୀନ ଭାରତୀୟ ଗୌରବ ଓ ବର୍ତ୍ତମାନର ଦୁର୍ଦ୍ଦଶା ବର୍ଣ୍ଣିତ । 'ଜୟଦ୍ରଥ ବଧ', 'ଯଶୋଧାରା', 'ଦ୍ୱାପର' ପ୍ରଭୃତି କାବ୍ୟରୁ ମଧ୍ୟ ତାହାର ପ୍ରତିଭାର ସମ୍ୟକ ବିକାଶ ଉପଲବ୍ଧ ହୁଏ । ଏତଦ୍‌ବ୍ୟତୀତ 'ରଙ୍ଗମେ ଭଂଗ', 'ପଦ୍ୟ ପ୍ରବନ୍ଧ', 'ଶକୁନ୍ତଳା', 'ପତ୍ରାବଲୀ', 'ବୈତାଳିକ', 'କିସାନ', 'ଶକ୍ତି', 'ସୈରନ୍ଧ୍ରୀ', 'ବନବୈଭବ' ପ୍ରଭୃତି ତାହାଙ୍କର ସୁପରିଚିତ କାବ୍ୟ ଓ ଗୀତିକାବ୍ୟ ସଂଗ୍ରହ । ସଂସ୍କୃତ ପାର୍ଶୀ ଭାଷାର କେତେକ କାବ୍ୟକୁ ମଧ୍ୟ କୃତିତ୍ୱର ସହିତ ସେ ହିନ୍ଦୀରେ ଅନୁବାଦ କରିଅଛନ୍ତି ।

ତାହାଙ୍କର ସର୍ବୋତ୍କୃଷ୍ଟ କାବ୍ୟରେ ପ୍ରଧାନ କବିମାନଙ୍କ ଦ୍ୱାରା ଉପେକ୍ଷିତା ଲକ୍ଷ୍ମଣ ପତ୍ନୀ ଉର୍ମିଳା, କୈକେୟୀଙ୍କ ତ୍ୟାଗ ଓ ଚରିତ୍ର ମହତ୍ତ୍ୱ ପ୍ରତିପାଦିତ ହୋଇଅଛି । ଉର୍ମିଳାର ମନୋଭାବର ଅଭିବ୍ୟକ୍ତି ତାହାଙ୍କ ଅପୂର୍ବ କବିତ୍ୱ ଓ କଳ୍ପନା ଶକ୍ତିର ପରିଚାୟକ । ତାହାଙ୍କ କାବ୍ୟ ପ୍ରସାଦଗୁଣ ଯୁକ୍ତ ଓ ସରଳ ଭାଷାରେ ଲିଖିତ ।

'ରାମଚରିତ ଚନ୍ଦ୍ରାମଣି' ଆଖ୍ୟାନ କାବ୍ୟ ରଚୟିତା ଭାବରେ ରାମଚରିତ ଉପାଧ୍ୟାୟ ଓ 'ବୀର ପଞ୍ଚରତ୍ନ' ଓ 'ନବୀନ ବୀନ' ପ୍ରଣେତା ଲାଲା ଭଗବାନ ଦୀନ 'ଦୀନ' ବୀର ରସାତ୍ମକ ଓ ପ୍ରକୃତି ବର୍ଣ୍ଣନାତ୍ମକ କବି ଭାବରେ ସୁପରିଚିତ । ଶୁଦ୍ଧ ପରିମାର୍ଜିତ ଭାଷାରେ ଲିଖିତ 'ମିଲନ','ପଥିକ','ସ୍ୱପ୍ନ', ଶୀର୍ଷକ ତିନିଗୋଟି କାବ୍ୟ ଓ ମାନସୀ ଶୀର୍ଷକ ଏକ କବିତା ସଂଗ୍ରହର ପ୍ରଣେତା ଭାବରେ ରାମ ନରେଶ ତ୍ରିପାଠୀ ମଧ୍ୟ ଏ ଯୁଗର ଅନ୍ୟତମ କବି ଭାବରେ ପ୍ରଖ୍ୟାତ ।

ବହୁ ଭାଷାରେ ସୁପଣ୍ଡିତ ଜୟଶଙ୍କର ପ୍ରସାଦ (୧୮୮୯— ) ଏ ଯୁଗର ଅନ୍ୟତମ ବିଶିଷ୍ଟ କବି । ତାହାଙ୍କର ପ୍ରାରମ୍ଭିକ ରଚନା ଭାବରେ ବିବିଧ ବିଷୟକ କବିତା ସଂଗ୍ରହ 'ପ୍ରେମ ପଥିକ', 'ଚିତ୍ରାଧାର' ଛାୟାବାଦୀ ଓ ରହସ୍ୟବାଦୀ କବିତା ସଂକଳନ 'ଝରନା','ଆଁସୁ' ଓ 'ଲହର' ତାହାଙ୍କ ସାହିତ୍ୟ ସାଧନାର ମଧ୍ୟକାଳର କୃତି । ଏହି

ରଚନାମାନଙ୍କ ମଧ୍ୟରୁ 'ଆଁସୁ' ଉତ୍କୃଷ୍ଟତମ ବିବେଚିତ ହୁଏ । ଏହା ଏକ ଭାବପ୍ରଧାନ ଦୀର୍ଘ କବିତା । ଭାବର ସୌକୁମାର୍ଯ୍ୟ ଏବଂ କୋମଳ ସରସ ଓ ପ୍ରେମପୂର୍ଣ୍ଣ ଉକ୍ତି ଯୋଗୁ ଏହାର ମହତ୍ତ୍ୱ ସ୍ୱୀକୃତ । ଉଦାହରଣ ସ୍ୱରୂପ—

'ଇସ୍ କରୁଣ କଳିତ ହୃଦୟ ମେ କ୍ୟୋଁ ବିକଳ ରାଗିଣୀ ବଜତୀ
କ୍ୟୋଁ ହାହାକାର ସ୍ୱରୋଁ ମେଁ ବେଦନା ଅସୀମ ଗରଜତି ।
କ୍ୟୋଁ ବ୍ୟଥିତ ବ୍ୟୋମ ଗଙ୍ଗାସୀ, ଛିଟକା କର ଦୋନୋଁ ଛୋରେଁ
ଚେତନା ତରଙ୍ଗିଣୀ ମେରୀ ଲେତୀ ହୈ ମୃଦୁଲ ହିଲୋରେଁ ।

ତାହାଙ୍କ ଜୀବନର ଅନ୍ତିମ କାବ୍ୟ 'କାମାୟନୀ' ତାହାଙ୍କର ସର୍ବଶ୍ରେଷ୍ଠ ରଚନା ଭାବରେ ପରିଗଣିତ । ଉପନିଷଦ ବର୍ଣ୍ଣିତ ପ୍ରଳୟ ପରବର୍ତ୍ତୀ ଶ୍ରଦ୍ଧା ଓ ଇଡ଼ା ପ୍ରଭୃତିଙ୍କ ସହାୟତାରେ କିପରି ସୃଷ୍ଟି ରଚିତ ହୋଇଥିଲା ତାହା ବର୍ଣ୍ଣିତ । ବିଭିନ୍ନ ରୂପକମାନଙ୍କ ସାହାଯ୍ୟରେ କବି ମାନବ ଜୀବନର ଆଦର୍ଶ ବିଷୟ ଏଥିରେ ଚିତ୍ରଣ କରିଅଛନ୍ତି । ଶୁଦ୍ଧ ତତ୍ସମ ଭାଷା ହିଁ ତାହାଙ୍କ କାବ୍ୟରେ ବ୍ୟବହୃତ ହୋଇଅଛି ।

**ସୂର୍ଯ୍ୟକାନ୍ତ ତ୍ରିପାଠୀ 'ନିରାଲା' (୧୮୯୮— )** ବଙ୍ଗ ସାହିତ୍ୟର ପ୍ରଭାବ ଏହାଙ୍କ ରଚନାରେ ଅନୁଭୂତ ହୁଏ । କଳ୍ପନା ପ୍ରଧାନ ରହସ୍ୟବାଦୀ କବିତା ରଚୟିତା ଭାବରେ ନିରାଲାଙ୍କୁ ଆଧୁନିକ କବିମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ଆସନ ପ୍ରଦାନ କରାଯାଇଥାଏ । ଆନ୍ତରିକ ଅନୁଭୂତିର ସଫଳ ବ୍ୟଞ୍ଜନା, ସମୁଚ୍ଚ କଳ୍ପନା, ଓ ଭାବନାର ସମାବେଶ ଯୋଗୁ ତାହାଙ୍କ କବିତା ଉଚ୍ଚକୋଟୀର । ଦାର୍ଶନିକତା, ଦେଶଭକ୍ତିର ସଫଳ ଅଭିବ୍ୟକ୍ତି ମଧ୍ୟ ତାହାଙ୍କ ରଚନାରେ ଦେଖିବାକୁ ମିଳିଥାଏ । ତାହାଙ୍କ କବିତା ସଂକଳନମାନଙ୍କ ମଧ୍ୟରୁ 'ଅନାମିକା','ପରିମଳ','ଗୀତିକା', 'ନୟେ ପତ୍ତେ' ଓ ବର୍ଣ୍ଣନାତ୍ମକ କାବ୍ୟମାନଙ୍କ ମଧ୍ୟରୁ 'ତୁଳସୀ ଦାସ'ଙ୍କୁ ତାହାଙ୍କର ସର୍ବଶ୍ରେଷ୍ଠ ରଚନା ଭାବରେ ଗ୍ରହଣ କରାଯାଏ । ତାହାଙ୍କ କବିତା ଲାଳିତ୍ୟପୂର୍ଣ୍ଣ । ହିନ୍ଦୀ କବିତା କ୍ଷେତ୍ରରେ ମୁକ୍ତଛନ୍ଦର ପ୍ରଥମ ପ୍ରୟୋଗକାରୀ ଭାବରେ ତାହାଙ୍କୁ ଗ୍ରହଣ କରାଯାଏ ।

**ସୁମିତ୍ରାନନ୍ଦନ ପନ୍ତ (୧୯୦୨—)** ଛାୟାବାଦୀ କବିମାନଙ୍କ ମଧ୍ୟରେ ମଧୁର ଭାଷା, କୋମଳ ଭାବନା ସମନ୍ୱିତ କବିତାର ରଚୟିତା ଭାବରେ ସୁପରିଚିତ । 'ବୀଣା', 'ଉଚ୍ଛ୍ୱାସ', 'ପଲ୍ଲବ', 'ଗ୍ରନ୍ଥୀ', 'ଗୁଞ୍ଜନ', ଯୁଗାନ୍ତ ଓ ଯୁଗବାଣୀ ତାହାଙ୍କ ପ୍ରସିଦ୍ଧ ରଚନା । ମାନବିକ ପ୍ରେମାନୁଭୂତି ଓ ପ୍ରକୃତିର କଳ୍ପନା-ପ୍ରଧାନ ଚିତ୍ରାଙ୍କନରେ କବିଙ୍କ କୃତିତ୍ୱ ସର୍ବାଧିକ । ବିରହର କବି ଭାବରେ ମଧ୍ୟ ସେ ସୁଖ୍ୟାତ ।

ମାଖନଲାଲ ଚତୁର୍ବେଦୀ (୧୮୮୮)ଙ୍କ କବିତାବଳୀରେ ସମାଜର ଦୁଃସ୍ଥ ଜନସାଧାରଣଙ୍କ ପ୍ରତି ଗଭୀର ମମତାର ଅଭିବ୍ୟକ୍ତି ଦେଖିବାକୁ ମିଳିଥାଏ । ତାହାଙ୍କ ଦେଶପ୍ରୀତିମୂଳକ କବିତା ସଙ୍କଳନମାନଙ୍କ ମଧ୍ୟରୁ 'ସିପାହି', 'ମରଣ ତ୍ୟୋହର', 'ବଳିଦାନକା ଭୂତ', 'ଜୀବନ ଫୁଲ୍'ର ନାମ ଉଲ୍ଲେଖଯୋଗ୍ୟ । ତାହାଙ୍କ 'ହିମ ତରଙ୍ଗିଣୀ' ୧୯୫୫ରେ ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଅଛି ।

'ଆର୍ଦ୍ରା', 'ଦୁର୍ବାଦଳ', 'ବିଷାଦ' ପ୍ରଭୃତି କବିତା ସଙ୍କଳନର ରଚୟିତା ସିଆରାମ ଶରଣ ଗୁପ୍ତଙ୍କ ରଚନାରେ ଦେଶପ୍ରେମ, ସମାଜ ସଂସ୍କାର ଓ ସମସ୍ୟାର କମନୀୟ ଚିତ୍ର ଦେଖିବାକୁ ମିଳେ । କଥା-କବିତା ରଚୟିତା ଭାବରେ ମଧ୍ୟ ସେ ସୁପରିଚିତ । 'ସିଦ୍ଧାର୍ଥ' ପ୍ରଣେତା ପଣ୍ଡିତ ଅନୁପ ଶର୍ମା ବୀରରସାତ୍ମକ କବିତା ରଚୟିତା ଭାବରେ ମଧ୍ୟ ସୁଖ୍ୟାତି ଲାଭ କରିଅଛନ୍ତି ।

ମହାଦେବୀ ବର୍ମା (ଜନ୍ମ ୧୯୦୭) ନୈରାଶ୍ୟ ଓ ଜୀବନର ଦୁଃଖଦୈନ୍ୟକୁ ଭିତ୍ତି କରି ଭାବୁକତା-ପୂର୍ଣ୍ଣ ବହୁ କବିତା ରଚନା କରିଅଛନ୍ତି । ଅଜ୍ଞାତ ପ୍ରିୟତମ ପ୍ରତି ଜୀବାତ୍ମାର ଆକୁଳତାକୁ ଉପଜୀବ୍ୟ କରି ମଧ୍ୟ ବହୁତ ସରସ କବିତା ଲେଖି ଅଛନ୍ତି । ତାହାଙ୍କ ଗୀତିକବିତା ସମୂହ ଆଧୁନିକ ହିନ୍ଦୀ ସାହିତ୍ୟର ଉତ୍କୃଷ୍ଟ ସମ୍ପଦ ରୂପେ ବିବେଚିତ ହୁଏ । ଧ୍ୱନି, ଲୟ ଓ ସଙ୍ଗୀତର କଳାତ୍ମକ ସମ୍ମିଶ୍ରଣ ଯୋଗୁଁ ତାହାଙ୍କର ଗୀତିକବିତାଗୁଡ଼ିକ ଉଚ୍ଚ ସମାଦୃତ । 'ନୀରଜା', 'ରଶ୍ମି', ସାନ୍ଧ୍ୟଗୀତ' 'ଯାମା' ପ୍ରଭୃତି ଗ୍ରନ୍ଥର ରଚୟିତା ଭାବେ ସେ ସୁପ୍ରସିଦ୍ଧ ।

ସୁଭଦ୍ରା କୁମାରୀ (ଜନ୍ମ ୧୯୦୪) ସରଳ ନିରାଡ଼ମ୍ବର ରୀତିରେ ମାନବିକ ପ୍ରଣୟ ଓ ଦୀନ ଦୁଃସ୍ଥ ଜନତା ପ୍ରତି ଗଭୀର ମମତା ଓ ଦେଶପ୍ରୀତିକୁ ଭିତ୍ତି କରି କବିତା ରଚନା କରିଯାଇ ଅଛନ୍ତି । ତାହାଙ୍କର 'ଝାଁସିକୀ ରାଣୀ', 'ବୀରୋଁକା କୈସା ହୋ ବସନ୍ତ' ମାନବିବାଦୀ କବିତା ସଂଗ୍ରହ ଭାବେ ଏବଂ 'ମାନିନୀ ରାଧେ ପ୍ରିୟତମସେ', 'ଚଲତେ ସମୟ', 'ଚିନ୍ତା' ପ୍ରଭୃତି ପ୍ରଣୟ-ପ୍ରଧାନ କବିତାଗୁଡ଼ିକ ସୁପ୍ରସିଦ୍ଧ । ତାହାଙ୍କର କବିତା ସଂଗ୍ରହ 'ମୁକୁଳ' ଓ 'ତ୍ରିଧାର' ଉଚ୍ଚ ପ୍ରଶଂସିତ ଓ ସମ୍ମାନିତ ।

ରାମକୁମାର ବର୍ମା (ଜନ୍ମ ୧୯୦୫) 'ବୀର ହମ୍ମୀର', 'କୁଳ ଲଲନା', 'ଚିତୌଡ଼ କା ଚିତା', 'ଅଭିଶାପ', 'ଅଞ୍ଜଳି', 'ଚିତ୍ରଲେଖା', 'ଚନ୍ଦ୍ରକିରଣ' ପ୍ରଭୃତି ବହୁ କାବ୍ୟ ପ୍ରଣୟନ କରିଅଛନ୍ତି । ତାହାଙ୍କ ପରବର୍ତ୍ତୀକାଳୀନ କବିତାରେ ଆତ୍ମ-ଅନୁଭୂତି, ବାସ୍ତବତା, ଦାର୍ଶନିକତା ଓ ରହସ୍ୟବାଦିତାର ସମ୍ମିଶ୍ରଣ ଦେଖିବାକୁ ମିଳେ ।

ଏତଦ୍‌ବ୍ୟତୀତ 'ତକ୍ଷଶିଳା' କାବ୍ୟ ଓ ବହୁ କବିତା ରଚୟିତା ଜୟଶଙ୍କର ଭଟ୍ଟ, 'ପ୍ରେମ ସଂଗୀତ ମଧୂକଣ' ରଚୟିତା ଭଗବତୀ ଚରଣ ବର୍ମା, 'ହେଡାକେ ଦୋ ବୀର' ଓ 'ହଲଦୀଘାଟ' ବୀରରସ ପ୍ରଧାନ କାବ୍ୟ ପ୍ରଣେତା ଶ୍ୟାମନାରାୟଣ ପାଣ୍ଡେୟ, 'କୁସୁମକୁଞ୍ଜ', 'ସରସ ସୁମନ', 'ନୂରଜାହାଁ' କାବ୍ୟ ଓ ଗୀତିକାବ୍ୟ ପ୍ରଣେତା ଗୁରୁଭକ୍ତ ସିଂହ, 'ଜାଦୁଗରନୀ', 'ଆଁଖୋମେ' ଓ 'ଅନନ୍ତ କେ ପଥ ପର' ପ୍ରଭୃତି କବିତା ପ୍ରଣେତା ହରେକୃଷ୍ଣ (ପ୍ରେମୀ)ଙ୍କ ରଚନାବଳୀ ଦ୍ୱାରା ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବବର୍ତ୍ତୀ ହିନ୍ଦୀ କାବ୍ୟସାହିତ୍ୟ ସମୃଦ୍ଧ ହୋଇଅଛି । ଆଧୁନିକତମ ହିନ୍ଦୀ କାବ୍ୟକବିତା କ୍ଷେତ୍ରରେ ଜନାର୍ଦ୍ଦନ ଝା (ଦ୍ୱିଜ), ମୋହନଲାଲ ମହାତୋ (ବିୟୋଗୀ), ପୁରୋହିତ ପ୍ରତାପ ନାରାୟଣ, ରାମକୃଷ୍ଣ ଦାସ, ହରିବଂଶ ରାୟ (ବଚନ), ରାମାଧାରୀ ସିଂ (ଦୀନକର ୧୯୦୮) ପ୍ରଭୃତି କବି ପ୍ରତିଷ୍ଠା ଅର୍ଜନ କରିଅଛନ୍ତି ।

ପୂର୍ବୋକ୍ତ ଅଧିକାଂଶ କବି ରୋମାଣ୍ଟିକ ଭାବନାକୁ ହିଁ ସେମାନଙ୍କ କାବ୍ୟକବିତାରେ ରୂପାୟିତ କରିଯାଇ ଅଛନ୍ତି । ହିନ୍ଦୀ ଆଲୋଚକମାନେ ଏହି ରୋମାଣ୍ଟିକ କବିମାନଙ୍କୁ 'ଛାୟାବାଦୀ' ନାମରେ ଅଭିହିତ କରିଛନ୍ତି । ସାଂପ୍ରତିକ ରୋମାଣ୍ଟିକ ଭାବନାବିରୋଧୀ ତଥା ବାସ୍ତବବାଦୀ କବିମାନଙ୍କୁ ହିନ୍ଦୀ ସାହିତ୍ୟରେ 'ପ୍ରଗତିବାଦୀ' ଓ ନୂତନତମ ବିବିଧ ପରୀକ୍ଷା-ନିରୀକ୍ଷାରେ ନିୟୋଜିତ କବିମାନଙ୍କୁ 'ପ୍ରୟୋଗବାଦୀ' ନାମରେ ଅଭିହିତ କରାଯାଏ । ସାହିତ୍ୟିକ ଭାବାଦର୍ଶ ଦୃଷ୍ଟିରୁ ଆଧୁନିକ ହିନ୍ଦି କାବ୍ୟ ଧାରାକୁ ଦ୍ୱିବେଦୀ ଯୁଗ, ଛାୟାବାଦୀ ଯୁଗ, ପ୍ରଗତିବାଦୀ ଯୁଗ ଓ ପ୍ରୟୋଗବାଦୀ ଯୁଗ ଭାବରେ ଚାରି ଭାଗରେ ବିଭକ୍ତ କରାଯାଇଥାଏ ।

## ଆଧୁନିକ ହିନ୍ଦୀ ଗଦ୍ୟସାହିତ୍ୟ—

ଖ୍ରୀଷ୍ଟାବ୍ଦ ପଞ୍ଚଦଶ ଶତାବ୍ଦୀରୁ ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ହିନ୍ଦୀ ଗଦ୍ୟ ମୁଖ୍ୟତଃ ବ୍ରଜଭାଷାରେ ହିଁ ଲିଖିତ ହେଉଥିଲା । ଊନବିଂଶ ଶତାବ୍ଦୀର ପ୍ରାରମ୍ଭରୁ 'ଖଡ଼ିବୋଲି ଯୁଗ'ର ସୂତ୍ରପାତ ହେଲା । ଏହି ସମୟରୁ ଏ ପର୍ଯ୍ୟନ୍ତ ଖଡ଼ିବୋଲିରେ ଲିଖିତ ହିନ୍ଦୀ ଗଦ୍ୟସାହିତ୍ୟ କ୍ରମବିକାଶ ପଥରେ ଅଗ୍ରସର । ଏହାକୁ ସ୍ଥୂଳତଃ ଚାରୋଟି ପର୍ଯ୍ୟାୟରେ ବିଭକ୍ତ କରାଯାଇପାରେ ।

ପ୍ରଥମ ପର୍ଯ୍ୟାୟ-ପ୍ରାରମ୍ଭ ପର୍ବ (୧୮୦୦-୭୫)
ଦ୍ୱିତୀୟ ପର୍ଯ୍ୟାୟ-ଭାରତେନ୍ଦୁ ଯୁଗ (୧୮୭୫-୧୯୦୦)
ତୃତୀୟ ପର୍ଯ୍ୟାୟ-ଦ୍ୱିବେଦୀ ଯୁଗ (୧୯୦୦-୧୯୨୦)
ଚତୁର୍ଥ ପର୍ଯ୍ୟାୟ-ଚଳିତ ଯୁଗ (୧୯୨୦-       )

## ପ୍ରାରମ୍ଭ ପର୍ବ :—

ହିନ୍ଦୀ ଗଦ୍ୟର ପ୍ରଥମ ଲେଖକ ଭାବେ 'ସୁଖସାଗର' ପ୍ରଣେତା ମୁନ୍‌ସୀ ସଦାସୁଖଲାଲ୍‌ଙ୍କୁ ଗ୍ରହଣ କରାଯାଇଥାଏ । ତାହାଙ୍କ ପରେ ଇଶା ଆଲ୍ଲା ଖାଁ, ଲଲ୍ଲୁ ଲାଲ, ସଦାଲ ମିଶ୍ର, ରାଜା ଶିବପ୍ରସାଦ ଓ ରାଜା ଲକ୍ଷ୍ମଣ ସିଂହଙ୍କ ନାମ ଉଲ୍ଲେଖଯୋଗ୍ୟ ।

## ଭାରତେନ୍ଦୁ ଯୁଗ :—

ଗଦ୍ୟରଚନାର ଦ୍ୱିତୀୟ ପର୍ବରେ ଭାରତେନ୍ଦୁ ହରିଶ୍ଚନ୍ଦ୍ର, ପ୍ରତାପ ନାରାୟଣ ମିଶ୍ର, ବାଲକୃଷ୍ଣ ଭଟ୍ଟ, ବଦରୀ ନାରାୟଣ ଚୌଧୁରୀ, ଶ୍ରୀନିବାସ ଦାସ, ଜଗମୋହନ ସିଂହ ପ୍ରଭୃତି ହିନ୍ଦୀ ଗଦ୍ୟକୁ ସାହିତ୍ୟିକ ରୂପ ପ୍ରଦାନ କରି ତାହାର ବ୍ୟାପକ ପ୍ରଚାର ଲାଗି ପ୍ରଯତ୍ନ କରିଥିଲେ । ବହୁ ପତ୍ରପତ୍ରିକାର ପ୍ରକାଶନ ଗଦ୍ୟ ରଚନାକୁ ପ୍ରୋତ୍ସାହିତ କରିଥିଲା । ଶିକ୍ଷାପ୍ରଚାର, ଧର୍ମ ଓ ସମାଜ ସଂସ୍କାର, ରାଷ୍ଟ୍ରୀୟତା, ଦେଶପ୍ରେମ ପ୍ରଭୃତି ବିଷୟ ଗଦ୍ୟ ମାଧ୍ୟମରେ ହିଁ ଜନସାଧାରଣଙ୍କ ନିକଟରେ ପହଞ୍ଚାଇବାର ପ୍ରଯତ୍ନ ଏହି ଲେଖକମାନେ କରିଥିଲେ । ଏହି ସମୟର ଭାଷାରେ ସରଳ କଥ୍ୟଭାଷା ଓ ମାର୍ଜିତ ତତ୍ସମ ଭାଷା ସମ୍ବଳିତ ଦ୍ୱିବିଧ ଶୈଳୀ ପରିଲକ୍ଷିତ ହୋଇଥାଏ । ପ୍ରତାପ ନାରାୟଣ ମିଶ୍ର, ବାଲକୃଷ୍ଣ ଭଟ୍ଟ ଯଥାକ୍ରମେ 'ବ୍ରାହ୍ମଣ', 'ହିନ୍ଦୀ ପ୍ରଦୀପ', 'ଆନନ୍ଦ କାଦମ୍ବିନୀ' ଓ 'ନାଗରୀ ନୀରଦ' ପ୍ରଭୃତି ପତ୍ରିକାର ସମ୍ପାଦନା କରିଥିଲେ । ଶ୍ରୀନିବାସ ଦାସ ଉପନ୍ୟାସ, ନାଟକ ଓ ପ୍ରବନ୍ଧ ପ୍ରଭୃତି ରଚନା କରି ହିନ୍ଦୀଗଦ୍ୟକୁ ସାହିତ୍ୟିକ ରୂପ ପ୍ରଦାନ କରିବା ସଙ୍ଗେ ସଙ୍ଗେ ଗଦ୍ୟ ସାହିତ୍ୟର ବିଭିନ୍ନ ବିଭାବର ଭିତ୍ତିସ୍ଥାପନ କରିଥିଲେ ।

## ଦ୍ୱିବେଦୀ ଯୁଗ :—

ଖ୍ରୀ. ୧୮୯୩ରେ କାଶୀରେ 'ନାଗରୀ ପ୍ରଚାରିଣୀ ସଭା' ପ୍ରତିଷ୍ଠା ଓ ଖ୍ରୀ. ୧୯୦୦ରେ ଇଣ୍ଡିଆନ ପ୍ରେସ ପକ୍ଷରୁ 'ସରସ୍ୱତୀ' ମାସିକ ପତ୍ରିକା ପ୍ରଚଳନ ଫଳରେ ହିନ୍ଦୀ ସାହିତ୍ୟକ୍ଷେତ୍ରରେ ଯଥାର୍ଥତଃ ଯୁଗାନ୍ତର ସାଧିତ ହୋଇଅଛି । ଖ୍ରୀ. ୧୯୦୩ରେ ମହାବୀର ପ୍ରସାଦ ଦ୍ୱିବେଦୀ 'ସରସ୍ୱତୀ' ପତ୍ରିକାର ସମ୍ପାଦନ ଦାୟିତ୍ୱ ଗ୍ରହଣ କରିଥିଲେ । ଏଇ ସମସ୍ତ ସଦୁଦ୍ୟୋଗ ଫଳରେ ହିନ୍ଦୀପ୍ରେମୀ ଲେଖକଗଣ ଏକ ମହତ୍ ସାମୂହିକ ଭାଷା ଓ ସାହିତ୍ୟର ଉନ୍ନତି ଲାଗି ପ୍ରଯତ୍ନଶୀଳ ହେଲେ । ବାଲମୁକୁନ୍ଦ ଗୁପ୍ତ, ମହାବୀର ପ୍ରସାଦ ଦ୍ୱିବେଦୀ, ଶ୍ୟାମସୁନ୍ଦର ଦାସ, ରାମଚନ୍ଦ୍ର ଶୁକ୍ଳ,

ମିଶ୍ରବନ୍ଧୁ, ଅଯୋଧ୍ୟାସିଂହ ଉପାଧ୍ୟାୟ, ପ୍ରେମଚନ୍ଦ, ଜୟଶଙ୍କର ପ୍ରସାଦ ପ୍ରଭୃତିଙ୍କ ଉଦ୍ୟମରେ ଏହି ଅର୍ଦ୍ଧଶତାବ୍ଦୀ ମଧ୍ୟରେ ହିନ୍ଦୀଗଦ୍ୟର ବିପୁଳ ବିକାଶ ସାଧିତ ହୋଇଅଛି ।

ବାଲମୁକୁନ୍ଦ ଗୁପ୍ତ 'ଶିବଶମ୍ଭୁ ଶର୍ମା' ନାମକ ଏକ କାଳ୍ପନିକ ଚରିତ୍ର ମାଧ୍ୟମରେ ରାଜନୈତିକ ସମସ୍ୟାକୁ ଉପଜୀବ୍ୟ କରି ହାସ୍ୟ ଓ ବ୍ୟଙ୍ଗାତ୍ମକ 'ଶିବଶମ୍ଭୁ କା ଚିଟ୍ଠା' ପୁସ୍ତକ ରଚନା କରିଥିଲେ । ମହାବୀର ପ୍ରସାଦ ଦ୍ୱିବେଦୀ ବିବିଧ ବିଷୟକ ଗ୍ରନ୍ଥ ରଚନା ଲାଗି ବହୁ ଯୋଗ୍ୟ ଲେଖକଙ୍କୁ ଉତ୍ସାହିତ କରିବା ସଙ୍ଗେ ସ୍ୱୟଂ ବହୁ ଆଲୋଚନାତ୍ମକ ହାସ୍ୟ ଓ ବ୍ୟଙ୍ଗାତ୍ମକ ଗ୍ରନ୍ଥମାନ ରଚନା କରିଯାଇ ଅଛନ୍ତି । ହିନ୍ଦୀ ଲିଖିତ ରୀତି ତାହାଙ୍କ ରଚନାବଳୀ ଯୋଗୁଁ ବ୍ୟବସ୍ଥିତ ହୋଇଅଛି । ସେ ଭାଷାର ପରିଷ୍କାର, ବ୍ୟାକରଣ ନିୟମର ପ୍ରୟୋଗ, ବାକ୍ୟବିନ୍ୟାସ ବିଧି ନିର୍ଦ୍ଧାରଣ କରିବା ସଙ୍ଗେ ସଙ୍ଗେ ହିନ୍ଦୀସାହିତ୍ୟକୁ କଥ୍ୟଭାଷାର ନିକଟବର୍ତ୍ତୀ କରାଇବା ଦିଗରେ ଯେଉଁ ନେତୃତ୍ୱ ନେଇଥିଲେ, ତାହା ତାଙ୍କୁ ଆଧୁନିକ ହିନ୍ଦୀସାହିତ୍ୟକ୍ଷେତ୍ରରେ ଚିରସ୍ମରଣୀୟ କରିଅଛି । ଏଣୁ ତାହାଙ୍କୁ ଯଥାର୍ଥତଃ ଆଧୁନିକ ହିନ୍ଦୀସାହିତ୍ୟର ଜନକ ଭାବରେ ଗ୍ରହଣ କରାଯାଇଥାଏ ।

ଡକ୍ଟର ଶ୍ୟାମସୁନ୍ଦର ଦାସ ପରିମାର୍ଜିତ ଭାଷାଶୈଳୀରେ ଚିନ୍ତାଶୀଳ ଓ ଗମ୍ଭୀର ଭାବୋଦ୍ଦୀପକ ପ୍ରବନ୍ଧ ରଚନା କରିବା ବ୍ୟତୀତ ହିନ୍ଦୀଭାଷାର ପ୍ରଚାର ଓ ପ୍ରସାର, ପ୍ରାଚୀନ ହିନ୍ଦୀସାହିତ୍ୟର ପୁନରୁଦ୍ଧାର ଓ ପ୍ରକାଶନ ତଥା ଅନେକ 'କୋଷ' ଓ 'ଗ୍ରନ୍ଥମାଳା'ର ସମ୍ପାଦନ ପ୍ରଭୃତି ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ ସମ୍ପାଦନ କରି ହିନ୍ଦୀ ସାହିତ୍ୟର ମହୋପକାର ସାଧନ କରିଯାଇ ଅଛନ୍ତି ।

ପଣ୍ଡିତ ରାମଚନ୍ଦ୍ର ଶୁକ୍ଳ ହିନ୍ଦୀରେ ଏକ ନିର୍ଦ୍ଦିଷ୍ଟ ଆଲୋଚନାଶୈଳୀର ପ୍ରବର୍ତ୍ତକ ଭାବରେ ସୁପ୍ରସିଦ୍ଧ । ସେ ଆଧୁନିକ ହିନ୍ଦୀସାହିତ୍ୟର ସର୍ବଶ୍ରେଷ୍ଠ ସମାଲୋଚକ ଓ ଶାସ୍ତ୍ରଜ୍ଞ ଭାବରେ ସ୍ୱୀକୃତ ଓ ସମ୍ମାନିତ । ସୁର, ତୁଳସୀ ଓ ଜାୟସୀଙ୍କ ସଂପର୍କରେ ତାହାଙ୍କ ପାଣ୍ଡିତ୍ୟପୂର୍ଣ୍ଣ ଆଲୋଚନା ଓ ହିନ୍ଦୀ ସାହିତ୍ୟର ଇତିହାସ ଏ ଯାବତ ସିଦ୍ଧାନ୍ତ ମୂଳକ ଗ୍ରନ୍ଥ ଭାବେ ବିବେଚିତ ହୁଏ ।

ଗଣେଶ ବିହାରୀ, ସୁଖଦେବ ବିହାରୀ ଓ ଶ୍ୟାମ ବିହାରୀ 'ମିଶ୍ରବନ୍ଧୁ' ନାମରେ ବହୁ ଧୈର୍ଯ୍ୟ ଅଧ୍ୟୟନ ଓ ପରିଶ୍ରମ ସାପେକ୍ଷ ସାହିତ୍ୟ ଇତିହାସ ଆଲୋଚନା-ମୂଳକ 'ମିଶ୍ରବନ୍ଧୁ ବିନୋଦ' ଓ 'ହିନ୍ଦୀ ନବରତ୍ନ' ପୁସ୍ତକର ପ୍ରଣେତା ଭାବରେ ସୁଖ୍ୟାତି ଅର୍ଜନ କରିଅଛନ୍ତି ।

ପଣ୍ଡିତ ଅଯୋଧ୍ୟା ସିଂହ ଉପାଧ୍ୟାୟ, 'ହରିଔଧ,' 'ଠେଠ ହିନ୍ଦୀ କା ଠାଂଠ' 'ଅଧଖିଲା ଫୁଲ' ନାମକ ଦୁଇଟି ଉପନ୍ୟାସ ଓ 'ହିନ୍ଦୀଭାଷା ଔର ସାହିତ୍ୟକା ବିକାଶ' ପ୍ରଭୃତି ବହୁ ଗ୍ରନ୍ଥ ଶୁଦ୍ଧ, ମାର୍ଜିତ, ଅଳଙ୍କାରପୂର୍ଣ୍ଣ ଭାଷାରେ ରଚନା କରିଅଛନ୍ତି ।

ଉର୍ଦ୍ଦୁ ଭାଷାର ଖ୍ୟାତନାମା ଲେଖକ ପ୍ରେମଚନ୍ଦ ହିନ୍ଦୀଭାଷାରେ ଶ୍ରେଷ୍ଠ ଗଳ୍ପ ଓ ଉପନ୍ୟାସ ଲେଖକ ଭାବରେ ପରିଗଣିତ ହୁଅନ୍ତି । ଦେଶର ସାମାଜିକ, ଧାର୍ମିକ, ରାଜନୈତିକ, ଆର୍ଥିକ ଓ ନୈତିକ ପ୍ରଭୃତି ବିଭିନ୍ନ ପରିସ୍ଥିତି ଓ ସମସ୍ୟାକୁ ଉପଜୀବ୍ୟ କରି ସେ ତାହାଙ୍କ କଥାସାହିତ୍ୟ ରଚନା କରିଅଛନ୍ତି । କଥାବସ୍ତୁ, ଚରିତ୍ରସୃଷ୍ଟି, ବର୍ଣ୍ଣନାଶୈଳୀ ଓ ଭାଷାର କମନୀୟତା ଦୃଷ୍ଟିରୁ ତାହାଙ୍କ ରଚନା ଅତୁଳନୀୟ । ତାହାଙ୍କର ଅଧିକାଂଶ ରଚନା ଚରିତ୍ର-ପ୍ରଧାନ ଓ ମାନବିକ ସହାନୁଭୂତିରେ ଓତଃପ୍ରୋତ । ତାହାଙ୍କ ରଚନାମାନଙ୍କ ମଧ୍ୟରୁ 'ଗୋଦାନ', 'ଗବନ' ପ୍ରଭୃତି ରଚନା ସୁପ୍ରସିଦ୍ଧ ।

ଜୟଶଙ୍କର ପ୍ରସାଦ ଶୁଦ୍ଧ ସାହିତ୍ୟିକ ଭାଷାରେ ନାଟକ, କ୍ଷୁଦ୍ର ଗଳ୍ପ ଓ ଉପନ୍ୟାସ ରଚନା କରି ପ୍ରସିଦ୍ଧି ଲଭ କରିଅଛନ୍ତି ।

## ଆଧୁନିକ ହିନ୍ଦୀ ଉପନ୍ୟାସ—

ଭାରତେନ୍ଦୁ ହରିଶ୍ଚନ୍ଦ୍ରଙ୍କ ସମୟରୁ ହିନ୍ଦୀରେ ଆଧୁନିକ ରୀତିରେ ଉପନ୍ୟାସ ରଚନା ପ୍ରବର୍ତ୍ତିତ ହୋଇଅଛି । ଏହି ସମୟରେ ହିନ୍ଦୀଲେଖକଗଣ ବଙ୍ଗଳା ଓ ଇଂରାଜୀ ଉପନ୍ୟାସ ସହ ପରିଚିତ ହୋଇ ତାହାର ଅନୁବାଦରେ ମନୋନିବେଶ କରିଥିଲେ ଓ ତାହିଁରୁ ପ୍ରେରଣା ଲଭକରି ମୌଳିକ ଉପନ୍ୟାସ ରଚନାରେ ବ୍ରତୀ ହୋଇଥିଲେ । ଏ ଯୁଗର ମୌଳିକ ଉପନ୍ୟାସଲେଖକ ଭାବରେ 'ପରୀକ୍ଷା ଗୁରୁ' ଲେଖକ ଶ୍ରୀନିବାସ ଦାସ 'ନିଃସହାୟ ହିନ୍ଦୁ'ର ଲେଖଙ୍କ ରାଧାକୃଷ୍ଣ ଦାସ ଓ 'ନୂତନ ବ୍ରହ୍ମଚାରୀ' ଏବଂ 'ସୌ ଅଜାନ ଏକ ସୁଜାନ'ର ଲେଖକ ବାଲକୃଷ୍ଣ ଭଟ୍ଟ ସୁପ୍ରସିଦ୍ଧ ।

ହିନ୍ଦୀ ଉପନ୍ୟାସର ଦ୍ୱିତୀୟ ପର୍ଯ୍ୟାୟ ଗୋପାଲରାମ ଗହମରୀଙ୍କ ଅନୂଦିତ ଉପନ୍ୟାସରୁ ଆରବ୍ଧ ହୋଇଅଛି । ଏହାଙ୍କ ବ୍ୟତୀତ ଉଦିତ ନାରାୟଣ ଈଶ୍ୱରୀ ପ୍ରସାଦ ଶର୍ମା, ରୂପନାରାୟଣ ପାଣ୍ଡେୟ ବଙ୍ଗଳା ସାହିତ୍ୟର ବହୁ ଉପନ୍ୟାସକୁ ହିନ୍ଦୀରେ ଅନୁବାଦ କରିଅଛନ୍ତି । ଏହି ଦ୍ୱିତୀୟ ପର୍ଯ୍ୟାୟର ମୌଳିକ ଉପନ୍ୟାସ

ରଚୟିତା ଭାବରେ ଦେବକୀନନ୍ଦନ କ୍ଷତ୍ରୀ, କିଶୋରୀ ଲାଲ ଗୋସ୍ୱାମୀ, ଅଯୋଧ୍ୟା ସିଂହ ଉପାଧ୍ୟାୟ, ଲଜ୍ଜାରାମ ମେହତା ଓ ବ୍ରଜନନ୍ଦନ ସହାୟଙ୍କ ନାମ ଉଲ୍ଲେଖ-ଯୋଗ୍ୟ । ଦେବକୀନନ୍ଦନ 'ଚନ୍ଦ୍ରକାନ୍ତା ସନ୍ତତି' ନାମକ ମାୟା ଓ ଚମତ୍କାରିତା ପୂର୍ଣ୍ଣ ଘଟନା-ପ୍ରଧାନ ଉପନ୍ୟାସ ରଚନା କରି ସ୍ମରଣୀୟ । ବହୁସଂଖ୍ୟକ ଉପନ୍ୟାସ ରଚୟିତା ଭାବରେ ଏହି ପର୍ଯ୍ୟାୟରେ କିଶୋରୀଲାଲ ସୁବିଖ୍ୟାତ । ସେ 'ରଜିଆ ବେଗମ', 'ଲୀଲାବତୀ', 'ଲଖନଉକି କବ୍ର' (କବର) ପ୍ରଭୃତି ପ୍ରାୟ ୬୧ ଖଣ୍ଡ ଉପନ୍ୟାସ ରଚନା କରିଯାଇ ଅଛନ୍ତି । ଅଯୋଧ୍ୟା ସିଂହଙ୍କ ଦୁଇଟି ଉପନ୍ୟାସ ବିଷୟ ପୂର୍ବରୁ ବର୍ଣ୍ଣିତ । 'ଲଜ୍ଜାରାମ', 'ହିନ୍ଦୁ ଗୃହସ୍ଥ', 'ଆଦର୍ଶ ଦମ୍ପତି', 'ବିଗଡ଼ିକା ସୁଧାର' ଓ ବ୍ରଜନନ୍ଦନଙ୍କ 'ସୌନ୍ଦର୍ଯ୍ୟୋପାସକ', 'ରାଧାକାନ୍ତ' ଉପନ୍ୟାସ ଏହି ସମୟର ବିଶିଷ୍ଟ ଉପନ୍ୟାସ ଭାବରେ ପରିଗଣିତ ହୁଏ ।

ହିନ୍ଦୀ ଉପନ୍ୟାସର ତୃତୀୟ ପର୍ଯ୍ୟାୟରେ ଅର୍ଥାତ୍ ପ୍ରଥମ ବିଶ୍ୱଯୁଦ୍ଧୋତ୍ତର କାଳରେ ବହୁ ଔପନ୍ୟାସିକ ମୌଳିକ ଉପନ୍ୟାସ ରଚନାରେ ବ୍ରତୀ ହୋଇଥିଲେ । ପ୍ରେମଚନ୍ଦ୍ରଙ୍କୁ ଏହି ପର୍ଯ୍ୟାୟର ସର୍ବଶ୍ରେଷ୍ଠ ଔପନ୍ୟାସିକ ଭାବରେ ଗ୍ରହଣ କରାଯାଏ । ତାହାଙ୍କ ରଚିତ 'ସେବାସଦନ' 'ପ୍ରେମାଶ୍ରମ', 'ରଙ୍ଗଭୂମି', 'ଗବନ', 'ଗୋଦାନ', 'କର୍ମଭୂମି' ପ୍ରଭୃତି ଉପନ୍ୟାସ ହିନ୍ଦୀ ସାହିତ୍ୟର ଅମୂଲ୍ୟ ସମ୍ପଦ ଭାବରେ ବିବେଚିତ ହୁଏ । ତାହାଙ୍କ ପରେ ଜୟଶଙ୍କର ପ୍ରସାଦଙ୍କ 'କଂକାଲ', 'ତିତଲି', ବିଶ୍ୱମ୍ଭର ନାଥ ଶର୍ମାଙ୍କ 'ମା', 'ଭିଖାରିଣୀ', ପ୍ରତାପ ନାରାୟଣ ଶ୍ରୀବାସ୍ତବଙ୍କ 'ବିଦା' 'ବିକାଶ', 'ବିଜୟ', ବୃନ୍ଦାବନଲାଲ ଶର୍ମାଙ୍କ 'ଗଢ଼ କୁଣ୍ଡାର', 'ବିରାଟାକୀ ପଦ୍ମିନୀ', ଭଗବତୀ ଚରଣ ବର୍ମାଙ୍କ 'ଚିତ୍ରଲେଖା', ଚତୁରସେନ ଶାସ୍ତ୍ରୀଙ୍କ 'ପରଖ', 'ହୃଦୟକୀ ପ୍ୟାସ' ଦେବେନ୍ଦ୍ରକୁମାରଙ୍କ 'ତପୋଭୂମି' 'ସୁନୀତା' ରାଜା ରାଧିକା ରମଣ ସିଂହଙ୍କ 'ରାମ ରହିମ', 'ସୁରଦାସ' 'ଟୁଟାତାରା', ପାଣ୍ଡେୟ ବେଚନ ଶର୍ମା, 'ଉଗ୍ର'ଙ୍କ, 'ଦିଲ୍ଲୀକା ଦଲାଲ', 'ସରକାର ତୁମ୍ହାରୀ ଆଖୋଁ ମେ', 'ବୁଧୁଆକୀ ବେଟୀ' ପ୍ରଭୃତି ଆଧୁନିକ ହିନ୍ଦୀସାହିତ୍ୟର ଶ୍ରେଷ୍ଠ ଉପନ୍ୟାସ ଭାବରେ ବିବେଚିତ ହୋଇଥାଏ ।

ଏକ ନିର୍ଦ୍ଦିଷ୍ଟ ଅଞ୍ଚଳକୁ ଭିତ୍ତିକରି ଉପନ୍ୟାସ ରଚନା କରିବାରେ ଫଣୀଶ୍ୱର ନାଥ 'ରେଣୁ' (୧୯୨୧—), ମାର୍କଣ୍ଡେୟ (୧୯୩୧—), କେଶବ ପ୍ରସାଦ ମିଶ୍ର, ମନୋହର ଶ୍ୟାମଯୋଶୀ ଓ ଶିବପ୍ରସାଦ ସିଂହଙ୍କ ଉଦ୍ୟମ ଉଲ୍ଲେଖଯୋଗ୍ୟ । ରେଣୁଙ୍କ 'ମୟଲା ଅଞ୍ଚଳ', ରୁଦ୍ରଙ୍କ 'ବହତି ଗଙ୍ଗା' (ବନାରସର ଜୀବନ) ଏତାଦୃଶ ଉପନ୍ୟାସ କ୍ଷେତ୍ରରେ ସଫଳ ସୃଷ୍ଟି ଭାବରେ ବିବେଚିତ ହୁଏ ।

# ଆଧୁନିକ ହିନ୍ଦୀ କ୍ଷୁଦ୍ର ଗଳ୍ପ

ଊନବିଂଶ ଶତାବ୍ଦୀର ଶେଷ ଭାଗରେ ବଙ୍ଗସାହିତ୍ୟରେ କ୍ଷୁଦ୍ର ଗଳ୍ପର ପ୍ରସାର ହିନ୍ଦୀ ଲେଖକମାନଙ୍କୁ କ୍ଷୁଦ୍ର ଗଳ୍ପ ରଚନା ଲାଗି ପ୍ରୋତ୍ସାହିତ କରିଥିଲା । ଭାରତେନ୍ଦୁ ହରିଶ୍ଚନ୍ଦ୍ର ସର୍ବପ୍ରଥମେ ଆଧୁନିକ ଶୈଳୀରେ କ୍ଷୁଦ୍ର ଗଳ୍ପ ରଚନାରେ ମନୋନିବେଶ କରିଥିଲେ । ବିଂଶ ଶତାବ୍ଦୀର ପ୍ରଥମ ଦଶକରେ 'ଇଣ୍ଡିଆନ ପ୍ରେସ'ରେ ପ୍ରବନ୍ଧ ଲେଖକ ଭାବରେ ପରିଚିତ ଗିରିଜା କୁମାର ଘୋଷ, 'ଲାଲ ପାର୍ବତୀ ନନ୍ଦନ' ଛଦ୍ମନାମରେ ହିନ୍ଦୀରେ କେତେକ କ୍ଷୁଦ୍ର ଗଳ୍ପ ରଚନା କରିଥିଲେ । ଏହି ବଙ୍ଗୀୟ ଲେଖକଙ୍କୁ ଆଧୁନିକ ହିନ୍ଦୀ କ୍ଷୁଦ୍ର ଗଳ୍ପ କ୍ଷେତ୍ରରେ ପଥପ୍ରଦର୍ଶକ କହିଲେ ଅତ୍ୟୁକ୍ତି ହେବନାହିଁ । ଏହାପରେ 'ସରସ୍ୱତୀ' ଓ ଅନ୍ୟାନ୍ୟ ହିନ୍ଦୀ ପତ୍ରପତ୍ରିକାରେ ବହୁ କ୍ଷୁଦ୍ର ଗଳ୍ପ ପ୍ରକାଶିତ ହେବାକୁ ଲାଗିଲା ।

ପ୍ରେମଚନ୍ଦ୍ରଙ୍କ ଆବିର୍ଭାବ ହିନ୍ଦୀ କ୍ଷୁଦ୍ର ଗଳ୍ପ କ୍ଷେତ୍ରରେ ଏକ ନୂତନ ପର୍ଯ୍ୟାୟ ସୃଷ୍ଟି କରିଥିଲା । ଏହାକୁ ହିନ୍ଦୀ କ୍ଷୁଦ୍ର ଗଳ୍ପର ଦ୍ୱିତୀୟ ପର୍ଯ୍ୟାୟ ଭାବରେ ଗ୍ରହଣ କରାଯାଇପାରେ । ସେ ପ୍ରାୟ ତିନିଶହରୁ ଅଧିକ ଗଳ୍ପ ରଚନା କରିଯାଇ ଅଛନ୍ତି । ଚରିତ୍ରଚିତ୍ରଣ ତଥା କଳାପାଟବ ଦୃଷ୍ଟିରୁ ସେଗୁଡ଼ିକ ଉଚ୍ଚକୋଟୀର । ଜୀବନର ବିଭିନ୍ନ ପରିସ୍ଥିତିକୁ ଉପଜୀବ୍ୟ କରି ତାହାଙ୍କ କ୍ଷୁଦ୍ର ଗଳ୍ପଗୁଡ଼ିକ ରଚିତ । ସମାଜର ପ୍ରାୟ ସମସ୍ତ ଶ୍ରେଣୀର ନରନାରୀଙ୍କ ଚିତ୍ର ତାହାଙ୍କ ଗଳ୍ପରୁ ଉପଲବ୍ଧ ହୋଇଥାଏ । ତାହାଙ୍କର ଏହି ଅମର ରଚନାବଳୀରୁ କେତେକ ଭାରତର ବହୁ ପ୍ରାନ୍ତୀୟ ଭାଷା, ଇଂରାଜୀ ଓ ଜାପାନୀ ପ୍ରଭୃତି ଆନ୍ତର୍ଜାତୀୟ ଭାଷାରେ ଅନୂଦିତ ହୋଇଅଛି ।

ପ୍ରେମଚନ୍ଦ୍ରଙ୍କ ପରେ ହିନ୍ଦୀ କ୍ଷୁଦ୍ର ଗଳ୍ପ ରଚନା କ୍ଷେତ୍ରରେ ସର୍ବାଦୌ ଜୟଶଙ୍କର ପ୍ରସାଦଙ୍କ ନାମ ଉଲ୍ଲେଖଯୋଗ୍ୟ । ତାହାଙ୍କୁ ହିନ୍ଦୀସାହିତ୍ୟର ପ୍ରଥମ ମୌଳିକ କ୍ଷୁଦ୍ର ଗଳ୍ପ ରଚୟିତା ଭାବରେ ଗ୍ରହଣ କରାଯାଏ । ଏହା ଖ୍ରୀ. ୧୯୧୧ରେ 'ଇନ୍ଦୁ' ନାମକ ପତ୍ରିକାରେ ପ୍ରକାଶିତ ହୋଇଥିଲା । ଜୟଶଙ୍କର ପ୍ରାୟ ଅର୍ଦ୍ଧଶତାଧିକ କ୍ଷୁଦ୍ର ଗଳ୍ପ ରଚନା କରିଯାଇ ଅଛନ୍ତି । ତାହା 'ପ୍ରତିଧ୍ୱନି', 'ନବପଲ୍ଲବ', 'ଆଁଧୀ', 'ଆକାଶ ଦୀପ' ପ୍ରଭୃତି ଗଳ୍ପସଂଗ୍ରହ ନାମରେ ସୁବିଦିତ । ମାନସିକ ଅନ୍ତର୍ଦ୍ୱନ୍ଦ୍ୱର ଚିତ୍ରଣ ଲାଗି ପ୍ରସାଦଜୀ ସୁବିଖ୍ୟାତ ।

ସାଂପ୍ରତିକ ସୁପ୍ରତିଷ୍ଠିତ କ୍ଷୁଦ୍ର ଗଳ୍ପ ରଚୟିତାମାନଙ୍କ ମଧ୍ୟରୁ ବିଶ୍ୱମ୍ଭର ନାଥ 'ଜିଜା', ବିଶ୍ୱମ୍ଭର ନାଥଶର୍ମା 'କୌଶିକ', ରାୟକୃଷ୍ଣଦାସ-ସୁଦର୍ଶନ, ପାଣ୍ଡେୟ

ବେଚନ ଶର୍ମା-ଉଗ୍ର, ଜୈନେନ୍ଦ୍ରକୁମାର, ଭଗବତୀ ପ୍ରସାଦ ବାଜପେୟୀ, ଚତୁରସେନ ଶାସ୍ତ୍ରୀ, ସଚ୍ଚିଦାନନ୍ଦ ହୀରାନନ୍ଦ ବାତ୍ସାୟନ, ସତ୍ୟଜୀବନ ବର୍ମା, ଭଗବତୀଚରଣ ବର୍ମା, ମୋହନଲାଲ ମହତୋ, ସୂର୍ଯ୍ୟକାନ୍ତ ତ୍ରିପାଠୀ-ନିରାଲ, ଶ୍ରୀନାଥସିଂହ, ବାଚସ୍ପତି ପାଠକ, ଯଶପାଲ, ରାମଶରଣ ପାହାଡ଼ି ଅଗ୍ରଗଣ୍ୟ ବିବେଚିତ ହୁଅନ୍ତି । ଏହିମାନଙ୍କ ଉଚ୍ଚାଙ୍ଗ ଗଳ୍ପ ସୃଷ୍ଟି ଫଳରେ ହିନ୍ଦୀନାଟକ ଓ ଉପନ୍ୟାସ ଅପେକ୍ଷା କ୍ଷୁଦ୍ର ଗଳ୍ପ ଅଧିକ ସମୁନ୍ନତ ତଥା ସମାଦୃତ ହୋଇପାରିଅଛି ।

## ଆଧୁନିକ ହିନ୍ଦୀନାଟକ

୧୮୬୮ ମସିହାରେ ସର୍ବାଦୌ ଭାରତେନ୍ଦୁ ହରିଶ୍ଚନ୍ଦ୍ରଙ୍କ ଦ୍ୱାରା ଆଧୁନିକ ରୀତିରେ ନାଟକ ପ୍ରଣୀତ ହୋଇଥିଲା । ବଙ୍ଗଳା ନାଟକରୁ ହିଁ ସେ ପ୍ରେରଣା ଲଭି କରି ନାଟକ ରଚନାରେ ପ୍ରବୃତ୍ତ ହୋଇଥିଲେ । ସେ ପ୍ରାୟ ୧୬।୧୮ଟି ନାଟକ ପ୍ରଣୟନ କରିଅଛନ୍ତି । ତାହାଙ୍କ ପ୍ରଥମ ନାଟକ 'ବିଦ୍ୟାସୁନ୍ଦର' ଏକ ବଙ୍ଗଳା ନାଟକର ଅନୁବାଦ ମାତ୍ର । ସଂସ୍କୃତ ଓ ପ୍ରାକୃତରୁ ସେ 'ସତ୍ୟ ହରିଶ୍ଚନ୍ଦ୍ର', 'କର୍ପୁର-ମଞ୍ଜରୀ' ଓ ରତ୍ନାବଳୀ ନାଟକକୁ ମଧ୍ୟ ଅନୁବାଦ କରିଅଛନ୍ତି । ସେକ୍‌ସପିଅରଙ୍କ ଇଂରାଜୀ ନାଟକ 'ମର୍ଚ୍ଚାଣ୍ଟ ଅଫ୍ ଭେନିସ' ମଧ୍ୟ ତାହାଙ୍କଦ୍ୱାରା ଅନୂଦିତ । ତାହାଙ୍କ ରଚିତ ମୌଳିକ ନାଟକମାନଙ୍କ ମଧ୍ୟରୁ 'ଚନ୍ଦ୍ରାବଳୀ', 'ନୀଳଦେବୀ' ଶ୍ରେଷ୍ଠ ବିବେଚିତ ହୁଏ । ଏତଦ୍‌ବ୍ୟତୀତ ତାହାଙ୍କ 'ଭାରତ ଦୁର୍ଦ୍ଦଶା' ମଧ୍ୟ ଉଚ୍ଚ ପ୍ରଶଂସା ଲଭ କରିଅଛି । ଭାରତେନ୍ଦୁଙ୍କ ପରେ ତାହାଙ୍କୁ ଅନୁକରଣ କରି ନାଟକ ରଚନା କ୍ଷେତ୍ରରେ ପ୍ରତାପ ନାରାୟଣ ମିଶ୍ର, ବଦରୀ ନାରାୟଣ ଚୌଧରୀ, ବାଲକୃଷ୍ଣ ଭଟ୍ଟ, ଶ୍ରୀନିବାସ ଦାସ, ତୋତାରାମ କାଶୀନାଥଖତ୍ରୀ ପ୍ରଭୃତି ଲେଖକମାନେ ମୁଖ୍ୟସ୍ଥାନ ଲଭ କରିଅଛନ୍ତି । ଏହିପରି ଭାରତେନ୍ଦୁ ଓ ତାଙ୍କର ସମକାଳୀନ ବହୁ ଲେଖକ ସଂସ୍କୃତ, ଇଂରାଜୀ ଓ ବଙ୍ଗଳାରୁ କେତେକ ନାଟକକୁ ହିନ୍ଦୀରେ ଅନୁବାଦ କରିଥିଲେ ।

ହିନ୍ଦୀ ନାଟ୍ୟ ସାହିତ୍ୟ ବିକାଶର ଦ୍ୱିତୀୟ ପର୍ଯ୍ୟାୟ ମୁଖ୍ୟତଃ ଅନୂଦିତ ନାଟକ-ମାନଙ୍କ ଦ୍ୱାରା ସମୃଦ୍ଧି ଲଭ କରିଥିଲା । ସଂସ୍କୃତ ନାଟକର ପ୍ରଥମ ଅନୁବାଦକ ଭାବେ ରାଜା ଲକ୍ଷ୍ମଣସିଂହଙ୍କ ନାମ ଉଲ୍ଲେଖଯୋଗ୍ୟ । ତାହାଙ୍କ ପରେ ରାୟବାହାଦୂର ଲାଲା ସୀତାରାମ ୧୮୮୩ ରୁ ୯୫ ବର୍ଷ ମଧ୍ୟରେ 'ନାଗାନନ୍ଦ', 'ମୃଚ୍ଛକଟିକ', 'ମହାବୀର ଚରିତ', 'ଉତ୍ତରରାମ ଚରିତ' 'ମାଲତୀମାଧବ', 'ମାଲବିକାଗ୍ନିମିତ୍ର' ପ୍ରଭୃତି ନାଟକ ଗୁଡ଼ିକୁ ଅନୁବାଦ କରିଥିଲେ । ତାହାଙ୍କ ସମକାଳରେ ପଣ୍ଡିତ ଜ୍ୱାଳା ପ୍ରସାଦ ବେଣୀସଂହାର', 'ଅଭିଜ୍ଞାନ ଶାକୁନ୍ତଳମ୍', ବାଲମୁକୁନ୍ଦ ଗୁପ୍ତ 'ରତ୍ନାବଳୀ ନାଟିକା',

ସତ୍ୟନାରାୟଣ କବିରତ୍ନ 'ଉତ୍ତର ରାମଚରିତ୍ର' ଓ 'ମାଲତୀମାଧବ' ନାଟକକୁ ହିନ୍ଦୀରେ ଅନୁବାଦ କରିଥିଲେ ।

ରାମକୃଷ୍ଣ ବର୍ମା, ଗୋପାଳରାମ ଗହମରୀ ବଙ୍ଗଳାରୁ ବୀରନାରୀ, କୃଷ୍ଣକୁମାରୀ, ପଦ୍ମାବତୀ, ବନବୀର, ବଭ୍ରୁବାହନ, ଚିତ୍ରାଙ୍ଗଦା, ଦେଶଦଶା, ବିଦ୍ୟାବିନୋଦ ପ୍ରଭୃତି ନାଟକଗୁଡ଼ିକୁ ଅନୁବାଦ କରିଥିଲେ । ଦ୍ୱିଜେନ୍ଦ୍ରଲାଲଙ୍କର ଉସ୍ପାର, ସାହଜହାଁ (ସାହାଜାହାନ), ଦୁର୍ଗାଦାସ, ତାରାବାଈ; ରବୀନ୍ଦ୍ରନାଥଙ୍କର ଅଚଳାୟତନ, ଗିରୀଶ ଘୋଷଙ୍କର ପତିବ୍ରତା ପ୍ରଭୃତି ନାଟକଗୁଡ଼ିକୁ ପଣ୍ଡିତ ରୂପନାରାୟଣ ହିନ୍ଦୀ ଭାଷାରେ ଅନୁବାଦ କରିଅଛନ୍ତି ।

ଊନବିଂଶ ଶତାବ୍ଦୀର ଶେଷ ଦଶକରେ କେତେକ ଇଂରାଜୀ ନାଟକକୁ ହିନ୍ଦୀରେ ଅନୁବାଦ କରିବାର ପ୍ରଚେଷ୍ଟା ହୋଇଥିଲା । ଆନୁମାନିକ ୧୮୯୫ ଖ୍ରୀ: ଅ:ରେ ଗୋପୀନାଥ 'ରୋମିଓ ଜୁଲିଏଟ୍ (ପ୍ରେମଲୀଲା), ଆଜ୍ ୟୁ ଲାଇକ୍ ଇଟ୍, ମର୍ଚ୍ଚାଣ୍ଟ ଅଫ୍ ଭିନିସ୍ ପ୍ରଭୃତି ସେକ୍ସପୀଏରୀୟ ନାଟକଗୁଡ଼ିକୁ ଅନୁବାଦ କରିଥିଲେ । ଏହାପରେ ମଥୁରାପ୍ରସାଦ ଚୌଧୁରୀ ମାକ୍‌ବେଥ ଓ ହାମଲେଟ୍‌କୁ ଅନୁବାଦ କରିଥିଲେ । ଏହି ପର୍ଯ୍ୟାୟରେ କିଶୋରୀଲାଲ ଗୋସ୍ୱାମୀ, ଅଯୋଧ୍ୟାସିଂହ ଉପାଧ୍ୟାୟ, ବଳଦେବ ପ୍ରସାଦ, ଜ୍ୱାଲାପ୍ରସାଦ, ଶିବନନ୍ଦନ ସହାୟ, ଦେବୀପ୍ରସାଦ ପ୍ରଭୃତି ନାଟ୍ୟକାରଗଣ କେତେକ ମୌଳିକ ନାଟକ ରଚନା କରି ହିନ୍ଦୀନାଟ୍ୟ ସାହିତ୍ୟର ସମୃଦ୍ଧିରେ ସହାୟତା କରିଥିଲେ । କିଶୋରୀଲାଲଙ୍କର ସାମାଜିକ ପ୍ରହସନ 'ଚୌପଟ୍ ଚପେଟ୍', ଅଯୋଧ୍ୟାସିଂହଙ୍କର 'ରୁକ୍ମିଣୀ ପରିଣୟ' 'ପ୍ରଦ୍ୟୁମ୍ନ ବିଜୟ', ବଳଦେବ ପ୍ରସାଦଙ୍କର 'ମୀରାବାଈ' 'ପ୍ରଣୟୀସମିଳନ', ଜ୍ୱାଲାପ୍ରସାଦଙ୍କର 'ସୀତାବନବାସ' ପ୍ରଭୃତି ନାଟକଗୁଡ଼ିକ ଏହି ପର୍ଯ୍ୟାୟର ଶ୍ରେଷ୍ଠ ରଚନା ଭାବରେ ଉଲ୍ଲେଖଯୋଗ୍ୟ । ଏହି ଯୁଗର ନାଟକର କଥାବସ୍ତୁ ମୁଖ୍ୟତଃ ପୁରାଣମାନଙ୍କରୁ ଗୃହୀତ ହେଉଥିଲା ।

ସ୍ଥୂଳତଃ ୧୯୩୦ ପରଠାରୁ ହିନ୍ଦୀନାଟ୍ୟ ସାହିତ୍ୟକ୍ଷେତ୍ରରେ ଦ୍ରୁତବିକାଶ ସାଧିତ ହୋଇଥିବାର ଲକ୍ଷ୍ୟ କରାଯାଏ । ବିଭିନ୍ନ ସାହିତ୍ୟରୁ ବହୁ ନାଟକ ଅନୁବାଦ କରାଯାଇଥିଲେ ହେଁ ଆଲୋଚ୍ୟକାଳ ମଧ୍ୟରେ ମୌଳିକ ନାଟକ ସୃଷ୍ଟି ବିଷୟରେ ଲେଖକମାନେ ବିଶେଷ ଅବହିତ ହୋଇଥିଲେ । ମୌଳିକ ନାଟକ ରଚୟିତାଭାବେ ଜୟଶଙ୍କର ପ୍ରସାଦ, ହରିକୃଷ୍ଣ ପ୍ରେମୀ, ଲକ୍ଷ୍ମୀନାରାୟଣ ମିଶ୍ର, ଜୟଶଙ୍କର ଭଟ୍ଟ, ଗୋବିନ୍ଦବଲ୍ଲଭ ପନ୍ତ୍, ଶେଠ ଗୋବିନ୍ଦ ଦାସ ସୁବିଖ୍ୟାତ । ଜୟଶଙ୍କର ପ୍ରସାଦଙ୍କ 'ସ୍କନ୍ଦଗୁପ୍ତ', 'ଅଜାତଶତ୍ରୁ', 'ଜନ୍ମେଜୟକା ନାଗଯଜ୍ଞ' ଓ 'ଚନ୍ଦ୍ରଗୁପ୍ତ' ନାଟକ

ଉଲ୍ଲେଖ ବିବେଚିତ ହୁଏ । ହରିକୃଷ୍ଣଙ୍କ 'ରକ୍ଷାବନ୍ଧନ', 'ଶିବାସାଧନ'; ଲକ୍ଷ୍ମୀ-ନାରାୟଣଙ୍କ 'ମୁକ୍ତି କା ରହସ୍ୟ','ସିନ୍ଦୂର କୀ ହୋଲି', 'ରାକ୍ଷସ କା ମନ୍ଦିର', 'ଆଧିରାତ୍ରି'; ଭଟ୍ଟଜୀଙ୍କ 'ଦାହିର୍ ୟା ସିନ୍ଧପତନ', 'ବିକ୍ରମାଦିତ୍ୟ', 'କମଳା', 'ଅମ୍ବା', 'ବିଶ୍ୱାମିତ୍ର'; ପନ୍ତଙ୍କର 'ବରମାଳ','ରାଜମୁକୁଟ', 'ଅଙ୍ଗୁରକୀ ବେଟୀ'; ଗୋବିନ୍ଦଦାସଙ୍କ 'କର୍ତ୍ତବ୍ୟ', 'ହର୍ଷ', 'ପ୍ରକାଶ', 'ସେବାପଥ' ପ୍ରଭୃତି ନାଟକ ପ୍ରସିଦ୍ଧ । ଜୟଶଙ୍କର ଓ ହରିକୃଷ୍ଣ ତାହାଙ୍କ ନାଟକର କଥାବସ୍ତୁ ମୁଖ୍ୟତଃ ଇତିହାସରୁ ହିଁ ଗ୍ରହଣ କରିଛନ୍ତି । ଐତିହାସିକ ନାଟକ ରଚୟିତା ଭାବେ ଏହି ଦୁଇ ଲେଖକ ସୁପରିଚିତ । ଲକ୍ଷ୍ମୀନାରାୟଣ ସମସ୍ୟା ପ୍ରଧାନ ନାଟକ ରଚୟିତା ଭାବେ ଓ ଉଦୟଶଙ୍କର ପୌରାଣିକ ନାଟ୍ୟରଚୟିତା ଭାବେ ମଧ୍ୟ ସୁଖ୍ୟାତି ଲାଭ କରିଅଛନ୍ତି । ଗୋବିନ୍ଦବଲ୍ଲଭ ଓ ଗୋବିନ୍ଦ ଦାସ ବିବିଧ ବିଷୟକ ନାଟ୍ୟରଚୟିତା ଭାବେ ପ୍ରଖ୍ୟାତ ।

ଏତଦ୍‌ବ୍ୟତୀତ ପାଣ୍ଡେୟ ବେଚନଶର୍ମା 'ଉଗ୍ର', ଜଗନ୍ନାଥ ପ୍ରସାଦ, ରାଧାକୃଷ୍ଣ ଦାସ, ଚତୁରସେନ ଶାସ୍ତ୍ରୀ, ସୁମିତ୍ରାନନ୍ଦନ ପନ୍ତ, ମାଖନଲାଲ ଚତୁର୍ବେଦୀ, ବଦ୍ରିନାଥ ଭଟ୍ଟ, ସିୟାରାମଶରଣ, କୈଳାସନାଥ ଭଟ୍ଟନଗର ପ୍ରଭୃତି ମଧ୍ୟ କେତେକ ନାଟକ ରଚନା କରିଅଛନ୍ତି । ସାମ୍ପ୍ରତିକ କାଳରେ ଇଂରାଜୀ ସାହିତ୍ୟର ଆଦର୍ଶରେ ଏକାଙ୍କ ନାଟକ ରଚନା ପ୍ରତି ବହୁ ନାଟ୍ୟକାର ଅନୁରକ୍ତ ହୋଇଅଛନ୍ତି । ଏକାଂକ ନାଟକ ରଚୟିତା ଭାବେ ଜୟଶଙ୍କର ପ୍ରସାଦ, ରାମକୁମାର ବର୍ମା (୧୯୦୫), ଭଗବତୀଚରଣ ବର୍ମା, ଉଦୟଶଙ୍କର ଭଟ୍ଟ, ସଦ୍‌ଗୁରୁଶରଣ ଅବସ୍ଥି ପ୍ରଭୃତି ସୁଖ୍ୟାତି ଲାଭ କରିଅଛନ୍ତି ।

## ଆଧୁନିକ ହିନ୍ଦୀ ପ୍ରବନ୍ଧ ଓ ଆଲୋଚନା—

ଭାରତେନ୍ଦୁଙ୍କର ସମୟରୁ ବିବିଧ ବିଷୟକ ପ୍ରବନ୍ଧ ରଚନା ପ୍ରବର୍ତ୍ତିତ ହୋଇ ଆସିଛି । ସାମାଜିକ, ରାଜନୈତିକ, ଧାର୍ମିକ ପ୍ରଭୃତି ସାମୟିକ ବିଷୟ ସମ୍ବନ୍ଧରେ ଏହି ସମୟରେ ଅଧିକ ସଂଖ୍ୟକ ପ୍ରବନ୍ଧ ରଚିତ ହୋଇଥିଲା । କେତେକ ଲେଖକ ଜୀବନ ଚରିତ, ଐତିହାସିକ ଘଟଣା, ନୈତିକ ଆଚରଣ, ପର୍ବପାଳନ ପ୍ରଭୃତି ବିବିଧ ବିଷୟରେ ପ୍ରବନ୍ଧ ମଧ୍ୟ ରଚନା କରିଥିଲେ । ଏହି ସମୟରେ ସାହିତ୍ୟିକ ପ୍ରବନ୍ଧ ଆଶାନୁରୂପ ରଚିତ ହୋଇ ନ ଥିଲା । ହିନ୍ଦୀ ପ୍ରବନ୍ଧ ସାହିତ୍ୟର ଏହି ପ୍ରାଥମିକ ପର୍ଯ୍ୟାୟର ଶ୍ରେଷ୍ଠ ଲେଖକ ଭାବେ ପ୍ରତାପ ନାରାୟଣ ମିଶ୍ର ଓ ବାଲକୃଷ୍ଣ ଭଟ୍ଟଙ୍କ ନାମ ଉଲ୍ଲେଖଯୋଗ୍ୟ ।

ହିନ୍ଦୀ ପ୍ରବନ୍ଧ ସାହିତ୍ୟର ପରବର୍ତ୍ତୀ ପର୍ଯ୍ୟାୟରେ ମହାବୀର ପ୍ରସାଦ ଦ୍ୱିବେଦୀ, ଗଙ୍ଗାପ୍ରସାଦ ଅଗ୍ନିହୋତ୍ରୀ, ମାଧବ ପ୍ରସାଦ ମିଶ୍ର, ବାଲମୁକୁନ୍ଦ ଗୁପ୍ତ, ଗୋବିନ୍ଦ-

ନାରାୟଣ ମିଶ୍ର, ଶ୍ୟାମସୁନ୍ଦର ଦାସ, ରାମଚନ୍ଦ୍ର ଶୁକ୍ଳ, ଚନ୍ଦ୍ରଧର ଶର୍ମା, ପୂର୍ଣ୍ଣ ସିଂହ ପ୍ରଭୃତି ଲେଖକଗଣ ସ୍ୱୀୟ ରଚନାବଳୀଦ୍ୱାରା ହିନ୍ଦୀସାହିତ୍ୟକୁ ପରିପୁଷ୍ଟ କରିଅଛନ୍ତି । ଏହି ସମୟରେ ରଚିତ ପ୍ରବନ୍ଧର ବିଷୟବସ୍ତୁର ପରିସର ଯେ ଅଧିକ ବଢ଼ିଯାଇଥିଲା, ଏହା କହିବା ଅନାବଶ୍ୟକ । ଦର୍ଶନ, ସାହିତ୍ୟ ଆଲୋଚନା, ପୁରାତତ୍ତ୍ୱ, ବୈଜ୍ଞାନିକ ଆବିଷ୍କାର, ମନୋବିଜ୍ଞାନ, ଅର୍ଥଶାସ୍ତ୍ର, ବିଦେଶୀ ସାହିତ୍ୟ ସମ୍ପର୍କୀୟ ବିସ୍ତୃତ ଆଲୋଚନା ଏହି ସମୟର ପ୍ରବନ୍ଧର ବିଷୟୀଭୂତ ହୋଇଥିଲା ।

ମହାବୀର ପ୍ରସାଦ ଦ୍ୱିବେଦୀ ଇଂରାଜୀ ସାହିତ୍ୟର ବିଶିଷ୍ଟ ପ୍ରାବନ୍ଧିକ ଲର୍ଡ଼ ବେକନ୍‌ଙ୍କର ପ୍ରବନ୍ଧାବଳୀ (ବେକନ ବିଚାର ରତ୍ନାବଳୀ) ; ଗଙ୍ଗାପ୍ରସାଦ ଅଗ୍ନିହୋତ୍ରୀ ମରାଠୀ ଲେଖକ ଚିପଲୁଂକାରଙ୍କ ପ୍ରବନ୍ଧାବଳୀ ( ନିବନ୍ଧ ମାଳାଦର୍ଶ ) ହିନ୍ଦୀରେ ଅନୁବାଦ କରିଥିଲେ ।

ଚଳିତ ଶତାବ୍ଦୀର ଦ୍ୱିତୀୟ ଦଶକ ମଧ୍ୟରେ ସମାଲୋଚନା ସାହିତ୍ୟର ବିକାଶ ସାଧିତ ହୋଇଥିଲା । 'ସରସ୍ୱତୀ' ପତ୍ରିକାର ପ୍ରକାଶନ ସଙ୍ଗେ ସଙ୍ଗେ ମହାବୀର ପ୍ରସାଦ ଦ୍ୱିବେଦୀ ହିନ୍ଦୀଭାଷା ସାହିତ୍ୟ ସମ୍ପର୍କରେ ଆଲୋଚନା ଲାଗି ଦିକ୍‌ଦର୍ଶନ ଦେଇଥିଲେ । ଏହି ପତ୍ରିକାରେ ହିଁ ପ୍ରଥମେ ହିନ୍ଦୀ ପୁସ୍ତକମାନଙ୍କର ଆଲୋଚନା ଧାରାବାହିକ ରୂପେ ପ୍ରକାଶିତ ହେବାକୁ ଲାଗିଲା । ହିନ୍ଦୀଭାଷାକୁ ଶୁଦ୍ଧ ଓ ଏହାର ଶୈଳୀକୁ ବ୍ୟବସ୍ଥିତ କରିବାଲାଗି ଏହି ପୁସ୍ତକ ସମାଲୋଚନା ବହୁ ସହାୟତା କରିଅଛି । କ୍ରମେ ଅନ୍ୟ ପତ୍ରପତ୍ରିକାରେ ପୁସ୍ତକ ସମାଲୋଚନା ଅନ୍ୟତମ ବିଭାଗ-ରୂପେ ପରିଗଣିତ ହୋଇଥିଲା ।

ଏତଦ୍‌ବ୍ୟତୀତ ସ୍ୱତନ୍ତ୍ର ଭାବେ ସାହିତ୍ୟ ସମାଲୋଚକ ଭାବରେ ପଦ୍ମସିଂହ ଶର୍ମା ( ସତସଈ କୀ ଟୀକା ), ପଣ୍ଡିତ କୃଷ୍ଣବିହାରୀ ମିଶ୍ର ( ଦେବ ଔର ବିହାରୀ ), ଲାଲ ଭଗବାନ ଦିନ୍ ( ବିହାରୀ ଔର ଦେବ ) ପ୍ରଭୃତି ଲେଖକଗଣ ସାହିତ୍ୟ ଆଲୋଚନା କ୍ଷେତ୍ରରେ ସ୍ୱତନ୍ତ୍ର ବିଚାରଧାରା ଓ ପାଣ୍ଡିତ୍ୟର ପରିଚୟ ପ୍ରଦାନ କରିଥିଲେ ।

ଆଧୁନିକ ହିନ୍ଦୀ ସାହିତ୍ୟାଲୋଚନା କ୍ଷେତ୍ରରେ ପଣ୍ଡିତ ରାମଚନ୍ଦ୍ର ଶୁକ୍ଳଙ୍କର କାର୍ଯ୍ୟ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ସୁର, ତୁଳସୀ ଏବଂ ଜାୟସୀଙ୍କର ସାହିତ୍ୟର ଆଲୋଚନା କରି ସେ ଯେଉଁ ଆଲୋଚନା ପଦ୍ଧତି ପ୍ରଚଳନ କରିଥିଲେ, ତାହା କେଶବଦାସ ପଦ୍ମାକର, ମୈଥିଳୀଶରଣ, ଜୟଶଙ୍କର ପ୍ରସାଦ, ସୁମିତ୍ରାନନ୍ଦନ ଓ ଅନ୍ୟ କବିମାନଙ୍କ ସାହିତ୍ୟର ଆଲୋଚନା ଲାଗି ସାହିତ୍ୟ ଆଲୋଚକମାନଙ୍କୁ ଆଦର୍ଶ ଓ ପ୍ରେରଣା ଯୋଗାଇଥିଲା । ଏହି ଶ୍ରେଣୀର ଆଲୋଚକମାନଙ୍କ ମଧ୍ୟରୁ ନନ୍ଦଦୁଲାର ବାଜପେଇ,

ହଜାରୀ ପ୍ରସାଦ ଦ୍ୱିବେଦୀ, ପୀତାମ୍ବର ଦତ୍ତ ବଡ଼ଥ୍ୱାଲ, ରାମକୃଷ୍ଣ ଶୁକ, ଶାନ୍ତିପ୍ରିୟ ଦ୍ୱିବେଦୀ, ରାମନାଥ (ସୁମନ), ଗିରିଜାଶଙ୍କର ଶୁକ୍ଳଙ୍କର ନାମ ଉଲ୍ଲେଖଯୋଗ୍ୟ ।

ପାଶ୍ଚାତ୍ୟ ଓ ପ୍ରାଚ୍ୟ କାବ୍ୟ ମୀମାଂସାକୁ ଭିତ୍ତିକରି ଶ୍ୟାମସୁନ୍ଦର ଦାସ ଏକ ନୂତନ ସମାଲୋଚନା ପଦ୍ଧତି ପ୍ରବର୍ତ୍ତନ କରାଇଥିଲେ । ତାହାଙ୍କର 'ସାହିତ୍ୟାଲୋଚନ', 'ଆଲୋଚନାଦର୍ଶ', 'ସମାଲୋଚନା ତତ୍ତ୍ୱ', 'କାହାଣୀକଳା' ପ୍ରଭୃତି ପୁସ୍ତକଗୁଡ଼ିକ ବିଶିଷ୍ଟ ଗ୍ରନ୍ଥ ଭାବେ ସ୍ୱୀକୃତ । ଏତଦ୍‌ବ୍ୟତୀତ, ନରେନ୍ଦ୍ର, ନଗେନ୍ଦ୍ର, ନନ୍ଦଦୁଲାଲ ବାଜପେୟୀ ମଧ୍ୟ ଆଧୁନିକ ତୁଳନାତ୍ମକ ସାହିତ୍ୟ ଆଲୋଚକ ଭାବରେ ପ୍ରସିଦ୍ଧି ଲାଭ କରିଅଛନ୍ତି ।

ବିଶ୍ୱନାଥ ପ୍ରସାଦ ମିଶ୍ର, କୃଷ୍ଣଶଙ୍କର ଶୁକ୍ଳ, ନନ୍ଦଦୁଲାଲ ବାଜପେୟୀ, ନଗେନ୍ଦ୍ର, ସତ୍ୟେନ୍ଦ୍ର ପ୍ରଭୃତି ଆଚାର୍ଯ୍ୟ ଶୁକ୍ଳଙ୍କ ପ୍ରବର୍ତ୍ତିତ ଶିକ୍ଷାତ୍ମକ ପରଂପରାକୁ ରକ୍ଷା କରି, ପ୍ରାଚ୍ୟ ଓ ପାଶ୍ଚାତ୍ୟ ଆଲୋଚନା ତତ୍ତ୍ୱ ଭିତ୍ତିରେ କାବ୍ୟ ବିଶ୍ଳେଷଣ ଓ ଅନୁଶୀଳନରେ ପ୍ରବୃତ୍ତ ହୋଇଅଛନ୍ତି । ଐତିହାସିକ ଆଲୋଚନା କ୍ଷେତ୍ରରେ ହଜାରି ପ୍ରସାଦ ଦ୍ୱିବେଦୀଙ୍କ ନାମ ସର୍ବାଦୌ ଉଲ୍ଲେଖଯୋଗ୍ୟ । ମନସ୍ତାତ୍ତ୍ୱିକ ଆଲୋଚନା କ୍ଷେତ୍ରରେ ନଗେନ୍ଦ୍ର, ଇଲାଚନ୍ଦ୍ର ଯୋଷୀ ଓ ଅଜ୍ଞେୟଙ୍କ କୃତିତ୍ୱ ମହତ୍ତ୍ୱପୂର୍ଣ୍ଣ । ସମାଜବାଦୀ ଆଲୋଚକ ଭାବରେ ଶିବଦାନ ସିଂହ ଚୌହାନ ଓ ରାମବିଳାସ ଶର୍ମା ଖ୍ୟାତିପ୍ରାପ୍ତ । ସିଦ୍ଧାନ୍ତମୂଳକ ଆଲୋଚନାକ୍ଷେତ୍ରରେ ବିକାଶ ସୁସ୍ପଷ୍ଟତର । ଅଧୁନା ବହୁ ହିନ୍ଦୀ ଆଲୋଚକ ପ୍ରାଚ୍ୟ ଓ ପାଶ୍ଚାତ୍ୟ ସାହିତ୍ୟ ତତ୍ତ୍ୱ ସମ୍ପର୍କରେ ନୂତନ ଆଲୋକପାତ କରି ଉଭୟର ସମନ୍ୱୟ ସମ୍ପାଦନ କରିବାରେ ସାଫଲ୍ୟଲାଭ କରିଅଛନ୍ତି । ଡ. ନଗେନ୍ଦ୍ରଙ୍କ 'ଭାରତୀୟ କାବ୍ୟଶାସ୍ତ୍ର କି ଭୂମିକା' ଓ 'ରୀତି କାବ୍ୟ କି ଭୂମିକା' ଓ ସୁଧାଂଶୁଙ୍କ 'କାବ୍ୟମେ ଅଭିବ୍ୟଞ୍ଜନା ବାଦ' ଓ 'ଜୀବନ କେ ତତ୍ତ୍ୱ ଔର କାବ୍ୟ କେ ସିଦ୍ଧାନ୍ତ' ଏତାଦୃଶ ଆଲୋଚନାତ୍ମକ ଗ୍ରନ୍ଥ ଭାବରେ ଉଲ୍ଲେଖଯୋଗ୍ୟ ।

ପରିଶେଷରେ ଏହା ହିଁ କୁହାଯାଇପାରେ ଯେ ଜାତୀୟଭାଷା ଭାବରେ ହିନ୍ଦୀର ପ୍ରାଚୀନ ଐତିହାସିକ ଓ ସାଂସ୍କୃତିକ ପୃଷ୍ଠଭୂମି ଯେପରି ସମୃଦ୍ଧ ଓ ବଳିଷ୍ଠ, ଏହାର ଆଧୁନିକ ସାହିତ୍ୟ ସେହିପରି ବିବିଧ ବିଭବରେ ସମୃଦ୍ଧତର । ସାହିତ୍ୟର ପ୍ରତ୍ୟେକ ବିଭାବରେ ଆଜି ନୂତନ ସୃଷ୍ଟିର କର୍ମପ୍ରବଣତା ପ୍ରତିଭାତ ହେଉଅଛି । ଜାତୀୟ ତଥା ଆନ୍ତର୍ଜାତୀୟ କ୍ଷେତ୍ରରୁ ପ୍ରେରଣା ନେଇ ଏହା କ୍ରମଶଃ ଉଜ୍ଜୀବିତ ହେଉଅଛି । ଏକଦା ବ୍ରଜଭାଷା ଓ ଅବଧୀ ଭାଷାକୁ ଆତ୍ମସ୍ଥ କରି ଯାହା ବଳିଷ୍ଠ ହୋଇଥିଲି, ତାହା ଅନ୍ୟାନ୍ୟ ଭାଷାରୁ ଆହରଣ କରି ଯେ କ୍ରମେ ଅଧିକ ପରିପୁଷ୍ଟ ହେବ, ଏହା ଆଶା କରିବା ସ୍ୱାଭାବିକ ।

---

# ଉର୍ଦ୍ଦୁ ସାହିତ୍ୟ

## ଉର୍ଦ୍ଦୁ ଭାଷା—

ଉର୍ଦ୍ଦୁ ଏକ ତୁର୍କୀ ଭାଷାର ଶବ୍ଦ । ଏହାର ଅର୍ଥ 'ସାହି ଶିବିର' ( military camp ) ବା ସେନାନିବାସ । ସମ୍ଭବତଃ ବାବରଙ୍କ ଆଗମନ ସହିତ ଏହି ଶବ୍ଦଟି ଭାରତକୁ ଆସିଥିଲା ଓ ସାହି ଶିବିର ବା ସାହି କଲ୍ଲା ଅର୍ଥରେ ସର୍ବପ୍ରଥମେ ପ୍ରଯୁକ୍ତ ହେଲା ; କିନ୍ତୁ ଏହା ଆଜି ଏକ ଭାଷାକୁ ହିଁ ବୁଝାଇଥାଏ । ଏହି ଉର୍ଦ୍ଦୁ ଭାଷା ହିନ୍ଦୁ ଓ ମୁସଲମାନ ସଂସ୍କୃତି ସମ୍ମିଶ୍ରଣର ପ୍ରତୀକ ଓ ଭାରତର ଶିକ୍ଷିତ ମୁସଲମାନମାନଙ୍କର ଏହା ସାହିତ୍ୟିକ ଭାଷା ଭାବରେ ପରିଚିତ । କେତେକଙ୍କ ମତରେ ଖଡ଼ିବୋଲି ହିନ୍ଦୀର ଏହା ଏକ ବିକଶିତ ରୂପ । ଉର୍ଦ୍ଦୁ ଭାଷା ପାକିସ୍ଥାନର ରାଜଭାଷା, ଜମ୍ମୁ ଓ କାଶ୍ମୀରର ସରକାରୀ ଭାଷା ଏବଂ ଆନ୍ଧ୍ର ପ୍ରଦେଶର ଦ୍ୱିତୀୟ ଆଞ୍ଚଳିକ ଭାଷା ଭାବରେ ଗୃହୀତ । ଏହି ଭାଷା ପାର୍ଶୀ ଲିପିରେ ଲିଖିତ ହୁଏ ଏବଂ ଏଥିରେ ଫାରସୀ ଓ ଆରବୀ ଶବ୍ଦର ବାହୁଲ୍ୟ ଦେଖିବାକୁ ମିଳିଥାଏ । ସାହିତ୍ୟିକ ପରିବେଶ, ଶବ୍ଦ ଓ ଲିପିର ପାର୍ଥକ୍ୟ ଯୋଗୁଁ ହିନ୍ଦୀ ଓ ଉର୍ଦ୍ଦୁ ଦୁଇଟି ଭାଷା ବୋଲି ସାଧାରଣତଃ ଗୃହୀତ ହେଉଥିଲେ ହେଁ ଭାଷାତତ୍ତ୍ୱ ଦୃଷ୍ଟିରୁ ହିନ୍ଦୀ ଓ ଉର୍ଦ୍ଦୁକୁ ଏକ ଭାଷା କୁହାଯାଇପାରେ । ଗୋଟିଏ ମୂଳ ଭାଷାରୁ ହିଁ ଏହି ଦୁଇଟି ଭାଷା ଉଦ୍ଭୂତ ହୋଇଅଛି ।

## ଉର୍ଦ୍ଦୁ ଭାଷାରେ ସାହିତ୍ୟ ସୃଷ୍ଟି—

'ଉର୍ଦ୍ଦୁ' ଶବ୍ଦ କିପରି ତାହାର ପ୍ରାରମ୍ଭିକ ଅର୍ଥ ପରିବର୍ତ୍ତେ ଭାଷାଦ୍ୟୋତକ ହେଲା, ତାହାର ବହୁ ଶତାବ୍ଦୀ ବ୍ୟାପୀ ଇତିହାସ ବିଦ୍ୟମାନ । ମୁସଲମାନମାନେ ଭାରତକୁ ଆସିବା ସମୟରେ ପାର୍ଶୀ ଭାଷା ସେମାନଙ୍କ ମାତୃଭାଷା ଥିଲା । ମାତ୍ର ସ୍ଥାନୀୟ ଅଧିବାସୀଙ୍କ ସଂସ୍ପର୍ଶରେ ଆସିବା ଫଳରେ ସେମାନଙ୍କ ଲାଗି ଏକ ସାଧାରଣ ଭାଷାର ଆବଶ୍ୟକତା ଅନୁଭୂତ ହେଲା । କାଳକ୍ରମେ ସେମାନେ ଦିଲ୍ଲୀ ଓ ମିରଟ ଅଞ୍ଚଳର କଥ୍ୟଭାଷାକୁ ଆପଣାର କଥ୍ୟଭାଷା ଭାବରେ ଗ୍ରହଣ କରିନେଲେ । ଦରବାରରେ ରାଜକୀୟ ଭାଷା ଭାବରେ ପାର୍ଶୀ ଭାଷା ପ୍ରଚଳିତ ଥିଲେ ହେଁ ସେମାନେ ଦୈନନ୍ଦିନ ବ୍ୟବହାରରେ ଏକ ମିଶ୍ରିତ ଭାଷାକୁ ପ୍ରୟୋଗ କରୁଥିଲେ । ଏହି ଭାଷା

ସେତେବେଳେ 'ହିନ୍ଦୀ' ବା 'ହିନ୍ଦୱୀ' ନାମରେ ଅଭିହିତ ହେଉଥିଲା । କାଳକ୍ରମେ ମୁସଲମାନ ସେନାର ସୈନିକ, ଶାସକ ଓ କର୍ମଚାରୀଙ୍କ ଯୋଗୁଁ ଏହା ଆନ୍ତଃପ୍ରାଦେଶିକ ଗୌରବ ଲାଭ କରିଥିଲା ।

ଉର୍ଦ୍ଦୁ ଭାଷା ଯେ ଭାରତରେ ଉଦ୍ଭୂତ ହୋଇଅଛି, ଏ ବିଷୟରେ ସନ୍ଦେହର ଅବକାଶ ନାହିଁ । ଏକ ଭାରତୀୟ କଥ୍ୟଭାଷା ସହ ପାର୍ଶୀ ଭାଷାର ସମ୍ମିଶ୍ରଣରୁ ଏହା ସୃଷ୍ଟି ହୋଇଅଛି । ସଂସ୍କୃତ ଓ ପ୍ରାକୃତ ଭାଷାର ବହୁ ଶବ୍ଦ ପରଂପରାକ୍ରମେ ଉର୍ଦ୍ଦୁରେ ବ୍ୟବହୃତ ହୋଇ ଆସୁଅଛି । ବହୁ ପାର୍ଶୀ ଓ ଆରବୀ ଶବ୍ଦ ଉର୍ଦ୍ଦୁ ଭାଷାରେ ପ୍ରଚଳିତ ହେଉଥିଲେ ହେଁ ତାହା କେବଳ ବିଶେଷ୍ୟ ଓ ବିଶେଷଣ ଭାବରେ ହିଁ ପ୍ରଯୁକ୍ତ ହୋଇଥାଏ । କ୍ରିୟା, ସର୍ବନାମ, ଅବ୍ୟୟ ପ୍ରଭୃତି ଭାଷାର ମୌଳିକ ବୈଶିଷ୍ଟ୍ୟ ଭାବରେ ଗୃହୀତ ହୁଏ । ଉର୍ଦ୍ଦୁ ଭାଷାର ଏହିସବୁ ପଦ ସମ୍ପୂର୍ଣ୍ଣ ଭାବରେ ଭାରତୀୟ ।

ହୁମାୟୁନଙ୍କ ରାଜତ୍ୱ ବେଳକୁ ଉର୍ଦ୍ଦୁ ଭାଷାର ଯଥେଷ୍ଟ ବିକାଶ ସାଧିତ ହୋଇସାରିଥିଲା । ସାହାଜାହାନଙ୍କ ସମୟରେ ଏହା ସ୍ୱଚ୍ଛ ଓ ପରିମାର୍ଜିତ ରୂପ ଲାଭ କରିଥିଲା । ସାହାଜାହାନ ଏହାକୁ ଅତ୍ୟନ୍ତ ଆଦର କରୁଥିଲେ ହେଁ ଦିଲ୍ଲୀର ଅଧିବାସୀ-ଗଣ ଏଥିରେ ସାହିତ୍ୟ ସୃଷ୍ଟି କରିବା ବିଷୟରେ ସମ୍ପୂର୍ଣ୍ଣ ଉଦାସୀନ ଥିଲେ । ଦକ୍ଷିଣ-ଭାରତରେ ହିଁ ପ୍ରଥମେ ଉର୍ଦ୍ଦୁ ଭାଷାରେ ବିଧିବଦ୍ଧଭାବେ ସାହିତ୍ୟ ରଚିତ ହୋଇଥିଲା ।

ଚତୁର୍ଦ୍ଦଶ ଶତାବ୍ଦୀରେ ଆଲାଉଦ୍ଦିନ ଖିଲିଜି ଗୁଜରାଟ ଓ ଦକ୍ଷିଣ-ଭାରତର ମାଲବାର ଉପକୂଳ ପର୍ଯ୍ୟନ୍ତ ଆକ୍ରମଣ କରିଥିଲେ । ଉତ୍ତର-ଭାରତରୁ ଯାଇଥିବା ସୈନ୍ୟମାନଙ୍କ ଭାଷା ସେହିସବୁ ଅଞ୍ଚଳର ଭାଷାକୁ ପ୍ରଭାବିତ କରିଥିବା ସ୍ୱାଭାବିକ । ଏହି ଅଭିଯାନ ପରେ ମହମ୍ମଦ ତୋଗଲକଙ୍କ ଦ୍ୱାରା ଦିଲ୍ଲୀରୁ ଦୌଲତାବାଦକୁ ସାମୟିକ ଭାବରେ ରାଜଧାନୀ ଅପସାରଣ ଓ ହାସାନ ଗଙ୍ଗୁଙ୍କ ଦ୍ୱାରା ଦକ୍ଷିଣ-ଭାରତରେ ରାଜ୍ୟସ୍ଥାପନ ପ୍ରଭୃତି ଫଳରେ ଉତ୍ତର-ଭାରତର ଭାଷା ଦକ୍ଷିଣରେ ପ୍ରସାରିତ ହେବାର ସୁଯୋଗଲାଭ କଲା ।

ଉତ୍ତର-ଭାରତରେ ପାର୍ଶୀ ରାଜଭାଷା ଭାବରେ ପ୍ରଚଳିତ ଥିଲେ ହେଁ ଦକ୍ଷିଣ-ଭାରତ ପାର୍ଶୀ ପ୍ରଭାବରୁ ଯଥାସମ୍ଭବ ମୁକ୍ତ ଥିଲା । କାରଣ ପାର୍ଶୀଭାଷାଭାଷୀଙ୍କ ପକ୍ଷେ ଦକ୍ଷିଣକୁ ଯିବା ସହଜ ବା ସୁବିଧାଜନକ ନ ଥିଲା । ବିଜାପୁର, ଗୋଲକୁଣ୍ଡା ପ୍ରଭୃତି ଦକ୍ଷିଣଭାରତର ମୁସଲମାନ ଅଧିକୃତ ରାଜ୍ୟମାନଙ୍କରେ ଉର୍ଦ୍ଦୁ ରାଜଭାଷା ଓ ସାହିତ୍ୟିକ ଭାଷା ଭାବରେ ଗୃହୀତ ହୋଇଥିଲା । 'ଦକ୍ଷିଣୀ ହିନ୍ଦୀ' ଓ 'ହିନ୍ଦବୀ'

ସମଅର୍ଥବୋଧକ । ରେଖତା ଛନ୍ଦରେ ଦକ୍ଷିଣୀ ହିନ୍ଦୀ ଭାଷାରେ ଗୀତ ରଚିତ ହେଉଥିଲା । କାଳକ୍ରମେ ଏହି ଭାଷା ସହ କେତେକ ଆରବୀ ଓ ପାର୍ଶୀଶବ୍ଦ ମିଶ୍ରିତ ହେଲା ଓ 'ରେଖତା' ଶବ୍ଦ ଏହି ଭାଷାକୁ ହିଁ ବୁଝାଇଲା ।

ମୋଗଲମାନଙ୍କ ରାଜଧାନୀ ଉତ୍ତର-ଭାରତର ବ୍ରଜଭୂମି ଅନ୍ତର୍ଗତ ଆଗ୍ରା ହୋଇଥିବା ଯୋଗୁଁ କବିତା ଓ ସଙ୍ଗୀତ କ୍ଷେତ୍ରରେ ବ୍ରଜଭାଷା ବିଶେଷ ଭାବେ ଆଦୃତ ହେଉଥିଲା । ତଥାପି ଖଡ଼ିବୋଲିରୁ ବିକଶିତ 'ହିନ୍ଦୀ' ବା 'ହିନ୍ଦବୀ' ବ୍ୟାପକ ଭାବରେ କଥୋପକଥନରେ ପ୍ରଯୁକ୍ତ ହେବାକୁ ଲାଗିଲା । ସାହାଜାହାନ ଆଗ୍ରାରୁ ଦିଲ୍ଲୀକୁ ଆପଣାର ରାଜଧାନୀ ପରିବର୍ତ୍ତନ କଲେ ଏବଂ ସାହଜାହାନାବାଦ ନାମରେ ନୂଆଦିଲ୍ଲୀ ସ୍ଥାପନ କରିଥିଲେ । ଏଣୁ ଦିଲ୍ଲୀ-ମିରଟ ଅଂଚଳର କଥୋପକଥନର ଭାଷା ଉନ୍ନତ ହେବା ଲାଗି ପୁନଶ୍ଚ ସୁଯୋଗ ଲାଭ କଲା । ସାହାଜାହାନବାଦର ଲାଲକିଲ୍ଲା ଅଥବା ସାହିମହଲରେ ରହୁଥିବା ବାଦସାହ, ବେଗମ, ଅମିର ପ୍ରଭୃତି ପାରିଷଦ-ବର୍ଗଙ୍କ ମଧ୍ୟରେ ପ୍ରଚଳିତ ଭାଷା 'ଉର୍ଦ୍ଦୁ' ନାମରେ ଅଭିହିତ ହୋଇଥିଲା । ସାହିମହଲ ନିବାସୀଗଣ ଖଡ଼ିବୋଲିରୁ ବିକଶିତ ହିନ୍ଦୀ ବା 'ହିନ୍ଦବୀ' ସହିତ ଆଗ୍ରା ଅଞ୍ଚଳର ମଧୁର ବ୍ରଜଭାଷାକୁ ମଧ୍ୟ ସମ୍ମିଳିତ କରାଇ ନେଇଥିଲେ । ଧୀରେ ଧୀରେ ଏହା ଫାରସୀ ଲିଖନ ରୀତିକୁ ଗ୍ରହଣ କରିଥିଲା ।

ଦକ୍ଷିଣ-ଭାରତର ବିଶିଷ୍ଟ ଉର୍ଦ୍ଦୁକବି ଓ୍ବଲୀ ଔରଙ୍ଗାବାଦୀ ଦକ୍ଷିଣରୁ ଉତ୍ତରାଞ୍ଚଳକୁ ଅର୍ଥାତ୍ ସାହଜାହାନାବାଦକୁ ଆସିବା ପର୍ଯ୍ୟନ୍ତ ଉତ୍ତର-ଭାରତରେ ଉର୍ଦ୍ଦୁ ଭାଷାରେ ବହୁଳ ଭାବରେ କାବ୍ୟକବିତା ରଚିତ ହେଉଥିବାର ପ୍ରମାଣ ମିଳେନାହିଁ । ଓ୍ବଲୀଙ୍କ ଠାରୁ ପ୍ରେରଣା ପାଇ ଦିଲ୍ଲୀର ବିଶିଷ୍ଟ ଶିକ୍ଷିତ ମୁସଲମାନ କବିମାନେ ଏହି ଉର୍ଦ୍ଦୁଭାଷାରେ କବିତା ରଚନା କରିବାକୁ ଆରମ୍ଭ କଲେ । ସେତେବେଳେ ଏହାକୁ 'ମୁଅଲା ଉର୍ଦ୍ଦୁ' ଅଥବା 'ଜବାନେ ଉର୍ଦ୍ଦୁ' କୁହାଯାଉଥିଲା । କାଳକ୍ରମେ 'ମୁଅଲ୍ଲା' ଓ 'ଜବାନେ' ଶବ୍ଦ ଅବ୍ୟବହୃତ ହୋଇ କେବଳ 'ଉର୍ଦ୍ଦୁ' ଶବ୍ଦଟି ସାହିକିଲ୍ଲା ବା 'ସାହି' ବାତାବରଣରୁ ମୁକ୍ତ ହୋଇ ଦିଲ୍ଲୀ ଏବଂ ତାହାର ସନ୍ନିକଟବର୍ତ୍ତୀ ଅଞ୍ଚଳର ଜନସାଧାରଣଙ୍କର ଶିଷ୍ଟଭାଷା ଅର୍ଥରେ ବ୍ୟବହୃତ ହେଲା ।

ପାର୍ଶୀଭାଷାର ସୁବିଖ୍ୟାତ ଲେଖକ ଅମିର ଖସ୍ରୁ ( ଖ୍ରୀ. ୧୨୫୫-୧୩୨୫ ) ସର୍ବପ୍ରଥମେ ହିନ୍ଦୁସ୍ଥାନୀଭାଷାକୁ ପ୍ରୟୋଗ କରିଥିବା ଜଣାଯାଏ । ପାର୍ଶୀ ଓ ହିନ୍ଦୁସ୍ଥାନୀକୁ ମିଶାଇ ସେ ଗଜଲ ପ୍ରଭୃତି ରଚନା କରିଥିଲେ । ଏହି ମିଶ୍ରିତ ରୀତିର କବିତାକୁ 'ରେଖତା' କୁହାଯାଉଥିଲା । ଅଧୁନା ଉର୍ଦ୍ଦୁ ନାମରେ ପରିଚିତ ଭାଷା ଏକଦା ସାଧାରଣ ଭାବରେ 'ରେଖତା' ନାମରେ ମଧ୍ୟ ପରିଚିତ ଥିଲା ।

ଅମିର ଖସ୍ରୁଙ୍କ ରଚନାର ନମୁନା—

'ସବ୍ କୋଇ ଉସ୍‌କୋ ଜାନେ ହୈ
ପର୍ ଏକ୍ ନହି ପହଚ୍ଚାନେ ହୈ
ଆଠ ଧାଗମେ ଲଖା ହୈ
ଫିକ୍‌ର କଥା ଅନଦେଖା ହୈ ।

[ ସମସ୍ତେ ତାହାଙ୍କୁ (ଭଗବାନଙ୍କୁ) ଜାଣନ୍ତି । ମାତ୍ର କେହି ଜଣେହେଲେ ତାଙ୍କୁ ଚିହ୍ନିନାହାନ୍ତି । ଆଠ ଧାଡ଼ିରେ ଲେଖାହୋଇଛି । ଭାବ ଦେଖିଲେ ସେ ହେଉଛନ୍ତି ଅଦେଖା । ]

ଏହାକୁ ଆଲୋଚକମାନେ ପ୍ରାଚୀନତମ ଉର୍ଦ୍ଦୁ କବିତା ଓ ଅମିର ଖସ୍ରୁଙ୍କୁ ପ୍ରଥମ ଉର୍ଦ୍ଦୁ କବି ଭାବରେ ଗ୍ରହଣ କରିଥାନ୍ତି ।

ଉର୍ଦ୍ଦୁରେ ପ୍ରଥମ ଗଜଲ ରଚୟିତା ଭାବରେ କେତେକେ ଚନ୍ଦ୍ରଭାନୁ ବ୍ରାହ୍ମଣଙ୍କୁ ଗ୍ରହଣ କରିଥାଆନ୍ତି । ତାହାଙ୍କ ଉକ୍ତ ଗଜଲ ପ୍ରଥମ ଦୁଇଟି ପଂକ୍ତି ହେଉଛି—

ଖୁଦା ଜାନେ ଏ କସ୍ ସହର ଅନ୍ଦର ହମାକୋ ଲକେ ଡାଲ ହୈ
ନ ଦିଲବର ହୈ ନ ସାକ୍ସ ହୈ, ନ ଶୀଶା ହୈ ନ ପ୍ୟାଲ ହୈ ।'

[ ଭଗବାନ ଜାଣନ୍ତି ସେ ମୋତେ କେଉଁ ସହରରେ ଆଣି ପକାଇଛନ୍ତି, (ସେଠାରେ) ପ୍ରିୟତମ ନାହିଁ, ସାକ୍ସ ନାହିଁ, ଗ୍ଲାସ ଅଥବା ପିଆଲି ମଧ୍ଯ ନାହିଁ । ]

ଚନ୍ଦ୍ରଭାନୁ ସାହାଜାହାନଙ୍କ ଦରବାରରେ ମୀର ମୁନସି କାର୍ଯ୍ୟ କରୁଥିଲେ । ସିକନ୍ଦର ଲୋଦୀଙ୍କ ସମକାଳୀନ କବିର ମଧ୍ଯ ଉର୍ଦ୍ଦୁ ଗଜଲ ରଚନା କରିଅଛନ୍ତି । ତାହାଙ୍କ ଗୋଟିଏ ଗଜଲର ପ୍ରଥମ ପଦ ହେଉଛି—

'ହମା ହୈ ଇସ୍ କେ ମସ୍ତାନା
ହମାକୋ ହୋସିୟାରି କ୍ୟା
ରହେ ଅଜାଦଆ ଜଗ୍ ମେ ହମା
ଦୁନଆସେ ୟାରି କ୍ୟା' ।

( ଆମେ ପ୍ରେମରେ ମତ୍ତ ହୋଇଅଛୁ । ଆମର ଚେତନା କାହୁଁ ରହିବ ? ଆମେ ସ୍ୱତନ୍ତ୍ର ଭାବରେ ରହୁ ଅଥବା ଜଗତବାସୀଙ୍କ ସଙ୍ଗେ ମିଶିକରି ରହୁ, ପୃଥିବୀ-ସହ ଆମର ପ୍ରୀତି ହେବ କିପରି ? )

## ଦକ୍ଷିଣୀ ଉର୍ଦ୍ଦୁ ସାହିତ୍ୟ—

ସର୍ବପ୍ରଥମେ ଦକ୍ଷିଣ ଭାରତରେ ଉର୍ଦ୍ଦୁ ଭାଷା ବିକଶିତ ହେବାର ଅନୁକୂଳତା ଲାଭ କରିଥିଲା । ଦକ୍ଷିଣ ଭାରତର ଧର୍ମ ପ୍ରଚାରକ ଓ ସନ୍ଥମାନଙ୍କ ପ୍ରଚେଷ୍ଟାରେ ଉର୍ଦ୍ଦୁ ସାହିତ୍ୟିକ ରୂପ ଲାଭ କରିବାକୁ ସମର୍ଥହେଲା । ସୟଦ ମହମ୍ମଦ ବନ୍ଦା ନୱାଜ ଗେସୁ ଦରାଜ (୧୪୨୨) ଏହି ଭାଷାରେ ବହୁ ଗୀତ ପୁସ୍ତିକା ଓ ଅନ୍ୟାନ୍ୟ ରଚନା ପ୍ରଣୟନ କରିଥିଲେ । ପ୍ରାୟ ୧୦୧ଟି ରଚନା ତାହାଙ୍କ ଦ୍ୱାରା ପ୍ରଣୀତ ହୋଇଥିବା ଜଣାଯାଏ । ସାହ ମିରାନଜି (ସାମସୁଲ ଉସ୍‌ସାକ—୧୪୯୬), ସାହବୁର୍‌ହା ଜାନମ (୧୫୮୨), ଅମିନୁଦ୍ଦିନ ଅଲ୍ଲା (୧୬୭୫), ପ୍ରଭୃତି ସୁଫୀ ସନ୍ଥମାନେ ମଧ୍ୟ ଏହି ଭାଷାରେ ଗୀତ ରଚନା କରିଥିଲେ । ଏତଦ୍‌ବ୍ୟତୀତ ଜୱାହିରୁଲ ଅସରାର ପ୍ରଣେତା ଗୁଜରାଟର ସାହ ଅଲ୍ଲି ମହମ୍ମଦ ଜିଉ ଗାମଧନି (୧୫୬୨), ସୁପ୍ରସିଦ୍ଧ 'ଖୁବ୍ ତରଙ୍ଗ' (୧୫୭୮) ପ୍ରଣେତା ଶେଖ ଖୁବ୍ ମହମ୍ମଦ, 'ୟୁସୁଫ୍ ଜୁଲେଖା' (୧୬୯୭) ପ୍ରଣେତା ଅମିନ ମଧ୍ୟ ଉର୍ଦ୍ଦୁ ଭାଷାରେ ଗ୍ରନ୍ଥରଚନା କରିଥିଲେ ।

ଗୋଲକୁଣ୍ଡାର କୁତବସାହି (୧୫୧୦-୧୬୮୭)ଙ୍କ ରାଜତ୍ୱ କାଳରେ ଉର୍ଦ୍ଦୁ ଭାଷାର ଅଧିକ ବିକାଶ ଘଟିଥିଲା । ଏହି ବଂଶର ଚତୁର୍ଥ ରାଜା ସୁଲତାନ ମୋହମ୍ମଦ କୁଲି କୁତବସାହ (୧୫୮୦—୧୬୧୧) ହାଇଦରାବାଦ ନଗର ପ୍ରତିଷ୍ଠା କରିଥିଲେ । ଉର୍ଦ୍ଦୁ ଭାଷାରେ ସେ ବିରାଟ 'କୁଲିୟାତ' ଗ୍ରନ୍ଥ ରଚନା କରିଅଛନ୍ତି ।

ଦକ୍ଷିଣୀ ଉର୍ଦ୍ଦୁ ସାହିତ୍ୟର ନମୁନା ସ୍ୱରୂପ ଏଠାରେ କୁଲିକୁତବ ସାହାଙ୍କ ରଚନାର ଗୋଟିଏ ପଦ ପ୍ରଦତ୍ତ ହେଲା—

'ପିୟା ବିନା ପିଆଲା ପିଆ ଯାଏନା
ପିୟା ବାଜ ଏକତିଲ ଜିଆ ଯାଏନା ।
କହେ ଥେ ପିୟା ବିନ ସବୁରି କରୁଁ
କହା ଯାଏ ଅମ୍ମା କିଆ ଯାଏ ନା ।
କୁତୁବସାହ ନ ଦେ ମୁଝ୍ ଦିୱାନେ କୋପନ୍
ଦିୱାନୋ କୋ କୁଛପନ ଦିଆଯାଏ ନା ।'

(ପ୍ରିୟା ବ୍ୟତୀତ ପିଆଲାରେ (ମଦ) ପିଇ ହେବ ନାହିଁ । ପ୍ରିୟା ବ୍ୟତୀତ ଗୋଟିଏ ମୁହୂର୍ତ୍ତ ଜୀବିତ ରହି ହେବ ନାହିଁ । ସମସ୍ତେ କହନ୍ତି ଯେ ପ୍ରିୟାକୁ ଛାଡ଼ି ମନକୁ ପ୍ରବୋଧ ଦିଅ । ମାତ୍ର ଏକଥା କୁହା ହୋଇଥାଏ ସତ୍ୟ; ମାତ୍ର କାର୍ଯ୍ୟରେ କରିହୁଏ ନାହିଁ । ହେ କୁତୁବସାହ, ମୋଭଳି ପାଗଳକୁ ଉପଦେଶ ଦିଅନାହିଁ । ପାଗଳକୁ ଉପଦେଶ ଦିଆଯାଏ ନାହିଁ । )

ତାହାଙ୍କ ଅନ୍ୟ ଦୁଇ ଉତ୍ତରାଧିକାରୀ ସୁଲତାନ ମହମ୍ମଦ କୁତବସାହ (୧୬୧୧—୧୬୨୬), ସୁଲତାନ ଅବଦୁଲ୍ଲା କୁତବସାହ ଏବଂ ଏହି ବଂଶର ଶେଷରାଜା ତାନାସାହ ମୁକ୍ତ ଭାବରେ ଉର୍ଦ୍ଦୁ ଭାଷାରେ ଗ୍ରନ୍ଥ ରଚନା କରିଥିଲେ ।

ଏହି ରାଜତ୍ୱ କାଳର ଅନ୍ୟାନ୍ୟ ପ୍ରସିଦ୍ଧ ଲେଖକମାନଙ୍କ ମଧ୍ୟରୁ ସୁଲତାନ-କୁଲି କୁତବସାହଙ୍କ ସଭା କବି ମୁଲ୍ଲାଓ୍ୱାଜି ଅଗ୍ରଗଣ୍ୟ । ତାହାଙ୍କର 'କୁତବ ମୁସ୍ତାରୀ' (୧୬୦୯) ମସନର୍ଭି ଭାବରେ ସୁପ୍ରସିଦ୍ଧ । ସେ ମଧ୍ୟ 'ସବରସ' ନାମକ ଗଦ୍ୟଗ୍ରନ୍ଥ ପାର୍ଶିରୁ ଅନୁବାଦ କରିଥିଲେ । ଏହା ଛନ୍ଦୋବଦ୍ଧ ସରଳ ଗଦ୍ୟ ରୀତିରେ ଲିଖିତ । ଅବଦୁଲ୍ଲା କୁତବସାହଙ୍କ ଦରବାରର କବି ଭାବରେ ଘଓ୍ୱାସି ସୁବିଖ୍ୟାତ ।

ତାହାଙ୍କ 'କିସାଇ ସଇଫ୍ ଉଲ୍ ମୁଲ୍କ ଓ୍ୱା ବାଦି ଉଲ୍ ଜମାଲ', ଓ 'ତୁତିନାମା' ଦୁଇଟି ଗ୍ରନ୍ଥ ସୁପରିଚିତ । ପ୍ରଥମଟି 'ଆରବ୍ୟ ରଜନୀ'ରୁ ପାରସ୍ୟ ଭାଷାରେ ଲେଖା ଯାଇଥିବା ଏକ କାହାଣୀ ଅବଲମ୍ବନରେ ରଚିତ । ଦ୍ୱିତୀୟଟି ଜିଆଉଦ୍ଦିନଙ୍କ ଉକ୍ତ ନାମ ବିଶିଷ୍ଟ ପାର୍ଶି ପୁସ୍ତକର ଅନୁବାଦ ।

କୁତବସାହି ରାଜତ୍ୱ କାଳୀନ ଅନ୍ୟାନ୍ୟ କବିମାନଙ୍କ ମଧ୍ୟରୁ ଗୋଲକୁଣ୍ଡାର ତବି ୧୬୭୦ରେ 'କିସ ଏ ବହ୍ରାମ ଓ୍ୱା ଗୁଲ ଅନ୍ଦମ' ନାମକ ଏକ ପ୍ରଣୟପ୍ରଧାନ କାବ୍ୟ ରଚନା କରିଥିଲେ । ମୋହମ୍ମଦ ଅମିନ 'କିସାଇ ଅବୁ ସହମା' ନାମକ ଏକ ଅସମାପ୍ତ କାବ୍ୟର ମଧ୍ୟ ରଚୟିତା । ଖଲିଫା ଉମରବଅଲ୍ ଖତବଙ୍କ ପୁତ୍ରଙ୍କ କାହାଣୀ ଏଥିରେ ବର୍ଣ୍ଣିତ ।

ବିଜାପୁରର ଆଦିଲସାହି ରାଜତ୍ୱକାଳ (୧୫୧୦—୧୬୮୬) ମଧ୍ୟ କଳାନୁରାଗ ଓ ଭାଷାର ଅନୁଶୀଳନ ଦୃଷ୍ଟିରୁ ବିଖ୍ୟାତ । ବିଜାପୁରର ରାଜା ଇବ୍ରାହିମ ଆଦିଲସାହ ଦ୍ୱିତୀୟ (୧୫୮୦-୧୬୨୬) ୧୫୯୯ରେ ତାହାଙ୍କ ରାଜଧାନୀ ନିକଟରେ ନଓରସପୁର ନାମକ ଏକ ଉପବନ ନଗରୀ ନିର୍ମାଣ କରାଇଥିଲେ । ସେ ନିଜେ ବିଖ୍ୟାତ କବି ଥିଲେ ଓ ଦକ୍ଷିଣୀ ଉର୍ଦ୍ଦୁରେ ସଙ୍ଗୀତ ସମ୍ପର୍କରେ ଏକ କାବ୍ୟ ରଚନା ଥିଲେ । ନଓରାସ ନାମା ଜହୁରି (ମୃ ୧୬୨୬) ଓ ମୁଲ୍ଲା ମାଲିକ କୁମି ଉଭୟେ ଏହି ଗ୍ରନ୍ଥର ଏକ ଭୂମିକା ପାର୍ଶୀ ଭାଷାରେ ଲେଖିଅଛନ୍ତି । ଇବ୍ରାହିମ ଆଦିଲସାହ ସାରସ୍ୱତ ସଙ୍ଗୀତରେ ସୁପ୍ରବୀଣ ଥିଲେ ଓ 'ଜଗତଗୁରୁ' ନାମରେ ବନ୍ଦିତ ହୋଇ-ଥିଲେ । ତାହାଙ୍କ ରାଜତ୍ୱ କାଳରେ ବହୁ କବି ଓ ଶିଳ୍ପୀ ବ୍ୟକ୍ତି ତାହାଙ୍କ ସଭା ମଣ୍ଡନ କରିଥିଲେ । ମହମ୍ମଦ ଆଦିଲସାହ (୧୬୨୬-୧୬୫୬)ଙ୍କ ରାଜତ୍ୱକାଳରେ ହସନ ସଓ୍ୱାକି, ରସ୍ତମୀ ଉର୍ଦ୍ଦୁ ଭାଷାରେ ବହୁ ଗ୍ରନ୍ଥ ପ୍ରଣୟନ କରିଥିଲେ । ହସନ ସଓ୍ୱାକିଙ୍କ ତାଲିକୋଟା ଯୁଦ୍ଧ ବର୍ଣ୍ଣନା ସମ୍ବଳିତ 'ଫତହ୍ ନାମଏ ନିଜାମ ସାହ' ଓ

ରୁସ୍ତମୀଙ୍କ 'ଖାଓ୍ୱାର ନାମା', (୧୬୪୯) ସୁବିଖ୍ୟାତ । ରୁସ୍ତମୀଙ୍କ ଏହି ଗ୍ରନ୍ଥକୁ ଉର୍ଦ୍ଦ ଭାଷାରେ ପ୍ରଥମ ମହାକାବ୍ୟ ଭାବରେ ଗଣନା କରାଯାଏ । ଗଦ୍ୟ ରଚୟିତା ଭାବରେ ମଧ୍ୟ ରୁସ୍ତମୀ ବିଖ୍ୟାତ । ମହମ୍ମଦ ଆଜିଲ ସାହାଙ୍କ ସଭାକବି ମାଲିକ ୬୫୦୦ ଚରଣ ବିଶିଷ୍ଟ 'ଖୁସ୍ ନୁଦ ବହରମ' ଓ 'ୟୁସୁଫ ଜୁଲେଖା' ନାମକ ଦୁଇଟି ପ୍ରଣୟ ପ୍ରଧାନ କାବ୍ୟ ରଚନା କରିଥିଲେ ।

ନୁସ୍ରତି (ମୃ ୧୬୮୩)ଙ୍କୁ ଆଜିଲ ସାହ ରାଜତ୍ୱ କାଳରେ ସର୍ବଶ୍ରେଷ୍ଠ କବି ଭାବରେ ଗ୍ରହଣ କରାଯାଏ । ଆଜିଲ ସାହଙ୍କ (୧୬୫୬-୭୩) ରାଜସଭାରେ ସେ ବିଦ୍ୟମାନ ଥିଲେ । ତାହାଙ୍କ ରଚିତ 'ଗୁଲସାନ ଇସାକ' ୮୦୦୦ ଚରଣ ବିଶିଷ୍ଟ । ଏହା ସମ୍ପୂର୍ଣ୍ଣ ଭାବରେ ଏକ ଭାରତୀୟ କଥାବସ୍ତୁ ଅବଲମ୍ବନରେ ରଚିତ । ମନୋହର ଓ ମଧୁମାଲତୀଙ୍କ ପ୍ରଣୟ କାହାଣୀ ଏହାର ଉପଜୀବ୍ୟ ବିଷୟ । 'ଅଲିନାମା' କାବ୍ୟ ସେ ତାହାଙ୍କ ଆଶ୍ରୟଦାତାଙ୍କ ଗୌରବମୟ ବିବରଣୀକୁ ଉପଜୀବ୍ୟ କରି ରଚନା କରିଅଛନ୍ତି । ତାହାଙ୍କ 'ମେରାଜନାମା' ପୁସ୍ତକରେ ବହୁ ଦକ୍ଷିଣୀ ଶବ୍ଦ ପରିଲକ୍ଷିତ ହୁଏ ଓ ଏହା ଅଧିକ ପରିମାଣରେ ଦୁର୍ବୋଧ । 'ଗୁଲଦସ୍ତାଇ ଇସାକ'ଟି ତାହାଙ୍କ ଗୀତି କବିତାର ଏକ ସଂକଳନ । କେତେକ ସମ୍ବୋଧନଗୀତ ମଧ୍ୟ ସେ ରଚନା କରିଅଛନ୍ତି । ସମୁଚ୍ଚ କଳ୍ପନା, ବିଷୟ ବସ୍ତୁର କମନୀୟତା ଓ ଛନ୍ଦର ମାଧୁର୍ଯ୍ୟ ଦୃଷ୍ଟିରୁ ତାହାଙ୍କ ରଚନା ଅତୁଳନୀୟ ।

ଅନ୍ୟାନ୍ୟ ବିଜାପୁର କବି ଗୋଷ୍ଠୀ ମଧ୍ୟରୁ ଆସ୍ତାଘି (ନଜାତ ନାମା, ସାମାଇଲ ନାମା), ସମ୍ବିଦ ବୁଲକ (ମେରାଜ ନାମା), ସାହ ଅମିନୁଦ୍ଦିନ ଅଲ୍ଲା, ଅବଦୁଲ ମୁମିନ (ଅସରାରେ ଇସାକ), ସାହ ମହମ୍ମଦ କାଦିର (ସୁଫିମତ ସମ୍ବଳିତ ବହୁ କ୍ଷୁଦ୍ର ଗଦ୍ୟ ଗ୍ରନ୍ଥ ପ୍ରଣେତା), ଆରଣି ଅମିନ (ବହରାମ ଓ୍ୱା ହୁଅନ ବାନୁ ନାମକ ଅସମାପ୍ତ କାବ୍ୟ ପ୍ରଣେତା) ଓ ମିରାନ ହାସିମି ପ୍ରଭୃତି ପ୍ରସିଦ୍ଧତମ । ମିରାନ ହାସିମି ୧୨୦୦୦ ଚରଣ ବିଶିଷ୍ଟ ଏକ ବିରାଟ ପ୍ରଣୟ କାବ୍ୟ ରଚନା କରିଥିଲେ ।

ଆଉରଙ୍ଗଜେବ ଓ ତାହାଙ୍କ ଉତ୍ତରାଧିକାରୀଙ୍କ ରାଜତ୍ୱକାଳରେ ମହମ୍ମଦ ଅଲି ଅଜିଜ୍ 'କସଏ ଫିରୋଜ ସାହ' ନାମକ ଏକ ପ୍ରଣୟ କାବ୍ୟ ରଚନା କରିଥିଲେ । ଖ୍ରୀ ୧୬୮୮ ଓ୍ୱାଲିଉଲ୍ଲା କାଜିର 'ମାରଫତେ ମଲକ' ନାମକ ଏକ ପାର୍ଶୀ ଗ୍ରନ୍ଥକୁ ଅନୁବାଦ କରିଥିଲେ । ତାହାଙ୍କ ପିତା ସେଖ ଦାଉଦ ଦରସି ଜଣେ ବିଖ୍ୟାତ ସୁଫି ମତବାଦୀ ଥିଲେ । ସେ ଦୁଇଟି କାବ୍ୟ ରଚନା କରିଥିଲେ । ମହାପୁରୁଷ ମହମ୍ମଦଙ୍କୁ ଭଲପାଇ କପରି ଜଣେ ନାରୀ ନିଜକୁ ଅଗ୍ନିରେ ଆହୁତ ଦେଇଥିଲା ତାହା ସେ ଗୋଟିଏ କାବ୍ୟରେ ବର୍ଣ୍ଣନା କରିଅଛନ୍ତି । ତାହାଙ୍କ ରଚିତ 'ହଜାପ୍ୟାରେ ହୁନ୍ଦ'

କାବ୍ୟଟିରେ ହାନଫି ସଂପ୍ରଦାୟର ବିଶ୍ୱାସ ଓ ଆଚରଣ ପ୍ରଭୃତି ବର୍ଣ୍ଣିତ । ସାହା ହୁସେନ ଧର୍ଓ୍ୱାକ ଓ୍ୱାଝିଙ୍କ ରଚିତ 'ସବରସ'କୁ ଉର୍ଦ୍ଦୁରେ ଅନୁବାଦ କରିଥିଲେ। ବାଗଦାଦର ସାଧୁ ସେଖ ଅବଦୁଲ୍ କ୍ୱାଦର ଜିଲାନଙ୍କ ପ୍ରଶସ୍ତି ବର୍ଣ୍ଣନା କରି ସେ ଏକ କାବ୍ୟ ମଧ୍ୟ ରଚନା କରିଥିଲେ। କ୍ୱାଦି ମହମ୍ମଦ ବହରି (୧୬୮୦-୧୭୦୦) ଏହି ସମୟର ଅନ୍ୟତମ ବିଶିଷ୍ଟ କବି । ସେ 'ମନ ଲଗନ' କାବ୍ୟ ବ୍ୟତୀତ ୧୪ଟି ପ୍ରେମ କବିତା, ୨ଟି ଶୋକ ଗୀତ, ୨ଟି ସମ୍ବୋଧନ ଗୀତ ଓ ଗୋଟିଏ ରହସ୍ୟ ବାଦୀ କବିତା ରଚନା କରିଯାଇଛନ୍ତି । ଭେଲେରର ସଯ୍ୟାଦ ଓ୍ୱାଲି (୧୬୯୦-୧୭୦୭) ୮୦୦୦ ଚରଣ ବିଶିଷ୍ଟ 'କିସ୍‌ସଏ ରତନ' ଓ 'ପଦମ' ନାମକ ପ୍ରଣୟ କାବ୍ୟ ରଚନା କରିଅଛନ୍ତି । ଏହା ମହମ୍ମଦ ଜାୟସୀଙ୍କ ପଦ୍ମାବତ କାବ୍ୟର କଥାବସ୍ତୁ ଅବଲମ୍ବନରେ ଲିଖିତ । ରଓ୍ୱାଦରୁଣ 'ସୁହ୍ରଦା' ନାମକ ଏକ ଶୋକଗୀତ ସଂକଳନର ପ୍ରଣେତା ।

ଦକ୍ଷିଣ ଭାରତର ସର୍ବ ପ୍ରଧାନ ଓ ଜନପ୍ରିୟ କବି ହେଉଛନ୍ତି ସାମସୁଦ୍ଦିନ ଓ୍ୱାଲିଭଲ୍ଲା ଓ୍ୱାଲି (ମୃ୧୭୪୧) । ଉର୍ଦ୍ଦୁ ସାହିତ୍ୟରେ ସେ ଚିରସ୍ମରଣୀୟ । ଭାଷାର ପ୍ରୟୋଗ ଦୃଷ୍ଟି ତାହାଙ୍କ ରଚନାବଳୀକୁ ତିନଭାଗରେ ବିଭକ୍ତ କରାଯାଏ । ୧— ଶୁଦ୍ଧ ଦକ୍ଷିଣୀ, ୨—ଉର୍ଦ୍ଦୁଦକ୍ଷିଣୀ, ୩—ଶୁଦ୍ଧ ଉର୍ଦ୍ଦୁ । ସେ ୪୨୨ଟି ସଙ୍ଗୀତ ୬ଟି ସମ୍ବୋଧନ ଗୀତ ୨ଟି ମସନଓ୍ୱି ରଚନା କରିଯାଇଛନ୍ତି । ତାଙ୍କ ଶୈଳୀରେ ସାରଲ୍ୟ ଓ ଗାମ୍ଭୀର୍ଯ୍ୟ ଉଭୟର ସମାବେଶ ଦେଖାଯାଏ । ଓ୍ୱାଲିଙ୍କ ରଚନାର ଗୋଟିଏ ପଂକ୍ତି—

"ଜିନ୍ଦଗୀ ଜାମେ ଐଶ ହେଲେକିନ
ଫାୟଦା କ୍ୟା ଅଗର ମୁଦାମ ନହିଁ ।"

(ଜୀବନ ଏକ ଆନନ୍ଦର ପିଆଲି କିନ୍ତୁ ଏହା ସବୁଦିନ ପାଇଁ ନ ହେଲେ ଲାଭ କଣ ?)

ଓ୍ୱାଲିଙ୍କର ତରୁଣ ସମସାମୟିକମାନଙ୍କ ମଧ୍ୟରୁ ହାସିଣ ଅଲ୍ଲୀ ସାହା (୧୬୮୦-୧୭୬୦) ମର୍ଶିଆ (ଶୋକଗୀତ) ସଂଗ୍ରହ 'ଦର୍ଓ୍ୱାଜାଇ ହୁସୈନୀ', ଗୁଜରାଟର ଇମାମୀ ରଜା ଓ ସୟିଦ ତାହାଙ୍କ ନିର୍ଦ୍ଦୋଷ ଗୀତିକାବ୍ୟ ଓ ସୟିଦ ମହମ୍ମଦ ଓ୍ୱାଲିଆ 'କ୍ୱିସାଇ ତାଲିବଓ୍ୱା ମୋହିନୀ'ର ପ୍ରଣେତା ଭାବରେ ସୁବିଦିତ । ଓ୍ୱାଲିଙ୍କ ସମକାଳୀନ କବିମାନଙ୍କ ମଧ୍ୟରୁ ତାଙ୍କ ଶିଷ୍ୟ ଔରଙ୍ଗାବାଦର ସିରାଜୁଦ୍ଦିନ ସିରାଜ ପ୍ରଧାନତମ । ସେ ଯଥାର୍ଥତଃ ଓ୍ୱାଲିଙ୍କ ଉତ୍ତରାଧିକାରୀ । ୧୦,୦୦୦ ପଦ ବିଶିଷ୍ଟ ଗୋଟିଏ ଦର୍ଓ୍ୱାନ, ଗୋଟିଏ କୁଲିୟାତ ଓ 'ବୁସ୍ତାନ ଖିଆଲ' ନାମକ ଏକ ପ୍ରଣୟ କାବ୍ୟ ପ୍ରଣେତା ଭାବରେ ସୁବିଖ୍ୟାତ । ଏତଦ୍‌ବ୍ୟତୀତ କ୍ୱାଦିର ସାମୀ

(୧୬୧୫-୧୬୮୬) 'କସ୍‌ସ୍‌ଏ ସର ସାମସଦ' ଓ ଔରଙ୍ଗାବାଦର ମିର୍ଜାଦାଉଦଖାଁ 'ଫସ୍ତ୍ୱେଦ-ଇ-ଆମ' (୧୭୨୬) ପ୍ରଣୟନ କରିଥିଲେ ।

**ଉତ୍ତରଭାରତରେ ଉର୍ଦ୍ଦୁ ସାହିତ୍ୟ**—ଓ୍ୱାଲିଙ୍କର ଦିଲ୍ଲୀକୁ ଆଗମନ ଫଳରେ ଉର୍ଦ୍ଦୁ ସାହିତ୍ୟର ପ୍ରାଣକେନ୍ଦ୍ର ଦକ୍ଷିଣଭାରତରୁ ଉତ୍ତରଭାରତକୁ ଅପସାରିତ ହେଲା ଓ ଉତ୍ତରଭାରତରେ ଉର୍ଦ୍ଦୁ ସାହିତ୍ୟର ଏକ ନୂତନ ଯୁଗ ସୃଷ୍ଟି ହେଲା (୧)। ଫିରାକୀ, ଫଜୀ ଓ ଆଜାଦ୍ ପ୍ରଭୃତି ଦକ୍ଷିଣୀ କବିମାନଙ୍କର ମଧ୍ୟ ଦିଲ୍ଲୀରେ ସମାବେଶ ହେଲା । ଏହି ସମୟରେ ଉର୍ଦ୍ଦୁ ସାହିତ୍ୟର ଭାଷା ହେଲା ଅଧିକ ସରଳ ଓ ଏଥିରେ ସୁଫୀ ମତବାଦର ପ୍ରାଧାନ୍ୟ ପ୍ରତିଫଳିତ ହେଲା । ଜୁହୁରୁଦ୍ଦିନ ହାତିମ (୧୬୯୯-୧୭୮୧) ଓ୍ୱାଲିଙ୍କ ଭଳି ଲେଖିବାକୁ ଆରମ୍ଭ କଲେ । ତାହାଙ୍କ ପ୍ରଣୀତ ପ୍ରଥମ ଦିଓ୍ୱାନରେ ପ୍ରାଚୀନ ରୀତିରେ ଲିଖିତ କବିତା ସନ୍ନିବିଷ୍ଟ । ହାତିମ ଅନ୍ୟାନ୍ୟ ବହୁ କବିଙ୍କ ରଚନାବଳୀକୁ ଉପଯୋଗୀ କରିବା ବିଷୟରେ ଥିଲେ ସୁଦକ୍ଷ । ମିର୍ଜା ଜାନ-ଇ-ମଜହର ବା ମଜହର ଜାନ ଜାନା (୧୬୯୯-୧୭୮୧) ପରିମାର୍ଜିତା କବିଭାବରେ ସୁବିଦିତ । 'ଆବ-ଇ-ହୟାତ' ରଚୟିତା ଆଜାଦ ମଧ୍ୟ ସୁବିଖ୍ୟାତ କବି ଭାବରେ ଗଣନୀୟ ।

ଏହିଯୁଗର ବିଶିଷ୍ଟତମ କବି ଭାବରେ ଆଗ୍ରାନିବାସୀ ମିର୍ ତକି ମିର୍ (୧୭୨୪-୧୮୧୦) ପରିଗଣିତ ହୁଅନ୍ତି । ତାହାଙ୍କ ଗଜଲ ଓ ମଶନଓ୍ୱୀ ସମୂହ ଉର୍ଦ୍ଦୁ ସାହିତ୍ୟର ଶ୍ରେଷ୍ଠ ସଂପଦ ଭାବରେ ପରିଗୃହୀତ ହୋଇଥାଏ । ମୋଟ ୪୦,୦୦୦ ପଦର ସଂଗୀତ ଓ ବହୁ ପ୍ରଶସ୍ତ କାବ୍ୟ ସେ ରଚନା କରି ଉର୍ଦ୍ଦୁ ସାହିତ୍ୟରେ ଅମରତ୍ୱ ଲାଭ କରିଯାଇ ଅଛନ୍ତି । ଏହି କାବ୍ୟମାନଙ୍କ ମଧ୍ୟରୁ 'ସୁଲଇ ଇସାକ' ଓ 'ଦରୟାଇ ଇସାକ' ସୁବିଖ୍ୟାତ ।

ମୀର୍ ତକି ମିର୍ଙ୍କ ରଚନାର ନିଦର୍ଶନ ସ୍ୱରୂପ ଏଠାରେଗୋଟିଏ ପଦ ଉଦ୍ଧୃତ ହେଲା—

'କଲ୍ ପାଓଁ ଏକ କା ସଏସର ପର ଯୋ ପଡ଼ଗୟା
ୟୁନ ସର୍ ଓ୍ୱ ଉସ୍ ତଖାନ ଶିକସ୍ତୋଁ ସେ ଚୂରଥା
କହନେ ଲଗା କେ ଦେଖ୍ କେ ଚଲ ରାହବେ ଖବର
ମୈଭି କଭୀ କସିକା ସରେ ପୁର୍ ଗରୁର୍ ଥା ।'

---

(୧) ଓ୍ୱାଲି ଦୁଇଥର ଦିଲ୍ଲୀକୁ ଆସିଥିଲେ । ପ୍ରଥମେ ଖ୍ରୀ ୧୭୦୬ରେ ଆଉରଙ୍ଗଜେବଙ୍କ ରାଜତ୍ୱକାଳରେ ଓ ପରେ ମାହମୁଦ ଶାହଙ୍କ ରାଜତ୍ୱ କାଳରେ ।

(କାଲି ମୋ ଗୋଡ଼ ଯେତେବେଳେ ଗୋଟିଏ ଖପୁରି ଉପରେ ପଡ଼ିଗଲା ସେତେବେଳେ ସେ ହାଡ଼ଟି ଚୂର୍ଣ୍ଣ ହୋଇଯାଇଥିଲା । ସେ (ହାଡ଼) କହିବାକୁ ଲାଗିଲା ହେ ବେଖବରିଆର ! ତୁମେ ଦେଖିକରି ବାଟଚାଲ, ମୁଁ ମଧ୍ୟ ଦିନେ କୌଣସି ଏକ ବ୍ୟକ୍ତିର ଗର୍ବିତ ମସ୍ତକ ଥିଲି)

ମହମ୍ମଦ ରଫି ସଓଦା (୧୭୧୩—୧୮୦୬) ଉର୍ଦ୍ଦୁ ଭାଷାରେ ସର୍ବପ୍ରଥମେ ଉଚ୍ଚାଙ୍ଗ ବ୍ୟଙ୍ଗାତ୍ମକ ଗ୍ରନ୍ଥ ରଚନା କରିଥିଲେ । ସଓଦା ଓ ଧାଓକ ଉର୍ଦ୍ଦୁ ସାହିତ୍ୟରେ କସିଦା ବା ପ୍ରଶସ୍ତି କବିତା ରଚୟିତା ଭାବରେ ସର୍ବଶ୍ରେଷ୍ଠ । ସଓଦାଙ୍କ କାବ୍ୟମାନଙ୍କ ମଧ୍ୟରୁ ନବାବମାନଙ୍କ ପ୍ରଶସ୍ତି ମୂଳକ ୪୦ଟି ଓ ମହାପୁରୁଷ ମହମ୍ମଦ ଓ ତାହାଙ୍କ ଅନୁଚରମାନଙ୍କ ପ୍ରଶସ୍ତି ମୂଳକ ୧୫ଟି କସିଦା ଏବଂ ବହୁ ବ୍ୟଙ୍ଗାତ୍ମକ କବିତା ପ୍ରସିଦ୍ଧ । ଏକଶତ ପଂକ୍ତି ବିଶିଷ୍ଟ ପ୍ରାୟ ୧୦୦ଟି ଶୋକଗୀତି ମଧ୍ୟ ସେ ରଚନା କରିଛନ୍ତି । ଏତଦବ୍ୟତୀତ ପ୍ରାୟ ମୋଟ ୧୦୦୦୦ ପଂକ୍ତିର ବହୁ ସଙ୍ଗୀତ ମଧ୍ୟ ତାହାଙ୍କ ଦ୍ୱାରା ପ୍ରଣୀତ ।

ମିର ଦର୍ଦ୍ଦଙ୍କୁ (୧୭୧୯—୧୭୮୫) ଉର୍ଦ୍ଦୁ କବିମାନଙ୍କ ମଧ୍ୟରେ ଚତୁର୍ଥ ସ୍ଥାନ ପ୍ରଦାନ କରାଯାଇଥାଏ । ସେ ସୁଫୀ ମତାବଲମ୍ବୀ ଥିବାରୁ ଭକ୍ତିମୂଳକ ଓ ଧର୍ମାଶ୍ରୟୀ ଗୀତିକବିତା ରଚନା କରିଥିଲେ । ତରୁଣ ବୟସରୁ ସେ ପଦ୍ୟରେ ଭକ୍ତିମୂଳକ ଗ୍ରନ୍ଥ ରଚନା କରିବାରେ ମନୋନିବେଶ କରିଥିଲେ । କେବଳ ଏକ ବିଷୟରେ କବିତା ରଚନା କରିଥିଲେ ହେଁ ତାଙ୍କ କବିତା ଗୁଡ଼ିକ ପ୍ରାଣସ୍ପର୍ଶୀ ଓ ଗମ୍ଭୀର ଭାବ-ଦ୍ୟୋତକ ।

ମୀର ହାସାନଙ୍କ (୧୭୩୬—୧୭୮୬) ଖ୍ୟାତି ତାଙ୍କ ରଚିତ 'ସିହ୍ରୁଲ ବୟାନ' ନାମକ ମଶନୱୀ ଯୋଗୁଁହିଁ ପ୍ରତିଷ୍ଠିତ । ଏହା ଉର୍ଦ୍ଦୁ ସାହିତ୍ୟର ଏକ ବହୁ ଜନପ୍ରିୟ ମଶନୱୀ । ଏଥିରେ ରାଜକୁମାର ବେନ୍‌ଜିର ଓ ବଦ୍ର-ଇ-ମୁନିର୍‌ଙ୍କ ପ୍ରଣୟ ଅତ୍ୟନ୍ତ ସରସ ଭାବରେ ବର୍ଣ୍ଣିତ । ସେ ଆଉ ଦଶଟି ମଶନୱୀ ମଧ୍ୟ ରଚନା କରିଥିଲେ । ତନ୍ମଧ୍ୟରୁ 'ଗୁଲଜ-ଇ-ଇମାନ'କୁ ଶ୍ରେଷ୍ଠ ଭାବେ ଗ୍ରହଣ କରାଯାଏ ।

ଗୁଲାମ୍ ହମ୍‌ଜନ ମୁସ୍‌ହାଫୀ (୧୭୫୦-୧୮୨୪) ସମ୍ବୋଧନ ଗୀତ ଓ ପ୍ରଣୟ କାବ୍ୟ ରଚନା କରିଥିଲେ । ତାହାଙ୍କ ରଚନାବଳୀ ୮ ଖଣ୍ଡରେ ପ୍ରକାଶିତ । ଏତଦ୍‌-ବ୍ୟତୀତ ସେ ୩୦୦ ଉର୍ଦ୍ଦୁ କବିଙ୍କ ରଚିତ କବିତାବଳୀର ଏକ ସଙ୍କଳନ କରିଥିଲେ ।

ଇନସା ନାମରେ ସାଧାରଣରେ ପରିଚିତ ଇନସାଉଲ୍ଲା ଖାଁ ଇନସା (୧୮୧୭) ତାଙ୍କ ହାସ୍ୟରସ ଓ ବାକ୍‌ଚାତୁରୀ ଯୋଗୁ ସୁବିଖ୍ୟାତ । ତାହାଙ୍କ ଗ୍ରନ୍ଥାବଳୀର ପଂକ୍ତି

ସଂଖ୍ୟା ମୋଟ ୯୦୦୦ । ଉର୍ଦ୍ଦୁ ଗ୍ରାମାର ପ୍ରଥମ ବ୍ୟାକରଣ ସେ ରଚନା କରିଥିଲେ । ଏହାର ନାମ 'ଦରିୟା-ଇ-ଲତାଫତ' ଓ ଏହା 'ପାର୍ଶିସ୍ଥାନ' ଭାଷାରେ ଲିଖିତ ।

ଓ୍ବାଲି ମହମ୍ମଦ ନଜିର୍ ଅକବର୍ ବାଦୀ (୧୭୪୦—୧୮୩୦) ଉର୍ଦ୍ଦୁ ସାହିତ୍ୟର ସୁପ୍ରସିଦ୍ଧ କବି ଭାବରେ ବିଖ୍ୟାତ । ତାଙ୍କ ଶିଶୁ କବିତାଗୁଡ଼ିକ ଉଚ୍ଚାଙ୍ଗ ଓ ବହୁ ଜନପ୍ରିୟ ।

ଏହି ଯୁଗର ପରବର୍ତ୍ତୀ କବିମାନଙ୍କ ମଧ୍ୟରୁ ଲକ୍ଷ୍ନୌର ହାଇଦର ଅଲ୍ଲୀ ଅତିଶ (ମୃ—୧୮୪୬), ଇମାମ ବକ୍ସ ସିଖ (ମୃ—୧୮୩୬), ଅନିସ ଓ ଦବିର ସୁପରିଚିତ । ଅତିଶ ଥିଲେ ସ୍ୱଭାବ କବି । ସରଳ ଲୋକ ପ୍ରଚଳିତ ଭାଷାରେ ସେ ତାହାଙ୍କ କାବ୍ୟ ରଚନା କରିଯାଇଛନ୍ତି । ଶବ୍ଦଶିଳ୍ପୀ ଭାବରେ ନାଶିଖ ପ୍ରସିଦ୍ଧ । ସଙ୍ଗୀତ ରଚୟିତା ଭାବରେ ମଧ୍ୟ ଅତିଶଙ୍କ ଖ୍ୟାତି କମ୍ ନୁହେଁ ।ମୋଟ ୪୦,୦୦୦ ପଂକ୍ତି ବିଶିଷ୍ଟ ୨ଟି କବିତାସଂଗ୍ରହ ସେ ରଚନା କରିଛନ୍ତି । ନାଶିଖଙ୍କ ତିନଗୋଟି କବିତା ସଙ୍କଳନ ମଧ୍ୟରୁ 'ଦପ୍ତରେ ପରେଶାନ' ସର୍ବଶ୍ରେଷ୍ଠ ବିବେଚିତ ହୋଇଥାଏ ।

**ଉର୍ଦ୍ଦୁ ସାହିତ୍ୟରେ ଆଧୁନିକ ଯୁଗ**—ସ୍ଥୂଳତଃ ୧୮୫୭ ଠାରୁ ଉର୍ଦ୍ଦୁ ସାହିତ୍ୟ କ୍ଷେତ୍ରରେ କେତେକ ନୂତନତା ପ୍ରବର୍ତ୍ତିତ ହେବାରୁ ଉକ୍ତ ସମୟରୁ ଉର୍ଦ୍ଦୁ ସାହିତ୍ୟରେ ଆଧୁନିକ ଯୁଗ ପ୍ରତିଷ୍ଠିତ ହେଲି ବୋଲି ଗ୍ରହଣ କରାଯାଏ । ଊନବିଂଶ ଶତାବ୍ଦୀ ବେଳକୁ ଉର୍ଦ୍ଦୁର ପୂର୍ଣ୍ଣ ବିକାଶ ସାଧିତ ହୋଇ ସାରିଥାଏ । ଭାରତର କଥିତ ଭାଷା ଭାବରେ ଏହାର ସ୍ଥାନ ସୁପ୍ରତିଷ୍ଠିତ ହୋଇଥାଏ । ଏହା ଆଉ ପାରସୀ ଭାଷାର ଅପେକ୍ଷା ରଖି ନ ଥାଏ । ମର୍ଶିଆ (Elegy) ଲେଖକ ଅନିସ ଓ ଦବିରଙ୍କ ରଚନାବଳୀ ଅମିର, ଦାଗ, ହାଲି, ସାର ସୟିଦ ଆଜାଦ, ଶିବଲି, ନୁମାନୀ, ଗାଲିବ ଓ ଇକବାଲଙ୍କ ଲାଗି ପଥ ପ୍ରସ୍ତୁତ କରିଥିଲି । କବି ଭାବରେ ବାବର ଅଲି ଅନିସ୍ (୧୮୦୨-୧୮୭୪) ତାହାଙ୍କ ସମଧର୍ମୀ ସଲାମତ ଅଲି ଦବିର (୧୮୦୩-୭୫)ଙ୍କ ଅପେକ୍ଷା ଅଧିକ ସ୍ୱାଭାବିକ । ଦବିର୍ଙ୍କ କବିତାରେ ପାଣ୍ଡିତ୍ୟ ଓ ବର୍ଣ୍ଣନା କୁଶଳତାର ଆଧିକ୍ୟ ପରିଲକ୍ଷିତ ହୁଏ । ତାଙ୍କ କବିତାର ପଂକ୍ତି ସଂଖ୍ୟା ୧୦ ଲକ୍ଷରୁ ଅଧିକ । ଏଗୁଡ଼ିକ ଯେପରି ସରଳ ଭାଷାରେ ଲିଖିତ ସେହିପରି ଏହା ସୁଲଳିତ ଓ ଛନ୍ଦୋମୟ । ଦବିର୍ଙ୍କ ଦୁଇଟି କବିତା ସଂକଳନ ଆଧୁନିକ ଉର୍ଦ୍ଦୁ-ଭାଷାକୁ ଜନପ୍ରିୟ କରିବାରେ ପ୍ରଭୂତ ସହାୟତା କରିଅଛି ।

ଉର୍ଦ୍ଦୁ ସାହିତ୍ୟ ସୃଷ୍ଟିର ପୀଠସ୍ଥଳ ଇତିମଧ୍ୟରେ ଦିଲ୍ଲୀରୁ ଲକ୍ଷ୍ନୌକୁ ପରିବର୍ତ୍ତିତ ହୋଇଗଲି । ଏହି ସମୟର ବିଶିଷ୍ଟ କବି ଭାବରେ ମହମ୍ମଦ ଇବ୍ରାହିମ

ଧାଓ଼କ (୧୭୮୯-୧୮୫୪) ଅଗ୍ରଗଣ୍ୟ । ତାହାଙ୍କ ବହୁରଚନା ସିପାହି ବିଦ୍ରୋହ ବା ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ ବେଳେ ବିନଷ୍ଟ ହୋଇଯାଇଛି । ମୋଟ ୧୨,୦୦୦ ପଂକ୍ତି ବିଶିଷ୍ଟ ତାହାଙ୍କ ରଚନାବଳୀ ଧାଓ଼କଙ୍କ ଶିଷ୍ୟ ଆଜାଦ ପ୍ରଭୃତଙ୍କ ଉଦ୍ୟମରେ ସଂଗୃହୀତ ହୋଇ ପାରିଅଛି । କସିଦା ରଚନାରେ ଧଓ଼କ ଆପଣାର ଅପୂର୍ବ ଦକ୍ଷତା ଦର୍ଶାଇ ଅଛନ୍ତି । ତାହାଙ୍କ ଲେଖାମାନେ ଏହା ପ୍ରତିପନ୍ନ ଲାଭ କରିଅଛି ବୋଲି ବୁଝାଯାଇଥାଏ ।

ଲକ୍ଷ୍ନୌ ଗୋଷ୍ଠୀର କବିମାନଙ୍କ ମଧ୍ୟରେ ନସିମ ଓ ଜଲାଲଙ୍କୁ ସର୍ବଶ୍ରେଷ୍ଠ କବିଭାବରେ ଗ୍ରହଣ କରାଯାଇଥାଏ ।

ଉର୍ଦ୍ଦୁ ସାହିତ୍ୟର ଶ୍ରେଷ୍ଠ କବିମାନଙ୍କ ମଧ୍ୟରୁ ଅସଦୁଲ୍ଲା ଖାଁ ଗାଲିବ (୧୭୯୭—୧୮୬୯) ଅନ୍ୟତମ । ସେ ପାର୍ଶି ଭାଷାରେ ଅଧିକ ସଂଖ୍ୟକ ଗ୍ରନ୍ଥ ରଚନା କରିଥିଲେ ହେଁ ତାହାଙ୍କୁ ଉର୍ଦ୍ଦୁ ଭାଷାର ସର୍ବଶ୍ରେଷ୍ଠ କବିର ଗୌରବ ପ୍ରଦାନ କରାଯାଇଅଛି । ଗଦ୍ୟ, ପଦ୍ୟ ଉଭୟ କ୍ଷେତ୍ରରେ ତାହାଙ୍କ କୃତିତ୍ୱ ଥିଲି ଅପରିସୀମ । ଧର୍ମ ସଂସ୍କାରମୁକ୍ତ ଦୃଷ୍ଟିକୋଣ, ସମୁଚ୍ଚ ଭାବନା ଓ ଉନ୍ନତ କବି ପ୍ରତିଭାର ଅଧିକାରୀ ଥିବା ଯୋଗୁ ତାଙ୍କୁ ମହାକବି ଗେଟେଙ୍କ ସହ ତୁଳନା କରାଯାଇଥାଏ । ସେ ଥିଲେ ମୁଖ୍ୟତଃ ସୌନ୍ଦର୍ଯ୍ୟବାଦୀ । ଗଜଲ ଓ ଦିୱାନ ବ୍ୟତୀତ ଦୁଇଟି ଖଣ୍ଡରେ ବିଭକ୍ତ ତାହାଙ୍କ ପତ୍ରାବଳୀ—'ଉର୍ଦ୍ଦୁ ଏ ମୁଅଲ୍ଲା' ଓ 'ଉଦେ ହିନ୍ଦୀ' ଆଦର୍ଶ ସ୍ଥାନୀୟ ଉର୍ଦ୍ଦୁ ଗଦ୍ୟ ଭାବରେ ଗୃହୀତ ହୋଇଥାଏ । ବ୍ୟଞ୍ଜନାତ୍ମକ ତାହାଙ୍କ ରଚନାରୁ ଗୋଟିଏ ପଂକ୍ତି ଏଠାରେ ଉଲ୍ଲେଖଯୋଗ୍ୟ ।

'ନ ଗୁଲେ ନଗ୍‌ମାହୁଁ ନ ପରଦ ଏ ସାଜ୍
ମୈହୁଁ ଅପନୀ ଶିକସ୍ତ କ ଆୱାଜ ।'

(ମୁଁ ସଙ୍ଗୀତର ଗୋଲାପ ନୁହେଁ କିମ୍ବା ବାଦ୍ୟଯନ୍ତ୍ରର ପର୍ଦ୍ଦା ନୁହେଁ । ମୁଁ ହେଉଛି ମୋର ନିଜର ଭାଙ୍ଗିପିବାର ଶବ୍ଦ ।)

ମହମ୍ମଦ ମୁମିନ ଖାଁ ମୁମିନ (୧୮୦୦—୧୮୫୧) ଜ୍ୟୋତିଷ, ଚିକିତ୍ସା ମୂଳକଗ୍ରନ୍ଥ ବ୍ୟତୀତ କାବ୍ୟ କବିତା ରଚନାରେ ମଧ୍ୟ ଆପଣାର କୃତିତ୍ୱ ଦର୍ଶାଇ ଯାଇଅଛନ୍ତି । ତାହାଙ୍କ ସଙ୍ଗୀତ, ସମ୍ବୋଧନଗୀତ ବା କସିଦା, ବିଶେଷତଃ 'ମଖନୱାଇଜ-ଜହାଦିଆ' ନାମକ କସିଦା ବହୁ ଜନପ୍ରିୟ ।

ଅମୀର ମହମ୍ମଦ ମିନାଇ (୧୮୨୮—୧୯୦୦) ଓ ନୱାବ ମିର୍ଜା ଖାଁ ଦାଗ୍ (୧୮୩୧—୧୯୦୫) ରାମପୁର ରାଜ ଦରବାରର ପୃଷ୍ଠପୋଷକତା ଲାଭ କରି

ସ୍ୱସ୍ୱ ପ୍ରତିଭାର ବିକାଶ ସାଧନ କରିପାରିଥିଲେ । ଅମୀର୍ ଥିଲେ ବିଶିଷ୍ଟ ପଣ୍ଡିତ, ଦାଗ୍ ଥିଲେ ବିଖ୍ୟାତ କବି । କସିଦା ରଚନାରେ ଅମୀର ଯେପରି ପ୍ରଭୂତ ଦକ୍ଷତା ଦର୍ଶାଇ ଅଛନ୍ତି ସେହିପରି ସଙ୍ଗୀତ ରଚନାରେ ଦାଗ୍ ଆପଣାର ଅପୂର୍ବ କୃତିତ୍ୱ ଦର୍ଶାଇ ଅଛନ୍ତି । ଅମୀର୍‌ଙ୍କ ରଚିତ ଦିୱାନ ଭାବରେ 'ମିର ଆତୁଲ ଗାଇବ' ଓ 'ସନମ ଖାନା-ଇ-ଇସାକ' ଓ କବି ଦାଗ୍‌ଙ୍କ ଶ୍ରେଷ୍ଠ କୃତି ଭାବରେ 'ଗୁଲଜାର-ଇ-ଦାଗ', 'ଆଫତାବେ ଦାଗ', 'ଫରିୟାଦେ ଦାଗ', 'ମେହ୍‌ତାବେ ଦାଗ, ଓ 'ୟାଦ ଗାରେ ଦାଗ' ସୁବିଖ୍ୟାତ ।

## ଉର୍ଦ୍ଦୁ କବିତାର ନବ ରୂପାନ୍ତର—

ପୁରାତନ ଗଜଲ ଧାରାରେ ଦାଗ୍ ଓ ଅମୀର୍ ସିନାଇ ସ୍ୱାତନ୍ତ୍ର୍ୟ ପ୍ରଦର୍ଶନ କରିପାରିଥିଲେ । ସମକାଳରେ ଲାହୋରରେ ମହମ୍ମଦ ହୁସେନ 'ଆଜାଦ' ସେହି ସ୍ଥାନର ଶିକ୍ଷା ବିଭାଗର ଇଂରାଜୀ ଡିରେକ୍ଟରଙ୍କ ସାହାଯ୍ୟରେ 'ଅଞ୍ଜୁମନେ ପଞ୍ଜାବ' ସ୍ଥାପନ କରିଥିଲେ (୧୮୬୭) । ଏହି ଅଞ୍ଜୁମନ ଉଦ୍ୟମରେ ଖ୍ରୀ. ୧୮୭୪ରୁ ବହୁ ମୁସାୟରା (କବିତା ପାଠୋତ୍ସବ) ଅନୁଷ୍ଠିତ ହୋଇଥିଲା । ଏଥିରେ ଚେତେକ ନିର୍ଦ୍ଦିଷ୍ଟ ବିଷୟରେ 'ନଜମ' ରଚନା କରି କବିମାନେ ତାହା ପାଠ କରୁଥିଲେ । ଏହିପରି ଭାବରେ ଉର୍ଦ୍ଦୁରେ ନୂତନ କବିତାର ସୂତ୍ରପାତ ହେଲା । ହାଲୀ, ଇସମାଇଲ, ମୀରଠୀ ପ୍ରଭୃତିଙ୍କ ସହାୟତାରେ ଏହା କ୍ରମଶଃ ବିକଶିତ ହେବାକୁ ଲାଗିଲା । ପରବର୍ତ୍ତୀ କାଳରେ ଇକବାଲ୍ (୧୮୭୫—୧୯୩୮), ଯୋଶ୍, ଅସର୍ ଲଖନଉୱୀ, ଜାଫର ଅଲ୍ଲି ଖାଁ ପ୍ରଭୃତି କବିଗଣ ଉର୍ଦ୍ଦୁ କବିତାରେ ଦର୍ଶନ, ପ୍ରକୃତି ଓ ରାଜନୈତିକ ବିଚାରଧାରାକୁ ଅନୁପ୍ରବିଷ୍ଟ କରିଥିଲେ ।

ଆଲିଗଡ଼ ଜାଗରଣ ପୀଠର ଲେଖକ ଭାବରେ ସାର୍ ସୟିଦ, ନୱାବ ମୁହସିନୁଲ ମୁଲକ, ମୌଲବୀ ଚିରାଗ୍ ଅଲି, ମହମ୍ମଦ ହୁସେନ୍ ଆଜାଦ, ଅଲତାଫ୍ ହୁସେନ ହାଲି, ମୌଲବୀ ନଜିର୍ ଅହମ୍ମଦ, ମୌଲବୀ ଜକାଉଲ୍ଲ ଓ ଶିବଲି ନୁମାନି ଅନ୍ୟତମ । ଏମାନଙ୍କ ମଧ୍ୟରୁ ଅଧିକାଂଶ କବିତା ଅପେକ୍ଷା ଗଦ୍ୟରେ ସାହିତ୍ୟ ସୃଷ୍ଟି କରିବାରେ ଅଧିକ ମନଯୋଗୀ ହୋଇଥିଲେ ।

ମୁସଲମାନୀ ଜାତୀୟତା ହାଲିଙ୍କ କବିତାର ପ୍ରଧାନ ଉପଜୀବ୍ୟ ବିଷୟ । ମୁସଲମାନମାନଙ୍କର ଗୌରବମୟ ଅତୀତକୁ ଉପଜୀବ୍ୟ କରି ସେ 'ମାଦୋଜାଜାରେ ଇସଲାମ' (ଇସଲାମର ଜୁଆର ଭଟ୍ଟା) ନାମକ ଏକ ଷଟପଦୀ ଛନ୍ଦର ଦୀର୍ଘ କବିତା (ମୁସଦା) ରଚନା କରିଥିଲେ । ତଥାପି ତାହାଙ୍କ କବିତାରେ ସୁଗଭୀର ମାନବ-ପ୍ରୀତି ମଧ୍ୟ ଦେଖିବାକୁ ମିଳିଥାଏ । ତାହାଙ୍କ ଭାଷାରେ—

'ଏଇ ହାସ୍ତ ଇବାଦତ ଏହି ହାସ୍ତ ଇମାନ୍
କେ କାର ଆବେ ଦୁନିଆମେ ଇନ୍‌ସାନ୍'

( ମନୁଷ୍ୟ ମନୁଷ୍ୟର ପ୍ରୟୋଜନରେ ଲଗିବ । ଏହା ହିଁ ହେଉଛି ଯଥାର୍ଥ ଭଗବତ ପ୍ରାର୍ଥନା ଓ ପ୍ରକୃତ ଧର୍ମ ବିଶ୍ୱାସ)

ଅଥବା—

'ଆ ମାଓଁ ବହେନୋ ବେଟିୟୋ ଦୁନିଆଁ କୀ
ଜିନତ୍ ତୋମସେ ହ୍ୟାସ୍ତ
ମୁଲକୌଁ କୀ ବସ୍ତି ହୋ ତୋମ ହେ
କଓ ମୌ କୀ ଇଜ୍ଜତ ତୋମସେ ହାସ୍ତ ।'

( ହେ ଈଶ୍ୱର ମା, ଭଉଣୀ ଓ କନ୍ୟାଗଣ । ତୁମ୍ଭମାନଙ୍କ ଉପସ୍ଥିତି ଯୋଗୁ ହିଁ ଏହି ପୃଥିବୀ ସୁନ୍ଦର । ଏ ଦେଶ ହେଉଛି ତୁମର । ଦେଶର ଗୌରବ ମଧ୍ୟ ତୁମର । )

ଉଦାର ଦେଶପ୍ରେମରେ ଉଦ୍‌ବୁଦ୍ଧ ହୋଇ ହାଲି ଅନ୍ୟ ଏକ କବିତାରେ ଲେଖିଛନ୍ତି—

'ତୁମ ଆଗର ଗୃହତେ ହୋ ମୁଲକକୀ ଖାୟେର
ନା କସି ହାମ୍ ଓ ତାନକେ ସମଝେ
ହୋ ମୁସଲମାନ ଉସ୍‌ମେ ଇଆ ଗାୟେର
ହିନ୍ଦୁ ବୁଦ୍ଧୁ ମଜ୍‌ହାବ ହୋ
ଇଆ କେହ୍ ହୋ ବ୍ରାହ୍ମ
ସବ କୋ ମିଠି ନେଗାହରେ ଦେଖେ
ସମଝୋ ଅଁଖୋଁକ ପୁତଲ୍ୟା ସବକୋ ।'

( ଯଦି ମାତୃଭୂମିର ମଙ୍ଗଳ କାମନା କର ତେବେ କାହାରିକୁ ପର ମନେକର ନାହିଁ । ମୁସଲମାନ ହେଉ ବା ହିନ୍ଦୁ ହେଉ ସମସ୍ତଙ୍କୁ ମଧୁର ଦୃଷ୍ଟିରେ ଚାହିଁବା ଉଚିତ । ସମସ୍ତେ ଯେପରି ତୁମ ଆଖିର ପୁତୁଳିକା । )

ଉର୍ଦ୍ଦୁ କବିତାରେ ସାରଲ୍ୟ ଓ ପାଶ୍ଚାତ୍ୟର ଖିତର ପ୍ରତିଷ୍ଠା ହିଁ ହାଲିଙ୍କ କବିତ୍ୱର ଅନ୍ୟତମ ସାଫଲ୍ୟ । ଆଧୁନିକ ଉର୍ଦ୍ଦୁ ଗଦ୍ୟ କ୍ଷେତ୍ରରେ ମଧ୍ୟ ତାହାଙ୍କ କୃତିତ୍ୱ ସ୍ୱଳ୍ପ ନୁହେଁ । ଉର୍ଦ୍ଦୁ ସମାଲୋଚନା ସାହିତ୍ୟର ସେ ମଧ୍ୟ ଅନ୍ୟତମ ପ୍ରବର୍ତ୍ତକ ।

'ସ୍ୱାଦଗାରେ ଗାଲ୍‌ବ', 'ହାସ୍ୟାଚ୍ଛେ ସାଘୀ' (ସାଘୀଙ୍କ ଜୀବନ ଚରିତ) 'ହାସ୍ୟାଚ୍ଛେ ଜାବଦ' ତାହାଙ୍କର ଉଲ୍ଲେଖଯୋଗ୍ୟ ଗଦ୍ୟ ରଚନା ।

ହାଲିଙ୍କ 'ମୁସଦ୍ଧା ସମୂନ୍ଦ' ଓ 'ସିରୁ ସାସ୍ତିଶ୍ୱ' ଉର୍ଦ୍ଦୁ ସାହିତ୍ୟର ଚିରନ୍ତନ ସମ୍ପଦ ଭାବରେ ଗୃହୀତ ହୁଏ ।

ଆଧୁନିକ ଉର୍ଦ୍ଦୁ ସାହିତ୍ୟ କ୍ଷେତ୍ରରେ ସାର୍ ମହମ୍ମଦ ଇକ୍‌ବାଲ (୧୮୯୩— ୧୯୩୫)ଙ୍କୁ ସର୍ବଶ୍ରେଷ୍ଠ କବି ଭାବରେ ଗଣନା କରାଯାଇଥାଏ । ତାହାଙ୍କ 'ବାଙ୍ଗେଦରା', 'ବାଲେ ଜିବ୍ରାଲ', 'ଜାଓେଦ ନାମା' ପ୍ରଭୃତି ଅମର ରଚନାବଳୀ ଯୋଗୁଁ ଉର୍ଦ୍ଦୁ ସାହିତ୍ୟ ବିଶ୍ୱ ସାହିତ୍ୟ କ୍ଷେତ୍ରରେ ଗୌରବାନ୍ୱିତ ହୋଇଅଛି । କବି, ଦାର୍ଶନିକ, ପ୍ରାବନ୍ଧିକ, ରାଜନୀତି ବିଶାରଦ, ସୁପଣ୍ଡିତ ଭାବରେ ଇକବାଲ ପ୍ରସିଦ୍ଧ । କେମ୍ବ୍ରିଜ ଓ ଜର୍ମାନୀରେ ସେ ଉଚ୍ଚଶିକ୍ଷା ଲାଭ ଓ ଅଧ୍ୟାପନା କରିଥିଲେ । ନିଟ୍‌ସେ ଓ ବର୍ଗସିଁଙ୍କ ଭାବଧାରାରେ ପ୍ରଭାବିତ ହୋଇଥିଲେ । ସର୍ବାଦୌ ଇକ୍‌ବାଲ୍ ଅସାମ୍ପ୍ରଦାୟିକ ଜାତୀୟତା ବୋଧରେ ଅନୁପ୍ରାଣିତ ହୋଇଥିଲେ ହେଁ ପରବର୍ତ୍ତୀ କାଳରେ ରାଜନୈତିକ ପରିବେଶର ପ୍ରଭାବରେ ତାହାଙ୍କ ଦୃଷ୍ଟିଭଙ୍ଗିରେ ସମ୍ପ୍ରଦାୟିକତା ସ୍ପଷ୍ଟତର ହୋଇ ଉଠିଥିଲା । 'ସାରେ ଜହାଁସେ ଆଚ୍ଛା ହିନ୍ଦୁସ୍ଥାନ ହମାରା', 'ହିମାଳୟ', 'ବୁଦ୍ଧ', 'ନାନକ' ପ୍ରଭୃତି କବିତାର ରଚୟିତା ହିଁ ବିଶ୍ୱର ମୁସଲମାନଙ୍କୁ କେବଳ ଜାଗ୍ରତ ଓ ଗଠିତ କରିବା ଲାଗି 'ପ୍ୟାନ ଇସଲାମ ସୋସାଇଟି' ଗଠନ କରିଥିଲେ ଏବଂ ପାକିସ୍ଥାନ ପ୍ରତିଷ୍ଠାର ଅନ୍ୟତମ ସମର୍ଥକ ହୋଇଥିଲେ । ଇସ୍‌ଲାମୀୟ ସୁଫି ମତବାଦ ଓ ବୈରାଗ୍ୟ ଭାବର ସେ ଦୃଢ଼ ବିରୋଧୀ ଥିଲେ ହେଁ ଇସ୍‌ଲାମୀୟ ସାମ୍ୟବାଦୀ ଧାରଣାକୁ ପୂର୍ଣ୍ଣ ପ୍ରାଣରେ ସମର୍ଥନ କରିଯାଇଅଛନ୍ତି । ରାଜନୈତିକ ପ୍ରଭାବ ହିଁ ତାହାଙ୍କ ବିଶ୍ୱଜନୀନ ଉଦାର ଦୃଷ୍ଟିଭଙ୍ଗୀକୁ ସଙ୍କୀର୍ଣ୍ଣ ଧର୍ମଗତ ପରିସରରେ ଆବଦ୍ଧ କରିଦେଇଥିଲା । ତଥାପି ଭାରତୀୟ ସାମୟିକ ପରିପ୍ରେକ୍ଷୀରୁ ତାହାଙ୍କୁ କେବଳ ସାମ୍ପ୍ରଦାୟିକ କବି କହିବା ହୁଏତ ସମୀଚୀନ ନୁହେଁ । ଉର୍ଦ୍ଦୁ କାବ୍ୟ ସାହିତ୍ୟରେ ତାହାଙ୍କୁ ପ୍ରଗତି ଆନ୍ଦୋଳନର ଅଗ୍ରଦୂତ ଓ ଚଳିତ ଶତାବ୍ଦୀର ଶ୍ରେଷ୍ଠ କବିର ସମ୍ମାନ ଅର୍ପଣ କରାଯାଇଥାଏ ।

ବିଂଶ ଶତାବ୍ଦୀରେ ଭାରତୀୟ ରାଜନୈତିକ ଆନ୍ଦୋଳନ ଓ ଅନ୍ତର୍ଜାତୀୟ ରାଜନୈତିକ ପରିବେଶ ଉର୍ଦ୍ଦୁ କବିତାକୁ ବହୁ ପରିମାଣରେ ପ୍ରଭାବିତ କରିବା ଏକାନ୍ତ ସ୍ୱାଭାବିକ । ଉର୍ଦ୍ଦୁ କବିମାନେ 'ହୋମ୍‌ରୁଲ୍' ଆନ୍ଦୋଳନଠାରୁ ଆରମ୍ଭ କରି ସ୍ୱାଧୀନତା ପ୍ରାପ୍ତି ପର୍ଯ୍ୟନ୍ତ ବହୁ ରାଜନୈତିକ ଉତ୍‌ଥାନ ପତନକୁ ଉପଜୀବ୍ୟ କରି ଉଚ୍ଚକୋଟୀର 'ନଜମେ' ରଚନା କରିଥିଲେ । ବିଶେଷତଃ ବ୍ରିଟିଶ ସାମ୍ରାଜ୍ୟବାଦୀ ଶାସନ ଏବଂ ଶୋଷଣ ଓ ସାମନ୍ତବାଦ ବିରୋଧୀ ବହୁ 'ନଜମ' ଦେଶବ୍ୟାପୀ ପ୍ରସିଦ୍ଧି

ଲଭ କରିଥିଲା । ତିଲୋକଚନ୍ଦ୍ର ମହରୁମ, ସରୁର ଜହାଁବାଦୀ, ଜୋଶ୍ ମଲିହାବାଦୀ, ଅମଜଦ ନଜ୍ମୀ, ପଣ୍ଡିତ ବ୍ରିଜନାରାୟଣ ଚକବସ୍ତ (ମୃ-୧୯୨୬), ଜାଫର ଅଲିଖାଁ ପ୍ରଭୃତିଙ୍କ କବିତାବଳୀରେ ଦେଶାତ୍ମବୋଧର ପରିଚୟ ମିଳିଥାଏ ।

୧୯୩୫ରୁ ଉର୍ଦ୍ଦୁ ସାହିତ୍ୟରେ 'ପ୍ରଗତି ବାଦ' (progressive movement)ର ପ୍ରସାର ଘଟିଲା । ଏହି ମତବାଦ ଏପରି ବ୍ୟାପକ ଜନପ୍ରିୟତା ଲଭ କରିଥିଲା ଯେ ପ୍ରାୟ ସମସ୍ତ ଉର୍ଦ୍ଦୁ କବି ଏହି ମତବାଦ ଦ୍ୱାରା ପ୍ରଭାବିତ ହୋଇଥିଲେ ଓ ଏହା ଫଳରେ କ୍ଷୁଦ୍ର ଗଳ୍ପ, ଉପନ୍ୟାସ, ସମାଲୋଚନା ପ୍ରଭୃତି ସାହିତ୍ୟର ସମସ୍ତ ବିଭାଗରେ ଉନ୍ନତି ସାଧିତ ହୋଇଥିଲା । ୧୯୩୫ ମସିହାରେ ଲକ୍ଷ୍ନୌରେ 'ନିଖିଳ ଭାରତ ପ୍ରଗତିବାଦୀ ଲେଖକ ସଙ୍ଘ' ସ୍ଥାପିତ ହୋଇଥିଲା । ରକ୍ଷଣଶୀଳତା ବିରୋଧୀ, ସଙ୍କୀର୍ଣ୍ଣ ଜାତୀୟତା ବିରୋଧୀ ଓ ଅସାମ୍ପ୍ରଦାୟିକ ତଥା ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗି ସମ୍ପନ୍ନ ଜୀବନବାଦୀ ଲେଖକ ବୃନ୍ଦ ହିଁ ଏହି ନୂତନ ସାହିତ୍ୟିକ ଆନ୍ଦୋଳନର ପୁରୋଧା ଥିଲେ । ମୋଟ ଉପରେ ଏହା ହିଁ କୁହାଯାଇପାରେ ଯେ ବିଂଶ ଶତାବ୍ଦୀର ପ୍ରାରମ୍ଭିକ ଦିନଗୁଡ଼ିକ ପଛରେ ସାମ୍ୟବାଦ ଓ ପାଶ୍ଚାତ୍ୟ ବସ୍ତୁ ସାହିତ୍ୟିକ ଆଦର୍ଶବାଦ ଅଧିକାଂଶ ଉର୍ଦ୍ଦୁ ଲେଖକଙ୍କୁ ପ୍ରଭାବିତ କରିଥିଲା ଓ ଏହା ଫଳରେ ଉର୍ଦ୍ଦୁ ସାହିତ୍ୟ କ୍ଷେତ୍ରରେ ବୈପ୍ଳବିକ ପରିବର୍ତ୍ତନ ସଙ୍ଘଟିତ ହେଲା ।

ମହମ୍ମଦ ହସନ ଅସ୍କାରୀ, ମୀରାଜୀ, ମହମ୍ମଦ ଅଲ୍ଲୀ, ସଜାଦ ଜହିର୍, ଫୟଜ ଅହମ୍ମଦ୍ ଫଏଜ, କିଷନ ଚନ୍ଦର, ସର୍ଦ୍ଦାର ଆଲିଜାଫ୍ରି, ଖ୍ୱାଜା ଅହମ୍ମଦ ଆବ୍ବାସ, ଫିରାକ୍, ଗୋରଖପୁରୀ, କାଜି ବନଦୁଲ ଗଫର, ଉପେନ୍ଦ୍ରନାଥ ଆସକ, ହାଫିଜ ଜଲନ୍ଧରୀ ପ୍ରଭୃତି କବି, କଥାକାର ଓ ପ୍ରାବନ୍ଧିକ ବର୍ଗ ଏହି ଆନ୍ଦୋଳନ ସହ ସମ୍ପୃକ୍ତ ଥିଲେ । ଏମାନଙ୍କ ମଧ୍ୟରେ ସବୁଠାରୁ ପ୍ରତିଭାଶାଳୀ ଓ ଶକ୍ତିସମ୍ପନ୍ନ ଥିଲେ ମୁନ୍‌ସି ପ୍ରେମ୍‌ଚନ୍ଦ୍ ଓ ଜୋସ ମଲିହାବାଦୀ । ଏହିମାନଙ୍କୁ ଅତ୍ୟାଧୁନିକ ଉର୍ଦ୍ଦୁ ସାହିତ୍ୟର ନିର୍ମାତା ଭାବରେ ଗ୍ରହଣ କରାଯାଇପାରେ । ୧୯୩୫ ମସିହାରେ ଗଠିତ ହୋଇଥିବା ଉର୍ଦ୍ଦୁ ପ୍ରଗତିବାଦୀ ସଙ୍ଘର ସଦସ୍ୟଗଣ ପୁରାତନ ବିଷୟବସ୍ତୁ ଓ ସାହିତ୍ୟ ରୂପକୁ ଅନୁସରଣ କରୁଥିବା ଲେଖକମାନଙ୍କୁ ପ୍ରତିକ୍ରିୟାଶୀଳ ବୋଲି ଘୋଷଣା କରିଥିଲେ । ଏହି ପ୍ରଗତିବାଦୀ ଲେଖକମଣ୍ଡଳୀ ସେମାନଙ୍କ ସାହିତ୍ୟରେ ସମାଜର ଦଳିତ, ଅବହେଳିତ ଓ ପରିବେଶର ଶରବ୍ୟ ହୋଇଥିବା ଜନଗଣଙ୍କ ପ୍ରତି ସମବେଦନା ପ୍ରଦର୍ଶନକୁ ଆପଣାର ଲକ୍ଷ୍ୟ ଭାବରେ ଗ୍ରହଣ କରିଥିଲେ । ସେମାନେ ଥିଲେ ସାମାଜିକ ବିପ୍ଳବ-ପ୍ରୟାସୀ । ଜାଗରଣ ଫଳରେ ସମସ୍ତ ଦୁଃସ୍ଥିତିର ଅବସାନ ହେବା ବିଷୟରେ ସେମାନେ ଥିଲେ ଦୃଢ଼ ଆଶାବାଦୀ । ଏଣୁ ସମସ୍ତ ପାରଂପରିକ ମୂଲ୍ୟବୋଧ, ଆଭିଜାତ୍ୟ ବିରୁଦ୍ଧରେ ସେମାନେ ସଂଗ୍ରାମ ଘୋଷଣା କରିଥିଲେ ।

ସେମାନେ ଆଙ୍ଗିକଗତ ନାନା ପରୀକ୍ଷା ନିରୀକ୍ଷା ମଧ୍ୟ ପ୍ରଚଳନ କରିଥିଲେ । ପ୍ରଚଳିତ ଛନ୍ଦର ବନ୍ଧନକୁ ଅସ୍ୱୀକାର କରି ସେମାନେ 'ଅମିତାକ୍ଷର ଛନ୍ଦ' ଓ 'ମୁକ୍ତଛନ୍ଦ' ବା 'ଆଜାଦ ନଜ୍‌ମେ' ପ୍ରଚଳନ କରିଥିଲେ ।

କଡ଼ ଜୋଶ୍ ମଲିହାବାଦୀ ଥିଲେ ବିପ୍ଳବୀ ଓ ସାମ୍ରାଜ୍ୟବାଦ ବିରୋଧୀ । 'ଭୋଖା ହିନ୍ଦୁସ୍ଥାନ' ତାହାଙ୍କର ଏକ ସୁବିଖ୍ୟାତ କବିତା । ଉଗ୍ରପନ୍ଥୀ ପ୍ରେମକବିତା, ବ୍ୟଙ୍ଗ କବିତା ଓ ଜନପ୍ରିୟ ସଙ୍ଗୀତ ରଚନା କ୍ଷେତ୍ରରେ ମଧ୍ୟ ତାହାଙ୍କ ସାଫଲ୍ୟ ସ୍ୱଳ୍ପ ନୁହେଁ । ମଲିହାବାଦୀଙ୍କ ସମଧର୍ମୀ କବି ରଘୁପତି ସାହାୟୀ ଫିରାକ୍ 'ରୁବାଇ' ଛନ୍ଦରେ ଆଧୁନିକ ଭାବନାକୁ ପ୍ରକାଶ କରିବାରେ ସଫଳତା ପ୍ରଦର୍ଶନ କରିଥିଲେ । ତେଲେଙ୍ଗାନା ଅଞ୍ଚଳରେ କୃଷକ ବିପ୍ଳବର କବି ଭାବରେ ମକ୍ଦୁମଦ୍ଦିନଙ୍କ କବିତା ଓ ସଙ୍ଗୀତ ବହୁ ଜନପ୍ରିୟତା ଲାଭ କରିଥିଲା ।

## ଆଧୁନିକ ଉର୍ଦ୍ଦୁ କବିତା :—

ଅନ୍ୟାନ୍ୟ ସାହିତ୍ୟିକ ରୂପଭଳି ଉର୍ଦ୍ଦୁ କବିତା ମଧ୍ୟ ଆଧୁନିକଯୁଗରେ ପରିବର୍ତ୍ତିତ ହୋଇଅଛି । ନୂତନ କାବ୍ୟ ରୂପ ନିୟୋଜିତ ହେବା ସଙ୍ଗେ ସଙ୍ଗେ ନୂତନ ବିଷୟବସ୍ତୁ ମଧ୍ୟ କବିତାରେ ବିନିଯୁକ୍ତ ହେଉଅଛି । ଏପରିକି ଅପରିବର୍ତ୍ତିତ ବିବେଚିତ ହେଉଥିବା ଗଜଲର ଅର୍ଥରେ ମଧ୍ୟ ପରିବର୍ତ୍ତନ ସଯାଧିତ ହୋଇଅଛି । ଆଧୁନିକ ଯୁଗର ଅଧିକାଂଶ କବି ନୂତନ ଦୃଷ୍ଟିକୋଣକୁ ପାଠକ ଆଗରେ ଉପସ୍ଥାପିତ କରିବାକୁ ସଚେଷ୍ଟ । ତାଜମହଲ ଆମର ଜାତୀୟ ସଂପଦ ଓ ଗୌରବର ସାମଗ୍ରୀ ଭାବରେ ବିବେଚିତ ହୋଇ ଆସୁଥିଲେ ହେଁ ସହେର ଲୁଧିଆନ ଓ୍ଵି ଏହାକୁ ଏକ ଶୋଷଣର ପ୍ରତୀକ ରୂପେ ବର୍ଣ୍ଣନା କରିଅଛନ୍ତି ।

ଫରାସିକବି ମାଲାର୍ମେ ଓ ବୋଦଲେୟାର, ଆମେରିକୀୟ କବି ରବର୍ଟ ଫ୍ରଷ୍ଟ, ଓ ଷ୍ଟିଫେନସ୍ପେଣ୍ଡର ଏବଂ ଆମେରିକାରେ ଜନ୍ମିତ ଇଂରାଜୀ କବି ଟି. ଏସ୍ ଇଲିଅଟ ପ୍ରଭୃତି ପାଶ୍ଚାତ୍ୟ କବିମାନଙ୍କ ଦ୍ୱାରା ଆଧୁନିକ ଉର୍ଦ୍ଦୁ କବିମଣ୍ଡଳୀ ପ୍ରଭାବିତ । ଆଧୁନିକ ଉର୍ଦ୍ଦୁ କବିମାନଙ୍କୁ ରୂପକଳ୍ପବାଦୀ (Imagist) ଓ ପ୍ରତୀକବାଦୀ (Symbolist) ଭେଦରେ ଦୁଇ ଭାଗରେ ବିଭକ୍ତ କରାଯାଇଥାଏ । ପ୍ରତୀକବାଦୀ କବି ଭାବରେ ବଲରାଜ କୋମଲ, ବାକର୍ ମେହେଦି, ସାହିଁ ତମକାନତ, କୁମାର ପଶି ଓ ଅଜିଜ୍ ତମମୈଙ୍କ ନାମ ଉଲ୍ଲେଖଯୋଗ୍ୟ । ଅଖତେର ଉଲଇମାନ, ଖଲିଲୁର ରହମନ୍ ଆଜମି, ସଲିମ, ମଛିଲ ସହେର, ମଖଦୁମ ମହିଉଦ୍ଦୀନ, ମଶୋଉର ରାଜା ରହି ଓ ଡ଼ାମିସ୍ ଫରାକୀ ପ୍ରଭୃତିଙ୍କୁ ରୂପକଳ୍ପବାଦୀ ଭାବରେ ଗ୍ରହଣ କରାଯାଏ । ପ୍ରତୀକବାଦୀ ଅଜିଜ ତମମୈ ଓ ରୂପକଳ୍ପବାଦୀ ଡ଼େନିସ ଫରାକୀ ଉଭୟେ ମାନ୍ଦ୍ରାଜ ଦେଶୀୟ କବି ।

ପ୍ରାଚୀନ ପରଂପରାକୁ ଅନୁସରଣ କରି ଏବେ ମଧ୍ୟ କେତେକେ ଉର୍ଦ୍ଦୁରେ କାବ୍ୟକବିତା ରଚନା କରୁଅଛନ୍ତି । ଏହା କବିମାନଙ୍କୁ ନୂତନ ଗୋଷ୍ଠିଭୁକ୍ତ କରାଯାଇପାରେ । ମୁଶାଏରାମାନଙ୍କରେ ଏହି କବିମାନେ ହିଁ ସର୍ବାଧିକ ସମାଦର ଲାଭ କରିଥାଆନ୍ତି । ବ୍ୟଙ୍ଗାତ୍ମକ କବିତା ମଧ୍ୟ ଆଧୁନିକ ଉର୍ଦ୍ଦୁ କବିତାର ଅନ୍ୟ ଏକ ବିଭବ । ଏତାଦୃଶ କବିତା ରଚୟିତା ଭାବରେ ପାଟଣାର ରାଜା ନଳୁଭ ଓ୍ୱାହି ଓ ସ୍ୱର୍ଗତଃ ସାହିକ ଭୈରଇଧିଙ୍କ ନାମ ଉଲ୍ଲେଖଯୋଗ୍ୟ ।

ପାଶ୍ଚାତ୍ୟ ପ୍ରଭାକର ଦାନ ଭାବରେ ଉର୍ଦ୍ଦୁ ସାହିତ୍ୟରେ ଚତୁର୍ଦ୍ଦଶ ପଦୀ କବିତା, ଲକକା ରଚିତ ହେଉଅଛି । ଚଳିତ ଶତାବ୍ଦୀର ପ୍ରାରମ୍ଭରେ ଉର୍ଦ୍ଦୁରେ ଚତୁର୍ଦ୍ଦଶ ପଦୀ କବିତା ରଚନା ପ୍ରବର୍ତ୍ତିତ ହୋଇ ଅଧୁନା ବହୁ ଜନପ୍ରିୟତା ଲାଭ କରିଅଛି । ମାନ୍ଦ୍ରାଜ ଦେଶୀୟ କବି 'ଅଜଜ ତମମୈଙ୍କ' ଦ୍ୱାରା ଚତୁର୍ଦ୍ଦଶ ପଦୀ କବିତା ଉଚ୍ଚକୋଟୀକୁ ଉନ୍ନୀତ ହୋଇ ପାରିଅଛି । ତାହାଙ୍କ ଚତୁର୍ଦ୍ଦଶପଦୀ କବିତା ସଂକଳନ 'ବର୍ଗ-ଇ-ନଉଖିଜ' ପାଠକ ଓ ଆଲୋଚକମାନଙ୍କ ଦ୍ୱାରା ବହୁ ପ୍ରଶଂସିତ ।

## ଆଧୁନିକ ଉର୍ଦ୍ଦୁ ଉପନ୍ୟାସ

୧୮୫୭ରେ ସଂଘଟିତ ଭାରତୀୟ ସ୍ୱାଧୀନତା ସଂଗ୍ରାମ ବିଫଳ ହୋଇଥିଲେ ହେଁ ଭାରତର ସମାଜକୁ ଏହା ନୂତନ ରୂପ ପ୍ରଦାନ କରିଥିଲା । ଇଂରାଜୀ ଶାସନ ଓ ଇଂରାଜୀ ଶିକ୍ଷା ଚତୁର୍ଦ୍ଦିଗରେ ପ୍ରସାର ଲାଭ କଲା ଓ ପାଶ୍ଚାତ୍ୟ ସଂସ୍କୃତି ଦ୍ୱାରା ପ୍ରଭାବିତ ହେବାକୁ ଲାଗିଲା । ଏହି ସମୟରେ 'ସର୍ ସୟଦ ଅହମ୍ମଦ ଖାଁ' (୧୮୧୭-୧୮୯୯) ସରଳ ଉର୍ଦ୍ଦୁରେ ବୌଦ୍ଧିକତାକୁ ସଂଯୋଗ କରିଥିଲେ ଓ ଉର୍ଦ୍ଦୁ ଭାଷାରେ ଚିନ୍ତାପୂର୍ଣ୍ଣ ସାହିତ୍ୟ ସୃଷ୍ଟି କରିଥିଲେ । ଆଲିଗଡ଼ ସାଇଣ୍ଟିଫିକ୍ ସୋସାଇଟି ତାହାଙ୍କ ଦ୍ୱାରା ସ୍ଥାପିତ ହୋଇଥିଲା । ତାହାଙ୍କ ଉଦ୍ୟମ ଫଳରେ ପାଶ୍ଚାତ୍ୟ ବିଚାରଧାରା ଜନସାଧାରଣଙ୍କ ମଧ୍ୟରେ ପ୍ରସାର ଲାଭ କରିଥିଲା । ପୂର୍ବରୁ ଉଲ୍ଲେଖ କରାଯାଇଥିବା ଦସ୍ତାନା ବା କାଳ୍ପନିକ କାହାଣୀଗୁଡ଼ିକ ଇରାନରୁ ଅଷ୍ଟାଦଶ ଶତାବ୍ଦୀରେ ଭାରତକୁ ଆସିଥିବା ଅନୁମେୟ । ଏଗୁଡ଼ିକ ପାର୍ଶିଭାଷାରେ ଲିଖିତ । ଏଥିରେ ଆରବ୍ୟ ଉପନ୍ୟାସ ଭଳି ଘଟଣା ଅଥବା ଚରିତ୍ରମାନଙ୍କର ସ୍ୱାଭାବିକତା ପରିଲକ୍ଷିତ ହେଉ ନ ଥିଲା । ମନୋରଂଜନ କରିବା ହିଁ ଏଗୁଡ଼ିକର ପ୍ରଧାନ ଲକ୍ଷ୍ୟ ଥିଲା । ରଚୟିତାମାନେ ମୋଗଲ ରାଜଦରବାରରେ ଏହିସବୁ ଦସ୍ତାନା ଶୁଣାଇ ରାଜା ଓ ତାହାଙ୍କ ପାରିଷଦବର୍ଗଙ୍କୁ ଆନନ୍ଦିତ କରାଉଥିଲେ । କାଳକ୍ରମେ ଉର୍ଦ୍ଦୁ ଭାଷାରେ 'ଦସ୍ତାନା' ରଚିତ ହୋଇଥିଲା । ଏତାଦୃଶ ପ୍ରାଚୀନ ରଚନା ଭାବରେ 'ଦାସ୍ତାନେ ହାମୀର ହାମଜା' ଓ 'ତଲିଶ ମେ ହୋସ୍ ରୋବ୍'ର ନାମ ଉଲ୍ଲେଖ କରାଯାଇପାରେ ।

ଆଧୁନିକ ଉର୍ଦ୍ଦୁ ଉପନ୍ୟାସ ଏହି 'ଦସ୍ତାନ'ର ବିକଶିତ ରୂପ ବୋଲି କେହି କେହି ଆଲୋଚକ ମତ ବ୍ୟକ୍ତ କରିଥାଆନ୍ତି । ଦସ୍ତାନ ରଚନାକୁ ପରିହାର କରି ନଜିର ଅହମ୍ମଦ (୧୮୩୧-୧୯୧୨) ୧୮୬୭ରେ 'ମିରାତୁଲ ଓରୁସ' (ନବବଧୂର ଦର୍ପଣ) ନାମକ ଉପନ୍ୟାସ ରଚନା କରିଥିଲେ । ଏହାକୁ ଉର୍ଦ୍ଦୁ ଭାଷାର ପ୍ରଥମ ଉପନ୍ୟାସ ଭାବରେ ଗ୍ରହଣ କରାଯାଏ । ଏହାପରେ ନଜିର ଅହମ୍ମଦ, ରତନନାଥ ସରଶାର (୧୮୪୬-୧୯୦୨), ସଜ୍ଜାଦ ହୁସେନ, ମହମ୍ମଦ ଅଲି, ଶରର, ହାଦୀରୁସଓ୍ୱା, ରସିଦୁଲ ଖୈରୀ ପ୍ରଭୃତି ଉପନ୍ୟାସ ଲେଖକ ଭାବରେ ପ୍ରସିଦ୍ଧି ଲାଭ କରିଅଛନ୍ତି ।

ଏକ ଅଶିକ୍ଷିତା କୁମାରୀ ଏକ ଶିକ୍ଷିତ ପରିବାରରେ ବଧୂ ଭାବରେ କିପରି ଆପଣାକୁ ଯୋଗ୍ୟ କରିପାରିଛି ତାହାର ବାସ୍ତବ ଚିତ୍ର 'ମିରାତୁଲ ଓରୁସ'ରୁ ମିଳିଥାଏ । ରତନନାଥ 'ସରସାର'ଙ୍କ ଫିସାନା-ଇ-ଆଜାଦ' ଏକ ସଫଳ କୃତି ଭାବରେ ପରିଗଣିତ ହୁଏ । ବିଗତ ଶତାବ୍ଦୀର ଶେଷ ଭାଗରେ ଲକ୍ଷ୍ନୌର ସାମାଜିକ ଜୀବନର ଏହା ଏକ ବାସ୍ତବ ଓ ଜୀବନ୍ତ ଚିତ୍ର । ଏକ ଗଣିକାର ଜୀବନକୁ ଉପଜୀବ୍ୟ କରି ରଚିତ 'ଉମରାଓ ଜାନ ଆଦା' (ଲେଖକ-ମିର୍ଜା ରସ ଭସ୍ୱା) ମଧ୍ୟ ଏକ ସଫଳ କୃତି । ନଜିର ମହମ୍ମଦଙ୍କ ଉପଦେଶାତ୍ମକ ମିରାତୁଲ ଓରୁସ ଉପନ୍ୟାସ ଆଧୁନିକ ଗଳ୍ପ ଓ ଉପନ୍ୟାସ ରଚନାଲାଗି କ୍ଷେତ୍ର ପ୍ରସ୍ତୁତ କରିଥିଲା । ସେ ଆଉ କେତେଗୋଟି ଉପନ୍ୟାସ ରଚନା କରିଥିଲେ ହେଁ ସେଗୁଡ଼ିକୁ ବିଶେଷ ସ୍ଥାନ ଓ ତାହା ଆଧୁନିକ ଉପନ୍ୟାସ ପର୍ଯ୍ୟାୟଭୁକ୍ତ ବିବେଚିତ ହୁଏ ନାହିଁ । ରତନ ନାଥ ସରଶାର ଉପନ୍ୟାସ ରଚନାକୁ ଅଧିକ ସୁଗୋଚିତ ଓ ଉନ୍ନତ କରିପାରିଥିଲେ । ତାହାଙ୍କ ରଚିତ 'ଫନାଏ-ଆଜାଦ' ଉପନ୍ୟାସଟି ଉର୍ଦ୍ଦୁ ସାହିତ୍ୟର ଏକ ଶ୍ରେଷ୍ଠ ରଚନା ଭାବରେ ପରିଗଣିତ ହୁଏ । ଇଂରାଜୀ 'ପିକଉଇକ୍‌ପେପର' ଓ 'ଡନ କୁଇକ୍ ଯୋଟ୍' ଉପନ୍ୟାସରୁ ପ୍ରେରଣା ଲାଭ କରି ଲେଖକ ଏହି ଉପନ୍ୟାସଟି ରଚନା କରିଥିବା ଜଣାଯାଏ । ଏହାପରେ ମିର୍ଜା ମହମ୍ମଦ ହାଦିରୁସଓ୍ୱା ଉର୍ଦ୍ଦୁ ଉପନ୍ୟାସ ରଚନା କ୍ଷେତ୍ରରେ ବିକାଶ ସାଧନ କରିଥିଲେ । 'ଉମରା' ଓ 'ଜାନ ଅଦା' ତାହାଙ୍କର ଶ୍ରେଷ୍ଠ ଉପନ୍ୟାସ ଭାବରେ ପରିଗୃହୀତ ।

ଏହାପରେ ଉର୍ଦ୍ଦୁ ଉପନ୍ୟାସ କ୍ଷେତ୍ରରେ ମୁନସି ପ୍ରେମଚନ୍ଦଙ୍କ ଆବିର୍ଭାବ । ସେ ପ୍ରଥମେ ଉର୍ଦ୍ଦୁ ଭାଷାରେ ସାହିତ୍ୟ ରଚନା କରୁଥିଲେ ହେଁ ପରେ ହିନ୍ଦୀଭାଷାରେ ସାହିତ୍ୟ ରଚନା କରିବାରେ ବ୍ରତୀହେଲେ । ହିନ୍ଦୀ ଓ ଉର୍ଦ୍ଦୁ ମଧ୍ୟରେ ସାମଞ୍ଜସ୍ୟ ଥିବାରୁ ଉର୍ଦ୍ଦୁ ଉପନ୍ୟାସଗୁଡ଼ିକୁ ହିନ୍ଦୀରେ ପରିଣତ କରିବାରେ କୌଣସି ଅସୁବିଧା ଅନୁଭୂତ ହୋଇ ନ ଥିଲା । ଏତଦ୍ ବ୍ୟତୀତ ପ୍ରେମଚନ୍ଦଙ୍କ ବ୍ୟବହୃତ ଶବ୍ଦାବଳୀ ଏପରି ଥିଲା ଯେ ତାହାଙ୍କ ହିନ୍ଦୀ ଉପନ୍ୟାସକୁ ସାମାନ୍ୟ ମାତ୍ର ପରିବର୍ତ୍ତନ କଲେ

ତାହା ଉର୍ଦ୍ଦୁ ଉପନ୍ୟାସ ଭାବରେ ପରିଗଣିତ ହୋଇ ପାରୁଥିଲା । ବସ୍ତୁତଃ ତାହାଙ୍କ ରଚିତ ସମସ୍ତ ଗଳ୍ପ ଓ ଉପନ୍ୟାସ ଯେପରି ହିନ୍ଦୀଭାଷାର ଗୌରବମୟ ସଂପଦ ସେହିପରି ତାହା ଉର୍ଦ୍ଦୁ ଭାଷାର । ତାହାଙ୍କ ଗଳ୍ପ ଉପନ୍ୟାସର ପୃଷ୍ଠଭୂମି ହେଉଛି ଭାରତୀୟ ସମାଜ ବିଶେଷତଃ ଭାରତର ଗ୍ରାମାଞ୍ଚଳ । ସେ ଗ୍ରାମର ଜୀବନ ଯାତ୍ରା, ପଲ୍ଲୀବାସୀଙ୍କ ସରଳତା ଓ ସହନଶୀଳତାକୁ ଅପୂର୍ବଭାବରେ ରୂପାୟିତ କରିଯାଇ ଅଛନ୍ତି । ତାହାଙ୍କ ଅନ୍ତିମକାଳରେ ରଚିତ କେତେକ ଉପନ୍ୟାସରେ ପ୍ରଗତି ମୂଳକତାର ଈଷତ୍ ସ୍ପର୍ଶ ଅନୁଭୂତ ହୋଇଥାଏ । ସେ ନିଜକୁ ସାମ୍ୟବାଦୀ ବୋଲି ଘୋଷଣା କରି ନଥିଲେ ହେଁ ସାମ୍ୟବାଦୀ ଭାବନାର କେତେକ ପ୍ରଭାବ ମଧ୍ୟ ତାହାଙ୍କ ରଚନାବଳୀରେ ସ୍ପଷ୍ଟ । ଜମିଦାରୀ ପ୍ରଥା ବିରୁଦ୍ଧରେ ତାହାଙ୍କ ଲେଖନୀ ଥିଲା ପ୍ରଚଣ୍ଡ ଓ ସେ ସହଯୋଗ ମୂଳକ କୃଷିକୁ ଦୃଢ଼ତାର ସହିତ ସମର୍ଥନ କରିଯାଇଅଛନ୍ତି ।

ପ୍ରେମଚନ୍ଦଙ୍କ କେତେଗୋଟି ଉପନ୍ୟାସ ବିଷୟ ଏଠାରେ ଉଲ୍ଲେଖଯୋଗ୍ୟ । ପ୍ରେମଚନ୍ଦଙ୍କ ପ୍ରଥମ ଉପନ୍ୟାସ 'ସେବାସଦନ' (ଉର୍ଦ୍ଦୁ ରୂପାନ୍ତର—'ହୁସ୍ନ—ଇ ବୁଜାର') ଗଣିକା ବୃତ୍ତିକୁ ଉପଜୀବ୍ୟ କରି ଲିଖିତ । ନିଃସ୍ୱ କୃଷକମାନଙ୍କ ଉପରେ ଜମିଦାରର କଠୋର ନିର୍ଯ୍ୟାତନାକୁ ଉପଜୀବ୍ୟ କରି 'ପ୍ରେମାଶ୍ରମ' ଓ ୧୯୧୯-୧୯୨୦ର ସତ୍ୟାଗ୍ରହ ଆନ୍ଦୋଳନକୁ ଭିତ୍ତିକରି 'ରଙ୍ଗଭୂମି, ଉପନ୍ୟାସ ଲିଖିତ । କୃଷକ ଜୀବନର କରୁଣତା ଓ ଦୈନ୍ୟ ଅତୀବ ଜୀବନ୍ତ ଓ ମର୍ମସ୍ପର୍ଶୀ ଭାବରେ ତାହାଙ୍କର 'ଗୋଦାନ' ଓ 'ଗବନ' ଉପନ୍ୟାସରେ ଚିତ୍ରିତ ହୋଇଅଛି । 'ଗୋଦାନ' ତାହାଙ୍କର ସର୍ବଶ୍ରେଷ୍ଠ ଉପନ୍ୟାସ ରୋମାଣ୍ଟିକ ବିଷୟକୁ ପରିହାର କରି ଜନସାଧାରଣଙ୍କ ଜୀବନକୁ ଉପଜୀବ୍ୟ କରି ପ୍ରଥମେ ଉପନ୍ୟାସ ଲେଖି ପ୍ରେମଚନ୍ଦ୍ର ଉପନ୍ୟାସ ରଚନା କ୍ଷେତ୍ରରେ ଯୁଗାନ୍ତର ଆନୟନ କରି ଅଛନ୍ତି । ତାହାଙ୍କ ଉପନ୍ୟାସରେ ଗାନ୍ଧୀବାଦର ପ୍ରଭାବ ମଧ୍ୟ ସୁସ୍ପଷ୍ଟ ।

କରୁଣ ରସାତ୍ମକ ଉପନ୍ୟାସ ଲେଖକ ଭାବରେ 'ରଶିଦୁଲ୍ ଖୈରୀ' ସ୍ୱନାମଧନ୍ୟ । ମଧ୍ୟବିତ୍ତ ପରିବାରର ବାସ୍ତବଧର୍ମୀ ଚିତ୍ର ଅଙ୍କନ କରିବାରେ ତାହାଙ୍କର କୃତିତ୍ୱ ଏକାନ୍ତ ମହତ୍ତ୍ୱପୂର୍ଣ୍ଣ । 'ଜମାଲ୍ ସ୍ଥାନ' ଓ 'ସେର କା ଆମାଜାନ' ଉପନ୍ୟାସର ରଚୟିତା ନେୟାଜ ଫତେପୁରୀ ତାହାଙ୍କର ନିପୁଣ ରଚନା ରୀତି ଲାଗି ସୁବିଖ୍ୟାତ । ପରଂପରା ଓ ଗତାନୁଗତିକ ପ୍ରଥା ଏବଂ ନୀତି ନିୟମ ପ୍ରତି ତୀବ୍ର ବିରୋଧିତା ତାହାଙ୍କ ଉପନ୍ୟାସରେ ସୁପରିସ୍ଫୁଟ ।

ସ୍ୱାଧୀନତା ପରେ ଦ୍ୱିଧା ବିଭକ୍ତ ଭାରତର ଦୁର୍ଦ୍ଦଶା ଓ କରୁଣ ପରିବେଶ ହିଁ ଉର୍ଦ୍ଦୁ ସାହିତ୍ୟ କ୍ଷେତ୍ରରେ ଉଚ୍ଚକୋଟୀର ଉପନ୍ୟାସ ସୃଷ୍ଟି କରାଇଥିଲା । ଏହି ଉପନ୍ୟାସଗୁଡ଼ିକରେ ସୁଗଭୀର ମାନବପ୍ରୀତି ଓ ମାନବିକ ଗଭୀର ସମବେଦନା

ପ୍ରକାଶିତ ହେଲା । ପଶୁପ୍ରବୃତ୍ତିର ସଂଯମ ଯେ ମନୁଷ୍ୟର ଆଦର୍ଶ ଏହା ହିଁ ଲେଖକମାନଙ୍କ ଉପନ୍ୟାସରେ ଚର୍ଚ୍ଚିତ । ଏତାଦୃଶ ରଚନାର ନିଦର୍ଶନ ସ୍ୱରୂପରେ କିଷନଚନ୍ଦରଙ୍କ 'ହାମ ସବ ଓ୍ୱାହସି ହୈ' (ଆମେ ସବୁ ବଣ ପଶୁ) ଓ ରାମାନନ୍ଦ ସଗରଙ୍କ 'ଔର ଇନସାନ ମର୍ ଗିଆ' (ପୁଣି ମଣିଷ ମରିଗଲା) ଉପନ୍ୟାସ ଉଲ୍ଲେଖଯୋଗ୍ୟ । ଏତାଦୃଶ ଉପନ୍ୟାସମାନଙ୍କରେ ବିଶ୍ୱପ୍ରେମ ଓ ଉଦାର ଭ୍ରାତୃତ୍ୱର ରୂପାୟନ ଦେଖିବାକୁ ମିଳିଥାଏ ।

ସାଂପ୍ରତିକ ଅନ୍ୟାନ୍ୟ ଔପନ୍ୟାସିକ ମାନଙ୍କ ମଧ୍ୟରୁ ଇସ୍‌ମତ ଚୁଗ୍‌ତାଇ, ଉପେନ୍ଦ୍ରନାଥ ଅସ୍କ, ରାଜେନ୍ଦ୍ରସିଂହ ବେଦୀ, ଖ୍ୱାଜା ଆହମ୍ମଦ ଆବ୍‌ବାସ, ବଲବନ୍ତ ସିଂ ଗାର୍ଗେ, ହଜର୍ ବେଗମ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ ।

## ଆଧୁନିକ ଉର୍ଦ୍ଦୁ କ୍ଷୁଦ୍ରଗଳ୍ପ—

ଆଧୁନିକ ଉର୍ଦ୍ଦୁ କ୍ଷୁଦ୍ରଗଳ୍ପ କ୍ଷେତ୍ରରେ ଆଶାନୁରୂପ ଅଗ୍ରଗତି ସାଧିତ ହୋଇଅଛି । ଉର୍ଦ୍ଦୁ ଭାଷାରେ ସାମ୍ପ୍ରତିକ ଶ୍ରେଷ୍ଠ କଥାକାର ମାନଙ୍କ ମଧ୍ୟରୁ କିଷନ୍ ଚନ୍ଦର, ଖ୍ୱାଜା ଅହମ୍ମଦ ଆବ୍‌ବାସ, ରାଜେନ୍ଦର୍ ସିଂ ବେଦୀ, ବଲବନ୍ତ ସିଂହ, ଅଲ୍ ଆବ୍‌ବାସ ହୁସେନ, ଇସମତ୍ ଚୁଘତାଇ, ରାମଲାଲ, ମହେନ୍ଦର ନାଥ, ସୁଲତାନ ହୈଦର ଜୋଶ କାଶ୍ମିରି ଲାଲ୍ ଯାକର ଓ ଜୀଲାନୀ ବାନୁ ସୁପ୍ରସିଦ୍ଧ । ଏମାନଙ୍କ ମଧ୍ୟରୁ ଅନେକେ ସୁଔପନ୍ୟାସିକ ଭାବରେ ମଧ୍ୟ ପ୍ରଖ୍ୟାତ । ସାଧାରଣତଃ ଦୃଷ୍ଟିରୁ ଅନ୍ତରାଳରେ ରହୁଥିବା ଜୀବନର ଘଟଣାବଳୀକୁ ପାଠକମାନଙ୍କ ଗୋଚରୀଭୂତ କରାଇବା ଓ ବର୍ତ୍ତ୍ତନାରେ ଯଥା ସମ୍ଭବ ବ୍ୟକ୍ତି ନିରପେକ୍ଷ ହେବାହିଁ ସାମ୍ପ୍ରତିକ ଉର୍ଦ୍ଦୁ ଔପନ୍ୟାସିକ ମାନଙ୍କର ଲକ୍ଷ୍ୟ । କେତେକ ଔପନ୍ୟାସିକଙ୍କ ବିରୁଦ୍ଧରେ ଅଶ୍ଳୀଳତାର ଅଭିଯୋଗ ହୋଇଥାଏ । ମାତ୍ର ଏହା ସେମାନଙ୍କ ଲକ୍ଷ୍ୟ ନୁହେଁ, ପ୍ରତାରଣାର ଆବରଣକୁ ଉନ୍ମୋଚିତ କରିବାରେ ଏମାନେ ସାହସିକତା ପ୍ରଦର୍ଶନ କରିଅଛନ୍ତି । ତଦ୍ୱାରା ପାରଂପରିକ ମୂଲ୍ୟବୋଧ ପରିବର୍ତ୍ତେ ଘଟଣାବଳୀ ତାହାର ବାସ୍ତବ ରୂପରେ ହିଁ ପ୍ରତିଭାତ ହୋଇଅଛି ଓ ମାନବ ଚରିତ୍ରର ବସ୍ତୁନିଷ୍ଠ ବା ବ୍ୟକ୍ତିନିରପେକ୍ଷ ଅବବୋଧ ସମ୍ଭବପର ହୋଇଅଛି ।

ଜାଫର ଓମାର ପ୍ରଥମେ ଉର୍ଦ୍ଦୁରେ ନୀଲୀଛତ୍ରୀ (ନେଳଛତା) ନାମକ ରହସ୍ୟଭେଦମୂଳକ ଉପନ୍ୟାସଟି ରଚନା କରିଥିଲେ । ଅଧୁନା ରହସ୍ୟଭେଦ ମୂଳକ ଉପନ୍ୟାସ ଉର୍ଦ୍ଦୁ ସାହିତ୍ୟରେ ବହୁ ଜନପ୍ରିୟତା ଲଭ କରିଅଛି । ତୀରଥ ରାମ ଫିରୋଜପୁରୀ ସେକ୍‌ସଟନ ବ୍ଲେକ୍ ଗ୍ରନ୍ଥମାଳା ଓ ଅନ୍ୟାନ୍ୟ ଇଂରାଜୀ ଉପନ୍ୟାସକୁ ଉର୍ଦ୍ଦୁରେ ଅନୁବାଦ କରିଅଛନ୍ତି । ଇବ୍‌ନେ ସାଫି, ଏକ୍‌ରାମ ଇଲାହାବାଦୀ ପ୍ରଭୃତି

ସରସ ଉପନ୍ୟାସ ରଚୟିତା ଭାବରେ ଖ୍ୟାତିଲାଭ କରିଅଛନ୍ତି । ଅଧୁନା ଐତିହାସିକ, ପ୍ରଣୟାତ୍ମକ, ରହସ୍ୟଭେଦାତ୍ମକ ପ୍ରଭୃତି ବିଭିନ୍ନ ପ୍ରକାର ମୌଳିକ ଉପନ୍ୟାସ ରଚିତ ହେଉଅଛି ଓ ନୁଟହାମସନଙ୍କ 'ହଙ୍ଗର୍' (କ୍ଷୁଧା) ଭଳି ବହୁ ବିଶ୍ୱ ପ୍ରସିଦ୍ଧ ଉପନ୍ୟାସ ଉର୍ଦ୍ଦୁରେ ଅନୁଦିତ ହୋଇଅଛି ।

ଆଧୁନିକ ଉର୍ଦ୍ଦୁ କ୍ଷୁଦ୍ର ଗଳ୍ପର ବିକାଶ ସାଧନ କ୍ଷେତ୍ରରେ ପ୍ରେମଚନ୍ଦ୍ର ଓ ନେୟାଜ ଫତେପୁରୀଙ୍କ କୃତିତ୍ୱ ମଧ୍ୟ ଉଲ୍ଲେଖଯୋଗ୍ୟ । ପ୍ରେମଚନ୍ଦ୍ରଙ୍କ କ୍ଷୁଦ୍ର ଗଳ୍ପରେ କୃଷକ, ଶ୍ରମିକ ମାନଙ୍କ ଜୀବନ ଓ ଆଞ୍ଚଳିକତାର ଚିତ୍ରଣ ଦେଖିବାକୁ ମିଳେ । ସାଧାରଣତଃ ତାହାଙ୍କ ଗଳ୍ପଗୁଡ଼ିକ ମିଳନଧର୍ମୀ ଓ ଆଦର୍ଶମୂଳକ । ପାଶ୍ଚାତ୍ୟ ସଭ୍ୟତାର ପ୍ରଭାବ ଉପରେ ଜନଜୀବନରେ ପ୍ରତିକ୍ରିୟା ସୃଷ୍ଟି କରିଥିଲା ତାହାକୁ ସେ ଅତ୍ୟନ୍ତ ଦକ୍ଷତାର ସହିତ ଚିତ୍ରଣ କରିଅଛନ୍ତି ।

ସୁଲତାନ ହୈଦର ଜୋସ୍‌ଙ୍କ ଗଳ୍ପ ଗୁଡ଼ିକରେ ପାଶ୍ଚାତ୍ୟ ସଭ୍ୟତା ପ୍ରତି କଟାକ୍ଷ, ସମାଜର ପ୍ରବଣତା ଓ ହାସ୍ୟରସାତ୍ମକତା ପରିଲକ୍ଷିତ ହୁଏ । ନେୟାଜ ଫତେପୁରୀ ରୋମାଞ୍ଚକର, ସାମାଜିକ ଓ ବ୍ୟଙ୍ଗାତ୍ମକ ବହୁଗଳ୍ପ ରଚନା କରିଅଛନ୍ତି । ତାହାଙ୍କ ରୋମାଞ୍ଚକର ବା ରୋମାଣ୍ଟିକ ଗଳ୍ପ ଭାବରେ 'କ୍ୟୁପିଡ଼ ଓ ସାଇକ', 'ଶବନ ମିସ୍ତାନକା ଜଡର ଏ ଗୌହର' ସୁପ୍ରସିଦ୍ଧ । ତାହାଙ୍କ ସାମାଜିକ ଗଳ୍ପରେ ଭାରତୀୟ ମଧ୍ୟବିତ୍ତ ଶ୍ରେଣୀର ମାନସିକ ବିଶୃଙ୍ଖଳା ଓ ସେମାନଙ୍କ ଜୀବନ ଧାରାରେ ପାଶ୍ଚାତ୍ୟ ଶିକ୍ଷାର ପ୍ରତିକ୍ରିୟା ବର୍ଣ୍ଣିତ । 'ମହବ୍‌ବତକୀ ଦେବୀ' ଏତାଦୃଶ ଗଳ୍ପ ମାନଙ୍କ ମଧ୍ୟରୁ ସୁ ପ୍ରସିଦ୍ଧ । ମୌଲବୀ, ପୀର ଏବଂ ସୁଫୀମାନଙ୍କ ଚରିତ୍ରିକ ଦୋଷ ଦୁର୍ବଳତାକୁ ବ୍ୟଙ୍ଗ ଓ ହାସ୍ୟରସାତ୍ମକ ଭାବରେ ମଧ୍ୟ ସେ ଚିତ୍ରଣ କରିଯାଇଅଛନ୍ତି । ତାହାଙ୍କ ଗଳ୍ପର ଭାଷା ଯେପରି ଲାଳିତ୍ୟପୂର୍ଣ୍ଣ ସେହିପରି ତାହାର ରଚନାଶୈଳୀ ମଧ୍ୟ ସରସ ଓ କୌତୁହଳ ଉଦ୍ଦୀପକ ।

**ନାଟକ—**

ଉର୍ଦ୍ଦୁ ନାଟକର ଆଶାନୁରୂପ ଅଗ୍ରଗତି ହୋଇପାରି ନାହିଁ । ଉର୍ଦ୍ଦୁ ସାହିତ୍ୟର ଏହି ବିଭାଗଟି ଅତ୍ୟନ୍ତ ଅବହେଳିତ ଓ ଅନଗ୍ରସର । ଊନବିଂଶ ଶତାବ୍ଦୀ ପ୍ରଥମାର୍ଦ୍ଧର ଶେଷ ଭାଗରେ ଉର୍ଦ୍ଦୁରେ ସର୍ବାଦୌ ନାଟକ ରଚିତ ହୋଇଥିଲା । କେବଳ କବିତ୍ୱପୂର୍ଣ୍ଣ ଶବ୍ଦାଡମ୍ବର ବ୍ୟତୀତ ଏଥିରେ ପ୍ରକୃତ ଆଧୁନିକତାର ଆଭାସ ପରିଲକ୍ଷିତ ହୁଏନାହିଁ । ଆଗାହାସର କାଶ୍ମିରୀ 'ପାର୍ଶୀ ଥିଏଟରିକାଲ୍ କମ୍ପାନି' ଲାଗି କେତେକ ନାଟକ ରଚନା କରିଥିଲେ । ଏଗୁଡ଼ିକରୁ

କେତେକ ନାଟକର କଥାବସ୍ତୁ ଭାରତୀୟ ପୁରାଣରୁ ଗୃହୀତ ଅଥବା ତାହା ଭାରତୀୟ ପୃଷ୍ଠଭୂମିରେ ସେକ୍ସପିଅରଙ୍କ ନାଟକର ମୁକ୍ତ ଅନୁବାଦ ମାତ୍ର ।

ବ୍ରିଟିଶ ଶାସନ ବିରୁଦ୍ଧରେ ଭାରତୀୟ ଜାଗରଣର ପ୍ରାରମ୍ଭକାଳରେ ଜାଫର ଅଲ୍ଲୀ ଖାଁ 'ରୁଷ ଔର ଯାପାନ' ନାମରେ ଏକ ନାଟକ ରଚନା କରିଥିଲେ । ରୁଷ୍ ଓ ଯାପାନର ଯୁଦ୍ଧକୁ ଭିତ୍ତିକରି ଏହା ଲିଖିତ । ଏହା ମାଧ୍ୟମରେ ଲେଖକ ଭାରତୀୟ ମାନଙ୍କ ହୃଦୟରେ ସ୍ୱଦେଶ ପ୍ରୀତି ଜାଗ୍ରତ କରାଇବାକୁ ଉଦ୍ୟମ କରିଥିଲେ । ୧୯୦୫ ମସିହାରେ ଏହା ଅଭିନୀତ ହୋଇଥିଲା । ଏହି ସମୟରେ ଉମରା ଅଲ୍ଲୀଙ୍କ ଦ୍ୱାରା 'ଆଲବର୍ଟ୍ ବିଲ' ନାମକ ଆଉ ଏକ ନାଟକ ରଚିତ ହୋଇଥିଲା । ଏହି ନାଟକଟି ମଧ୍ୟ ଦେଶାତ୍ମବୋଧ ଓ ଇଂରେଜମାନଙ୍କ ପ୍ରତି ବିଦ୍ୱେଷ ଜନ୍ମାଇବା ଉଦ୍ଦେଶ୍ୟରେ ରଚିତ ହୋଇଥିଲା । ଏଥିରୁ ହାସ୍ୟରସର ଆଭାସ ମିଳିଥାଏ । ଏହାର ଅଳ୍ପ କେତେବର୍ଷ ପରେ କିଷନଚନ୍ଦ ଯେବା 'ଜଖମୀ ପଞ୍ଜାବ' (ଆହତ ପଞ୍ଜାବ) ନାମରେ ଏକ ପୂର୍ଣ୍ଣାଙ୍ଗ ରାଜନୈତିକ ନାଟକ ରଚନା କରିଥିଲେ । ଅବଦୁଲ ମାଜିଦ୍ ଦରିଆ ବାଦୀ 'ମୁଦେ ପରେ ମାନ' ନାମକ ଏକ ସମାଜ-ରାଜନୈତିକ ଉପନ୍ୟାସ ଓ ଅନାରକଲୀ ନାଟକ ରଚୟିତା ଭାବରେ ମଧ୍ୟ ବିଦିତ ।

ଏହାପରେ ଚଳଚ୍ଚିତ୍ର-ଶିଳ୍ପର ବିକାଶ ଫଳରେ ନାଟକ ରଚନା ପ୍ରବାହ ବାଧାପ୍ରାପ୍ତ ହେଲା । ତଥାପି ଯାମିଆ-ଇ-ମିଲ୍ଲିଆର ଡ. ମୁଜିବ, ଡ. ଆବିଦ ହୁସେନ୍, ଫଜଲବିର ରହମନ, ଗୁଲାମ ମହମ୍ମଦ ଫୁରକାନ ଓ ଶୟଦ ଅହମ୍ମଦ ଶା ପ୍ରଭୃତି ଲେଖକଗଣ ସମ୍ପ୍ରତି ନାଟକ ରଚନା କ୍ଷେତ୍ରକୁ ଉଜ୍ଜୀବନ ରଖିଅଛନ୍ତି । ବହୁ ସଂଖ୍ୟାରେ ବେତାର ନାଟକ ଓ ଏକାଙ୍କିକା ମଧ୍ୟ ଉର୍ଦ୍ଦୁରେ ଲିଖିତ ହେଉଛି । ମାତ୍ର ଉର୍ଦ୍ଦୁରେ ଉଚ୍ଚାଙ୍ଗ ନାଟ୍ୟ ସାହିତ୍ୟ ଯେ ରଚିତ ହୋଇପାରି ନାହିଁ ଏହା ଏକ ନିଷ୍ଠୁର ସତ୍ୟ । ବିଶ୍ୱେଶ୍ୱର ପରସାଦ ମୁନାଓର ଲକନୌଇ କାଳିଦାସଙ୍କ ଶକୁନ୍ତଳା ଓ ଅନ୍ୟାନ୍ୟ ନାଟକାବଳୀକୁ ଉର୍ଦ୍ଦୁ ଭାଷାରେ ଅନୁବାଦ କରିଅଛନ୍ତି ।

## ଆଲୋଚନା ସାହିତ୍ୟ—

ସାମ୍ପ୍ରତିକ ବିଶିଷ୍ଟ ଉର୍ଦ୍ଦୁ ଆଲୋଚକମାନଙ୍କ ମଧ୍ୟରୁ ଏଗତି-ସାମ ହୁସେନ ଖଲିଲୁର ରହମନ ଅଜମି, ଗୋପୀଚାନ୍ଦ ନାରଙ୍ଗ, ଆଲେ ଅହମ୍ମଦ ସୁରୁର ( କଲିମୁଦ୍ଦିନ ଅହମ୍ମଦଙ୍କ ନାମ ଉଲ୍ଲେଖଯୋଗ୍ୟ । ବିଷୟବସ୍ତୁ ଓ ତାହାର ପୃଷ୍ଠଭୂମି ସାହିତ୍ୟ ରଚୟିତା ଓ ତାହାଙ୍କ ଉପରେ ଅନ୍ୟର ପ୍ରଭାବ ପ୍ରଭୃତିକୁ ଭିତ୍ତିକରି ଆଧୁନି

ଆଲୋଚନା ଲିଖିତ ହେଉଅଛି । ବ୍ୟକ୍ତି ନିରପେକ୍ଷ ଭାବରେ ସାହିତ୍ୟ ସୃଷ୍ଟିର ମୂଲ୍ୟାଙ୍କନହିଁ ଆଜିର ଆଲୋଚକଙ୍କର ପ୍ରଧାନ ଉଦ୍ଦେଶ୍ୟ । ସିବଲି ନୁମାନୀଙ୍କ ଐତିହାସିକ ଆଲୋଚନାତ୍ମକ ଗ୍ରନ୍ଥଗୁଡ଼ିକ ଉର୍ଦ୍ଦୁ ସାହିତ୍ୟ ସମାଲୋଚନା କ୍ଷେତ୍ରରେ ଉଲ୍ଲେଖ ଯୋଗ୍ୟ । ସମାଲୋଚକ ଓ ଗଦ୍ୟ ଲେଖକ ଭାବରେ ବ୍ରଜନାରାୟଣ ଚକବସ୍ତଙ୍କ ନାମ ମଧ୍ୟ ସ୍ମରଣୀୟ । ପ୍ରଗତିଶୀଳ ସମାଲୋଚକ ଭାବରେ ଫିରାକ ମଧ୍ୟ ସୁପ୍ରସିଦ୍ଧ ।

## ଉର୍ଦ୍ଦୁ ଗଦ୍ୟସାହିତ୍ୟ :—

ଇଷ୍ଟଇଣ୍ଡିଆ କମ୍ପାନି ପକ୍ଷରୁ ୧୮୦୦ରେ କଲିକତାରେ ପ୍ରତିଷ୍ଠିତ ଫୋର୍ଟ୍ ଉଇଲିୟମ୍ କଲେଜ ପ୍ରତିଷ୍ଠା ସମୟରୁ ଆଧୁନିକ ଉର୍ଦ୍ଦୁ ଗଦ୍ୟର ସୂତ୍ରପାତ ହୋଇ-ଅଛି । ଡକ୍ଟର ଗିଲ୍‌କ୍ରିଷ୍ଟଙ୍କ ଅଧିନାୟକତ୍ୱରେ ସେଠାରେ ଉର୍ଦ୍ଦୁଭାଷାରେ କମ୍ପାନୀର କର୍ମଚାରୀମାନଙ୍କୁ ଶିକ୍ଷା ଦେବାଲାଗି ଉଦ୍ୟମ ହୋଇଥିଲା । ଗିଲ୍‌କ୍ରିଷ୍ଟ ସ୍ୱୟଂ ଉର୍ଦ୍ଦୁ ଭାଷାରେ କେତେକ ପୁସ୍ତକ ରଚନା କରିଥିଲେ । ଇଂରାଜୀ ହିନ୍ଦୁସ୍ଥାନୀ ଅଭିଧାନ, ହିନ୍ଦୁ-ସ୍ଥାନୀ ବ୍ୟାକରଣ, ହିନ୍ଦୁସ୍ଥାନୀ ଭାଷାତତ୍ତ୍ୱ ପ୍ରଭୃତି ପୁସ୍ତକ ମଧ୍ୟ ତାହାଙ୍କ ଦ୍ୱାରା ସଂକଳିତ ହୋଇଥିଲା । କେତେକ ପାର୍ସୀ ଓ ସଂସ୍କୃତଭାଷାର ପୁସ୍ତକକୁ ସେ ଉର୍ଦ୍ଦୁଭାଷାରେ ଅନୁବାଦ କରାଇଥିଲେ । ସେହି ଅନୁବାଦକମାନଙ୍କୁ ମୁନ୍‌ସୀ କୁହାଯାଉଥିଲା । ଏହି ଅନୁବାଦକମାନଙ୍କ ମଧ୍ୟରୁ ମୀର ଅମନ, ଅଫଶୋସ, ବାହାଦୁର ଆଲି ହୁସେନ, ହାଇଦରୀ, ନେହାଲଚାନ୍ଦ, ମଜହର ଅଲିଓ୍ୱାଲି, ହାପିଜ ଉଦ୍ଦିନ ଏକରାମ ଅଲ୍ଲି, ଲାଲ୍‌ଲାଲଜୀ, ବେଣୀ ନାରାୟଣ, ମିର୍ଜା ଅଲ୍ଲି ଲୁତଫଙ୍କ ନାମ ସ୍ମରଣୀୟ । ମିର୍ ଅମନ ସରଳ ଉର୍ଦ୍ଦୁଭାଷାରେ ଅମିର ଖସ୍ରୁଙ୍କ ରଚିତ 'ଗୁର ଦରବେଶ'କୁ ଅନୁବାଦ କରିଥିଲେ । ଅଫଶୋସ 'ଅରସ-ଇ ମହଫିଲ୍' ଓ ହାଫିଜ ଉଦ୍ଦିନ ଅବୁଲଫଜଲଙ୍କ 'ଅୟର-ଇ-ଦାସିସ'କୁ ଅନୁବାଦ କରିଥିଲେ । ଲାଲୁଲାଲଜୀ ବେତାଳ ପଞ୍ଚବିଂଶତିକୁ ଅନୁବାଦ କରିଥିଲେ । ୧୮୬୯ରେ ଅବଦୁଲ୍ କାଦରଙ୍କ ଦ୍ୱାରା ଅନୁଦିତ 'କୋରାନ' ଉର୍ଦ୍ଦୁ ଗଦ୍ୟକୁ ବଳିଷ୍ଠ କରିଥିଲା ।

ଏହାପରେ ଘାଲିବଙ୍କ ଦ୍ୱାରା ଉର୍ଦ୍ଦୁ ଗଦ୍ୟ ଏକ ଦୃଢ଼ ଭିତ୍ତି ଉପରେ ପ୍ରତିଷ୍ଠିତ ହୋଇପାରିଥିଲା । ତାହାଙ୍କ ପତ୍ରାବଳୀର ସଂଗ୍ରହ 'ଉର୍ଦ୍ଦୁ-ଇ ମୋଅଲ୍ଲ' ଓ 'ଉଦେ ହିନ୍ଦୀ', ସରସ, ସୁନ୍ଦର ଓ ଭାବପୂର୍ଣ୍ଣ ଗଦ୍ୟର ନିଦର୍ଶନ । ତାହାଙ୍କ ପଦାଙ୍କ ଓ ରଚନା ରୀତିକୁ ଅନୁସରଣ କରି ସାର୍ ସଏଦ ଅହମଦ, ମୋସିନୁଲ ମୁଲ୍‌କ, ଚେରାଗ ଅଲ୍ଲୀ, ମହମ୍ମଦ ହୁସେନ ଆଜାଦ, ହାଲି, ଡଃ ନଜିର ଅହମ୍ମଦ, ଜେକାଉଲ୍ଲା ପ୍ରଭୃତି ଗଦ୍ୟରେ ଉଚ୍ଚାଙ୍ଗ ସାହିତ୍ୟ ସୃଷ୍ଟି କରିଯାଇ ଅଛନ୍ତି ।

# ଅନୁବାଦ :—

ଅଯୋଧ୍ୟା ଦରବାର ଆନୁକୂଲ୍ୟରେ ୧୮୪୦ ଖ୍ରୀଷ୍ଟାବ୍ଦରେ ଉର୍ଦ୍ଦୁରେ ବୈଜ୍ଞାନିକ ପୁସ୍ତକମାନଙ୍କୁ ଅନୁବାଦ କରିବାର ପ୍ରାଥମିକ ଉଦ୍ୟମ ହୋଇଥିଲା । ପ୍ରାଥମିକ ଅନୁବାଦକମାନଙ୍କ ମଧ୍ୟରୁ ସର୍ ସୈୟଦଙ୍କ ନାମ ଉଲ୍ଲେଖ ଯୋଗ୍ୟ । ଚଳିତ ଶତାବ୍ଦୀରେ ହାଇଦରାବାଦର ନିଜାମ, 'ଟ୍ରାନସଂଲେସନ ବ୍ୟୁରୋ' ନାମକ ଏକ ସଂସ୍ଥା ସ୍ଥାପନ କରିଥିଲେ ଓ କେତେବର୍ଷ ମଧ୍ୟରେ ବିଭିନ୍ନ ବିଷୟକ ପ୍ରସିଦ୍ଧ ଇଂରାଜୀ ଗ୍ରନ୍ଥମାନଙ୍କୁ ଉର୍ଦ୍ଦୁରେ ଅନୁବାଦ କରାଇଥିଲେ । ଫଳତଃ ହାଇଦରାବାଦ ଓ ଦିଲ୍ଲୀ ଜାମିଆ ମିଲିଆରେ ବି. ଏ. ପର୍ଯ୍ୟନ୍ତ ସବୁ ବିଷୟ ଉର୍ଦ୍ଦୁ ମାଧ୍ୟମରେ ଶିକ୍ଷା ଦେବାର ବ୍ୟବସ୍ଥା ହୋଇପାରିଥିଲା । ଉର୍ଦ୍ଦୁ ସାହିତ୍ୟର ବିକାଶ ସାଧନରେ ହାଇଦରାବାଦର ନିଜାମ ଓ ଦିଲ୍ଲୀର ମୌଲବୀ ଅବଦୁଲ ହକ୍‌ଙ୍କ ଉଦ୍ୟମ ଓ ସାହାଯ୍ୟ ଉଲ୍ଲେଖଯୋଗ୍ୟ ।

ଇଂରାଜୀରୁ ବହୁ ଉପନ୍ୟାସ ଅନୂଦିତ ହେବା ବ୍ୟତୀତ ବଙ୍ଗଳାର ବଙ୍କିମଚନ୍ଦ୍ର, ଶରତଚନ୍ଦ୍ର ଓ ରବୀନ୍ଦ୍ରନାଥ, ନଜରୁଲ୍, ତାରାଶଙ୍କର, ମାନିକ ବନ୍ଦୋପାଧ୍ୟାୟ, ନରେନ୍ଦ୍ର ଘୋଷ ପ୍ରଭୃତିଙ୍କ ଉପନ୍ୟାସ, ଗଳ୍ପ ଓ କବିତା ପ୍ରଭୃତି ଉର୍ଦ୍ଦୁରେ ଅନୂଦିତ ହୋଇଅଛି ।

ହିନ୍ଦୀ, ହିନ୍ଦବୀ, ହିନ୍ଦୁସ୍ଥାନୀ, ରେଖତା ଓ ଉର୍ଦ୍ଦୁ ପ୍ରଭୃତି ବିଭିନ୍ନ ନାମରେ ବିଭିନ୍ନ ସମୟରେ ଅଭିହିତ ହେଉଥିବା ଉର୍ଦ୍ଦୁ ସାହିତ୍ୟର ଏହାହିଁ ଏକ ସ୍ଥୂଳ ବିବରଣୀ । ଭାରତୀୟ ଓ ଇରାନୀୟ ସଂସ୍କୃତିର ମଧୁର ସମନ୍ୱୟର ପ୍ରତୀକ ଭାବରେ ଏହି ଭାଷାର ଅତୀତ ଯେପରି ମହାର୍ଘ୍ୟାନ ସେହିପରି ଏହାର ଗୌରବମୟ ସମ୍ଭାବନା ପୂର୍ଣ୍ଣ ଭବିଷ୍ୟତ ବିଷୟରେ ମଧ୍ୟ ଆମ୍ଭେମାନେ ଆସ୍ଥାବାନ । ଉର୍ଦ୍ଦୁ ଭାଷା ଭାରତୀୟ ବହୁଭାଷାର ଐକ୍ୟ ପ୍ରତିଷ୍ଠାରେ ସହାୟକ ହୋଇଥିଲା ଏବଂ ଭବିଷ୍ୟତରେ ମଧ୍ୟ ତାହା ସମ୍ପାଦନ କରିବ ଏହା ଆଶା କରିବା ଏକାନ୍ତ ସ୍ୱାଭାବିକ ।

———

# ତେଲୁଗୁ ସାହିତ୍ୟ

## ତେଲୁଗୁ ଭାଷା—

ଆଧୁନିକ ଭାରତୀୟ ଭାଷାମାନଙ୍କ ମଧ୍ୟରୁ ତେଲୁଗୁ ଏକ ପ୍ରଧାନ ଭାଷା ଭାବରେ ସ୍ୱୀକୃତ । ଏହି ଭାଷାଭାଷୀଙ୍କ ସଂଖ୍ୟା ତିନିକୋଟି କୋଡ଼ିଏ ଲକ୍ଷ । ଆଧୁନିକ ଭାରତୀୟ ଭାଷାମାନଙ୍କ ମଧ୍ୟରୁ କଥିତ ଭାଷା ଭାବରେ ଏହାର ସ୍ଥାନ ଦ୍ୱିତୀୟ । ଏହି ଭାଷାର ଏକ ସମୁନ୍ନତ ସାଂସ୍କୃତିକ ପରମ୍ପରା ସ୍ୱତନ୍ତ୍ର ଲିପି ତଥା ସମୃଦ୍ଧ ସାହିତ୍ୟ ବିଦ୍ୟମାନ ।

ତେଲୁଗୁ, ତେନୁଗୁ ଓ ଆନ୍ଧ୍ର ଏଇ ତିନୋଟି ଶବ୍ଦ ଏବେ ଭାଷା ଅର୍ଥରେ ପ୍ରଯୁକ୍ତ ହେଉଅଛି । ଆନ୍ଧ୍ର ଶବ୍ଦଟି ପ୍ରଥମେ ଜାତିବୋଧକ ଥିଲି, ଅବଶେଷରେ ଏହା ଭାଷାସୂଚକ ହୋଇଅଛି । 'ତେଲୁଗୁ' ଓ 'ତେନୁଗୁ' 'ଆନ୍ଧ୍ର' ଶବ୍ଦର ପରବର୍ତ୍ତୀ । ଐତରେୟ ବ୍ରାହ୍ମଣ, ମହାଭାରତ (ସଭାପର୍ବ), ରାମାୟଣ (କିଷ୍କିନ୍ଧ୍ୟା କାଣ୍ଡ), ଅଶୋକଙ୍କ ଗିରନାର ଶିଳାଲିପି, ଐତିହାସିକ ପ୍ଲିନିଙ୍କ ରଚନାରେ ଆନ୍ଧ୍ର ଜାତିର ଉଲ୍ଲେଖ ଦେଖିବାକୁ ମିଳେ ।

ଆନ୍ଧ୍ର ଶବ୍ଦ ପରେ ଭାଷା ଅର୍ଥରେ ପ୍ରଯୁକ୍ତ ହୋଇଥିଲି । ତେଲୁଗୁର ସର୍ବପ୍ରଥମ ମହାକାବ୍ୟ 'ଭାରତଗ୍ରନ୍ଥ'ର ରଚୟିତା ନନ୍ନୟ ଭଟ୍ଟାରକଙ୍କ ସମୟରୁ ତାହାଙ୍କ ଆଶ୍ରୟଦାତା ରାଜରାଜଙ୍କ ଦ୍ୱାରା ଏହି ଶବ୍ଦ ଏହି ଅର୍ଥରେ ବ୍ୟବହୃତ ହୋଇଥିଲି । ସେ ତାହାଙ୍କ ଏକ ତାମ୍ର ଫଳକରେ 'ଆନ୍ଧ୍ର କବିତା ବିଶାରଦ' ଭାବରେ କବିଙ୍କୁ ଅବହିତ କରିଅଛନ୍ତି । ଏହାଙ୍କ ସମୟ ଏକାଦଶ ଶତାବ୍ଦୀ ବୋଲି ନିର୍ଦ୍ଧାରିତ ହୋଇଅଛି । ଏହା ପୂର୍ବରୁ ଭାଷା ଅର୍ଥରେ ତେଲୁଗୁ ଶବ୍ଦ ହିଁ ବ୍ୟବହୃତ ହେଉଥିଲି । ତେଲୁଗୁ 'ତ୍ରିଲିଙ୍ଗ' ଶବ୍ଦରୁ ଉଦ୍ଭୂତ ହୋଇଥିବା ଅନୁମେୟ ।

ତେଲୁଗୁ ଭାଷାର ଉତ୍ପତ୍ତି ସମ୍ପର୍କରେ ଭାଷାବିତ୍‌ମାନଙ୍କ ମଧ୍ୟରେ ଦୁଇଟି ମତ ଦେଖିବାକୁ ମିଳେ । ଦ୍ରାବିଡ଼ ଭାଷାଗୋଷ୍ଠୀର ତୁଳନାତ୍ମକ ବ୍ୟାକରଣ ପ୍ରଣେତା ଡକ୍ଟର କାଲଡ଼ୱେଲ ଏହାକୁ ଦ୍ରାବିଡ଼ ଗୋଷ୍ଠୀର ଏକ ଭାଷା ଭାବରେ ଗ୍ରହଣ କରିଅଛନ୍ତି । ସି. ନାରାୟଣ ରାଓଙ୍କ ମତାନୁଯାୟୀ ଏହା ଆର୍ଯ୍ୟ ଭାଷା

ଗୋଷ୍ଠୀର ଅନ୍ୟତମ ଭାଷା । ଆଧୁନିକ ଭାରତୀୟ ଭାଷା ଯେପରି ପ୍ରାକୃତ, ପାଲି ଓ ଅପଭ୍ରଂଶର ପରିଣତି ସେହିପରି ତେଲୁଗୁ ମଧ୍ୟ ଦକ୍ଷିଣ ଭାରତରେ ଖ୍ରୀଷ୍ଟପୂର୍ବ ଓ ତାପରେ ପ୍ରଚଳିତ ଏକ ପ୍ରାକୃତ ଭାଷାର ବିକଶିତ ରୂପ ମାତ୍ର । ପାଶ୍ଚାତ୍ୟ ପଣ୍ଡିତ ଓଲଡ଼େନ୍ ବର୍ଗଙ୍କ ମତଅନୁସାରେ ଆନ୍ଧ୍ରର ଲୋକ ପ୍ରଚଳିତ ପ୍ରାକୃତ ଭାଷା ହେଉଛି ପାଲି । ତେଲୁଗୁ ଭାଷାର ବ୍ୟାକରଣ 'ଶବ୍ଦ ଚନ୍ଦ୍ରାମଣି'ରେ ନନ୍ନୟ ଭଟ୍ଟାରକ ତେଲୁଗୁର ଉଦ୍ଭବ ସମ୍ପର୍କରେ ଆଜକୁ ପ୍ରାୟ ୯୦୦ ବର୍ଷ ପୂର୍ବେ ଏହା ସ୍ପଷ୍ଟ ଭାବରେ ଲେଖିଅଛନ୍ତି ବୋଲି ନାରାୟଣ ରାଓ ସ୍ୱୀକାର କରିଅଛନ୍ତି ।

ପ୍ରାଚୀନ ବ୍ରାହ୍ମୀର ଦକ୍ଷିଣୀ ଶାଖାର ପରିଣତି ହେଉଛି ତେଲୁଗୁ ଲିପି । ଦକ୍ଷିଣ ଭାରତରେ ପ୍ରଚଳିତ ଚାରିଗୋଟି ଲିପି ମଧ୍ୟରୁ କନ୍ନଡ଼ ଲିପି ସହିତ ତେଲୁଗୁର ଅଧିକ ସାମଞ୍ଜସ୍ୟ ଦେଖିବାକୁ ମିଳେ । ଏହି ଦୁଇଟି ଲିପି ପ୍ରାୟ ଏକାଭଳି । ୩/୪ ଶହ ବର୍ଷ ପୂର୍ବେ ଏହି ଦୁଇଟି ଭାଷା ଗୋଟିଏ ଲିପିରେ ଲିଖିତ ହେଉଥିବା ଅନୁମିତ ହୁଏ ।

ତେଲୁଗୁ ବର୍ଣ୍ଣମାଳା ଅତ୍ୟନ୍ତ ବିଜ୍ଞାନସମ୍ମତ ଓ ସ୍ୱୟଂ ସମ୍ପୂର୍ଣ୍ଣ । ଏହା ୫୬ଟି ଅକ୍ଷରକୁ ନେଇ ଗଠିତ । ତେଲୁଗୁ ଭାଷାର ସବୁ ଶବ୍ଦ ସ୍ୱରାନ୍ତ ; ହିନ୍ଦୀ ପ୍ରଭୃତି ଅନ୍ୟାନ୍ୟ ଭାରତୀୟ ଭାଷା ଭଳି ବ୍ୟଞ୍ଜନାନ୍ତ ନୁହେଁ । ସେଥିପାଇଁ ଏହି ଭାଷା ସଙ୍ଗୀତ ଲାଗି ଅଧିକ ଉପଯୁକ୍ତ । କର୍ଣ୍ଣାଟକ ସଙ୍ଗୀତର ସମସ୍ତ ରଚୟିତା ଏହି ଭାଷାରେହିଁ ଗୀତ ରଚନା କରିଯାଇ ଅଛନ୍ତି । ତେଲୁଗୁ ସାହିତ୍ୟର ଏହି ସଙ୍ଗୀତାତ୍ମକତା ଏକ ପ୍ରଧାନ ବୈଶିଷ୍ଟ୍ୟ । ତେଲୁଗୁ ଭାଷାଭାଷୀମାନେ ଶବ୍ଦକୁ ସ୍ପଷ୍ଟ ଏବଂ ଶୁଦ୍ଧ ଭାବରେ ଉଚ୍ଚାରଣ କରିଥାଆନ୍ତି ।

## ତେଲୁଗୁ ସାହିତ୍ୟ—

ଆନୁମାନିକ ଖ୍ରୀ୧୦୫୦ରୁ ତେଲୁଗୁରେ ବିଧିବଦ୍ଧ ଭାବରେ ସାହିତ୍ୟ ସୃଷ୍ଟିର ନିଦର୍ଶନ ମିଳିଥାଏ । ମହାକବି ନନ୍ନୟ ଭଟ୍ଟାରକଙ୍କ ସଂସ୍କୃତ ମହାକାବ୍ୟାନୁବାଦ ତେଲୁଗୁ ସାହିତ୍ୟର ପ୍ରାଚୀନତମ ଓ ସର୍ବାଙ୍ଗସୁନ୍ଦର କୃତିରୂପେ ପରିଗଣିତ ହୁଏ । ମହାକବି ନନ୍ନୟଙ୍କ ରଚନାରୁ ତେଲୁଗୁ ସାହିତ୍ୟର ଆରମ୍ଭ ବୋଲି ଧରିଯାଇଥାଏ । ସେ କବି ଭାବରେ କେବଳ ପ୍ରସିଦ୍ଧ ନୁହନ୍ତି ତେଲୁଗୁ ଭାଷାର ସର୍ବପ୍ରଥମ ବୈୟାକରଣ ଭାବରେ ମଧ୍ୟ ତାହାଙ୍କୁ ଗ୍ରହଣ କରାଯାଏ । ତାହାଙ୍କ ପୂର୍ବରୁ ଏହି ଭାଷାରେ ବହୁ ସାହିତ୍ୟ ରଚିତ ହୋଇଥିବା ସୁନିଶ୍ଚିତ । କାରଣ ସାହିତ୍ୟ ସୃଷ୍ଟିର ବହୁ ପରେ ବ୍ୟାକରଣ ରଚିତ ହୋଇଥାଏ । ନନ୍ନୟଙ୍କ ବ୍ୟାକରଣ ଗ୍ରନ୍ଥ 'ଆନ୍ଧ୍ର ଶବ୍ଦ ଚନ୍ଦ୍ରାମଣି' ସଂସ୍କୃତ ଭାଷାରେ ଲିଖିତ । ଏଥିରେ ନନ୍ନୟଙ୍କ ପୂର୍ବବର୍ତ୍ତୀ ବହୁ କବିଙ୍କ କାବ୍ୟ ରଚନାର

ଉଲ୍ଲେଖ ଦେଖିବାକୁ ମିଳେ । ଏକାଦଶ ଶତାବ୍ଦୀ ପୂର୍ବରୁ ମିଳୁଥିବା ଦାନପତ୍ର, ଶିଳାଲେଖ ପ୍ରଭୃତିରୁ ତେଲୁଗୁରେ ଏହି ଶତାବ୍ଦୀର ବହୁ ପୂର୍ବରୁ ମଧ୍ୟ ସାହିତ୍ୟ ରଚିତ ହୋଇଥିବା ପ୍ରମାଣିତ ହୁଏ । ସ୍ଥୂଳତଃ ଖ୍ରୀଷ୍ଟିୟ ୩ୟ ଶତାବ୍ଦୀରୁ ତେଲୁଗୁ ସାହିତ୍ୟ ସୃଷ୍ଟି ହୋଇଅଛି ବୋଲି ପଣ୍ଡିତମାନେ ନିର୍ଦ୍ଧାରଣ କରିଥାଆନ୍ତି ।

## ତେଲୁଗୁ ସାହିତ୍ୟର ଯୁଗ ବିଭାଗ—

ଆଧୁନିକ ତେଲୁଗୁ ସାହିତ୍ୟର ଯୁଗ ପ୍ରବର୍ତ୍ତକ ବୀରେଶ ଲିଙ୍ଗମ୍ ପନ୍ତୁଲୁ ୧୮୭୦ ବର୍ଷରେ ତେଲୁଗୁ ସାହିତ୍ୟକୁ ନିମ୍ନୋକ୍ତ ଭାଗରେ ବିଭକ୍ତ କରିଅଛନ୍ତି ।

(୧) ଅଜ୍ଞାତ ଯୁଗ ଖ୍ରୀ: ୩୦୦—୧୦୫୦
(୨) ଆଦିଯୁଗ ୧୦୫୦—୧୫୦୦
(୩) ମଧ୍ୟଯୁଗ ୧୫୦୦—୧୮୫୦
(୪) ବର୍ତ୍ତମାନ ଯୁଗ ୧୮୫୦—ଆଜି ପର୍ଯ୍ୟନ୍ତ

ସାହିତ୍ୟରେ ବ୍ୟବହୃତ ବିଷୟ ଦୃଷ୍ଟିରୁ ମଧ୍ୟ ନିମ୍ନୋକ୍ତ ଯୁଗ ବିଭାଜନ କରାଯାଇଥାଏ ।

ଯଥା:—

(୧) ଅନୁଶାସନ ଯୁଗ ବା ଶିଳାଲେଖ ଓ ସନନ୍ଦର ଯୁଗ ।
(୨) ପୁରାଣ ଯୁଗ ବା ସଂସ୍କୃତରୁ ପୁରାଣମାନଙ୍କର ଅନୁବାଦର ଯୁଗ ।
(୩) ପ୍ରବନ୍ଧ ଯୁଗ ବା ଅନୁକୃତ ବା ସ୍ୱତନ୍ତ୍ର କାବ୍ୟ ରଚନାର ଯୁଗ ।
(୪) ଗଦ୍ୟ ଯୁଗ ।

ନିମ୍ନରେ ଏହି ଚାରିଗୋଟି ଯୁଗର ସଂକ୍ଷିପ୍ତ ପରିଚୟ ପ୍ରଦତ୍ତ ହେଲା—

(୧) ଅଜ୍ଞାତ ଯୁଗ—ଆନୁମାନିକ ଖ୍ରୀଷ୍ଟପୂର୍ବ ୨୦୦ରୁ ଆନ୍ଧ୍ର ସାତବାହନ ରାଜାମାନଙ୍କ ସମୟରୁ ଏହା ଆରମ୍ଭ ବୋଲି ଗୃହୀତ ହୁଏ । କିନ୍ତୁ ଖ୍ରୀ: ପୂ: ୩୦୦ ପୂର୍ବରୁ ଯେଉଁ ଶିଳାଲେଖ ମିଳେ ତାହାର ଭାଷା ସଂସ୍କୃତ ଅଥବା ପ୍ରାକୃତ । ୩ୟ ଶତାବ୍ଦୀରୁ ମିଳୁଥିବା ପ୍ରାଚୀନ ଶିଳାଲେଖମାନଙ୍କ ମଧ୍ୟରୁ ଅନନ୍ତପୁରମ୍ ଜିଲ୍ଲାରୁ ପ୍ରାପ୍ତ ବାଦାମୀ ଚାଲୁକ୍ୟ ରାଜାଙ୍କ ୨ଟି ଶିଳାଲେଖ, ଗୁଣ୍ଟୁରରୁ ବେଙ୍ଗି ଚାଲୁକ୍ୟ ରାଜାଙ୍କ ଶିଳାଲେଖ ବିଶେଷ ଭାବରେ ଉଲ୍ଲେଖଯୋଗ୍ୟ । ଏ ଯୁଗର ସାହିତ୍ୟ କୃତି ଭାବରେ 'ତୁମ୍ମେଦ ପଦଯୁଲୁ' (ଭ୍ରମର ଗୀତ), ଗୋବ୍ବି ପଦମୁଲୁ, ଯକ୍ଷ ଗାନମୁଲୁ, ମେଳୁକୋଲୁପୁଲୁ (ପ୍ରଭାତୀ), ସୁଦ୍ଦୁଲୁ ପ୍ରଭୃତି ରଚିତ ହୋଇଥିବା ଜଣାପଡେ ।

(୨) ପୁରାଣ ଯୁଗ—ଏହି ଯୁଗରେ ସାହିତ୍ୟ ପ୍ରଣୟନ ଧର୍ମପ୍ରଚାର, ଧର୍ମ-ରକ୍ଷା ଏବଂ ସାଂସ୍କୃତିକ ବିକାଶ ଏଇ ତ୍ରିବିଧ ଉଦ୍ଦେଶ୍ୟରେହିଁ ହୋଇଥିଲା । ଆଦିକବି ନନ୍ନୟଙ୍କ ପୂର୍ବରୁ ଦେଶରେ ବୌଦ୍ଧ ଓ ଜୈନ ମତବାଦ ବହୁଳ ଭାବରେ ପ୍ରଚଳିତ ଥିଲା । ଏଣୁ ସନାତନ ଧର୍ମ କ୍ରମଶଃ ହ୍ରାସଲାଭ କରୁଥିଲା । ସନାତନ ବୈଦିକ ଧର୍ମ ପ୍ରତି ପୁନର୍ବାର ଜନସାଧାରଣଙ୍କୁ ଆକୃଷ୍ଟ କରିବା ଲାଗି ନନ୍ନୟ ସ୍ୱୀୟ ଆଶ୍ରୟଦାତା ଚାଳୁକ୍ୟ ରାଜା ରାଜରାଜଙ୍କ ପ୍ରେରଣାରେ ପବିତ୍ର ଗୌତମୀ ତୀରରେ ପଞ୍ଚମ ବେଦ 'ମହାଭାରତ' ଗ୍ରନ୍ଥକୁ କାନ୍ତାସମ୍ମିତ କାବ୍ୟମୟ ଶୈଳୀରେ ସରସ ଭାବରେ ଅନୁବାଦ କରିଥିଲେ । ମାତ୍ର ଆରଣ୍ୟକ ପର୍ବର କିୟଦଂଶ ପର୍ଯ୍ୟନ୍ତ ଅନୁବାଦ କରିବା ପରେ ତାହାଙ୍କର ଦେହାନ୍ତ ହୋଇଥିଲା । ନନ୍ନୟଙ୍କର ପ୍ରାୟ ଦୁଇଶହ ବର୍ଷ ପରେ କବି ତିକ୍କନ ସୋମଯାଜୀ ଅବଶିଷ୍ଟ ୧୫ଟି ପର୍ବର ଅନୁବାଦ ଚମତ୍କାର ଭାବରେ ସମ୍ପାଦନ କରିଥିଲେ । ତଥାପି ତାଙ୍କଦ୍ୱାରା ବାକି ରହିଥିବା ଅରଣ୍ୟ ପର୍ବର ଶେଷାଂଶର ଅନୁବାଦ ପରବର୍ତ୍ତୀ କାଳରେ ୧୪ଶ ଶତାବ୍ଦୀର ମଧ୍ୟଭାଗରେ ତୃତୀୟ ମହାକବି 'ପ୍ରବନ୍ଧ ପରମେଶ୍ୱର' ଯୁରାପ୍ରଗଡ଼ା ସମ୍ପୂର୍ଣ୍ଣ କରିଥିଲେ । ଏହିପରି ମହାଭାରତର ଅନୁବାଦ ତିନି ମହାକବିଙ୍କ ଦ୍ୱାରା ତିନି ଶତାବ୍ଦୀରେ ସମାପ୍ତ ହେଲା । ଏମାନଙ୍କୁ ଶ୍ରଦ୍ଧାପୂର୍ବକ 'କବିତ୍ରୟୀ' ଭାବରେ ଅଭିହିତ କରାଯାଇଥାଏ ।

ଏହି ଯୁଗର ଅନ୍ୟ ବିଶିଷ୍ଟ କବିମାନଙ୍କ ମଧ୍ୟରୁ ରାଜା ନନ୍ନେ ଚୋଡ଼, ନାଚନ ସୋମନାଥ, ପାଲକୁରିକ ସୋମନାଥ, ରାୟନ ଭାସ୍କର, ବମ୍ମେର ପୋତନା, ମହାକବି ଶ୍ରୀନାଥଙ୍କ ନାମ ଉଲ୍ଲେଖଯୋଗ୍ୟ । ଏଯୁଗର ସୁପ୍ରସିଦ୍ଧ ରଚନା ଭାବରେ 'କୁମାର ସମ୍ଭବମ୍', 'କାଶୀଖଣ୍ଡମୁ', 'ଉତ୍ତର ହରିବଂଶମୁ', 'ଭାସ୍କର ରାମାୟଣମୁ', 'ଶୃଙ୍ଗାର ନୈଷଧମୁ', 'ଆନ୍ଧ୍ର ମହାଭାଗବତମୁ', 'ବାସବ ପୁରାଣମୁ' ପ୍ରଭୃତି ତେଲୁଗୁ ସାହିତ୍ୟରେ ଅମରତ୍ୱ ଲାଭ କରିଅଛି । ଏ ଯୁଗର କୃତିମାନଙ୍କରେ ଦ୍ୱିବିଧ ଶୈଳୀ ପରିଲକ୍ଷିତ ହୁଏ । ପ୍ରଥମଟି ହେଉଛି ସଂସ୍କୃତ କାବ୍ୟରୀତି ଅନୁସୃତ ସଂସ୍କୃତ ଶବ୍ଦ-ବହୁଳ ରଚନା ଏବଂ ଅନ୍ୟଟି ହେଉଛି ଆଞ୍ଚଳିକ ଦେଶୀ ତେଲୁଗୁ ଶବ୍ଦବହୁଳ ରଚନା । 'ମହାଭାରତ', 'ଭାଗବତ', 'ଭାସ୍କର ରାମାୟଣ', 'ନୈଷଧମ୍' ପ୍ରଭୃତି ସଂସ୍କୃତ ରୀତିସମ୍ମତ ରଚନା ଭାବରେ ଓ 'କୁମାର ସମ୍ଭବମ୍', 'ସମ୍ବ ପୁରାଣ' ପ୍ରଭୃତି ଶୈବଧର୍ମ ପ୍ରତିପାଦକ ଗ୍ରନ୍ଥ ଦେଶୀୟ ଶୈଳୀରେ ସଂସ୍କୃତ ଶୈଳୀର ପ୍ରତିଦ୍ୱନ୍ଦ୍ୱୀ ସ୍ୱରୂପ ଲିଖିତ ହୋଇଥିଲା । କ୍ରମଶଃ ବୈଦିକ ଧର୍ମ ପ୍ରତି ଆସ୍ଥା କମ୍ ହେବାକୁ ଲାଗିଲା ଓ ବୀର ଶୈବ ଓ ବୀର ବୈଷ୍ଣବ ଧର୍ମ ଜନସାଧାରଣଙ୍କୁ ଅଧିକ ଭାବରେ ଆକୃଷ୍ଟ କଲା । ଏହି ସମୟରେ ମହାକବି ତିକ୍କନା ଆପଣା ଗ୍ରନ୍ଥମାନଙ୍କରେ ଦେଶୀୟ ତେଲୁଗୁ ଶବ୍ଦମାନଙ୍କର ବହୁଳ ପ୍ରୟୋଗ କରି, ତାହାଙ୍କୁ ସମୁଚିତ ଗୌରବ ପ୍ରଦାନ କରିଥିଲେ ।

# ୩—ପ୍ରବନ୍ଧ ଯୁଗ

ଏହି ସମୟକୁ ତେଲୁଗୁ ସାହିତ୍ୟର ସ୍ୱର୍ଣ୍ଣଯୁଗ କୁହାଯାଏ । ମହାକବି ଶ୍ରୀନାଥଙ୍କ ସଙ୍ଗେ ସଙ୍ଗେ ସଂସ୍କୃତ ଅନୁବାଦର ଧାରା ସ୍ଥଗିତ ହୋଇଗଲା ଓ କାବ୍ୟ ରଚନା ପ୍ରୟାସୀଗଣ ମୌଳିକ ପ୍ରବନ୍ଧ (କାବ୍ୟ) ରଚନା ପ୍ରତି ମନଯୋଗୀ ହେଲେ । ଷୋଡ଼ଶ ଶତାବ୍ଦୀର ପ୍ରାରମ୍ଭରୁ ପ୍ରବନ୍ଧ ରଚନା ଓ ସ୍ୱତନ୍ତ୍ର ମହାକାବ୍ୟ ପ୍ରଣୟନର ସୂତ୍ରପାତ ହେଲା । କାକତୀୟ ରାଜାମାନଙ୍କ ରାଜତ୍ୱ କାଳରୁ ଆନ୍ଧ୍ର ଦେଶ ମୁସଲମାନ-ମାନଙ୍କ ଦ୍ୱାରା ଆକ୍ରାନ୍ତ ହେବାକୁ ଲଗିଲା । ଏକ ପ୍ରବଳ ହିନ୍ଦୁ ରାଜ୍ୟ ସ୍ଥାପନା କରି ଆର୍ଯ୍ୟ ଧର୍ମ ଓ ସଂସ୍କୃତିକୁ ରକ୍ଷା କରିବା ଉଦ୍ଦେଶ୍ୟରେ ମହାତ୍ମା ବିଦ୍ୟାରଣ୍ୟଙ୍କ ଦ୍ୱାରା ପ୍ରତାପୀ ବିଜୟ ନଗର ରାଜ୍ୟ ସ୍ଥାପିତ ହେଲା । ବିଜୟ ନଗର ରାଜ୍ୟର ସବୁଠାରୁ ପ୍ରତାପଶାଳୀ ଓ ଆଦର୍ଶ ରାଜା ଥିଲେ କୃଷ୍ଣଦେବ ରାୟଲୁ । ସେ ସ୍ୱୟଂ ବଡ଼ ବିଦ୍ୱାନ ଓ କବି ଥିଲେ ଏବଂ ତାହାଙ୍କ ଦରବାର "ଭୁବନ ବିଜୟ ସଭା"ରେ ଅଷ୍ଟଦିଗ୍‌ଗଜ ମହାକବିଙ୍କୁ ଆଶ୍ରୟ ଦେଇଥିଲେ । ଅଲ୍ଲସାନି, ପେଦନା, ନନ୍ଦି ତିମ୍ମନା, ତେନାଲି ରାମକୃଷ୍ଣ, ଧୂର୍ଜଟୀ, ଭଟ୍ଟମୂର୍ତ୍ତି, ମାଦୟଗାରି ମଲ୍ଲନା, ଅୟ୍ୟଳରାଜୁ, ରାମଭଦ୍ର କବି, କନ୍ଦୁକୁରି, ରୁଦ୍ର କବି ପ୍ରଭୃତି ଅଷ୍ଟଦିଗ୍‌ଗଜ ନାମରେ ପରିଚିତ । ପାରିଜାତାପହରଣମୁ, ପାଣ୍ଡୁରଙ୍ଗ ମହାତ୍ମ୍ୟମୁ, କାଳହସ୍ତୀ ଶ୍ୱର ଶତକମୁ, ବସୁଚରିତମୁ, ମନୁଚରିତମୁ ପ୍ରଭୃତି ଅମୂଲ୍ୟ ମହାକାବ୍ୟ ଅଷ୍ଟଦିଗ୍‌ଗଜ ରଚନା କରିଛନ୍ତି । ସ୍ୱୟଂ କୃଷ୍ଣଦେବ ରାୟ ମଧ୍ୟ 'ଆମୁକ୍ତ ମାଲ୍ୟଦା' ନାମକ ଅମୂଲ୍ୟ ମହାଗ୍ରନ୍ଥ ରଚନା କରିଛନ୍ତି । ଭଟ୍ଟ ମୂର୍ତ୍ତି 'ବସୁଚରିତମୁ' ନାମକ ପ୍ରବନ୍ଧ ବ୍ୟତୀତ 'ନାରସଭୂପାଲୀୟମୁ' ନାମକ ନୀତିଗ୍ରନ୍ଥ ଏବଂ 'ହରିଶ୍ଚନ୍ଦ୍ର ନଳମୁପାଖ୍ୟାନମୁ' ନାମକ ଦ୍ୱିଅର୍ଥ ବିଶିଷ୍ଟ କାବ୍ୟ ରଚନା କରିଅଛନ୍ତି । ଏହି ସମୟର ଅନ୍ୟତମ ପ୍ରସିଦ୍ଧ ମହାକବି ପିଙ୍ଗଳିସୁରନ୍ନା 'କଳାପୂର୍ଣ୍ଣୋଦୟମୁ' ନାମକ ଏକ ଅଦ୍ଭୁତ ମହାକାବ୍ୟ ରଚନା କରିଛନ୍ତି । ଏହାର ସମକକ୍ଷ କାବ୍ୟ ସମଗ୍ର ତେଲୁଗୁ ସାହିତ୍ୟରେ ବିରଳ ।

ଏହି ଯୁଗର ଉତ୍ତରାର୍ଦ୍ଧରେ ସାହିତ୍ୟର ରଙ୍ଗମଞ୍ଚ ବିଜୟ ନଗର ରାଜ୍ୟର ପତନ ପରେ ଦକ୍ଷିଣରେ ତାଞ୍ଜୋର ରାଜାମାନଙ୍କ ଆଶ୍ରୟକୁ ଚାଲିଗଲା । ସେମାନଙ୍କ ମଧ୍ୟରୁ ରଘୁନାଥ ରାୟଲୁ ଓ ଅଚ୍ୟୁତ ବିଜୟ ରାଘବ ବିଦ୍ୱାନ, କବି ଏବଂ କବି ପୋଷକ ରାଜାଭାବେ ସୁପ୍ରସିଦ୍ଧ । ସେହିପରି ମଦୁରାରେ ମଧ୍ୟ ତିରୁମଲ୍ଲ ନାୟକ ପ୍ରଭୃତି ରାଜାଗଣ ସାହିତ୍ୟ ରଚନାକୁ ବହୁତ ଉତ୍ସାହିତ କରିଥିଲେ । ସୁକବି ଚେମକୁର ବେଙ୍କଟ କବିଙ୍କ 'ବିଜୟ ବିଳାସ', ଶେଷମ ବେଙ୍କଟପତିଙ୍କ 'ତାରାଶଶାଙ୍କ ବିଜୟ', ନାଟ୍ୟକବି ମୁଦ୍ଦୁପଳନିକା 'ରାଧିକା ସ୍ୱାନ୍ତନମୁ' ବିଜୟ ରାଘବଙ୍କ 'ରଘୁନାଥ ନାୟକାଭ୍ୟୁଦୟମୁ, ନାରୀକବି ରଙ୍ଗାଜମ୍ମାଙ୍କ 'ଉଷା ପରିଣୟମୁ' ପ୍ରଭୃତି ଗ୍ରନ୍ଥଗୁଡ଼ିକ କେବଳ

ତେଲୁଗୁ ସାହିତ୍ୟରେ ନୁହେଁ, ଯେ କୌଣସି ସାହିତ୍ୟର ଗୌରବ ବର୍ଦ୍ଧନକାରୀ ଗ୍ରନ୍ଥ ରୂପେ ପ୍ରଖ୍ୟାତ । ଏହି ଯୁଗର ପୂର୍ବାର୍ଦ୍ଧର ନାୟକକବି ଆତୁକୁରୀ ମୋଲ୍ଲା ସ୍ତ୍ରୀ ହେଲେହେଁ ଏକ ସରସ ଓ ବହୁ ଜନପ୍ରିୟ ରାମାୟଣ ରଚନା କରିଥିଲେ ।

ଅନୁବାଦ ଓ ପ୍ରବନ୍ଧ ବ୍ୟତୀତ ପ୍ରାଚୀନ ତେଲୁଗୁ ସାହିତ୍ୟରେ ବହୁ ଶତକ ରଚିତ ହୋଇଥିଲା । ଶତକ-କାବ୍ୟ ପ୍ରଣୟନର ପରମ୍ପରା ଅନୁବାଦ ଯୁଗରୁ ଆରମ୍ଭ ହୋଇ ସମାନ୍ତରାଳ ଭାବରେ ଅନ୍ୟ ସାହିତ୍ୟିକ ରଚନା ସହିତ ସୁପ୍ରଚଳିତ ଥିଲା । ୧୧୭୧ରେ ସୁପ୍ରସିଦ୍ଧ ଶୈବ କବି ପଣ୍ଡିତାରାଧ୍ୟଙ୍କ 'ଶିବତତ୍ତ୍ୱସାରମୁ' ତେଲୁଗୁ ସାହିତ୍ୟର ପ୍ରଥମ ଶତକଭାବେ ପରିଚିତ । ତେଲୁଗୁ ସାହିତ୍ୟରେ ପ୍ରାୟ ୧୦୦୦ରୁ ଅଧିକ ଶତକ ଲିଖିତ ହୋଇଅଛି । ଏଥିରୁ ଏପର୍ଯ୍ୟନ୍ତ ପ୍ରାୟ ୬୦୦ ସଂଗୃହୀତ ହୋଇଅଛି । ଏହିସବୁ ଶତକ ଭକ୍ତି, ଶୃଙ୍ଗାର ଓ ନୀତିପୂର୍ଣ୍ଣ ବିଷୟକୁ ଉପଜୀବ୍ୟ କରି ରଚିତ । ପ୍ରତ୍ୟେକ ଶତକର ଏକ "ମୁକୁଟ" ଥାଏ । ଏହା ରଚନାର ପ୍ରତ୍ୟେକ ଛନ୍ଦରେ ଯୋଡ଼ାଯାଏ । ଏହି ଶତକ ଗୁଡ଼ିକ ସାଧାରଣତ ମୁକ୍ତକ ଶୈଳୀରେ ବହୁ ଛନ୍ଦରେ ରଚିତ ହୋଇଥାଏ । ତେଲୁଗୁର କେତୋଟି ସୁପ୍ରସିଦ୍ଧ ଶତକ ଗ୍ରନ୍ଥମାନଙ୍କ ମଧ୍ୟରୁ କୃପାଧିକଟା ଶତକ, ସୁମତି ଶତକ, ନାରାୟଣ ଶତକ, ଦାଶରଥି ଶତକ, ବିମନ ଶତକ, ଆନ୍ଧ୍ରନାୟକ ଶତକ, ଭାସ୍କର ଶତକ, ନରସିଂହ ଶତକ ପ୍ରଭୃତି ଉଲ୍ଲେଖ-ଯୋଗ୍ୟ । ଶତକକାର ମାନଙ୍କ ମଧ୍ୟରୁ ଯଥାବାକ୍କୁଲ ଅନ୍ନମୟ୍ୟା ପାଲକୁରିକି ସୋମନାଥ, ପୋତନା ମାଡୟ୍ୟ, ଗୋପନା, ବେନା, ବନ୍ଦେନ, ଭାସ୍କର, କୁରୁମନାଥ, କାଶୁଲ ପୁରୁଷୋତ୍ତମ ପ୍ରଭୃତି ବିଶିଷ୍ଟ ଶତକକାର ଭାବେ ପରିଗଣିତ ହୁଅନ୍ତି ।

## ଗୀତ ସାହିତ୍ୟ

ଶତକଭଳି ପ୍ରାଚୀନ ତେଲୁଗୁର ଗୀତ ସାହିତ୍ୟ ମଧ୍ୟ ଅତ୍ୟନ୍ତ ସମୃଦ୍ଧ । ଏହି ଗୀତଗୁଡ଼ିକ ମଧ୍ୟ ଭକ୍ତି, ଶୃଙ୍ଗାର ଓ ନୀତି ପ୍ରଧାନ । ଏଥିରେ ସାହିତ୍ୟ ଓ ନାଟ୍ୟଗୁଣର ସମାବେଶ ଦେଖିବାକୁ ମିଳେ । ଗୀତକାର ମାନଙ୍କ ମଧ୍ୟରୁ ଅଧିକାଂଶ ସନ୍ଥ ଓ ଭକ୍ତ ଥିଲେ । ଗୀତ ସାହିତ୍ୟର ଏହି ସୁସ୍ଥ ପରମ୍ପରା ୧୫ଶ ଶତାବ୍ଦୀରୁ ଆରମ୍ଭ । ତାଳପାକ ଅନ୍ନମାଚାର୍ଯ୍ୟ ଏବଂ ଗୁରୁପତିଙ୍କ ଭକ୍ତକବି କ୍ଷେତ୍ରୟ୍ୟା, ଗୋପନ୍ନା (ରାମଦାସ), ନାଦଯୋଗୀ ତ୍ୟାଗରାଜ ଆଦିଙ୍କ ନାମ ଭକ୍ତକବି ଭାବେ ସୁପ୍ରସିଦ୍ଧ । ତ୍ୟାଗରାଜ ରାମଭକ୍ତିରେ ଅନୁପ୍ରାଣିତ ହୋଇ ଅନୁପମ ଭକ୍ତକବିତା ରଚନା କରିଥିଲେ । କ୍ଷେତ୍ରୟ୍ୟାଙ୍କୁ ତେଲୁଗୁ ସାହିତ୍ୟର ବିଦ୍ୟାପତି ନାମରେ ଅଭିହିତ କରାଯାଏ । ସେ କୃଷ୍ଣଙ୍କ ସମ୍ପର୍କରେ ଶୃଙ୍ଗାର ରସାତ୍ମକ ଓ ଭକ୍ତିଭାବ ପୂର୍ଣ୍ଣ ବହୁ ସୁଲଳିତ କବିତା ରଚନା କରିଛନ୍ତି ।

## ଯକ୍ଷଗାନ

ପ୍ରାଚୀନ ତେଲଗୁ ସାହିତ୍ୟରେ ଦୃଶ୍ୟ-ପ୍ରଧାନ ରଚନାକୁ ଯକ୍ଷଦାନ କୁହାଯାଏ । ସଙ୍ଗୀତ, ଅଭିନୟ ଏବଂ ନୃତ୍ୟ ଏହି ତିନିକଳାରେ ପ୍ରବୀଣ କଳାକାର ବୃନ୍ଦ ଏହାକୁ ପ୍ରଦର୍ଶନ କରୁଥିଲେ । କନ୍ଦୁକୂରି ରୁଦ୍ର କବିକୃତ 'ସୁଗ୍ରୀବ ବିଜୟମ୍ନୁ', ତାଞ୍ଜୋରର ରାଜା ବିଜୟ ରାଘବଙ୍କ ରଚିତ 'ରଘୁନାଥାଭ୍ୟୁଦୟମୁ' ସନ୍ଥପ୍ରବର ତ୍ୟାଗରାଜଙ୍କ ରଚିତ 'ପ୍ରହ୍ଲାଦ ଭକ୍ତ ବିଜୟମୁ' ଏତାଦୃଶ ଦୃଶ୍ୟ-ପ୍ରବନ୍ଧମାନଙ୍କ ମଧ୍ୟରେ ସୁପ୍ରସିଦ୍ଧ । ରାମାୟଣ, ମହାଭାରତ, ଭାଗବତର କଥାବସ୍ତୁକୁ ଯକ୍ଷଗାନ ରୂପରେ ରୂପାୟିତ କରି ତାହାକୁ ଅଭିନୟ କରାଇବା ତେଲଗୁ ଜନଜୀବନର ଏକ ସୁପ୍ରସିଦ୍ଧ ପରମ୍ପରା ।

## (୪) ଆଧୁନିକ ଯୁଗ—

ଏହାକୁ ଗଦ୍ୟଯୁଗ ବା ଆଧୁନିକ ବିକାଶର ଯୁଗ କୁହାଯାଇପାରେ । ୧୭୫୦ରେ ଇଷ୍ଟଇଣ୍ଡିଆ କମ୍ପାନୀର ଶାସନ ପ୍ରତିଷ୍ଠିତ ହୋଇଥିଲି । ଏହାପରେ ତେଲଗୁ ସାହିତ୍ୟର ପୃଷ୍ଠପୋଷକ ରାଜା ମହାରାଜା ମାନଙ୍କ ଅଧିକାର ସଙ୍କୁଚିତ ହୋଇଗଲା ଓ ସାହିତ୍ୟ କ୍ଷେତ୍ରରେ ଅବସାଦ ପରିଲକ୍ଷିତ ହେଲା । ବିଜୟ ନଗର ରାଜ୍ୟର ପତନ ପରେ ଏହା ବିକେନ୍ଦ୍ରିତ ହୋଇ ୧୬୫୦ରେ ଦକ୍ଷିଣରେ ତାଞ୍ଜୋର, ମଦୁରା ବ୍ୟତୀତ ପେନୁଗୋଣ୍ଡା, ଚନ୍ଦ୍ରଗିରି, ଭେଙ୍କଟଗିରି କବେଟି ନଗର, ବିଜୟ ନଗର (ବର୍ତ୍ତମାନର ବିଶାଖା ପାଟଣା ଜିଲା) ପେଦ୍‌ଦାପୁରମ, ପିଠାପୁରମ୍ ତେଲେଙ୍ଗାନା ଗଦ୍‌ଦାଲ ନାମକ ସ୍ଥାନ ମାନଙ୍କରେ ଛୋଟ ଛୋଟ ରାଜ୍ୟ ସ୍ଥାପିତ ହୋଇଥିଲି । ଏଗୁଡ଼ିକର ଶାସକମାନେ ତେଲଗୁ ସାହିତ୍ୟକୁ ଯତ୍‌ସାମାନ୍ୟ ସହାୟତା କରୁଥିଲେ । ୧୬୫୦ ଠାରୁ ୧୯୦୦ ପର୍ଯ୍ୟନ୍ତ ଏହି ୨୫୦ ବର୍ଷ ସାହିତ୍ୟ ବିକାଶ ଦୃଷ୍ଟିକୋଣରୁ ଏକ ଅବନତିର ଯୁଗ ରୂପେ ଗୃହୀତ ହୋଇଥାଏ । ୧୬୫୦ରୁ ୧୮୫୦ ମଧ୍ୟରେ ସମ୍ମୁଖ ଭେଙ୍କଟ କୃଷ୍ଣାପନାୟକ, ତିମ୍ମକବି, କୁଟମନ୍ତ୍ରୀ, ତିମ୍ମକବି, ଏନୁଗୁ ଲକ୍ଷଣ କବି, ଅଡ୍ଡିଦସୁ ସୁରକବି, କଂକଟି ପାପରାଜୁ, ପୁଷ୍ପଗିରି ତିମକବି, ଗୋପୀନାଥ ଭେଙ୍କଟ କବି ପ୍ରଭୃତି ସୁପ୍ରସିଦ୍ଧ ।

ଇଂରେଜୀ ଶାସନ ପ୍ରତିଷ୍ଠା ଯେପରି ଗୋଟିଏ ଦିଗରେ ସାହିତ୍ୟର ବିକାଶ ପଥକୁ ଅବରୋଧ କରିଥିଲା, ସେହିପରି ଖ୍ରୀଷ୍ଟୀୟ ଧର୍ମ ପ୍ରଚାରକ ତେଲୁଗୁ ଗଦ୍ୟରଚନାକୁ ପ୍ରୋତ୍ସାହିତ କରି ଭାଷା ଓ ସାହିତ୍ୟର ଉପକାର ସାଧନ କରିଥିଲା । ସି. ପି. ବ୍ରାଉନଙ୍କ ନାମ ତେଲଗୁ ଭାଷା ଓ ସାହିତ୍ୟର ଉଦ୍ଧାରକ ରୂପରେ ଅମର ହୋଇ ରହିଛି । ସେ ଏକ ବିରାଟ ଶବ୍ଦକୋଷ 'ବ୍ରୋନ୍ୟ ନିଘଣ୍ଟୁବୁ' ପ୍ରସ୍ତୁତ କରିଅଛନ୍ତି । ଜୁଲ୍‌ସି ଅପ୍‌ପସ୍ୟୁ

ଶାସ୍ତ୍ରୀ ଓ ଚନ୍ଦ୍ରସ୍ୱଗୁପ୍ତ ପ୍ରଭୃତି ଦେଶୀୟ ପଣ୍ଡିତମାନେ ମଧ୍ୟ ଭାଷାର ବିକାଶରେ ବହୁତ ଉଦ୍ୟମ କରିଥିଲେ ।

ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଓ ବିଂଶ ଶତାବ୍ଦୀର ପ୍ରଥମ ପାଦରେ କନ୍ଦୁକୁରି ବୀରେଶଲିଙ୍ଗମ୍ ପନ୍ତୁଲ୍ ଆବିର୍ଭୂତ ହୋଇଥିଲେ । ତାହାଙ୍କୁ ଆଧୁନିକ ତେଲୁଗୁ ସାହିତ୍ୟର ଜନ୍ମଦାତା କୁହାଯାଏ । କବିତା, ନାଟକ, ଉପନ୍ୟାସ, ପ୍ରବନ୍ଧ ପ୍ରଭୃତି ସାହିତ୍ୟର ସବୁକ୍ଷେତ୍ରରେ ଏହି ମହାନ ଲେଖକ ଏକ ନବୀନ ଦୃଷ୍ଟିକୋଣ ପ୍ରତିପାଦନ କରିଯାଇଛନ୍ତି । ଇଂରାଜୀ ସାହିତ୍ୟ ଏବଂ ବଙ୍ଗୀୟ ବିଚାରଧାରା ତାହାଙ୍କ ରଚନାକୁ ଯଥେଷ୍ଟ ପ୍ରଭାବିତ କରିଥିଲା ।

ବୀରେଶଲିଙ୍ଗମ୍ଙ୍କ ପରେ ସେହିପରି ବହୁ ସାହିତ୍ୟକାର ଆବିର୍ଭୂତ ହୋଇ ତେଲୁଗୁ ଗଦ୍ୟ, କବିତା ଓ ସାହିତ୍ୟର ଇତିହାସ, ନିବନ୍ଧ, ସମାଲୋଚନା, କାହାଣୀ ପ୍ରଭୃତି ସାହିତ୍ୟର ବିଭିନ୍ନ ବିଭାବରେ ବହୁ ଗ୍ରନ୍ଥ ପ୍ରଣୟନ କରିଥିଲେ । ଏମାନଙ୍କ ମଧ୍ୟରୁ ଗୁର୍ଜଡ଼ା ଅପ୍ପାରାଓ, ମଣ୍ଡିଯାକ ପାର୍ବତୀଶ୍ୱର କବି, ବହୁଜନପଲ୍ଲୀ ସୀତା-ରାମାଚାର୍ଯ୍ୟାଲ୍, ବୋଦ୍ଦବେଙ୍କଟ ରାୟ ଶାସ୍ତ୍ରୀ, ଧର୍ମବରମ୍ ରାମକୃଷ୍ଣମାଚାର୍ଯ୍ୟ, ବଡଡ଼ାଦି ସୁବ୍ବାରାଓ କବି, ଜୟନ୍ତିରାମୟ୍ୟା, ଗିଡ଼ୁଗୁ ରାମମୂର୍ତ୍ତି ପନ୍ତୁଲ୍, ଚିଲ୍ଲକୁରି ବୀରଭଦ୍ରରାଓ, କୋମରାଜୁ ଲକ୍ଷ୍ମଣ ରାଓ, କୋଟଟଶ୍ୟାମଳ କାମଶାସ୍ତ୍ରୀ, ବାବିଲ ରାମସ୍ୱାମୀ ଶାସ୍ତ୍ରୀ ତିରୁପତି ବେଙ୍କଟ ପାର୍ବତୀଶ୍ୱର କବିଲ୍, ସୁରବରମ୍ ପ୍ରତାପରେଡ୍ଡି ଆଦି ପ୍ରସିଦ୍ଧ । ତିରୁପତି ଭେଙ୍କଟ କବିଲ୍ ଓ ଭେଙ୍କଟ ପାର୍ବତୀଶ୍ୱର କବୁଲ୍ ଅତ୍ୟନ୍ତ ପ୍ରତିଭାଶାଳୀ, ଆଶୁକବି ଓ ଶତାବଧାନୀ ଥିଲେ ।

ଆନ୍ଧ୍ର ଦେଶରେ 'ଆନ୍ଧ୍ର ବିଜ୍ଞାନ ମଣ୍ଡଳୀ', 'ବିଜ୍ଞାନ ଚନ୍ଦ୍ରିକା ମଣ୍ଡଳୀ,' 'ସାହିତ୍ୟ ସମିତି', 'ନବ୍ୟ ସାହିତ୍ୟ ପରିଷଦ' ପ୍ରଭୃତି ସାରସ୍ୱତ ସଂସ୍ଥା ପ୍ରତିଷ୍ଠିତ ହେବା ଫଳରେ ତେଲୁଗୁ ସାହିତ୍ୟର ଶ୍ରୀବୃଦ୍ଧି ହୋଇଥିଲା । ଏହି ସମୟରେ ତେଲୁଗୁ ସାହିତ୍ୟର ସେବାରେ ନିୟୋଜିତ ଅନୁଷ୍ଠାନ ମଧ୍ୟରୁ 'ତେଲୁଗୁ ଭାଷା ସମିତି', 'ଅଖିଳ ସାହିତ୍ୟ କଳାଭିବର୍ଦ୍ଧି ଆନ୍ଧ୍ର ସଂସଦ', 'ଆନ୍ଧ୍ର ସାରସ୍ୱତ ପରିଷଦ' ପ୍ରଭୃତି ଲଳିତ କଳା ଓ ସାହିତ୍ୟର ବିକାଶରେ ପ୍ରଭୂତ ସହାୟତା କରିଥିଲେ ।

ଆଧୁନିକ ତେଲୁଗୁ ସାହିତ୍ୟର ବିଶିଷ୍ଟ କବି ଓ ଲେଖକ ଭାବରେ ରାୟପ୍ରୋଲ୍ ସୁବ୍ବାରାଓ, ତଲାବର୍ଝାଲ ଶିବଶଙ୍କର ସ୍ୱାମୀ, ମହୋପାଧ୍ୟାୟ କାଶୀ-କୃଷ୍ଣାଚାର୍ଯ୍ୟ, କବି ସାର୍ବଭୌମ ଶ୍ରୀପାଦ କୃଷ୍ଣମୂର୍ତ୍ତି ଶାସ୍ତ୍ରୀ, ବିଶ୍ୱନାଥ ସତ୍ୟନାରାୟଣ, ରାଲପଲ୍ଲୀ ଅନନ୍ତ କୃଷ୍ଣ ଶର୍ମା, ଗଡ଼ିୟାରମ୍ ଶେଷଶାସ୍ତ୍ରୀ, କାଲୋଜୀନାରାୟଣ ରାୟ, ଶ୍ରୀରଙ୍ଗମ୍ ଶ୍ରୀନିବାସ ରାୟ, ତୁମ୍ମଳ ସୀତାରାମମୂର୍ତ୍ତି ଚୌଧୁରୀ, ଗୁର୍ରମ୍ ଜାଷୁଆ,

ପୁଟ୍ଟପତି ନାରାୟଣାଚାର୍ଯ୍ୟ, ପିଙ୍ଗଳି କାଟୁରି କବିଦ୍ୟ, ଦେବୁଲପଲ୍ଲି କୃଷ୍ଣଶାସ୍ତ୍ରୀ ପ୍ରଭୃତି ସ୍ୱନାମ ଧନ୍ୟ । ଏହି ଖ୍ୟାତନାମା କବିଙ୍କ ବ୍ୟତୀତ ସ୍ୱର୍ଗୀୟ ବେଟୂରି ପ୍ରଭାକର ଶାସ୍ତ୍ରୀ, ଜନମଞ୍ଚି ଶେଷାଦ୍ରି ଶର୍ମା, ଚଲ୍ଲକୁରି ନାରାୟଣ ରାଓ୍ୱ, ଅଡ୍ଡିବି ବାଣୀରାଜୁ ପ୍ରଭୃତି ସାହିତ୍ୟକ୍ଷେତ୍ରରେ ବିଭିନ୍ନ ସଂସ୍କାର, କାବ୍ୟ ରଚନା, ଭାଷାରେ ଇତିହାସ ରଚନା ଏବଂ ଚିତ୍ର ଓ ଶିଳ୍ପର ଅନୁଶୀଳନ କ୍ଷେତ୍ରରେ ମଧ୍ୟ ଆତ୍ମନିୟୋଗ କରିଥିଲେ ।

ମଲ୍ଲଂପଲ୍ଲି ସୋମଶେଖର ଶର୍ମା ପୁରାତତ୍ତ୍ୱ ଏବଂ ଇତିହାସରେ ସୁବିଖ୍ୟାତ ପଣ୍ଡିତ ଥିଲେ । ସେ ଶୁଷ୍କ ଓ ନୀରସ ପ୍ରତୀୟମାନ ହେଉଥିବା ଅତୀତକୁ ସରସ କାବ୍ୟ ମଧ୍ୟ ରୂପରେ ପ୍ରତିପାଦନ କରି ଅନେକ ଗ୍ରନ୍ଥ ରଚନା କରି ଅଛନ୍ତି ।

ମୌଳିକ ଉପନ୍ୟାସ ରଚନା କ୍ଷେତ୍ରରେ ଉନ୍ନବ ଲକ୍ଷ୍ମୀନାରାୟଣ ପନ୍ତୁଲୁ, ବିଶ୍ୱନାଥ ସତ୍ୟନାରାୟଣ, ନୌରି ନରସିଂହ ଶାସ୍ତ୍ରୀ, ଅଡ୍ଡିବି ବାପି ରାଜୁ, ମିକ୍କି-ପାଟି ନରସିଂହ ଶାସ୍ତ୍ରୀ, ମଘିର ସୁବ୍ବନ ଦୀକ୍ଷିତ, ଗୁଡିପାଟି ବେଙ୍କଟଚଲମ୍ ସୁବିଖ୍ୟାତ ।

ତେଲୁଗୁ ସାହିତ୍ୟର ଆଧୁନିକ କ୍ଷୁଦ୍ର ଗଳ୍ପ ରଚୟିତା ଭାବରେ ଶ୍ରୀପାଦ କୃଷ୍ଣମୂର୍ତ୍ତି ଶାସ୍ତ୍ରୀ, ଚନ୍ତା ଦକ୍ଷିଣଲୁ, ଅଡ୍ଡିବି ପାପିରାଜୁ, ମୁନି ମାଣିକ୍ୟମ ନରସିଂହରାଓ୍ୱ, ଗୋପୀଚନ୍ଦ୍ର, କୋଡ଼ବଣ୍ଟିଗାଣ୍ଟି କୁଟୁମ୍ବ ରାଓ୍ୱ, ପାଲଗୁମ୍ମି ପଦ୍ମରାଜୁ ମଧ୍ୟ ସୁଖ୍ୟାତି ଓ ପ୍ରତିଷ୍ଠା ଲାଭ କରିଅଛନ୍ତି । ହାସ୍ୟ ଓ ବ୍ୟଙ୍ଗରସ-ପ୍ରଧାନ କଥାକାର ଭାବରେ ଭମିଡ଼ିପାଟି କାମେଶ୍ୱର ରାଓ ସୁପ୍ରସିଦ୍ଧ ।

ସାହିତ୍ୟ ସମାଲୋଚନା କ୍ଷେତ୍ରରେ ରାଲ୍ଲପଲ୍ଲି ଅନନ୍ତକୃଷ୍ଣଶର୍ମା ବିଶ୍ୱନାଥ ସତ୍ୟନାରାୟଣ, ଶିଷ୍ଟଲ ସୂର୍ଯ୍ୟ ନାରାୟଣ ଶାସ୍ତ୍ରୀ, ପୁଟ୍ଟପତି ନାରାୟଣାଚାର୍ଯ୍ୟ ପ୍ରଭୃତିଙ୍କ ଦାନ ଅତୀବ ଉଚ୍ଚକୋଟୀର ।

ତେଲୁଗୁ ସାହିତ୍ୟର ଇତିହାସ ରଚୟିତା ଭାବରେ କନ୍ଦୁକୁରି ସୀତାରାମ ଭଟ୍ଟାଚାର୍ଯ୍ୟ, ଗୁଣ୍ଟାଟି ଶେଷୟା, ହନୁମନ୍ତ ରାଓ, ମଧୁନାପନ୍ତୁଲୁ, ସତ୍ୟନାରାୟଣ ଶାସ୍ତ୍ରୀ, ଅଦ୍ଦୁକୁରି ଲକ୍ଷ୍ମୀକାନ୍ତ ଝା ଆଦି ପ୍ରଧାନ ବିବେଚିତ ହୁଅନ୍ତି । ତେଲୁଗୁ ଭାଷା ଓ ସାହିତ୍ୟର ସଂସ୍କାରକ ଭାବରେ କୋରାଡ଼ ରାମକୃଷ୍ଣୟା, ନିଡ଼ଦବୋଲୁ ବେଙ୍କଟ ରାଓ, ଗିଡ଼ୁଗୁ ସୀତାପତି, ଗଂଠି ଯୋଗୀ ସୋମଯାଜୀ ପ୍ରଭୃତିଙ୍କ କାର୍ଯ୍ୟ ଏକାନ୍ତ ସ୍ମରଣୀୟ । ଖଣ୍ଡବଲ୍ଲି ଲକ୍ଷ୍ମୀରଞ୍ଜନମ୍ 'ଆନ୍ଧ୍ର ସଂସ୍କୃତି ଚରିତ ପ୍ରଣୟନ କରିଯାଇଅଛନ୍ତି ।

ବିଭିନ୍ନ ସାହିତ୍ୟରୁ ଆନ୍ଧ୍ର ସାହିତ୍ୟକୁ ମଧ୍ୟ ବହୁ ଗ୍ରନ୍ଥ ଅନୂଦିତ ହୋଇଅଛି । ତେଲୁଗୁ ସାହିତ୍ୟରେ ରବୀନ୍ଦ୍ରନାଥ, ଶରତଚନ୍ଦ୍ର, ପ୍ରେମଚନ୍ଦ ପ୍ରଭୃତିଙ୍କ ରଚନାର

ଅନୁବାଦ ହୋଇଅଛି । ଇଂରାଜୀ ସାହିତ୍ୟର ବହୁ ଅମର ରଚନା ମଧ୍ଯ ଅନୂଦିତ ହୋଇଅଛି ।

ଆଧୁନିକ ତେଲୁଗୁ ସାହିତ୍ୟରେ ପ୍ରାଚୀନ ଶୈଳୀରେ ମଧ୍ଯ କାବ୍ୟ ରଚନାର ବିରାମ ଘଟିନାହିଁ । ଏକାଙ୍କିକା, ବ୍ୟଙ୍ଗଚିତ୍ର, ରେଡ଼ିଓ ରୂପକ ସଙ୍ଗେ ସଙ୍ଗେ ବହୁ ଶତକ, ପୁରାଣ, ହରି କଥା, ଉପାହରଣ ମଧ୍ଯ ରଚିତ ହୋଇଅଛି ।

ଆନ୍ଧ୍ର ଦେଶରେ ବ୍ୟାପକ ଭାବରେ ପ୍ରଚଳିତ ଲୋକଗୀତ କାହାଣୀର ସଂଗ୍ରାହକ ଭାବରେ ନେଳ୍ଲୁରି ଗଙ୍ଗାଧରମ୍‌ଙ୍କ କାର୍ଯ୍ୟ ଅତୀବ ପ୍ରଶଂସନୀୟ ।

# ପଞ୍ଜାବୀ ସାହିତ୍ୟ

## ପଞ୍ଜାବୀ ଭାଷା—

ଦିଲ୍ଲୀର ନିକଟବର୍ତ୍ତୀ ଅଞ୍ଚଳ ଓ ପଞ୍ଜାବ (ଭାରତ ଓ ପାକିସ୍ଥାନ ଅନ୍ତର୍ଭୁକ୍ତ) ଅଞ୍ଚଳରେ ପଞ୍ଜାବୀ ଭାଷା ପ୍ରଚଳିତ । ୧୫ ନିୟୁତରୁ ଅଧିକ ବ୍ୟକ୍ତିଙ୍କ ଦ୍ୱାରା ଏହା କଥିତ ହୋଇଥାଏ । ଭାରତୀୟ ଆର୍ଯ୍ୟ ଭାଷାରୁ (Indo Aryan Language) ଉଦ୍ଭୂତ ଭାଷାମାନଙ୍କ ମଧ୍ୟରେ ପଞ୍ଜାବୀ ଭାଷା ସବୁଠାରୁ ପ୍ରାଚୀନତମ । ମହାତ୍ମା ବୁଦ୍ଧ ଓ ମହାବୀରଙ୍କ ଠାରୁ ଆରମ୍ଭକରି ଆଜିପର୍ଯ୍ୟନ୍ତ ପ୍ରାୟ ଅଢ଼େଇହଜାର ବର୍ଷ ଧରି ଏହା ପ୍ରଚଳିତ । ଆଧୁନିକ ପଞ୍ଜାବୀ ଭାଷାଭାଷୀଙ୍କ ମଧ୍ୟରେ ଏପରି ଶହ ଶହ ଶବ୍ଦ ପ୍ରଚଳିତ ଯାହାର ଏଇ ଦୁଇ ସହସ୍ରାଧିକ ବର୍ଷ ମଧ୍ୟରେ ମଧ୍ୟ କୌଣସି ପରିବର୍ତ୍ତନ ହୋଇନାହିଁ । ଅଥଚ ଏହି ଶବ୍ଦ ସବୁ ହିନ୍ଦୀ, ବଙ୍ଗଳା ଓ ଓଡ଼ିଆ ପ୍ରଭୃତି ଭାଷାରେ ବହୁ ଭାବରେ ପରିବର୍ତ୍ତିତ ହୋଇଯାଇଅଛି । ଉଦାହରଣ ସ୍ୱରୂପ ଦୁଧ, ନକ (ନାକ), କନ (କାନ) ହଥ (ହାତ), ପିଠ (ପିଠି), ସତ (ସାତ), ଅଠ (ଆଠ), ପ୍ରଭୃତି ଅଢ଼େଇହଜାର ବର୍ଷ ପୂର୍ବେ ଯେପରି ବୌଦ୍ଧଧର୍ମ ଗ୍ରନ୍ଥ ଓ ପ୍ରାଚୀନ ଜୈନ ସାହିତ୍ୟ ଅଥବା ସଂସ୍କୃତ ନାଟକରେ ପ୍ରାକୃତ ଭାଷାର ଉଦାହରଣ ମଧ୍ୟରେ ଦେଖିବାକୁ ମିଳେ ତାହା ଆଜି ଠିକ ସେହିରୂପରେ ପଞ୍ଜାବୀ ଭାଷାରେ ଦେଖିବାକୁ ମିଳିଥାଏ । ଏହାର ତିନଗୋଟି ଉପଭାଷା ଯଥା ପଶ୍ଚିମୀ, ଉତ୍ତରୀୟ ଓ କେନ୍ଦ୍ରୀୟ । ଏହି ତିନଗୋଟି ଉପଭାଷାରେ ସାହିତ୍ୟ ସୃଷ୍ଟି ହୋଇଅଛି ।

ପଞ୍ଜାବୀ ସାହିତ୍ୟ କେବଳ ଶିଖ ମାନଙ୍କର ସାହିତ୍ୟ ନୁହେଁ । ପରନ୍ତୁ ବହୁ ଅଣଶିଖ, ମୁସଲମାନ ମଧ୍ୟ ପଞ୍ଜାବୀ ଭାଷାରେ ସାହିତ୍ୟ ରଚନା କରିଅଛନ୍ତି । ପଞ୍ଜାବୀ ସାହିତ୍ୟର ବିକାଶ ସାଧନରେ ସେମାନଙ୍କ ଦାନ ଶିଖମାନଙ୍କଠାରୁ ଅଧିକ ବୋଲି ଜଣାଯାଇଅଛି । ପଞ୍ଜାବୀ ସାହିତ୍ୟର ପ୍ରାଚୀନତମ ଲେଖକ ହେଉଛନ୍ତି ଜନୈକ ମୁସଲମାନ; ତାହାଙ୍କ ନାମ ହେଉଛି ଫରିଦ ସଫର ଗଂଜ (୧୧୭୬) । ସେ ଥିଲେ ଜଣେ ପ୍ରସିଦ୍ଧ ଫକୀର । ତାହାଙ୍କ କବିତାରେ ପାର୍ଶୀ ଓ ଲହିନ୍ଦୀ ଭାଷାର ପ୍ରଭାବ ଦେଖିବାକୁ ମିଳେ । ଫରିଦଙ୍କ କବିତାରେ ଭାବୁକତା, ପ୍ରକୃତ ପ୍ରେମ ଓ ଈଶ୍ୱର ପ୍ରେମର ଅଭିବ୍ୟକ୍ତି ଦେଖିବାକୁ ମିଳେ ।

ମୋଟ ଉପରେ ପଞ୍ଜାବର ସାହିତ୍ୟ ବିଶେଷ ପୁରାତନ ବା ସମୃଦ୍ଧ ନୁହେଁ ଭାରତର ପ୍ରବେଶ ଦ୍ୱାର ସ୍ୱରୂପ ପଞ୍ଚନଦର ଦେଶ ପଞ୍ଜାବ ବହୁ ଶତାବ୍ଦୀ ବ୍ୟାପୀ

ବୈଦେଶିକମାନଙ୍କର ଆକ୍ରମଣର ଶରବ୍ୟ ହୋଇଆସିଅଛି । ପ୍ରାୟ ଦୁଇଶହ ବର୍ଷ ଏହା ଆଂଶିକ ଭାବରେ ଦାରୟୁସ ପ୍ରଥମଙ୍କ ବଂଶଧରମାନଙ୍କ ଦ୍ୱାରା ଓ ତା ପରେ ଦୁଇ-ଶହ ବର୍ଷ ଗ୍ରୀକ ସମ୍ରାଟ ଆଲେକଜାଣ୍ଡାରଙ୍କ ପ୍ରତିନିଧିମାନଙ୍କ ଦ୍ୱାରା ଓ ପୁଣି ପ୍ରାୟ ଦୁଇଶହ ବର୍ଷ ତୁର୍କୀ ବା ଗଜନୀ ଦେଶୀୟଙ୍କ ଦ୍ୱାରା ଶାସିତ ହୋଇଛି । ଦକ୍ଷିଣ-ପୂର୍ବ ଓ ଦକ୍ଷିଣ-ପଶ୍ଚିମ ରାଜପୁତ ଓ ଜାଠମାନଙ୍କ ଦ୍ୱାରା ମଧ୍ୟ ଏହା ଆକ୍ରାନ୍ତ ହୋଇଅଛି । ଆର୍ଯ୍ୟ, ହୁନ, କୁଶାନ, ତୁର୍କୀ ଓ ମୋଗଲ ପ୍ରଭୃତି ବହୁ ଜାତି ଧର୍ମର ସମାବେଶ ଫଳରେ ଏହାର ସଂସ୍କୃତି ଓ ଭାଷାକୁ ବିଚିତ୍ର ଭାବରେ ପ୍ରଭାବିତ କରିଅଛି ।

ଏଣୁ ସଂସ୍କୃତ ପ୍ରାକୃତ ଭାଷାର ପ୍ରସାର ଏବଂ ଆରବୀ ଓ ପାର୍ଶୀ ଭାଷାର ପ୍ରଭାବ ସତ୍ତ୍ୱେ ଏହି ସ୍ଥାନର ରାଜନୈତିକ ଓ ସାମାଜିକ ପରିବେଶ ସାହିତ୍ୟ ସୃଷ୍ଟି ପାଇଁ ଅନୁକୂଳ ନ ଥିଲା । ସେଥିପାଇଁ ପଞ୍ଜାବର ଅଧିବାସୀଗଣ ବୌଦ୍ଧିକ ଚର୍ଚ୍ଚା ପରିବର୍ତ୍ତେ ଶରୀରଚର୍ଚ୍ଚା ପ୍ରତି ଅଧିକ ଦୃଷ୍ଟି ଦେଇଛନ୍ତି । ଏହା ହିଁ ପଞ୍ଜାବୀ ସାହିତ୍ୟର ଆଶାନୁରୂପ ଅଗ୍ରଗତି ନ ହେବାର ପ୍ରଧାନ ହେତୁ । ରାଜନୈତିକ ପ୍ରଭାବ ଯୋଗୁଁ ସାହିତ୍ୟ ଅଗ୍ରଗତି ବ୍ୟାହତ ହେବାର ପ୍ରଧାନ ଦୃଷ୍ଟାନ୍ତ ହେଉଛି ପଞ୍ଜାବୀ ସାହିତ୍ୟ ।

## ପ୍ରାଚୀନ ପଞ୍ଜାବୀ ସାହିତ୍ୟର ଯୁଗ ବିଭାଗ

୧୦ମ ଶତାବ୍ଦୀରୁ ଊନବିଂଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ପଞ୍ଜାବୀ ସାହିତ୍ୟକୁ ସ୍ଥୂଳତଃ ତିନି ଭାଗରେ ବିଭକ୍ତ କରାଯାଏ ।

(୧) ରାଜପୁତ ବା ନାଥଯୋଗୀ ଯୁଗ (ଖ୍ରୀ. ୯୦୦—ଖ୍ରୀ. ୧୨୦୦)
(୨) ମୁସଲମାନ ଯୁଗ ବା ଗୁରୁଣ ଯୁଗ (ଖ୍ରୀ. ୧୨୦୦—ଖ୍ରୀ. ୧୫୦୦)
(୩) ଶିଖ ଗୁରୁଯୁଗ (ଖ୍ରୀ. ୧୫୦୦—୧୮୪୬)

ମାତ୍ର ଏହି ବିଭାଜନ ସମ୍ପୂର୍ଣ୍ଣ ନିର୍ଭୁଲ ନୁହେଁ । କାରଣ ପ୍ରାଚୀନ ପଞ୍ଜାବୀ ସାହିତ୍ୟ ସମ୍ପର୍କରେ ଯଥେଷ୍ଟ ଅନୁଶୀଳନ ଓ ଆଲୋଚନା ହୋଇପାରିନାହିଁ । ବହୁକାଳ ପର୍ଯ୍ୟନ୍ତ ପଞ୍ଜାବର ଶିକ୍ଷିତ ସମ୍ପ୍ରଦାୟ ତଥା ସରକାର ଏହାର ଅନୁଶୀଳନ ବା ବିକାଶ ଲାଗି ଉପଯୁକ୍ତ ଧ୍ୟାନ ଦେଇ ପାରି ନ ଥିଲେ । ଖ୍ରୀ. ୧୮୮୪—୮୬ ସାର ରିଚାର୍ଡ଼ ଟେମ୍ପଲ ତିନିଖଣ୍ଡରେ ବିଭକ୍ତ ପଞ୍ଜାବର କିମ୍ବଦନ୍ତୀ ପ୍ରକାଶ କରିଥିଲେ । ବାଓ୍ୱା ବୁଧ ସିଂହ ତାହାଙ୍କ 'ହଂସ ଚୋଗ' (୧୯୧୩), 'କୋଏଲକୁ' (୧୯୧୬), 'ବାମ୍ବିହା ବୋଲ' (୧୯୨୫), 'ପ୍ରେମ କାହାଣୀ' (୧୯୩୨) ପ୍ରଭୃତି ଗ୍ରନ୍ଥରେ ପୁରାତନ ପଞ୍ଜାବୀ ସାହିତ୍ୟର ମୁଖ୍ୟ ଅଂଶ ସମ୍ପର୍କରେ ଅନୁଧ୍ୟାନ କରିଥିଲେ । ଡ. ମୋହନ ସିଂ ପ୍ରଥମେ ଇଂରାଜୀରେ ପଞ୍ଜାବୀ ସାହିତ୍ୟର ଇତିହାସ ପ୍ରଣୟନ କରିଥିଲେ । ୧୯୩୨ରେ ଏହା ଲାହୋରରୁ ପ୍ରକାଶିତ ହୋଇଥିଲା ।

ମଧ୍ୟଯୁଗର ଶେଷ ଭାଗରେ, ଯେତେବେଳେ ଦେଶରେ ସାଧାରଣ ଭାବରେ ଧର୍ମର ଅବନତି ଘଟିଥିଲା, ପଞ୍ଜାବୀ ସାହିତ୍ୟ ସେହି ସମୟରେ ହିଁ ସୃଷ୍ଟ ହୋଇଅଛି । ଗୁରୁ ନାନକ (୧୪୬୯—୧୫୩୮) ପଞ୍ଜାବରେ ଜଣେ ସଂସ୍କାରକ ରୂପରେ ଆବିର୍ଭୂତ ହୋଇଥିଲେ ଓ ଶିଖଧର୍ମ ସ୍ଥାପନ କରିଥିଲେ । ସେ ଜନସାଧାରଣଙ୍କ ଭାଷାରେ ହିଁ ତାହାଙ୍କ ଧର୍ମ ପ୍ରଚାର କରିଥିଲେ । ଏଣୁ ଶିଖମାନେ ପଞ୍ଜାବୀ ଭାଷାକୁ ଅତି ପବିତ୍ର ମନେକରନ୍ତି । ସେମାନଙ୍କ ପବିତ୍ର ଧର୍ମଗ୍ରନ୍ଥ ଆଦି ଗ୍ରନ୍ଥସାହେବ ଯଥାର୍ଥତଃ ପଞ୍ଜାବୀ ଭାଷାର ପ୍ରାଚୀନତମ ସାହିତ୍ୟକୃତି । ଏହା ମଧ୍ୟ ହିନ୍ଦୀ ଭାଷା ଦ୍ୱାରା ବିପୁଳ ଭାବରେ ପ୍ରଭାବିତ ।

ଶିଖମାନଙ୍କର ଏହି ଧର୍ମଗ୍ରନ୍ଥ 'ଆଦି ଗ୍ରନ୍ଥ' ଧର୍ମଗୁରୁର ଆସନ ଲାଭ କରିଅଛି । ଏଣୁ ଏହା 'ଗୁରୁ ଗ୍ରନ୍ଥସାହେବ' ନାମରେ ସମ୍ମାନର ସହିତ ଅଭିହିତ ହୋଇଥାଏ । ଏଥିରେ ଅଧୁନା ଅପ୍ରଚଳିତ କେତେକ ଛନ୍ଦରେ ଲିଖିତ ୧୫୫୭୫ ପାଦବିଶିଷ୍ଟ ୩୩୮୪ ଗୋଟି ଶ୍ଳୋକ ସନ୍ନିବିଷ୍ଟ ହୋଇଅଛି । ଶ୍ଳୋକଗୁଡ଼ିକ ୩୧ଗୋଟି ରାଗରେ ବିଭକ୍ତ ହୋଇ ଏଥିରେ ସଙ୍କଳିତ ହୋଇଅଛି । ବହୁ ଉପମା, ରୂପକ ସାହାଯ୍ୟରେ ଏହାର ଭାବଗତ ଏକାଧିକସମ୍ବନ୍ଧକୁ ଦୂର କରାଯାଇ ପାରିଅଛି । ଆଦି ଗ୍ରନ୍ଥର କବିତାଗୁଡ଼ିକ ଅତୀବ ଶକ୍ତିଶାଳୀ ଓ ଆନ୍ତରିକ ହୃଦୟାନୁଭୂତିର ଅଭିବ୍ୟକ୍ତି ଯୋଗୁଁ ତାହା ଅତ୍ୟନ୍ତ ମର୍ମସ୍ପର୍ଶୀ । ସାଧୁତା ଓ ସତ୍ୟାନ୍ୱେଷଣ ହିଁ ଏହିସବୁ କବିତାର ମୂଳକଥା । ସମକାଳୀନ ବିଶ୍ୱାସ, ଚଳଣୀ ସମ୍ପର୍କରେ ମଧ୍ୟ ଏହା ଯଥେଷ୍ଟ ଆଲୋକ-ସମ୍ପାତ କରିଥାଏ । ଆଦିଗ୍ରନ୍ଥରେ ଜୟଦେବ, ନାମଦେବ, ରବିଦାସ ଓ ଫରିଦ ପ୍ରଭୃତି ଭକ୍ତମାନଙ୍କ ଗୀତ ସନ୍ନିବିଷ୍ଟ ହୋଇଅଛି । 'ପ୍ରାଣ ସଙ୍ଗଲୀ' (ଜୀବନର ଶୃଙ୍ଖଳ) ନାମକ ଗ୍ରନ୍ଥଟି ନାନକଙ୍କ ରଚନା ଭାବରେ ଗୃହୀତ ହୋଇଥାଏ । ଏଥିରେ ସେ ସମୟରେ ପ୍ରଚଳିତ କେତେକ ଯୋଗ ସମ୍ପର୍କୀୟ ବିଷୟ ଉକ୍ତି-ପ୍ରତ୍ୟୁକ୍ତି ଛଳରେ ଲିଖିତ ହୋଇଅଛି ।

ନାନକଙ୍କ ଏହିସବୁ ଉକ୍ତି ବିକ୍ଷିପ୍ତ ଭାବରେ ଲିଖିତ ହୋଇ ରହିଥିଲା । ଏଗୁଡ଼ିକ ବିନଷ୍ଟ ହୋଇଯିବା ଆଶଙ୍କା କରି ଶିଖମାନଙ୍କ ୫ମ ଗୁରୁ ଅର୍ଜୁନ ସିଂହ (୧୫୬୩—୧୬୦୬) ଆଦି ଗ୍ରନ୍ଥକୁ ସଙ୍କଳିତ କରାଇଥିଲେ (୧୬୦୪) । ତହିଁରେ ତାହାଙ୍କର ଓ ଅନ୍ୟ କେତେକ ସନ୍ଥଙ୍କ ରଚନାକୁ ମଧ୍ୟ ସଂଯୋଜିତ କରିଥିଲେ ।

ଶିଖମାନଙ୍କ ଦ୍ୱିତୀୟ ଧର୍ମଗ୍ରନ୍ଥ 'ଦଶମ ଗ୍ରନ୍ଥ'ରେ ସେମାନଙ୍କ ଦଶମ ଗୁରୁ-ଗୋବିନ୍ଦ ସିଂହ (୧୬୬୬—୧୭୦୮) । ତାହାଙ୍କ ସମକାଳୀନ କେତେକ ଭକ୍ତ କବିଙ୍କ ରଚନାବଳୀ ନିହିତ । ଏହା ୧୭୨୧—୩୭ ମଣିସିଂହଙ୍କ ଦ୍ୱାରା ସଙ୍କଳିତ

ହୋଇଥିଲା । ଗୋବିନ୍ଦ ସିଂହ ଥିଲେ ଜଣେ ପ୍ରଧାନ କବି । ହିନ୍ଦୁଶାସ୍ତ୍ର ମଧ୍ୟ ସେ ଉତ୍ତମ ରୂପେ ଅଧ୍ୟୟନ କରିଥିଲେ । 'ଦଶମ ଗ୍ରନ୍ଥ'ର ଭାଷା ଶୁଦ୍ଧ ମାର୍ଜିତ ହିନ୍ଦୀ ଓ ଏଥିରେ ହିନ୍ଦୀ ଭାଷାର ଛନ୍ଦ ବ୍ୟବହୃତ । ସେ 'ଚଣ୍ଡୀ ଡ଼ି ବାର' ନାମକ ଯୁଦ୍ଧର ଦେବୀଙ୍କ ପ୍ରଶସ୍ତିମୂଳକ ଗୀତ ପଞ୍ଜାବୀ ଭାଷାରେ ରଚନା କରିଥିଲେ । ଦଶମ ଗ୍ରନ୍ଥରେ ହିନ୍ଦୁ ପୁରାଣର ବହୁ ଉପାଖ୍ୟାନ ଓ ସମକାଳୀନ ବହୁ କିମ୍ବଦନ୍ତୀ ମଧ୍ୟ ସନ୍ନିବିଷ୍ଟ ହୋଇଥିବା ଦେଖାଯାଏ ।

ଗୁରୁଗୋବିନ୍ଦ ସିଂହ 'ଗୋବିନ୍ଦ ଗୀତା' ନାମରେ ଭଗବତ୍ ଗୀତାର ଏକ ପଦ୍ୟାନୁବାଦ ମଧ୍ୟ କରିଥିଲେ । ତାହାଙ୍କ ରଚିତ 'ପ୍ରେମ ଅବୋଧ' ତାହାଙ୍କର ଅନ୍ୟ ଏକ ସୁବିଖ୍ୟାତ ରଚନା । ଏଥିରେ ପ୍ରେମଭକ୍ତି ଭାବନା ଦୋହା ଛନ୍ଦରେ ବହୁ ଉଦାହରଣ ଓ ଉପାଖ୍ୟାନ ମାଧ୍ୟମରେ ବର୍ଣ୍ଣିତ ହୋଇଅଛି ।

ପ୍ରାଚୀନ ପଞ୍ଜାବୀ ପଦ୍ୟ ନମୁନା ଭାବେ ଗୁରୁଗୋବିନ୍ଦ ସିଂହଙ୍କ ରଚନାରୁ କିୟଦଂଶ ଏଠାରେ ଉଦ୍ଧାର କରାଗଲା—

ଜାତେ ଛୁଟି ଗସ୍ତ୍ରେ ଭ୍ରମ ଓ୍ୱରକା ତହି ଆଗେ ହିନ୍ଦୁ କୈସା ତୁରକା ।
ଇକ ତସବୀ ଇକ ମାଲ୍ ଧରହୀ ଏକ ନୂରାନ-ପୁରାନ ଉଚରହି ।
କରତ ବିରୁଦ୍ଧି ଗସ୍ତ୍ରେମର ମୂଢ଼ ପ୍ରେମ କୋ ରଙ୍ଗ ନ ଲଗା ଗୂଢ଼ ।
ଆଦି ପୁରଖ୍ କିନ ଏକ ପଛାନା ଦୁତୀୟା ଭାବ ନ ମନମହି ଆନା ।
ଜୋ ଇହୁ ପେଚ ନ କାହୁ ହୋତା ରାବରଙ୍କ କାହୁ କୋକହତା ।
ଦନ ପ୍ରଭୁ ଏକ ବହେ ଠହିରାଜୋ ଖକ କର ତଁ ମୃନ କସୁ ଦଖୋଜେ ।

ଆଦିଗ୍ରନ୍ଥ ପରେ ଗୁରୁଦାସଙ୍କ ରଚନାବଳୀର ନାମୋଲ୍ଲେଖ କରାଯାଇ ପାରେ । ତାହାଙ୍କ ୪୦ ଗୋଟି 'ବାର୍' ବା ଦୀର୍ଘ କବିତାରେ ଶିଖଧର୍ମର ଶିକ୍ଷା ଓ ନୈତିକ ଉପାଦେଶାବଳୀ ଗଳ୍ପ ମାଧ୍ୟମରେ ବର୍ଣ୍ଣିତ ହୋଇଅଛି । ଏଠାରେ ତାହାଙ୍କ ରଚନାର କେତେଗୋଟି ପଙ୍କ୍ତି ଉଦ୍ଧୃତ ହେଲା ।

ହୋଇ ଇରକତ୍ର ବନାରସୀ ରହିଁଦା ରାମାନନ୍ଦ ଗୁସାଇଁ
ଅମ୍ରିତ ବେଲେ ଉଠ୍ଠ କେ ଜାଁଦା ଗଙ୍ଗା ନ୍ହାହଣ ନାହିଁ ।
ଅଗୋ ହିଁ ଦେ ଜାଇକେ ଲମ୍ବା ପିଆ କବୀର ତ ଥାଇଁ
ପୈରୀ ତୁଁ ବ ଉଠାଲିଆ ବୋଲହୁ ରାମ ସିଂଗଂଖ ସମଝାଇ
ଜିଉଁ ଲୋହା ପାରସ ଚୁଇ ହେ ଚନ୍ଦନ ଓ୍ୱାସ ନିମ୍ବ ମହକାଇ ।
ପଶୁ ପରେ ତହୁଁ ଦେଓ୍ୱକର ପୁରେ ସତିଗୁର ଦୀ ବଡ଼ିଆଇ

ଅଚରଜ ଯେ ଅଚରଜ ମିଲେ ଓ୍ୱସମାଦେ ଓ୍ୱସମାଦ ମିଲଇ
ଝରଣା ଝରଦା ନଟଝରନ୍ତି ଗୁରମୁଖ ବାଣୀ ଅଘଡ଼ ଘଡ଼ାଇ ।
ରାମ କବୀରେ ଭେଦ୍ ନ ଭାଇ ।

ନାନକଙ୍କ ଜୀବନୀ ସମୂହ ବା 'ଜନମ ସାଖୀ'ରୁ ପଞ୍ଜାବୀ ଗଦ୍ୟର ପ୍ରାଚୀନ-ତମ ରୂପର ସନ୍ଧାନ ମିଳିଥାଏ । ଏହାର ଭାଷାରେ ଛନ୍ଦୋମୟତା, ସାରଲ୍ୟ ଅନୁଭୂତ ହୁଏ । ନାନକଙ୍କ ସାଥୀ ଓ ସହଚର 'ବାଲା'ଙ୍କ ଦ୍ୱାରା ରଚିତ 'ଜନମ ସାଖୀ'ଟି ପ୍ରାଚୀନତମ ମନେହୁଏ । ୧୫୩୫ରେ ଏହା ଲିଖିତ ହୋଇଥିଲା । ୨ୟ ଜନମ ସାଖୀ ୧୫୮୮ରେ ସେଓ୍ୱା ସିଂହଙ୍କ ଓ ତୃତୀୟ ଜନମ ସାଖୀ ୧୭୩୭ରେ ମଣିସିଂହଙ୍କ ଦ୍ୱାରା ଲିଖିତ ହୋଇଥିଲା ।

ଭକ୍ତିଯୁଗର କବିମାନଙ୍କ ଦ୍ୱାରା ପଞ୍ଜାବୀ ଭାଷା ଉନ୍ନତ ଓ ମାର୍ଜିତ ହେଲା । ଏହି ଯୁଗର କବିମାନଙ୍କ ମଧ୍ୟରେ ସୁପ୍ରସିଦ୍ଧ, ଗୁରୁନାନକ, ଗୁରୁ ଅର୍ଜୁନସିଂହ ଓ ଗୁରୁଦାସଙ୍କ ନାମ ପୂର୍ବରୁ ଉଲ୍ଲିଖିତ । ଏହି କବିମାନେ ପ୍ରତ୍ୟେକେ ଏକେଶ୍ୱରବାଦ ଉପରେ ଗୁରୁତ୍ୱ ଦେଇଅଛନ୍ତି ଏବଂ ରାମ ଓ ରହିମଙ୍କ ମଧ୍ୟରେ କୌଣସି ପ୍ରଭେଦ ଦେଖିନାହାନ୍ତି । ଏହି କବିମାନଙ୍କ ଶୈଳୀରେ ସରଳତା ଓ ସୁସ୍ପଷ୍ଟତା ପରିଲକ୍ଷିତ ହୁଏ । ସେମାନେ ପୁରାତନ 'କବିତ୍ତ' 'ସବୈୟା' ପ୍ରଭୃତି ଛନ୍ଦକୁ ପରିହାର କରି ଲୌକିକ ଛନ୍ଦରେ କବିତା ରଚନା କରିଅଛନ୍ତି । ପଞ୍ଜାବ ମୋଗଲମାନଙ୍କ ଦ୍ୱାରା ଆକ୍ରାନ୍ତ ହେଉଥିବା ସମୟରେ ହିଁ ଏହି କବିତାମାନ ରଚିତ ହୋଇଥିଲା । ଗୁରୁ ଓ ତାଙ୍କର ଶିଷ୍ୟମାନେ ଏତାଦୃଶ ଭକ୍ତିମୂଳକ କବିତା ରଚନାରେ ମନୋନିବେଶ କରିଥିଲେ ।

ଏହାପରେ ପଞ୍ଜାବୀ ସାହିତ୍ୟ କ୍ଷେତ୍ରରେ ସୁଫି ମତବାଦର ପ୍ରଭାବ ଅନୁଭୂତ ହୋଇଥିଲା । ଏହି ମତବାଦ ଇସଲାମ୍ ଧର୍ମର ଏକ ଅଙ୍ଗ ଓ ଏହା କେତେକାଂଶରେ ଭାରତୀୟ ଭକ୍ତିଭାବନା ଓ ବେଦାନ୍ତ ଦର୍ଶନ ଦ୍ୱାରା ପ୍ରଭାବିତ ହୋଇଥିଲା । ଏହି ସୁଫି ପରିବେଶରୁ ରୋମାଣ୍ଟିକ କବିତା ମଧ୍ୟ ସୃଷ୍ଟି ହୋଇଥିଲା । ବୁଲ୍ଲେସାହ, ସାହ ହୁସେନ, ସୁଲତାନ ବାହୁ ଅଲି, ହୈଦର, କରମଅଲି ସାହ, ଶେଖ ସରଫ, ହିଦାୟତ ଉଲ୍ଲା ଓ ଗୁଲାମ ରସୁଲ ପ୍ରଭୃତି ଏହି ସମୟର ସୁଫି ମତବାଦୀ କବି ଭାବରେ ପ୍ରଖ୍ୟାତ ।

ସୁଫି ମତବାଦୀ କବିମାନେ ପାର୍ଥିବ ପ୍ରେମ ମାଧ୍ୟମରେ ଭଗବତ ପ୍ରେମକୁ ବର୍ଣ୍ଣନା କରନ୍ତି । ସୁଫି ମତବାଦୀ ପ୍ରାଚୀନତମ କବିତାର ନିଦର୍ଶନ ଫରିଦଙ୍କ ରଚନାବଳୀରୁ ମିଳିଥାଏ । ସର୍ବାଧିକ ଜନପ୍ରିୟ ସୁଫି କବି ହେଉଛନ୍ତି ବୁଲ୍ଲେସାହା

ବା ବୁଲହା (୧୬୮୦—୧୭୫୮) । ତାହାଙ୍କ 'କାଫିସ'ରେ ଶତାଧିକ ଏତାଦୃଶ କ୍ଷୁଦ୍ର କବିତା ଦେଖିବାକୁ ମିଳେ । ଅନ୍ୟତମ ଜନପ୍ରିୟ ସୁଫିକବି ଅଲି ହାଇଦରଙ୍କ (୧୬୯୯—୧୭୭୬) ରଚିତ । ସିହର ଫିସର ନାମ ମଧ୍ୟ ଉଲ୍ଲେଖଯୋଗ୍ୟ ।

ମୁସଲମାନମାନେ ହିଁ ପ୍ରଥମେ ପଞ୍ଜାବୀ ଭାଷାରେ ସାହିତ୍ୟ ରଚନାରେ ମନୋନିବେଶ କରିଥିଲେ । ପୂର୍ବୋକ୍ତ ମୁସଲମାନ କବିମାନଙ୍କ ଦ୍ୱାରା ବହୁ ଉପାଦେୟ ସାହିତ୍ୟ ସୃଷ୍ଟି ହୋଇଥିଲା । ସେମାନଙ୍କ ଅଧିକାଂଶ ଗ୍ରନ୍ଥ ସରଳ ଭାଷାରେ ସାମ୍ପ୍ରଦାୟିକ ବିଷୟକୁ ଉପଜୀବ୍ୟ କରି ରଚିତ । ଆରବୀ ପାର୍ଶୀ ଭାଷାର ବହୁ ପ୍ରଭାବ ସତ୍ତ୍ୱେ ଏହିସବୁ କବିମାନଙ୍କ ରଚନାର ଭାଷା ଶିଖଧର୍ମ ଗ୍ରନ୍ଥ ଅପେକ୍ଷା ଉନ୍ନତ ଓ ସ୍ୱାଭାବିକ ।

ମୁସଲମାନ ଧର୍ମମତ ଓ ବିଶ୍ୱାସ ସମ୍ବଳିତ ଗ୍ରନ୍ଥ ଭାବରେ ୧୭୧୨—୭୨ ମଧ୍ୟରେ ଲାହୋର ନିବାସୀ ଅବଦୁଲ୍ଲାଙ୍କ ରଚିତ ନଅହଜାର ପଦବିଶିଷ୍ଟ 'ବାରି ଅନ୍‌ୱା' ପ୍ରସିଦ୍ଧ । ଏହିପରି ଆଠ ହଜାର ପଦବିଶିଷ୍ଟ 'ଅନ୍‌ୱା ବାରଉଲ୍ଲା' ନାମକ ଏକ ଗ୍ରନ୍ଥ ବାରଉଲ୍ଲା (୧୮୩୮—୬୩) ରଚନା କରିଥିଲେ । ମୁସଲମାନଙ୍କ ଦୁର୍ଦ୍ଦଶା ଓ ତାହାର ନିରାକରଣ ପାଇଁ ମହମ୍ମଦଙ୍କ ଉପଦେଶର ଆବଶ୍ୟକତା ସମ୍ପର୍କରେ 'ନୁର୍-ଇ—ହିଦାୟତ' ନାମରେ ଏକ ଗ୍ରନ୍ଥ ଗୁଲାମ ହୁସେନ ୧୯୦୮ରେ ରଚନା କରିଥିଲେ । ରଣଜିତ ସିଂହଙ୍କର ଜନୈକ ସଭାକବି କ୍ୱାଦରୟାର ୧୮୩୧ରେ 'ମେରାଜନାମା' ରଚନା କରିଥିଲେ । ସପ୍ତଦଶ ଶତାବ୍ଦୀର ପ୍ରାରମ୍ଭରେ ମକବୁଲ 'ଜଙ୍ଗନାମା' ନାମକ କାବ୍ୟ ରଚନା କରିଥିଲେ । ମହରମ ସମୟରେ ଏହା ଆବୃତ୍ତି କରାଯାଇଥାଏ । ମୁସଲମାନ କବିଙ୍କ ଦ୍ୱାରା ରଚିତ ବହୁ ଜଙ୍ଗନାମାମାନଙ୍କ ମଧ୍ୟରୁ ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗରେ ହମିଦଙ୍କ ରଚିତ ଜଙ୍ଗନାମା ସର୍ବୋତ୍କୃଷ୍ଟ ଓ ଜନପ୍ରିୟ ।

କୋରାନର ୟୁସୁଫ ଓ ଜୁଲେଖା ଉପାଖ୍ୟାନକୁ ଉପଜୀବ୍ୟ କରି ମଧ୍ୟ ବହୁ ମୁସଲମାନ କବି କାବ୍ୟକବିତା ରଚନା କରିଯାଇଅଛନ୍ତି । ଏହି ବିଷୟକ ଗ୍ରନ୍ଥ-ମାନଙ୍କ ମଧ୍ୟରେ ଅବଦୁଲ ହକିମଙ୍କ ୨୪୦୦ ପଦ ବିଶିଷ୍ଟ ଗ୍ରନ୍ଥ-'ୟୁସୁଫ ଜୁଲେଖା' (୧୮୦୩) ପ୍ରାଚୀନତମ । ଏତଦ୍‌ବ୍ୟତୀତ ଗୁଲାମ ରସୁଲ, (୧୮୭୩), ହବିବ ଆଲ୍ଲୀ (୧୯୦୭) ମଧ୍ୟ ଏତାଦୃଶ କାବ୍ୟ ରଚନା କରିଅଛନ୍ତି ।

## ହିନ୍ଦୁ ସାହିତ୍ୟ—

ହିନ୍ଦୁ ଦେବଦେବୀ ଓ ପୌରାଣିକ କଥାବସ୍ତୁ ସମ୍ପର୍କରେ କେତେକ ଗ୍ରନ୍ଥ ମଧ୍ୟ ପଞ୍ଜାବୀ ଭାଷାରେ ରଚିତ ହୋଇଅଛି । ଯଶୋଦାନନ୍ଦନ ୧୭୫୦ରେ 'ଲଭକୁଶ ଦିଆ ପୁତ୍ରଆଁ' କାବ୍ୟ ରଚନା କରିଥିଲେ । ଏଥିରେ ରାମଙ୍କ ସହ ଲବକୁଶଙ୍କ ଯୁଦ୍ଧ ବିଷୟ ବର୍ଣ୍ଣିତ ହୋଇଅଛି । ଏତଦ୍‌ବ୍ୟତୀତ ରାମାୟଣ, ମହାଭାରତ, ଭାଗବତ ଓ

ଭଗବତ ଗୀତା ପ୍ରଭୃତର ବହୁ ହିନ୍ଦୀ ଅନୁବାଦ ଗୁରୁମୁଖୀ ଲିପିରେ ଲିଖିତ ହୋଇ ପ୍ରଚ଼ଳିତ । ଏହା ଜନସାଧାରଣରେ ପଞ୍ଜାବୀ ରଚନା ଭାବରେ ଗୃହୀତ ହୋଇଥାଏ ।

## ଖ୍ରୀଷ୍ଟିୟାନ ସାହିତ୍ୟ—

ପଞ୍ଜାବୀ ଭାଷାରେ ବହୁ ଖ୍ରୀଷ୍ଟଧର୍ମ ମୂଳକ ଗ୍ରନ୍ଥ ମଧ୍ୟ ଲିଖିତ ହୋଇଅଛି । ଖ୍ରୀ ୧୮୧୦—୧୫ ମଧ୍ୟରେ ବାଇବେଲର ଏକ ପଞ୍ଜାବୀ ଅନୁବାଦ ପ୍ରକାଶିତ ହୋଇଥିଲା । ଓ. ଗ୍ରାହମବେଲି ଉତ୍ତର ପଞ୍ଜାବୀ ଗଦ୍ୟରେ 'ନ୍ୟୁ ଟେଷ୍ଟାମେଣ୍ଟ'କୁ ଅନୁବାଦ କରିଥିଲେ । ସ୍ଥାନୀୟ ଖ୍ରୀଷ୍ଟଧର୍ମାବଲମ୍ବୀମାନେ ମଧ୍ୟ ପଞ୍ଜାବୀ ଭାଷାରେ ଗଦ୍ୟ ଓ ପଦ୍ୟାତ୍ମକ ବହୁ ଗ୍ରନ୍ଥ ରଚନା କରିଅଛନ୍ତି । ତନ୍ମଧ୍ୟରୁ ଇମାମ ଉଦ୍ଦିନ ସାହାବାଜଙ୍କ 'ଯୁବୁର' ନାମକ ସଲେମନଙ୍କ ସ୍ତୁତିମୂଳକ ଗ୍ରନ୍ଥଟି ସର୍ବୋତ୍କୃଷ୍ଟ ବିବେଚିତ ହୁଏ ।

## ଅସାଂପ୍ରଦାୟିକ ସାହିତ୍ୟ—

ପୌରାଣିକ ଓ ଈଶ୍ୱର ଭକ୍ତି ମୂଳକ ସାହିତ୍ୟ ବିରୁଦ୍ଧରେ ପ୍ରତିକ୍ରିୟା ହେବା ସ୍ୱାଭାବିକ । ଏହାଫଳରେ ବହୁ ଲେଖକ ଧର୍ମ ଓ ସଂପ୍ରଦାୟ ନିରପେକ୍ଷ ସାହିତ୍ୟ ରଚନାରେ ମନୋନିବେଶ କଲେ ଓ ଏହା ପଞ୍ଜାବୀ ସାହିତ୍ୟରେ ନବ ଯୁଗର ସୂତ୍ରପାତ କରିଥିଲା । ଲୋକସାହିତ୍ୟ କାହାଣୀ କିମ୍ବଦନ୍ତୀରୁ ବିବିଧ ବିଷୟକୁ ଉପଜୀବ୍ୟ କରି କବିମାନେ କାବ୍ୟ ରଚନାରେ ବ୍ରତୀହେଲେ । ଏହି କବିମାନଙ୍କ ରଚନା ହିଁ ପଞ୍ଜାବୀ ସାହିତ୍ୟର ମୌଳିକ ସଂପଦ । କଥା କବିତା ବା ଗାଥା ରୂପରେ ଏହାର ଅଭିବ୍ୟକ୍ତି ଲାଭ କରିଥିଲା ।

ଗୋଟିଏ ଗୋଟିଏ କିମ୍ବଦନ୍ତୀକୁ ଉପଜୀବ୍ୟ କରି ବହୁ କବି କାବ୍ୟକବିତା ରଚନା କରିଥିଲେ । ଏହି କିମ୍ବଦନ୍ତୀମାନଙ୍କ ମଧ୍ୟରୁ ପ୍ରତିଷ୍ଠାନ ପୁରର ରାଜା ଶାଳୀ-ବାହନଙ୍କ ଦୁଇ ପୁତ୍ର ରସୁଲ ଓ ପୂରଣଙ୍କ ସଂପର୍କୀୟ କିମ୍ବଦନ୍ତୀ ସବୁଠାରୁ ପ୍ରାଚୀନ ମନେ ହୁଏ । ପୂରଣ ପଞ୍ଜାବକୁ ଅଧିକାର କରି ସିଆଲକୋଟ ନଗର ପ୍ରତିଷ୍ଠା କରି-ଥିଲେ । ମାତ୍ର ତାହାଙ୍କ ବିମାତା ତାହାଙ୍କର ହସ୍ତ ପଦ କର୍ତ୍ତନ କରାଇ ତାହାଙ୍କୁ ଏକ କୂପରେ ପକାଇ ଦେଇଥିଲେ । ଗୋରଖନାଥ ତାହାଙ୍କୁ କୂପରୁ ଉଦ୍ଧାର କଲେ ଓ ତାହାଙ୍କ ଅଙ୍ଗ-ପ୍ରତ୍ୟଙ୍ଗକୁ ଭଲ କରି ଦେଇଥିଲେ । ଏହାପରେ ପୂରଣ ଗୋରଖ-ନାଥଙ୍କ ଶିଷ୍ୟ ହେଲେ ଓ ରସୁଲ ସିଆଲକୋଟର ରାଜସିଂହାସନ ଆରୋହଣ କରି-ଥିଲେ । ଦୁର୍ବଳଙ୍କୁ ଅତ୍ୟାଚାରୀ କବଳରୁ ରକ୍ଷା କରିବା ତାହାଙ୍କ ଜୀବନର ବ୍ରତ ଥିଲା । ଗୋରଖନାଥ ଶାଳୀବାହନଙ୍କ ବହୁ ଶତାବ୍ଦୀର ପରବର୍ତ୍ତୀ ହେଲେ ହେଁ ସମଗ୍ର

[illegible]ରେ ଏହି ଦୁଇଜଣଙ୍କ ସମ୍ପର୍କରେ ବହୁ କାହାଣୀ ପ୍ରଚଳିତ । ବ୍ୱାଦେସ୍ୟାର ଓ ପଞ୍ଜାବରେ ବହୁ ଜନପ୍ରିୟ ।

ହୀର୍ ଓ ରନ୍‌ଝା ସଂପର୍କୀୟ ବହୁ କଥା କବିତା ମଧ୍ୟ ପଞ୍ଜାବରେ ଜନପ୍ରିୟ । ଏହାର କଥାବସ୍ତୁ ହେଉଛି, ଚେନାବ୍ କୂଳରେ ଏକ ଗ୍ରାମ ସର୍ଦ୍ଦାରର ଝିଅ ହେଉଛି ହୀର୍ । ରନ୍‌ଝା ଅନ୍ୟ ଏକ ଗ୍ରାମ ସର୍ଦ୍ଦାରର ସାନ ପୁଅ । ଉଭୟେ ପରସ୍ପର ପ୍ରତି ପ୍ରେମାସକ୍ତ ହେଲେ । ରନ୍‌ଝା ହୀର୍‌ର ପିତାଙ୍କ ଦ୍ୱାରା ପ୍ରହୃତ ହୋଇ ଫକୀର ହୋଇଗଲା ଓ ଇଚ୍ଛାବିରୁଦ୍ଧରେ ହୀର୍ ଅନ୍ୟ ଏକ ବ୍ୟକ୍ତିକୁ ବିବାହ କଲା । ରନ୍‌ଝା ଦିନେ ହୀର୍‌କୁ ତା'ର ସ୍ୱାମୀ ଗୃହରେ ଦେଖିବାକୁ ପାଇଲା । କେତେକ ଗାଥା କବିତାନୁସାରେ ଅବିଶ୍ୱସ୍ତ ହେବାଯୋଗୁଁ ହୀର୍‌କୁ ହତ୍ୟା କରାଯାଇଥିଲା ଓ ତାହା ଶୁଣି ରନ୍‌ଝା ଶୋକରେ ମୃତ୍ୟୁ ବରଣ କଲା । ଅନ୍ୟ କେତେକ କବିତା ଅନୁସାରେ ହୀର୍ ରନ୍‌ଝାକୁ ଦେଖି ତାହାସହିତ ପଳାୟନ କଲା ଓ ଦୁହେଁ ସୁଖରେ କାଳ ଯାପନ କଲେ । ଏହି କାହାଣୀକୁ ଉପଜୀବ୍ୟ କରି ପଞ୍ଜାବର ବହୁ କବି କବିତା ରଚନା କରିଯାଇଅଛନ୍ତି ।

ଏହି କଥାବସ୍ତୁମୂଳକ ସବୁଠାରୁ ପ୍ରାଚୀନତମ କବିତା 'ହୀରକା କିସା' ଆକବରଙ୍କ ଶାସନକାଳରେ କବି ଦାମୋଦରଙ୍କ ଦ୍ୱାରା ରଚିତ ହୋଇଥିବା ଜଣାଯାଏ । ଅନ୍ଧକବି ମକବୁଲ ମଧ୍ୟ ଏହି ବିଷୟରେ ଏକ କବିତା ୧୭୫୦ରେ ରଚନା କରିଥିଲେ । ଏହି ବିଷୟକ କବିତାମାନଙ୍କ ମଧ୍ୟରୁ ୧୭୬୬ରେ ଓ୍ୱାରିସ ସାହଙ୍କ ରଚିତ କାବ୍ୟଟି ସର୍ବୋତ୍କୃଷ୍ଟ ବିବେଚିତ ହୁଏ । ଓ୍ୱାରିସ ସାହାଙ୍କ 'ହୀର୍' କାବ୍ୟଟି ପ୍ରାଚୀନ ପଞ୍ଜାବୀ ସାହିତ୍ୟର ଏକ ଉଚ୍ଚାଙ୍ଗ କାବ୍ୟ ଭାବରେ ପରିଗଣିତ ହୋଇଥାଏ । ରାଧାକୃଷ୍ଣଙ୍କ ପ୍ରେମଲୀଳା ଭଳି କବି ଏହାର କଥାବସ୍ତୁକୁ ଆବେଗପୂର୍ଣ୍ଣ ସରସ ବର୍ଣ୍ଣନା କରି ତହିଁରେ ପଞ୍ଜାବର ସାମାଜିକ ଜୀବନ ଓ ପ୍ରକୃତିକୁ ଜୀବନ୍ତ ଭାବରେ ଚିତ୍ରଣ କରିଯାଇ ଅଛନ୍ତି । ଭାଷାର ସୌଷ୍ଠବ ଓ ଛନ୍ଦର ମାଧୁର୍ଯ୍ୟ ଦୃଷ୍ଟିରୁ ଏହା ଏକ ସାର୍ଥକ ସୃଷ୍ଟି ।

ମିର୍ଜାଙ୍କ ସହ ସାହିବାର ପଳାୟନ ଓ ତାହାର କରୁଣ ପରିଣତିକୁ ବର୍ଣ୍ଣନା କରି ରଚିତ କବି ପିଲୁଙ୍କ କାବ୍ୟଟି ମଧ୍ୟ ପଞ୍ଜାବୀ ସାହିତ୍ୟର ଏକ ଜନପ୍ରିୟ ଗ୍ରନ୍ଥ । ଆଉ ଏକ ଜନପ୍ରିୟ କାହାଣୀ ହେଉଛି ସୋହନୀର ବୃତ୍ତାନ୍ତ । ସୋହନୀ ପ୍ରତ୍ୟହ ରାତିରେ ନଦୀ ପାର ହୋଇ ତାର ପ୍ରିୟତମ ମହୀବାଲ୍ ସଙ୍ଗେ ମିଳିତ ହୁଏ । ଅବଶେଷରେ ଦିନେ ଉଭୟଙ୍କର ସଲିଳ ସମାଧି ହୋଇଅଛି । ଫଜଲ୍ ସାହଙ୍କ 'ସୋହନୀ' ପଞ୍ଜାବୀ ସାହିତ୍ୟରେ ସର୍ବୋତ୍କୃଷ୍ଟ । ଏହି କାବ୍ୟର ଅନୁପ୍ରାସ ଓ ଶବ୍ଦଯୋଜନା ଗୁରୁତ୍ୱ ଉଚ୍ଚକୋଟୀର ବିବେଚିତ ହୁଏ ।

ଏ ଯୁଗର ଅନ୍ୟତମ କବି ହାସିମ୍ ସିରି ଫରହାଦ୍, ଲୟଲା, ମଜନୁ, ମୋହନୀ ମହୀବାଲ, ସରସିଡା ଉନୁ ପ୍ରଭୃତି ସଂପର୍କରେ କେତେକ କାସ୍ସା ଓ କେତେକ ଦୋହା ରଚନା କରିଅଛନ୍ତି । ଶବ୍ଦର ସଂଯମ, ବର୍ଣ୍ଣନାର ଗମ୍ଭୀର୍ଯ୍ୟ ଓ ଚରିତ୍ରମାନଙ୍କ ହୃଦୟର କୋମଳ ଭାବର ବର୍ଣ୍ଣନାହିଁ ଏହି କବିତାର ବୈଶିଷ୍ଟ୍ୟ । ବିରହ ଭାବକୁ ସେମାନେ ଅତ୍ୟନ୍ତ ଦକ୍ଷତାର ସହିତ ବର୍ଣ୍ଣନା କରିଯାଇ ଅଛନ୍ତି ।

ପ୍ରେମୋପାଖ୍ୟାନ ବ୍ୟତୀତ କେତେକ ଐତିହାସିକ ବିଷୟକୁ ମଧ୍ୟ ଉପଜୀବ୍ୟ କରି ପଞ୍ଜାବୀ ସାହିତ୍ୟରେ କେତେକ କାବ୍ୟ ରଚିତ ହୋଇଅଛି । ନାଦିରସାହଙ୍କ ଭାରତ ଆକ୍ରମଣକୁ (୧୭୩୮-୩୯) ଉପଜୀବ୍ୟ କରି ନଜାବତ ଏକ 'ଭାର୍' ବା ଦୀର୍ଘ କବିତା ରଚନା କରିଯାଇ ଅଛନ୍ତି । ଏହି କାବ୍ୟଟି ବୀରରସାତ୍ମକ । ଅନ୍ୟାନ୍ୟ ଐତିହାସିକ କାବ୍ୟଭାବରେ 'ଭାର ହରିକତ ସିଂହ' (ଯଥାର୍ଥ ମନ୍ତବ୍ୟ) ଏବଂ କବି ଆଗ୍ରା ସେଠୀ ଓ କାଳିଦାସଙ୍କ ରଚନା ସର୍ବୋତ୍କୃଷ୍ଟ ବିବେଚିତ ହୁଏ ।

ହିନ୍ଦୀ, ପାର୍ଶୀ ଓ ଆରବୀ ସାହିତ୍ୟରୁ ଆହୃତ ବହୁ ଉପାଖ୍ୟାନ ଅବଲମ୍ବନରେ ପଞ୍ଜାବୀ ଭାଷାରେ କେତେକ କାବ୍ୟ ରଚିତ ହୋଇଅଛି । ପଞ୍ଜାବୀ ଭାଷାରେ ବହୁ ଉପଦେଶାତ୍ମକ ଗୀତିକାବ୍ୟ ରଚିତ ହୋଇଥିବାର ଦେଖାଯାଏ । ଏହି ଗୀତିକବି-ମାନଙ୍କ ମଧ୍ୟରୁ ଅଗୁରରାମ, ହିଦାୟତୁଲ୍ଲା, ଈଶରଦାସ, ଜସନ ସିଂହ ଆରିଫ, ମହମ୍ମଦ ବୁଟା ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ ।

## ଆଧୁନିକ ପଞ୍ଜାବୀ ସାହିତ୍ୟ—

ଜାତୀୟ ସଚେତନତା ଆଧୁନିକ ସାହିତ୍ୟର ଏକ ପ୍ରଧାନ ବୈଶିଷ୍ଟ୍ୟ । ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ମହାରାଜା ରଣଜିତ ସିଂହଙ୍କ ଦରବାରର କବି ସାହମୋହମ୍ମଦଙ୍କ ରଚନାରେ ଦେଶପ୍ରେମମୂଳକ ଭାବରେ ଅଭିବ୍ୟକ୍ତ ଦେଖିବାକୁ ମିଳେ । ମାତ୍ର ବିଂଶଶତାବ୍ଦୀର ପ୍ରାରମ୍ଭରୁ ଆଧୁନିକ ପଞ୍ଜାବୀ ସାହିତ୍ୟର ସୃଷ୍ଟି ବୋଲି ଗୃହୀତ ହେଲେ ହେଁ ଏହା ପ୍ରଥମ ବିଶ୍ୱଯୁଦ୍ଧ ପରେ ହିଁ ଯଥାର୍ଥତଃ ସୃଷ୍ଟି ହୋଇ-ଅଛି । ପଞ୍ଜାବୀଭାଷା ୧୯୧୫ରୁ କଲେଜରେ ଏକ ଅଧ୍ୟେତବ୍ୟ ଭାଷା ରୂପରେ ଗୃହୀତ ହେବାଠାରୁ ଏହାର ନବଯୁଗ ସୃଷ୍ଟି ହୋଇଅଛି । ଇଂରାଜୀ ଭାବନା ଓ ସାହିତ୍ୟ ରୂପ ସମ୍ବନ୍ଧରେ ଅବହିତ ହେବା ଫଳରେ ହିଁ ପଞ୍ଜାବୀ ସାହିତ୍ୟରେ ଯୁଗାନ୍ତର ଉପସ୍ଥିତ ହେଲା । ବିଶ୍ୱଯୁଦ୍ଧ କାଳରେ ଯୁଦ୍ଧପ୍ରାନ୍ତର ପଞ୍ଜାବର ସିପାହୀମାନଙ୍କ ମନୋରଞ୍ଜନ ଲାଗି ସାହିତ୍ୟ ସୃଷ୍ଟି ହୋଇଥିଲା । ଯୁଦ୍ଧରେ ଦୂରଦେଶକୁ ଯାଇଥିବା ପଞ୍ଜାବର ସୈନିକ ଅନ୍ୟ ଦେଶର ସାହିତ୍ୟ ଓ ସଂସ୍କୃତିର ସ୍ପର୍ଶ ଲାଭକଲେ । ଏହାର ପରିଣାମ ସ୍ୱରୂପ ପଞ୍ଜାବୀ ସାହିତ୍ୟରେ ନୂତନ ଭାବନା ଓ ପ୍ରଗତିଶୀଳତା ଦେଖାଦେଇଥିଲା ।

ସ୍ୱାଧୀନତା ପରେ ସାମ୍ପ୍ରଦାୟିକ ଭାରତରୁ ପଞ୍ଜାବର ବିଭାଜନ ପଞ୍ଜାବୀ ସାହିତ୍ୟର ବିକାଶ ସାଧନରେ ଯଥେଷ୍ଟ ଯୋଗାଇଦେଇ ଆସିଅଛି । ଜଣେକ ଆଲୋଚକଙ୍କ ମତରେ—Punjabi has assimilated a greater impact of partition of the country. All the problems that came in the wake of the division of our land, have shown themselves in their varying colours and hues. Although the people suffered at that time from the communal holocaust, the literature got its accretion of strength. The Punjabi literature written after 1947 is thus at once modern and prismal". (The Contemporary Punjabi Literature—Gurmukh Singh Jeet).

ଆଧୁନିକ ପଞ୍ଜାବୀ କବିତା—

ଏହାପରେ ଅକାଳି ଆନ୍ଦୋଳନ ଶିଖମାନଙ୍କୁ ସେମାନଙ୍କ ସଭ୍ୟତା, ସଂସ୍କୃତି ଓ ସମ୍ପ୍ରଦାୟର ସମ୍ମାନରକ୍ଷା ଲାଗି ସଚେତନ ଓ ଏକତାବଦ୍ଧ କରିଥିଲା । ଫଳରେ ପଞ୍ଜାବୀ ସାହିତ୍ୟରେ ନୂତନପ୍ରାଣ ସଞ୍ଚାରିତ ହେଲା । ଭାଇ ବୀର ସିଂହଙ୍କୁ ଆଧୁନିକ ପଞ୍ଜାବୀ ସାହିତ୍ୟର ତଥା କବିତାର ଅଗ୍ରଦୂତ ଭାବରେ ଗ୍ରହଣ କରାଯାଏ । ସେ ହେଉଛନ୍ତି ଆଧୁନିକ ପଞ୍ଜାବୀ ସାହିତ୍ୟର ପ୍ରଥମ କବି । ତାହାଙ୍କ କବିତାରେ ଆଧ୍ୟାତ୍ମିକତାର ସ୍ପର୍ଶ ଦେଖିବାକୁ ମିଳେ । ତାହାଙ୍କ ବର୍ଣ୍ଣନାମୂଳକ କାବ୍ୟ 'ରାଣା ସୁରତ ସିଂହ' ଏକ ଉଲ୍ଲେଖଯୋଗ୍ୟ ସୃଷ୍ଟି । ଏହା ପଞ୍ଜାବୀ ସାହିତ୍ୟର ଅମିତାକ୍ଷର ଛନ୍ଦରେ ରଚିତ ପ୍ରଥମ କାବ୍ୟ । ଏଥିରେ ଆଦିଗ୍ରନ୍ଥର ଭାଷାର ପ୍ରଭାବ ମଧ୍ୟ ଦେଖିବାକୁ ମିଳେ ।

ବୀର ସିଂହଙ୍କ କାବ୍ୟକବିତା ମଧ୍ୟରେ ଶିଖ ଜାତିର ଇତିହାସ ଓ ଶିଖଦର୍ଶନ ରୂପାୟିତ ହୋଇଅଛି । ସ୍ପଷ୍ଟତା ଓ ସରଳତା ତାହାଙ୍କ କାବ୍ୟରଚନାର ଅନ୍ୟତମ ବୈଶିଷ୍ଟ୍ୟ । ବୀର ସିଂହଙ୍କୁ ମଧ୍ୟ ଆଧୁନିକ ପଞ୍ଜାବୀ ଗୀତିକବିତାର ଜନକ କୁହାଯାଇଥାଏ । 'ବିଜଳିଆଁ ଦେହାର ଲାହିଆଁ' ଓ 'ମଟକ ହୁଲରେ' ତାହାଙ୍କର ଦୁଇଟି ପ୍ରସିଦ୍ଧ କବିତା ସଙ୍କଳନ । ଏଥିରୁ ତାହାଙ୍କ କବିକୃତିର ସମୁଚ୍ଚ ନିଦର୍ଶନ ଓ ଜୀବନଦର୍ଶନର ପରିଚୟ ମିଳିଥାଏ । ପାଶ୍ଚାତ୍ୟ କାବ୍ୟାଦର୍ଶ ଓ କାବ୍ୟରୂପକୁ ସେ ହିଁ ସେ ପ୍ରଥମେ ପଞ୍ଜାବୀ ସାହିତ୍ୟରେ ଅନୁପ୍ରବିଷ୍ଟ କରିଅଛନ୍ତି । ବୀର ସିଂହଙ୍କର ବିଶ୍ୱବୋଧ ଓ ଜୀବନଦର୍ଶନ ଶିଖ ଦାର୍ଶନିକ ଭାବନାର ଅନୁରୂପ । କବି ଜୀବନକୁ ଏକ ଉଲ୍ଲାସ ରୂପରେ ଗ୍ରହଣ

କରିଅଛନ୍ତି ଏବଂ ସୁଫୀ କବିମାନଙ୍କ ଭଳି ଧରଣୀର ସ୍ପନ୍ଦନ ଶୁଣିବାଲାଗି ବ୍ୟାକୁଳତା ଅନୁଭବ କରିଅଛନ୍ତି ।

ପୂରଣ ସିଂହ ମଧ୍ୟ ଆଧୁନିକ ପଞ୍ଜାବୀ କବିତାର ନିର୍ମାତାମାନଙ୍କ ମଧ୍ୟରୁ ଅନ୍ୟତମ । ପୂରଣ ସିଂହ ମୁଖ୍ୟତଃ ମାନବିକ ଆବେଗକୁ ଉପଜୀବ୍ୟ କରି କାବ୍ୟ ରଚନା କରିଅଛନ୍ତି । ପ୍ରାଚୀନ ଛନ୍ଦକୁ ସମ୍ପୂର୍ଣ୍ଣ ପରିହାର କରି ସେ ନୂତନ ଛନ୍ଦ ପ୍ରବର୍ତ୍ତନ କରିଯାଇଅଛନ୍ତି । ତାହାଙ୍କ କବିତା ସଂଗ୍ରହ 'ଖୁଲେ ଘୁନ୍ଦ' (୧୯୨୩), 'ଖୁଲେ ମୈଦାନ' (୧୯୨୫), ପଞ୍ଜାବୀ ସାହିତ୍ୟର ଉଚ୍ଚାଙ୍ଗ ରଚନା ଭାବରେ ଗୃହୀତ ହୁଏ ।

ଲାଲା କିପାସାଗର (୧୮୭୬-୧୯୩୯)ଙ୍କ ଐତିହାସିକ ପ୍ରଣୟାତ୍ମକ କାବ୍ୟ 'ଲକ୍ଷ୍ମୀ ଦେବୀ' କାବ୍ୟରୁ ତାହାଙ୍କ ରୋମାଣ୍ଟିକ ଦୃଷ୍ଟିଭଙ୍ଗୀର ପରିଚୟ ମିଳେ । ଏହି କାବ୍ୟଟି 'ଲେଡ଼ି ଅଫ ଦ ଲେକ୍' ଅବଲମ୍ବନରେ ଲିଖିତ । ତଥାପି ବର୍ଣ୍ଣନାଶୈଳୀ ଦୃଷ୍ଟିରୁ ଏହା ପଞ୍ଜାବୀ ସାହିତ୍ୟର ଏକ ଅମୂଲ୍ୟ ରଚନା ଭାବରେ ପରିଗଣିତ ହୁଏ । ଏହି ଯୁଗର ଅନ୍ୟାନ୍ୟ କବିମାନଙ୍କ ମଧ୍ୟରୁ ଫିରୋଜ ଦିନ୍ ସର୍ଫ, ବିଧାତା ସିଂହ ତିର୍ ଓ ଜ୍ଞାନୀ ଗୁରୁମୁଖ ସିଂହ ମୁସାଫିରଙ୍କ ନାମ ଉଲ୍ଲେଖଯୋଗ୍ୟ । ଏହି କବିମାନଙ୍କ ରଚନାବଳୀରେ ଦେଶପ୍ରୀତି ଓ ଇଂରେଜୀ ଶାସନ ପ୍ରତି ବିଦ୍ୱେଷ ଓ ପ୍ରେମପୂର୍ଣ୍ଣ ଗାଥାର ବର୍ଣ୍ଣନା ଦେଖିବାକୁ ମିଳେ ।

ପ୍ରକୃତିକବି ଭାବରେ ଧନୀରାମ ('ଛତ୍ରିକ' ଜ. ୧୮୭୭)ଙ୍କ 'ହିମାଳୟ ଗଙ୍ଗା ଓ ରାତ' ଉଚ୍ଚାଙ୍ଗ କାବ୍ୟ ଭାବରେ ପରିଗଣିତ ହୁଏ ।

୧୯୩୬ରେ ଲକ୍ଷ୍ନୌରେ ହୋଇଥିବା ପ୍ରଗତିଶୀଳ ସାହିତ୍ୟିକମାନଙ୍କର ଅଧିବେଶନ ପରେ ମୋହନ ସିଂହଙ୍କ ସମ୍ପାଦକତ୍ୱରେ 'ଲିଖାରି' ନାମକ ଏକ ମାସିକ ପତ୍ର ପ୍ରକାଶିତ ହୋଇଥିଲା । ଆଜିର ପ୍ରଗତିଶୀଳ ଲେଖକମାନଙ୍କର ରଚନାବଳୀ ପ୍ରଥମେ ଏହି ପତ୍ରିକାରେ ହିଁ ପ୍ରକାଶିତ ହୋଇଥିଲା । ମୋହନ ସିଂହଙ୍କର ପ୍ରଗତିଶୀଳ କବିତା ସନ୍ତ ସିଂହ ଓ ଶେଖୋଙ୍କର ନୂତନ ଶୈଳୀରେ ରଚିତ କ୍ଷୁଦ୍ର ଗଳ୍ପ ଏହି ପତ୍ରିକାରେ ପ୍ରକାଶିତ ହୋଇଥିଲା । ଆଧୁନିକ ପଞ୍ଜାବୀ ସାହିତ୍ୟର ବିଶିଷ୍ଟ କବି ଭାବରେ ଅମୃତା ପ୍ରୀତମ୍ ସୁପ୍ରସିଦ୍ଧ । ଦେଶବିଭାଗକାଳୀନ ନାରୀର ବ୍ୟଥା-ବେଦନାକୁ ସେ ଅତୀବ ମର୍ମସ୍ପର୍ଶୀ ଭାବରେ ବର୍ଣ୍ଣନା କରିଯାଇଅଛନ୍ତି । ଲୋକସାହିତ୍ୟ ଓ ଆଧୁନିକ ସାହିତ୍ୟର ପ୍ରେରଣାଲାଭ କରି ସେ କବିତାରେ ତାର ପରୀକ୍ଷା କରିଯାଇଅଛନ୍ତି । ଭାଷାର ଐଶ୍ୱର୍ଯ୍ୟ ଓ ଉପମାର ଚମତ୍କାରିତା ତାହାଙ୍କ କବିତାକୁ ବିଶେଷ ସମାଦୃତ କରାଇଅଛି । ତାହାଙ୍କ ମଧୁର ସୁଲଳିତ ଶୈଳୀରେ ସେ ଯୁଗୋଚିତ ବହୁ ଭାବନାକୁ ରୂପଦାନ କରିଯାଇଅଛନ୍ତି ।

ଦେବନ୍ଦର୍ ସତ୍ୟାର୍ଥୀ ମଧ୍ଯ ତରୁଣ ପଞ୍ଜାବୀ କବିମାନଙ୍କ ମଧ୍ଯରୁ ଅନ୍ୟତମ । ଭାରତର ବିଭିନ୍ନ ଅଞ୍ଚଳର ଲୋକସଂସ୍କୃତିର ଅନୁଶୀଳନ ତାହାଙ୍କ କବିତାକୁ ଏକ ଭିନ୍ନ ଓ ସ୍ଵକୀୟ ଭାବରେ ବିମଣ୍ଡିତ କରିଅଛି ।

## ଆଧୁନିକ ପଞ୍ଜାବୀ ଗଦ୍ୟ ଓ ପ୍ରବନ୍ଧ—

ଗଦ୍ୟ ଲେଖକ ଭାବରେ ମୋହନ ସିଂହ ବୈଦ୍ୟ ସ୍ଵନାମଧନ୍ୟ । ସେ ନାନା ବହୁ ବିଷୟରେ ବହୁ ଗ୍ରନ୍ଥ ରଚନା କରିବା ବ୍ୟତୀତ ଏକ ସାହିତ୍ୟ ସଂସ୍ଥା ମଧ୍ଯ ସ୍ଥାପନ କରିଥିଲେ । ଏହି ସଂସ୍ଥା ପକ୍ଷରୁ ତାହାଙ୍କ ଉଦ୍ୟମରେ ପୃଥିବୀର ବିଭିନ୍ନ ଭାଷାରୁ ପ୍ରାୟ ଦୁଇଶହରୁ ଅଧିକ ଗ୍ରନ୍ଥ ପଞ୍ଜାବୀ ଭାଷାରେ ଅନୂଦିତ ହୋଇଅଛି । ଫଳରେ ବିଜ୍ଞାନ ଓ ଅନ୍ୟାନ୍ୟ ବିଷୟରେ ପଞ୍ଜାବୀ ଭାଷାରେ କେତେକ ଗ୍ରନ୍ଥ ଦେଖିବାକୁ ମିଳିଥାଏ । ମୋହନ ସିଂହ ମଧ୍ଯ କେତେକ ଉପନ୍ୟାସ ରଚନା କରିଯାଇଅଛନ୍ତି । ଭାଇ ବୀର ସିଂହ ଓ ଭାଇ ମୋହନ ସିଂହ ବୈଦ୍ୟ ହିଁ ନବୀନ ପଞ୍ଜାବୀ ସାହିତ୍ୟର ପ୍ରତିଷ୍ଠାତା । ଏହାଙ୍କ ପ୍ରଭାବରେ ବହୁ ପଞ୍ଜାବୀ ଲେଖକ ପ୍ରଭାବିତ ହୋଇ ସାହିତ୍ୟ ସୃଷ୍ଟି କରିଅଛନ୍ତି ।

ଶିଖଧର୍ମ ସମ୍ପର୍କରେ ଆଧୁନିକ ଯୁଗରେ ବହୁ 'ଟୀକା' 'ପରିନ୍ତି ସ' (ବ୍ୟାଖ୍ୟା) ରଚିତ ହୋଇଅଛି । ତନ୍ମଧ୍ୟରୁ ଯୋଧସିଂହଙ୍କ ରଚିତ 'କଲଘି ଧର ଦ୍ଵୁଲସ' (୧୯୧୬), 'ଗୁର୍ମତ ନିର୍ଣ୍ଣୟ' (୧୯୩୬) ଉଲ୍ଲେଖଯୋଗ୍ୟ । ସୁପଣ୍ଡିତ ଭାଇ କହ୍ନନ ସିଂହ ଛନ୍ଦ ବିଷୟରେ ଏକ ଗବେଷଣାତ୍ମକ ଗ୍ରନ୍ଥ 'ଗୁରୁ ଛନ୍ଦ ରତ୍ନାକର' ଓ ଅଲଙ୍କାର ସମ୍ପର୍କରେ 'ଗୁରୁ ଶବ୍ଦାଲଙ୍କାର' ରଚନା କରିଅଛନ୍ତି । ଶିଖ ସାହିତ୍ୟର ଏକ ଜ୍ଞାନକୋଷ 'ଶବ୍ଦ-ରତ୍ନାକର ମହାକୋଷ' ଗ୍ଭରିଖଣ୍ଡ ମଧ୍ଯ ତାହାଙ୍କ ଦ୍ଵାରା ସଙ୍କଳିତ ହୋଇଅଛି ।

ପୂରଣ ସିଂହଙ୍କ ପ୍ରବନ୍ଧ ସଂଗ୍ରହରୁ 'ଖୁଲେ ଲେଖ' (୧୯୨୯) ତାହାଙ୍କ ଉଦାର ଦୃଷ୍ଟିକୋଣ ଓ ଭାବାବେଗ ଜଣାଯାଏ । ଏତଦ୍‌ବ୍ୟତୀତ ସନ୍ତ ସିଂ, ସେଖନ ତେଜ ସିଂ, ଗୁରୁବକ୍‌ସ ସିଂ ପ୍ରଭୃତି ପ୍ରବନ୍ଧରଚୟିତା ଭାବରେ ସୁଖ୍ୟାତିଲାଭ କରିଅଛନ୍ତି । ହରଦୟାଲ ସିଂଙ୍କ 'ପଞ୍ଜାବୀ ସାହିତ୍ୟ' (ରୂପରେ ବିସ୍ତୃତ) ସାହିତ୍ୟାଲୋଚନା ଭାବରେ ପ୍ରଖ୍ୟାତ । ଏତଦ୍‌ବ୍ୟତୀତ କରମ ସିଂଙ୍କ ବ୍ୟାକରଣ ଓ ବିଷନଦାସ ପୁରୀଙ୍କ ଅଭିଧାନ ବିଷୟ ମଧ୍ଯ ଏଠାରେ ଉଲ୍ଲେଖଯୋଗ୍ୟ ।

## ଆଧୁନିକ ପଞ୍ଜାବୀ ନାଟ୍ୟସାହିତ୍ୟ—

ଆଧୁନିକ ପଞ୍ଜାବୀ ନାଟ୍ୟସାହିତ୍ୟ ପାଶ୍ଚାତ୍ୟ ନାଟ୍ୟଶୈଳୀର ପ୍ରଭାବରୁ ଉଦ୍ଭୂତ । ସର୍ବାଦୌ ଇଂରାଜୀ ଓ ହିନ୍ଦୀରୁ କେତେକ ନାଟକ ପଞ୍ଜାବୀ ଭାଷାରେ ଅନୂଦିତ

ହୋଇଥିଲା । ମୌଳିକ ପଞ୍ଜାବୀ ନାଟକ ବ୍ୟଙ୍ଗନାଟକ ରଚନାରୁ ହିଁ ଆରମ୍ଭ ହୋଇଅଛି । ଲାହୋରର ସରକାରୀ କଲେଜ ପକ୍ଷରୁ ଅଭିନୀତ 'ଦୁଲହେ ଡି ଟଣ୍ଡି' ଏକ ବୃଦ୍ଧର ବିବାହ ସମ୍ପର୍କୀୟ ହାସ୍ୟରସାତ୍ମକ ବିଷୟକୁ ଉପଜୀବ୍ୟ କରି ଲିଖିତ କାଳିଦାସଙ୍କ 'ଶକୁନ୍ତଳମ୍ ଓ ବିକ୍ରମୋର୍ବଶୀୟ' ମଧ୍ୟ ସମ୍ପୂର୍ଣ୍ଣରୂପେ ସଫଳତାର ସହିତ ପଞ୍ଜାବୀ ଭାଷାରେ ଅନୂଦିତ ହୋଇଅଛି । ମୌଳିକ ନାଟ୍ୟକାର ଭାବରେ ଈଶ୍ୱରଚନ୍ଦ୍ର ନନ୍ଦା ସୁନାମଧନ୍ୟ । ତାହାଙ୍କ ସୁଭଦ୍ରା (୧୯୨୦), ଲିଲେ ଦା ବ୍ୟାହ ରେ ଆଧୁନିକ ଆଙ୍ଗିକର ପ୍ରୟୋଗ ଦେଖିବାକୁ ମିଳେ । ପ୍ରାଚୀନ ପ୍ରଥା ଓ ପରମ୍ପରା ବିରୁଦ୍ଧରେ ତାହାଙ୍କ ନାଟକଗୁଡ଼ିକ ବିଦ୍ରୋହୋଦ୍‌ଗାର କରିଅଛି ।

ବ୍ରିଜଲାଲ ଶାସ୍ତ୍ରୀଙ୍କ ରଚିତ 'ସାବିତ୍ରୀ ସୁକନ୍ୟା' ଓ 'ପୂରଣ ନାଟକ' ଏବଂ ବୃଜ ସିଂଙ୍କ ରଚିତ ଦାମିନୀ 'ନାର ନବେଲି' ଜନପ୍ରିୟ । ବିଧବା ବିବାହ, ଅସ୍ପୃଶ୍ୟତା ନିରାକରଣ ପ୍ରଭୃତି ଆଧୁନିକ ନାଟ୍ୟକାରମାନଙ୍କର ପ୍ରଧାନ ଉପଜୀବ୍ୟ ବିଷୟ । ନାଟ୍ୟକାର ଗୁରୁବକ୍‌ସ ସିଂ ବିଦେଶରେ ଶିକ୍ଷାପ୍ରାପ୍ତ ବ୍ୟକ୍ତି କିପରି ତାହାର ପୁରାତନ ସମାଜରେ ନିଜକୁ ଖାପଖୁଆଇ ଚଳିବାକୁ ଅନୁପଯୁକ୍ତ ହୁଏ, ତାହା 'ପୂରବ ତେ ପଚ୍ଛମ' (ପୂର୍ବରୁ ପଶ୍ଚିମ) ନାଟକରେ ଦକ୍ଷତାର ସହିତ ଫୁଟାଇ ଅଛନ୍ତି । ବ୍ୟଙ୍ଗ-ନାଟକ ଭାବରେ 'ନଓଁା ଚନନ' (ନୂତନ ଆଲୋକ) ମଧ୍ୟ ଏକ ସଫଳ ସୃଷ୍ଟି । ମଧ୍ୟବିତ୍ତ ପରିବାରର ଏକ ତରୁଣ ବ୍ୟକ୍ତି କିପରି ପାଶ୍ଚାତ୍ୟ ଶିକ୍ଷାଲାଭ କରି ଭ୍ରଷ୍ଟ ହୋଇଥାଏ, ତାହା ହିଁ ଏଥିରେ ବର୍ଣ୍ଣିତ । ଐତିହାସିକ ତଥା ଚରିତ ନାଟକ ଭାବରେ କିପାସାଗରଙ୍କ 'ରଣଜିତ ସିଂହ' (୧୯୨୩) ମଧ୍ୟ ପ୍ରସିଦ୍ଧିଲାଭ କରିଅଛି । ପଞ୍ଜାବୀ ସାହିତ୍ୟରେ କେତେକ ଏକାଙ୍କିକା ରଚିତ ହୋଇଥିଲେ ହେଁ ଖୁବ୍ କମ୍ ରଚନା ଉଲ୍ଲେଖଯୋଗ୍ୟ ହୋଇପାରିଅଛି ।

ଆଧୁନିକ ପଞ୍ଜାବୀ ନାଟକରେ ବିଭିନ୍ନ ପରୀକ୍ଷା ଓ ପ୍ରୟୋଗାତ୍ମକ ନାଟକ ରଚୟିତା ଭାବରେ ହରିଚରଣ ସିଂ, ବଲଓଁନ୍ତ ଗାର୍ଗୀଙ୍କ ଦାନ ମଧ୍ୟ ଉଲ୍ଲେଖ-ଯୋଗ୍ୟ । ପଞ୍ଜାବରେ ରଙ୍ଗମଞ୍ଚ ନ ଥିବାରୁ ପଞ୍ଜାବୀ ନାଟ୍ୟସାହିତ୍ୟର ଆଶାନୁରୂପ ଅଗ୍ରଗତି ହୋଇ ପାରିନାହିଁ । ଯାହା କିଛି ସମ୍ଭବପର ହୋଇପାରିଛି, ତାହା କେବଳ ଦିଲ୍ଲୀର 'ପଞ୍ଜାବୀ ଥିଏଟର' ଅନୁଷ୍ଠାନ ଯୋଗୁଁ । ଡକ୍ଟର ହରଭଜନ ସିଂ ଯଥାର୍ଥତଃ କହିଛନ୍ତି—'Punjab has no theatre ; no wonder, the field of Punjabi Drama is barren, striken with chronic draught".

( Modern Punjabi Literature)

ତରୁଣ ନାଟ୍ୟକାରମାନଙ୍କ ମଧ୍ୟରୁ ଗୁରୁଚରଣ ସିଂ କସୂକା, କପୁର ସିଂ ଘୁମନ ଓ ହରଶରଣ ସିଂଙ୍କ ନାମ ଉଲ୍ଲେଖଯୋଗ୍ୟ ।

## ଆଧୁନିକ ପଞ୍ଜାବୀ କଥାସାହିତ୍ୟ—

୧୮୯୭ରେ ଭାଇ ସିଂଙ୍କ ଦ୍ୱାରା ଲିଖିତ କରୁଣ ରସାତ୍ମକ 'ସୁନ୍ଦରୀ'କୁ ପଞ୍ଜାବୀ ସାହିତ୍ୟର ପ୍ରଥମ ଉପନ୍ୟାସ ଭାବରେ ଗ୍ରହଣ କରାଯାଇଥାଏ । ବାସ୍ତବବାଦୀ ଔପନ୍ୟାସିକ ଭାବରେ ନାନକ ସିଂଙ୍କୁ ଶ୍ରେଷ୍ଠ ସ୍ଥାନ ଦିଆଯାଇଥାଏ । 'ଚିଟ୍ଟା ଲହୁ' (ଧଳା ରକ୍ତ—୧୯୩୨), 'ଗରିବ ଡି ଦୁନିଆ' (ଗରିବର ଦୁନିଆ—୧୯୩୯) ଉପନ୍ୟାସ ଉଚ୍ଚ ଓ ନୀଚଜାତିର ସଂଘର୍ଷକୁ ଉପଜୀବ୍ୟ କରି ରଚନା କରାଯାଇଅଛି । ସର୍ଦ୍ଦାର ନାନକ ସିଂ ପ୍ରାୟ ୧୪ ଗୋଟି ଉପନ୍ୟାସର ରଚୟିତା ।

ଆଧୁନିକ ଔପନ୍ୟାସିକମାନଙ୍କ ମଧ୍ୟରୁ ମହିନ୍ଦର ପାଲ୍ ସିଂ ସୁବିଖ୍ୟାତ । ସେ ପ୍ରଥମେ ଏକ ରୋମାଣ୍ଟିକ ଉପନ୍ୟାସ ରଚନା କରିଥିଲେ ହେଁ, ଐତିହାସିକ ଉପନ୍ୟାସ ରଚନାରେ ଆପଣାର କୃତିତ୍ୱ ଦର୍ଶାଇ ଅଛନ୍ତି । ରଜପୁତ ଜୀବନ, ଶିଖମାନଙ୍କ ଯୁଦ୍ଧ ବିଷୟରେ ସେ ବହୁ ଐତିହାସିକ ରଚନା କରିଥିବା ଯୋଗୁଁ ସ୍ମରଣୀୟ । ଚେତନା-ପ୍ରବାହ (Stream of consciousness) ପଦ୍ଧତିରେ ସେ ମନସ୍ତାତ୍ତ୍ୱିକ ଓ ବୌଦ୍ଧିକ ସମସ୍ୟାମୂଳକ 'ପୁନ୍ୟ କେ ମସ୍ୟା' (ଅଲୋକିତ ବା ଅନ୍ଧାର ରାତି) ରଚନା କରିଅଛନ୍ତି । ସମ୍ଭାବନାଶୀଳ ଔପନ୍ୟାସିକମାନଙ୍କ ମଧ୍ୟରୁ ଯଶୋର୍ଦ୍ଦ୍ୱନ୍ତ ସିଂ କନର୍ଓ୍ୱାଲ, ସୁରିନ୍ଦର ସିଂ ନରୁଲା, ମହିନ୍ଦର ସିଂ ଶର୍ମା ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ ।

ନାନକ ସିଂଙ୍କୁ ମଧ୍ୟ ପ୍ରଥମ ଗଳ୍ପଲେଖକ ଭାବରେ ଗ୍ରହଣ କରାଯାଇଥାଏ । ସମାଜର ପତିତ ବ୍ୟକ୍ତିମାନଙ୍କ ସମ୍ପର୍କରେ ସେ ପ୍ରାୟ ୧୦୦ଟି ଗଳ୍ପ ରଚନା କରି-ଅଛନ୍ତି । ୧୯୩୫-୩୬ ରେ ପଞ୍ଜାବୀରେ ଯଥାର୍ଥତଃ କ୍ଷୁଦ୍ରଗଳ୍ପ ରଚିତ ହୋଇଅଛି । ସନ୍ତ ସିଂ ସେଖନଙ୍କୁ ପରବର୍ତ୍ତୀ ଗଳ୍ପଲେଖକ ଭାବରେ ଗ୍ରହଣ କରାଯାଏ । କର୍ତ୍ତାର ସିଂ ମନସ୍ତାତ୍ତ୍ୱିକ ଗଳ୍ପ ରଚନାରେ କୃତିତ୍ୱ ପ୍ରଦର୍ଶନ କରିଅଛନ୍ତି । ପାଶ୍ଚାତ୍ୟ ଆଦର୍ଶରେ ସମାଜ ସଂସ୍କାରର ଗୁରୁତ୍ୱକୁ ବର୍ଣ୍ଣନା କରି ଗୁରୁବକ୍ସ ସିଂହଙ୍କ ଗଳ୍ପ-ଗୁଡ଼ିକ ଲିଖିତ । ଏଣୁ ତାହାଙ୍କ ଗଳ୍ପଗୁଡ଼ିକ ଅଧିକ ପରିମାଣରେ ଆଦର୍ଶମୂଳକ । ତାହାଙ୍କର ସାମ୍ପ୍ରତିକତମ ଗଳ୍ପଗୁଡ଼ିକରେ ବାମପନ୍ଥୀ ଭାବନାର ପ୍ରଭାବ ଦେଖିବାକୁ ମିଳିଥାଏ ।

,,,

କର୍ତ୍ତାର ସିଂ ଦୁଗ୍ଗଲ ସାମ୍ପ୍ରତିକ ଗଳ୍ପଲେଖକ ଭାବରେ ସବୁଠାରୁ ଅଧିକ ଗଳ୍ପ-ରଚନା କରିଅଛନ୍ତି । ତାହାଙ୍କ ଗଳ୍ପଗୁଡ଼ିକରେ ଫ୍ରୟେଡୀୟ ମନସ୍ତାତ୍ତ୍ୱିକ ସିଦ୍ଧାନ୍ତର ପ୍ରଭାବ ସୁସ୍ପଷ୍ଟ । ଏଣୁ ତାହାଙ୍କ ସୃଷ୍ଟ ଚରିତ୍ର ବିକାଶଗ୍ରସ୍ତ ଓ ଅସ୍ୱାଭାବିକ ପରିଦୃଶ୍ୟମାନ ହେବା ସ୍ୱାଭାବିକ । ଦେଶବିଭାଗ ସମ୍ବନ୍ଧୀୟ ତାହାଙ୍କର କେତେଗୋଟି ଗଳ୍ପ ଉଚ୍ଚକୋଟୀର ବିବେଚିତ ହୁଏ ।

ତରୁଣ କଥାକାରମାନଙ୍କ ମଧ୍ୟରୁ କୁଲୱନ୍ତ ସିଂ ଭିର୍କ ଓ ମହେନ୍ଦର ସିଂ ଶର୍ମା ମନସ୍ତାତ୍ତ୍ୱିକ ଗଳ୍ପରଚୟିତା ଭାବରେ ଜନପ୍ରିୟତା ଅର୍ଜନ କରିଅଛନ୍ତି ।

ଏହିପରି ବିଳମ୍ବରେ ଜାଗ୍ରତ ହେଲେ ହେଁ ପଞ୍ଜାବୀ ସାହିତ୍ୟ ତାହାର ବିଭିନ୍ନ ବିଭାଗରେ ଅଗ୍ରଗତି ଲାଗି ଆଜି ସମୁଦ୍ୟତ ଓ ସକ୍ରିୟ ।



# ମରାଠୀ ସାହିତ୍ୟ

ମହାରାଷ୍ଟ୍ର ପ୍ରାକୃତରୁ ମହାରାଷ୍ଟ୍ରୀ ଅପଭ୍ରଂଶ ଭାଷା ସୃଷ୍ଟି ହୋଇଥିଲା । ତହିଁରୁ ଆଧୁନିକ ମରାଠୀଭାଷା ଉଦ୍ଭୂତ ହୋଇଅଛି । ଉତ୍ତରରେ ନାଗପୁର, ପଶ୍ଚିମରେ ଆରବ ସାଗର, ପୂର୍ବରେ ଭଣ୍ଡାରା ଓ ଗୁନ୍ଦା ଜିଲ୍ଲା, ଦକ୍ଷିଣରେ ଓ ବେଲଗାଁ ମଧ୍ୟବର୍ତ୍ତୀ ମହାରାଷ୍ଟ୍ର ଅଞ୍ଚଳରେ ମରାଠୀଭାଷା ପ୍ରଚଳିତ । କୋଙ୍କଣୀ ମରାଠୀର ଏକ ଉପଭାଷା । କୋଙ୍କଣୀ ଓ ମରାଠୀ ଭାଷାଭାଷୀଙ୍କର ସଂଖ୍ୟା ପ୍ରାୟ ଦୁଇ କୋଟି ଅଶୀ ଲକ୍ଷରୁ ଅଧିକ । ଦେବନାଗରୀ ଲିପିରେ ହିଁ ମରାଠୀ ଭାଷା ଲିଖିତ ହୁଏ ।

## ମରାଠୀ ସାହିତ୍ୟର ଯୁଗବିଭାଗ—

ମୋଟାମୋଟି ଭାବରେ ମରାଠୀ ସାହିତ୍ୟକୁ ନିମ୍ନୋକ୍ତ ପାଞ୍ଚ ଭାଗରେ ବିଭକ୍ତ କରାଯାଇଥାଏ । ଯଥା—(୧) ଆଦିଯୁଗ ବା ଅପଭ୍ରଂଶ ଯୁଗ । (୨) ପ୍ରାଚୀନ ଯୁଗ ବା ଜ୍ଞାନେଶ୍ୱର-ନାମଦେବ ଯୁଗ । (୩) ପୂର୍ବ-ମଧ୍ୟ ବା ଏକନାଥ ଯୁଗ । (୪) ଉତ୍ତର-ମଧ୍ୟ ବା ତୁକାରାମ-ରାମଦାସ ଯୁଗ । (୫) ମୋରୋପନ୍ଥ ଯୁଗ । (୬) ସାହିର ଯୁଗ ବା ପ୍ରଭାକର ରାମଯୋଶି ଯୁଗ । (୭) ଆଧୁନିକ ଯୁଗ ।

ଆଧୁନିକ ଯୁଗକୁ (କ) ପେଶବାକାଳୀନ ସାହିତ୍ୟ ଓ (ଖ) ସଦ୍ୟକାଳୀନ ସାହିତ୍ୟ ଭେଦରେ ମଧ୍ୟ ଦୁଇ ଭାଗରେ ବିଭକ୍ତ କରାଯାଇଥାଏ । ଆଲୋଚନାର ସୁବିଧା ଦୃଷ୍ଟିରୁ କେହି କେହି ଆଲୋଚକ ଏହାକୁ ପାଞ୍ଚ ଭାଗରେ ମଧ୍ୟ ବିଭକ୍ତ କରିଅଛନ୍ତି । ଯଥା—

(୧) ଯାଦବ ଯୁଗ—୧୧୮୯-୧୩୨୦
(୨) ବାହମନୀ ଯୁଗ—୧୩୨୦-୧୬୦୦
(୩) ମରହଟ୍ଟା ଯୁଗ—୧୬୦୦-୧୭୦୦
(୪) ପେଶଓ୍ୱା ଯୁଗ—୧୭୦୦-୧୮୫୦
(୫) ବ୍ରିଟିଶ ଯୁଗ—୧୮୫୦-୧୯୪୭

## ମରାଠୀ ଭାଷା—

ଖ୍ରୀ. ୪୮୮ରେ ଲିଖିତ ମଙ୍ଗଳ ବେଢ଼େ ନାମକ ଗ୍ରାମରୁ ପ୍ରାପ୍ତ ଏକ ତାମ୍ର-ଫଳକରୁ ମରାଠୀ ଭାଷାର ପ୍ରାଚୀନତମ ନିଦର୍ଶନ ମିଳିଥାଏ । ଖ୍ରୀ. ୭୩୬ରେ ଲିଖିତ

ଚକ୍ରଡ଼ର ତାମ୍ରଫଳକରେ ମଧ୍ୟ ଏହି ଭାଷାର ପ୍ରୟୋଗ ଦେଖାଯାଏ । ମାତ୍ର ଖ୍ରୀ. ୯୮୬ରେ ଲିଖିତ ମହାମାତ୍ର ନନ୍ଦବର୍ତ୍ତୀ ଶ୍ରବଣବେଲଗୋଲାର ଗୋମଟେଶ୍ୱର ଶିଳାଲେଖରୁ ମରାଠୀ ଭାଷାର ପୂର୍ଣ୍ଣ ପରିଚୟ ମିଳିଥାଏ । ଏହାଛଡ଼ା ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ ବହୁ ଗ୍ରନ୍ଥ ଶିଳାଲିପିରେ ମହାରାଷ୍ଟ୍ରୀ ଶବ୍ଦ ଓ ବାକ୍ୟ ଦେଖିବାକୁ ମିଳିଥାଏ ।

ହାଲ ସାତବାହନଙ୍କ 'ସପ୍ତଶତୀ'କୁ ମରାଠୀ ପ୍ରାକୃତ ବା ଅପଭ୍ରଂଶର ଆଦିମ ରୂପ ଭାବରେ ଗ୍ରହଣ କରାଯାଇଥାଏ । ଏହି ଗ୍ରନ୍ଥ ମହାରାଷ୍ଟ୍ରୀରେ ଲିଖିତ ହୋଇଥିଲା । ନମୁନା ସ୍ୱରୂପ ତହିଁରୁ ଗୋଟିଏ ଗାଥା ନିମ୍ନରେ ଉଦ୍ଧୃତ ହେଲା ।

> 'ଦୁଗ୍ଗଅ କୁଡୁମ୍ବ ଅଟ୍ଠୀ କହଁଣୁ
> ମଏ ଧୋଇଏଣ ସୋଢବ୍ବୋ
> ଦଡ଼ିଓ ସରନ୍ତ ସଲିଲେଣ ଉଅହ
> ରୁଣ୍ଣ ଏବ ପଡ଼ଏଣ ।' (ଗାଥା ନଂ ୧୮)

ଅର୍ଥାତ୍ ଦରିଦ୍ର କୁଟୁମ୍ବରେ ଲୁଗାପଟାର ଏପରି ଦୁର୍ଦ୍ଦଶା ହୁଏ ଯେ, ଯେତେବେଳେ ତାହା ଧୁଆଯାଏ ଓ ଶୁଖାଇବାକୁ ଟଙ୍ଗାଯାଏ, ସେତେବେଳେ ସେ ଅସହ୍ୟ ଦୁର୍ଦ୍ଦଶାଯୋଗୁଁ, ଟୋପା ଟୋପା ପାଣି ଗବାହୁବା ଛଳରେ କାନ୍ଦିବାକୁ ଲାଗେ ।

**ମହାନୁଭବ କାଳ—**

ମୁକୁନ୍ଦ ରାୟଙ୍କୁ ମରାଠୀ ସାହିତ୍ୟର ଆଦିକବି ଭାବରେ ସମ୍ମାନିତ କରାଯାଇଥାଏ । ତାହାଙ୍କ ଆବିର୍ଭାବ କାଳ ୧୧୨୮ରୁ ୧୧୯୮ ବୋଲି ନିର୍ଦ୍ଧାରିତ ହୋଇଅଛି । ତାହାଙ୍କ ରଚନାମାନଙ୍କ ମଧ୍ୟରୁ 'ବିବେକସିନ୍ଧୁ' ସର୍ବୋତ୍କୃଷ୍ଟ । ଏହା ହିଁ ମରାଠୀ ସାହିତ୍ୟର ଆଦି ଗ୍ରନ୍ଥ । ଏତଦ୍‌ବ୍ୟତୀତ 'ପରମାମୃତ' ମଧ୍ୟ ତାହାଙ୍କର ଅନ୍ୟତମ ପ୍ରସିଦ୍ଧ ରଚନା । ବିବେକସିନ୍ଧୁର ପୂର୍ବାର୍ଦ୍ଧରେ ସଦ୍‌ଗୁରୁ ଓ ସତ୍‌ଶିଷ୍ୟ ଲକ୍ଷଣ, କାମକ୍ରୋଧାଦି ଶତ୍ରୁମାନଙ୍କ ଦମନ, ଆତ୍ମା-ଅନାତ୍ମା ବିଚାର ପ୍ରଭୃତି ବହୁ ଉପଦେଶାତ୍ମକ ବିଷୟ ଆଲୋଚିତ ହୋଇଅଛି । ଏହି ଗ୍ରନ୍ଥର ଶେଷାର୍ଦ୍ଧରେ ଶରୀରର ନାଶ ପରେ ସ୍ଥୂଳ-ସୂକ୍ଷ୍ମ ମହାକାରଣ ଦେହର ବର୍ଣ୍ଣନା ହୋଇଅଛି ।

ଏହା ପରେ ମହାନୁଭବ ସମ୍ପ୍ରଦାୟର ପ୍ରଭାବ ମରାଠୀ ସାହିତ୍ୟକ୍ଷେତ୍ରକୁ ପ୍ରଭାବିତ କରିଥିଲା । ଏହି ସମ୍ପ୍ରଦାୟରେ ସାତଗୋଟି ଗ୍ରନ୍ଥ (ସାତି ଗ୍ରନ୍ଥ)କୁ ପ୍ରାମାଣିକ ଭାବରେ ଗ୍ରହଣ କରାଯାଇଥାଏ । ମହାତ୍ମା ଚକ୍ରଧର ଏହି ସମ୍ପ୍ରଦାୟର ପ୍ରତିଷ୍ଠାତା । ମହାନୁଭବ ସମ୍ପ୍ରଦାୟର ଆଧାରଭୂତ ସାତଗୋଟି ଗ୍ରନ୍ଥ ହେଉଛି—

୧ । ଶିଶୁପାଳ ବଧ—ଖ୍ରୀ. ୧୧୯୫ରେ ଏହା ଭାସ୍କରଭଟ୍ଟ ବୋରିକରଙ୍କ ଦ୍ୱାରା ଲିଖିତ ହୋଇଥିଲା ।

୨ । ଏକାଦଶସ୍କନ୍ଧ—୧୧୯୬ରେ ଏହା ମଧ୍ୟ ଭାସ୍କରଭଟ୍ଟ ବୋରିକରଙ୍କ ଦ୍ୱାରା ଲିଖିତ ହୋଇଥିଲା ।

୩ । ବତ୍ସହରଣ—୧୨୦୦ରେ ଏହା କବି ଦାମୋଦରଙ୍କ ଦ୍ୱାରା ଲିଖିତ ହୋଇଥିଲା ।

୪ । ରୁକ୍ମିଣୀ ସ୍ୱୟମ୍ବର—ଖ୍ରୀ. ୧୨୯୦ରେ ଏହା ନରେନ୍ଦ୍ର କବିଙ୍କ ଦ୍ୱାରା ରଚିତ ହୋଇଥିଲା ।

୫ । ଜ୍ଞାନବୋଧ—୧୨୫୬ରେ ବିଶ୍ୱନାଥ ବାଲପୁରକର ଏହାକୁ ରଚନା କରିଥିଲେ ।

୬ । ସହ୍ୟାଦ୍ରି ବର୍ଣ୍ଣନ ବା ଦତ୍ତଲୀଳା ଚରିତ—ଏହା ୧୨୫୪ରେ ରବଲୋ ବ୍ୟାସଙ୍କ ଦ୍ୱାରା ପ୍ରଣୀତ ହୋଇଥିଲା ।

୭ । ଋଦ୍ଧିପୁର ବର୍ଣ୍ଣନ—ନାରେର ବ୍ୟାସ ଅର୍ଥାତ ନାରାୟଣ ବହାଲିୟେ ଏହା ୧୨୮୫ରେ ରଚନା କରିଥିଲେ ।

ମହିମା, ସନ୍ନ୍ୟାସ, ଭକ୍ତି, ସଦାଚାର ଓ ପରୋପକାରକୁ ଏହି ସମ୍ପ୍ରଦାୟବାଦୀମାନେ ବିଶେଷ ଗୁରୁତ୍ୱ ଦେଇଥାଆନ୍ତି ।

## ଜ୍ଞାନଦେବ ଓ ନାମଦେବ ଯୁଗ—

ଏହି ଯୁଗର ପ୍ରଖ୍ୟାତ କବି ଭାବରେ ନାମଦେବ, ଜ୍ଞାନଦେବ, ଗୋରା କୁମ୍ଭାର, ନରହରି ସୋନାର, ବଙ୍କା ମହାର, ସାବତା ମାଳୀ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ । ନାମଦେବ ଥିଲେ ପରମ ଭକ୍ତ । ସେ ପଞ୍ଜାବରେ ପରିଭ୍ରମଣ କରି ଭକ୍ତିବାଦ ପ୍ରଚାର କରିଥିଲେ । ଏଣୁ ଏହାଙ୍କ ବାଣୀ 'ଗ୍ରନ୍ଥସାହେବ'ରେ ସଂଗୃହୀତ ହୋଇଅଛି । ଜ୍ଞାନେଶ୍ୱର ଓ ନାମଦେବ ଉଭୟେ ଥିଲେ ସମକାଳୀନ । ଜ୍ଞାନେଶ୍ୱରଙ୍କ ଲିଖିତ 'ଭାବାର୍ଥ ଦୀପିକା' ବା 'ଜ୍ଞାନେଶ୍ୱରୀ' ଭଗବତ୍ ଗୀତାର ଟୀକା ଓ ବ୍ୟାଖ୍ୟା । ମରାଠୀ ସାହିତ୍ୟର ତଥା ଭାରତୀୟ ସାହିତ୍ୟର ଏହା ଏକ ଅତୁଳନୀୟ ଗ୍ରନ୍ଥ । ଏହି ବହୁ ଦୃଷ୍ଟାନ୍ତପୂର୍ଣ୍ଣ ଓ କବି କଳ୍ପନାର ଅପୂର୍ବ ଦୀପ୍ତିରେ ଉଦ୍ଭାସିତ । 'ଓ ବି' ଛନ୍ଦରେ ଏହା ରଚିତ । ଉଦାହରଣ ସ୍ୱରୂପ—

'କାଷ୍ଟେ କାଷ୍ଟ ମଥିଜେ
ତେଥ ବହ୍ନି ଏକ ଉପଜେ
ତେଣେଂ କାଷ୍ଟଜାତ ଜାଳିଜେ
ପ୍ରଜ୍ୱଳୋନ ।

ତୈସା ରେ ନୀଚ ପରଂପରେ
ଜନ୍ମ ବଧ ଘଡ଼େ ମସ୍ତ୍ରରେ
ତନ୍ମ ତେଣେଂ ମହାଦୋଷେଂ ଘୋରେଂ
କୁଳାଚ ନାଶେ ।'

ଷଡ଼ରିପୁର ବର୍ଣ୍ଣନା ପ୍ରସଙ୍ଗରେ ସେ ଲେଖିଛନ୍ତି—

'ଜ୍ଞାନ ବଧିଚେ ଭୁଜଙ୍ଗ
ବିଷୟ ଦଷ୍ଟଚେ ବାଦ୍ୟ
ଭଜନ ମାର୍ଗୀଂଚେ ମଁାଗ
ଖ୍ରରଲ୍ଲ ହେଁ
ହେ ଦେହ ଦୁର୍ଗାଚେ ଦୋଂଡ
ଇନ୍ଦ୍ରିୟ ଗ୍ରାମୀଚେଂ କୋଂଡ଼ ।'

## ଏକନାଥ ଯୁଗ—

ଜ୍ଞାନେଶ୍ୱରଙ୍କ ପରବର୍ତ୍ତୀ ସମୟକୁ ଏକନାଥ ଯୁଗ କୁହାଯାଏ । ସାହିତ୍ୟ ଦୃଷ୍ଟିରୁ ଏହି ଯୁଗ ସେତେ ସମୃଦ୍ଧ ନୁହେଁ । ଏକନାଥ 'ଜ୍ଞାନେଶ୍ୱରୀ'କୁ ସଂଶୋଧନ କରିଥିଲେ, ବ୍ୟାପକ ଭାବେ ପ୍ରଚାର କରି ତାର ମହତ୍ୱ ବର୍ଦ୍ଧନ କରିଥିଲେ । ସେ ଶ୍ରୀମଦ୍ ଭାଗବତ ଏକାଦଶ ସ୍କନ୍ଧର ଟୀକା ଲେଖିଯାଇଅଛନ୍ତି । ଏହା 'ଏକନାଥ ଭାଗବତ' ରୂପେ ପରିଚିତ । ଏହା ମହାରାଷ୍ଟ୍ରରେ ଅତୀବ ଜନପ୍ରିୟ । ସମାଜର ବିଭିନ୍ନ ଶ୍ରେଣୀ ସଂପ୍ରଦାୟ ମଧ୍ୟରେ ସେ ଭକ୍ତିଭାବ, ସଦ୍‌ଗୁଣ ଓ ସୁନୀତିର ପ୍ରଚାର କରିଯାଇଅଛନ୍ତି । ଜାତିର କୁସଂସ୍କାରକୁ ଦୂରକରିବାକୁ ମଧ୍ୟ ସେ ବହୁ ପ୍ରଯତ୍ନ କରିଥିଲେ । ସେଥିପାଇଁ ଏକନାଥ ସମାଜ ସଂସ୍କାରକ, ତ୍ୟାଗୀ ଓ ଉଚ୍ଚକୋଟୀର ଭକ୍ତ ଭାବରେ ମହାରାଷ୍ଟ୍ରରେ ସୁବିଦିତ ।

## ତୁକାରାମ ଓ ରାମଦାସ ଯୁଗ—

ଏହି ଯୁଗରେ ଶୈବଧର୍ମର ବହୁଳ ପ୍ରଚାର ହୋଇଥିଲା । ଶିବାଜୀଙ୍କ ସମ-ସାମୟିକ ଓ ଗୁରୁ ସନ୍ଥ ସମର୍ଥ ରାମଦାସ ସ୍ୱାମୀ ଏବଂ ତୁକାରାମ ଏହି ଯୁଗର ସର୍ବଶ୍ରେଷ୍ଠ କବିରୂପେ ପରିଚିତ । ସମର୍ଥ ରାମଦାସ ନିବୃତ୍ତି ମାର୍ଗର କବି ନ ଥିଲେ । ସେ ଗୃହସ୍ଥ-ମାନଙ୍କୁ ଉପଦେଶ ଦେଉଥିଲେ—ଈଶ୍ୱରଭକ୍ତି ଓ ଅଦ୍ୱୈତ ଜ୍ଞାନଲାଭ କରିବାକୁ । ତାହାଙ୍କ ଭାଷାରେ—

'ଆମ୍ଭୀ ପ୍ରପଂଚ କରିତା ନେଣତା
ମନୁଷ୍ୟାତେଂ ପରମାର୍ଥ ଘଟେନା
ଯେଣେଥ ଆଳସ କରୂଁ ନକା
ବିବେକ ହୋ ।

ଅର୍ଥାତ୍ ଗାର୍ହସ୍ଥ୍ୟ ଛାଡ଼ି ପରମାର୍ଥ ପଛରେ ଲାଗିଲେ ମନୁଷ୍ୟ ଅନ୍ନ ଖାଇବାକୁ ମଧ୍ୟ ବଞ୍ଚିତ ହେବ ।

ପ୍ରପଂଚ ସୋଡ଼ୁନ
ପରମାର୍ଥ କେଲା
ତରୀ ଅନ୍ନ ମିଳେନା
ଖାୟାଲା ।

ରାମଦାସ ସ୍ୱାମୀ ଶିବାଜୀଙ୍କୁ ବହୁ ସାହାଯ୍ୟ କରିଥିଲେ । ତାହାଙ୍କ ରଚିତ 'ଦାସବୋଧ' ଓ 'ମନାଚେ ଶ୍ଳୋକ' ସୁପ୍ରସିଦ୍ଧ । ତୁକାରାମ ବିଠଲଙ୍କର ଭକ୍ତ ଥିଲେ । ସେ ଥିଲେ ସନ୍ନ୍ୟାସୀ । ସେ ପ୍ରସାଦଗୁଣସମ୍ପନ୍ନ ବହୁ କବିତା ରଚନା କରିଯାଇଛନ୍ତି । ତାହାଙ୍କ ରଚନା ଅତ୍ୟନ୍ତ ଉଚ୍ଚକୋଟୀର ଭକ୍ତିସାହିତ୍ୟ ଭାବେ ପରିଗଣିତ ହୁଏ ।

ମୋରୋପନ୍ତ ଓ ବାମନପଣ୍ଡିତଙ୍କ ଯୋଗୁଁ ଶୈବ ଯୁଗରେ ମରାଠୀ ସାହିତ୍ୟ ଉନ୍ନତ ହେଲା । ରାମଦାସ ଓ ତାହାଙ୍କର ଶିଷ୍ୟ କଲ୍ୟାଣ ଦାନକରେ ଗିରିଧର, ଉଦ୍ଧବ ପ୍ରଭୃତିଙ୍କ ସାହିତ୍ୟ ସୃଷ୍ଟିପରେ ବାମନ ପଣ୍ଡିତ ସାହିତ୍ୟ ସୃଷ୍ଟି କ୍ଷେତ୍ରରେ ଅବତୀର୍ଣ୍ଣ ହୁଅନ୍ତି । ଏହି ଯୁଗରେ ସାହିତ୍ୟରେ ପୁରାତନ ଭକ୍ତମାନଙ୍କ ସମ୍ପର୍କୀୟ ଗାଥା ଆଖ୍ୟାୟନ କାବ୍ୟ ରୂପରେ ରଚିତ ଓ ଗୀତ ହେବାକୁ ଲାଗିଲା । ଏହିସବୁ କାବ୍ୟରୁ ପାଣ୍ଡିତ୍ୟର ଅଧିକ ପରିଚୟ ମିଳୁଥିଲେ ହେଁ ତହିଁରେ କବିତ୍ୱର ପରିମାଣ ସ୍ୱଳ୍ପ ଅନୁଭୂତ ହେଉଥିଲା । ଅଳଙ୍କାର ଯୋଜନା, ଶବ୍ଦଯୋଜନା ଚାତୁରୀ ଓ କାବ୍ୟରଚନା-ଶୈଳୀର ଚମତ୍କାରିତା ପ୍ରତି ଏହି ଯୁଗର କବିମାନେ ଅଧିକ ସଚେତନ ହୋଇଥିଲେ ।

## ପେଶବା ଯୁଗ—

ଏହି ଯୁଗରେ ବିଶିଷ୍ଟ କବି ଭାବରେ ମୋରପନ୍ତଙ୍କ ନାମ ଉଲ୍ଲେଖଯୋଗ୍ୟ । ମୟୂର କବି ନାମରେ ମଧ୍ୟ ସେ ପରିଚିତ । ସେ ମୁଖ୍ୟତଃ ପୌରାଣିକ ବିଷୟମୂଳକ ବହୁ ଆଖ୍ୟାନକାବ୍ୟ ରଚନା କରି ଯାଇଅଛନ୍ତି । ତନ୍ମଧ୍ୟରୁ ପ୍ରାୟ ୯୦ ଗୋଟି ସଂଗୃହୀତ ହୋଇଅଛି । ଏତଦ୍‌ବ୍ୟତୀତ ତାହାଙ୍କ ରଚିତ ବହୁ ଭକ୍ତିକବିତା, ସ୍ତୁତି

ଗୀତ ମହାରାଷ୍ଟ୍ରରେ ବହୁ ଜନପ୍ରିୟ ଓ ଏବେ ମଧ୍ୟ ଜନସାଧାରଣଙ୍କ ଦ୍ୱାରା ଅଭିନୀତ ତଥା ଗୀତ ହୋଇଥାଏ ।

ଉତ୍ତର ପେଶବା କାଳୀନ ସାହିତ୍ୟକୁ 'ଶାହିର ସାହିତ୍ୟ' କୁହାଯାଏ । ଏହି ସମୟରେ ପ୍ରଭାକର, ସଗନଭାଉ, ହନିଷନ୍ତ, ହୋନାଜୀ, ବାଲା, ରାମଯୋଗୀ ପ୍ରଭୃତି କବିମାନେ 'ଲାବଣୀ', 'ପାହିର' ପ୍ରଭୃତି ଧରଣର କବିତା ରଚନା କରିଥିଲେ । ଏଗୁଡ଼ିକ ଥିଲା ଆଦିରସପ୍ରଧାନ ।

ପେଶବାଯୁଗର ବିଶିଷ୍ଟତମ ସାହିତ୍ୟକୃତି ଭାବରେ 'ବାଖର' କୁ ନିର୍ଦ୍ଦେଶ କରାଯାଇଥାଏ । ଶିବାଜୀଙ୍କ ସମୟରୁ 'ବାଖର' ରଚନା ପ୍ରଚଳିତ । ଏହି 'ବାଖର' ଗୁଡ଼ିକ ରାଜ୍ୟଶାସନ ସମ୍ବନ୍ଧୀୟ ପତ୍ର, ଆଦେଶନାମା ଓ ବିବରଣୀ । ଏଗୁଡ଼ିକ ମଧ୍ୟକାଳୀନ ମରାଠୀ ଗଦ୍ୟର ଉତ୍କୃଷ୍ଟ ନିଦର୍ଶନ । ଶିବାଜୀଙ୍କ ଜୀବନୀ ସମ୍ପର୍କୀୟ ବାଖର 'ଓ୍ୱାକେନୀଭସ ବାଖର' ପ୍ରାଚୀନତମ । ଶିବାଜୀଙ୍କ ଜୀବନୀ ସଂପର୍କୀୟ ଅନ୍ୟ ଏକ ବାଖର 'ସଭାସଦୀ ବାଖର' ରାଜାରାମଙ୍କ ଆଦେଶରେ କିଷନଜୀ ଅନନ୍ତ ସଭାସଦ୍‌ଙ୍କ ଦ୍ୱାରା ୧୬୯୭ରେ ଲିଖିତ ହୋଇଥିଲା ।

ପେଶବାଯୁଗର 'ବାଖର'ମାନଙ୍କ ମଧ୍ୟରୁ ୧୭୧୮ରେ ଲିଖିତ 'ଶିବ ଦିଗ୍‌ବିଜୟ ବାଖର' ଅନ୍ୟତମ । ପାନିପଥ ଯୁଦ୍ଧର କରୁଣ ବର୍ଣ୍ଣନାସମ୍ବଳିତ ପାଞ୍ଚ ଗୋଟି ବାଖର ମଧ୍ୟରୁ 'ଭାଉ ସାହେବ ବାଖର' ଉତ୍କୃଷ୍ଟତମ ବିବେଚିତ ହୁଏ । ନାନା ପଡ଼ନୀବିଶଙ୍କ ଆତ୍ମଚରିତ ମଧ୍ୟ ଏ ଯୁଗର ଅନ୍ୟତମ ଗଦ୍ୟରଚନା ।

## ମରାଠୀ ସାହିତ୍ୟର ଆଧୁନିକ ଯୁଗ—

ଆଧୁନିକ ମରାଠୀ ସାହିତ୍ୟକୁ ତିନିଗୋଟି ପର୍ଯ୍ୟାୟରେ ବିଭକ୍ତ କରାଯାଇ-ଥାଏ । ଯଥା—

ପ୍ରଥମ ପର୍ଯ୍ୟାୟ—୧୮୧୮-୧୮୭୪
ଦ୍ୱିତୀୟ ପର୍ଯ୍ୟାୟ—୧୮୭୪-୧୯୨୦
ତୃତୀୟ ପର୍ଯ୍ୟାୟ—୧୯୨୦-୧୯୪୭

୧୭୬୧ର ତୃତୀୟ ପାନିପଥ ଯୁଦ୍ଧରେ ମରହଟ୍ଟା ରାଜଶକ୍ତିର ପତନ ହେଲା ଓ ୧୮୧୮ ବର୍ଷେଣି ସନ୍ଧି ପରେ ମହାରାଷ୍ଟ୍ର ଇଂରାଜୀ ଶାସନର ଅନ୍ତର୍ଭୁକ୍ତ ହେଲା । ସେତେବେଳକୁ ମରହଟ୍ଟା ସମାଜ ଓ ସଂସ୍କୃତିର ଚରମ ବିପର୍ଯ୍ୟୟ ସଂଘଟିତ ହୋଇ ସାରିଥାଏ । ଏହାପରେ ଏହି ଆତ୍ମବିସ୍ମୃତ ଜାତିର ସାହିତ୍ୟ କ୍ଷେତ୍ରରେ ଖ୍ରୀଷ୍ଟୀୟ ମିଶନାରୀ

ଓ ଉଦାରଚେତା ଇଂରେଜ ପଣ୍ଡିତ ଓ ଶାସକମାନଙ୍କ ଉଦ୍ୟମ ଉଲ୍ଲେଖଯୋଗ୍ୟ । ସେହିମାନଙ୍କ ଉଦ୍ୟମରେ ମରାଠୀ ଭାଷାର ପ୍ରଥମ ବ୍ୟାକରଣ ଓ ଅଭିଧାନ ୧୮୨୯ରେ ସଙ୍କଳିତ ହୋଇଥିଲା । ସେମାନେ ମରାଠୀ ଭାଷାରେ ମଧ୍ୟ ବହୁ ଗ୍ରନ୍ଥ ଅନୁବାଦ କରିଥିଲେ । ଇଂରେଜୀ ଶିକ୍ଷାବିସ୍ତାର ଫଳରେ ମରାଠୀ ଭାଷାରେ ଇଂରେଜୀ ସାହିତ୍ୟ ରୂପ, ଗଳ୍ପ, ଉପନ୍ୟାସ, କବିତା, ପ୍ରବନ୍ଧ ପ୍ରଭୃତି ସୃଷ୍ଟି ହେଲା ଓ ପ୍ରାଚୀନ ମରାଠୀ ସାହିତ୍ୟ ରୂପଗୁଡ଼ିକ ସମ୍ପୂର୍ଣ୍ଣ ଉପେକ୍ଷିତ ହୋଇପଡ଼ିଲା ।

ପାଶ୍ଚାତ୍ୟ ଶିକ୍ଷାଲବ୍ଧ କରିଥିବା ବ୍ୟକ୍ତିମାନଙ୍କ ମଧ୍ୟରୁ କେତେକ କ୍ରମେ ସେମାନଙ୍କର ଐତିହ୍ୟ, ପରମ୍ପରା ଓ ସମୃଦ୍ଧ ସାହିତ୍ୟ ସମ୍ପର୍କରେ ସଚେତନ ହେଲେ । ସେହିମାନଙ୍କ ମଧ୍ୟରୁ କେତେକ ମରାଠୀ ଭାଷାରେ 'ସମ୍ବାଦପତ୍ର' ପ୍ରକାଶ କରି ମରାଠୀ ଭାଷୀମାନଙ୍କୁ ଜାଗ୍ରତ କରିବାକୁ ଉଦ୍ୟମ କରିଥିଲେ । ବାଳଶାସ୍ତ୍ରୀ ଜାମ୍ଭେକର ୧୮୪୦ରେ 'ଦର୍ପଣ' ନାମକ ଏକ ଦୈନିକ ପତ୍ର ଓ ଦିଗ୍‌ଦର୍ଶନ ନାମରେ ଏକ ସାହିତ୍ୟପତ୍ର ସମ୍ପାଦନ କରିଥିଲେ । ମହାଜନ ଓ ଯୋଶୀ ଯଥାକ୍ରମେ 'ପ୍ରଭାକର' ଓ 'ଜ୍ଞାନ ଚନ୍ଦ୍ରୋଦୟ' ସମ୍ପାଦନା କରିଥିଲେ । ଏହିମାନଙ୍କ ଉଦ୍ୟମରେ ମରାଠୀମାନଙ୍କ ମଧ୍ୟରେ ସାଂସ୍କୃତିକ ଜାଗରଣ ସଙ୍ଘଟିତ ହେଲା । କୃଷ୍ଣଶାସ୍ତ୍ରୀ ଚିପଲୁଙ୍କର ୧୮୫୨ରେ 'ବିଚାର ଲହରୀ' ନାମକ ଏକ ପତ୍ରିକା ସମ୍ପାଦନା କରିଥିଲେ । ପୂର୍ବୋକ୍ତ ସମ୍ପାଦକ, ଲେଖକଙ୍କ ବ୍ୟତୀତ ବିଷ୍ଣୁ ବୋଆ ବ୍ରହ୍ମଚାରୀ, ଗୋପାଳହରି ଦେଶମୁଖ (ଲୋକହିତବାଦୀ) ପ୍ରଭୃତି ସମ୍ପାଦକ ଓ ସମ୍ପାଦକମାନଙ୍କ ଉଦ୍ୟମରେ ମରାଠୀ ସାହିତ୍ୟିକ ଓ ସାଂସ୍କୃତିକ ଜାଗରଣ ସମ୍ଭବପର ହୋଇଥିଲା ।

ପ୍ରବନ୍ଧ—

ଜାମ୍ଭେକର, ଅଗରକର, ଚିପଲୁଙ୍କର, ଗୋପାଳହରି ଦେଶମୁଖ ପ୍ରଭୃତି ସମ୍ପାଦକଗଣ ପ୍ରବନ୍ଧ ମାଧ୍ୟମରେ ସମାଜ ସଂସ୍କାର ଉଦ୍ୟମ କରିଥିଲେ । ସେମାନଙ୍କୁ ହିଁ ଆଧୁନିକ ମରାଠୀ ଗଦ୍ୟ ପ୍ରବନ୍ଧର ପ୍ରତିଷ୍ଠାତା ଭାବରେ ଗ୍ରହଣ କରାଯାଏ । ଏମାନଙ୍କ ମଧ୍ୟରୁ ୧୮୭୪ରେ ପ୍ରକାଶିତ ବିଷ୍ଣୁଶାସ୍ତ୍ରୀ ଚିପଲୁଙ୍କରଙ୍କ ସମ୍ପାଦିତ ନିବନ୍ଧମାଳା ଓ 'କେଶରୀ' ପତ୍ରିକା ମରାଠୀ ସାହିତ୍ୟ ଓ ସମାଜରେ ବିକାଶ ସାଧନରେ ପ୍ରଭୂତ କାର୍ଯ୍ୟ କରିଅଛି । 'ନିବନ୍ଧମାଳା'ର ପ୍ରକାଶ ତଥା ବିଷ୍ଣୁଶାସ୍ତ୍ରୀଙ୍କ ଉଚ୍ଚାଙ୍ଗ ପ୍ରବନ୍ଧର ଆତ୍ମପ୍ରକାଶ (୧୮୭୪) କାଳକୁ ଆଧୁନିକ ମରାଠୀ ସାହିତ୍ୟର ଏକ ଯୁଗାନ୍ତର-ସୂଚକ ସମୟ ରୂପେ ଗ୍ରହଣ କରାଯାଇଅଛି ।

ଚିପଲୁଙ୍କର ସମକାଳୀନ ଅଗରକର ଜ୍ୟୋତିବାଫୁଲେ ମଧ୍ୟ ସ୍ୱଦେଶପ୍ରୀତି-ମୂଳକ ତଥା ସଂସ୍କାରମୂଳକ ପ୍ରବନ୍ଧ ରଚନାରେ ଆପଣାର କୃତିତ୍ୱ ଦର୍ଶାଇ ଯାଇଅଛନ୍ତି ।

ଚିପ୍ଳୁଣକରଙ୍କର ପ୍ରଭୃତଙ୍କ ଆଦର୍ଶରେ ଗୋଖଲେ, ଭି. କେ. ରାଜୱାଡ଼େ, ଏସ୍. ଏମ୍. ପାରାଞ୍ଜପେ. ସି. ଭି. ବୈଦ୍ୟ ପ୍ରଭୃତି ଐତିହାସିକ ଗବେଷଣା, ରାଜନୈତିକ ସମସ୍ୟା, ସାହିତ୍ୟ ଆଲୋଚନା ପ୍ରଭୃତି ବିବିଧ ବିଷୟକ ପ୍ରବନ୍ଧ ରଚନାରେ ମନୋନିବେଶ କରିଥିଲେ ।

ଲୋକମାନ୍ୟ ବାଲଗଙ୍ଗାଧର ତିଲକଙ୍କୁ ଏହି ଗୋଷ୍ଠୀର ସର୍ବଶ୍ରେଷ୍ଠ ଲେଖକ ଭାବରେ ଗ୍ରହଣ କରାଯାଏ । ଚିନ୍ତାର ଗଭୀରତା, ବହୁମୁଖୀ ପାଣ୍ଡିତ୍ୟ, ବସ୍ତୁଗତପ୍ରବଣତା, ଉନ୍ନତ ଶୈଳୀ ଦୃଷ୍ଟିରୁ ତାଙ୍କର ପ୍ରବନ୍ଧଗୁଡ଼ିକ ଅତୀବ ଉଚ୍ଚକୋଟୀର । ପରିମାଣ ଦୃଷ୍ଟିରୁ ମଧ୍ୟ ତାହା ଅଧିକତମ । 'କେଶରୀ' ପତ୍ରିକାରେ ସାମୟିକ ବିଷୟ ସମ୍ପର୍କରେ ଲିଖିତ ତାଙ୍କର ପ୍ରବନ୍ଧଗୁଡ଼ିକ ମଧ୍ୟ ମରାଠୀ ସାହିତ୍ୟର ଚିରନ୍ତନ ସମ୍ପଦ ଭାବରେ ପରିଗଣିତ ହୋଇଥାଏ । ଯୁକ୍ତିପ୍ରଣୋଦିତ ନିରଳଙ୍କାର ସ୍ୱଚ୍ଛ ଶୈଳୀରେ ସେ ତାଙ୍କର ପ୍ରବନ୍ଧଗୁଡ଼ିକୁ ରଚନା କରିଯାଇଅଛନ୍ତି । ଏହି ସମୟକୁ ମରାଠୀ ପ୍ରବନ୍ଧ ସାହିତ୍ୟର 'ସ୍ୱର୍ଣ୍ଣଯୁଗ' କୁହାଯାଇଥାଏ ।

ଆଗରକର, ଏନ୍. ସି. କେଲକାର, ଭି. ଏମ୍ ଯୋଷୀ, ଜୱରଦେକର, ଲକ୍ଷ୍ମୀଶାସ୍ତ୍ରୀ ଯୋଷୀ ପ୍ରଭୃତି ବହୁ ପଣ୍ଡିତ, ଦାର୍ଶନିକ, ସାମାଜିକ ତଥା ଗବେଷଣାତ୍ମକ ପ୍ରବନ୍ଧ ରଚନା କରି ମରାଠୀ ସାହିତ୍ୟକୁ ସମୃଦ୍ଧ କରିଯାଇଅଛନ୍ତି । ବିନୋବା ଭାବେ, ଦାଦା ଧର୍ମାଧିକାରୀ ପ୍ରଭୃତି ଗାନ୍ଧୀବାଦୀ ଲେଖକ ମଧ୍ୟ ସେମାନଙ୍କ ପ୍ରବନ୍ଧ ମାଧ୍ୟମରେ ଏକ ନୂତନ ଦୃଷ୍ଟିକୋଣ ଓ ସାରଲ୍ୟର ସମାବେଶ କରିଅଛନ୍ତି ।

ବିଂଶ ଶତାବ୍ଦୀର ପ୍ରଥମରେ ଏସ୍. କେ. କୋଲହଟକର ପ୍ରବନ୍ଧ ରଚନାରେ ଏକ ନୂତନତା ଅନୁପ୍ରବିଷ୍ଟ କରିଥିଲେ । ହାସ୍ୟରସାତ୍ମକ ତଥା ସାମାଜିକ ବ୍ୟଙ୍ଗ ପ୍ରବନ୍ଧ ଭାବରେ ତାଙ୍କର 'ସାହିତ୍ୟ ବଟିକା' ମରାଠୀ ସାହିତ୍ୟରେ ଅଭିନବ । ଆଡ଼ିସନଙ୍କ ଭଳି ହାସ୍ୟରସାତ୍ମକ ଚରିତ୍ର ସୃଷ୍ଟିକରି ଓ ସେମାନଙ୍କୁ ବିଚିତ୍ର ପରିବେଶରେ ରଖି ସାହିତ୍ୟ ରଚନା ରୀତି ତାଙ୍କର ପ୍ରବନ୍ଧାବଳୀରୁ ଅନୁଭୂତ ହୁଏ । ହାସ୍ୟଧର୍ମୀ ପ୍ରବନ୍ଧ ରଚନା କ୍ଷେତ୍ରରେ ରାମଗଣେଶ ଗଡ଼କରୀ, ଚି. ଭି. ଯୋଷୀ, ଲିମାୟେ, ଡମହିନ୍‌କର, ପି. ଏଲ୍. ଦେଶପାଣ୍ଡେ ପ୍ରଭୃତି ଅଗ୍ରଗଣ୍ୟ ।

ତିଲକ ପରବର୍ତ୍ତୀ ଅନ୍ୟାନ୍ୟ କୃତୀ ପ୍ରାବନ୍ଧିକମାନଙ୍କ ମଧ୍ୟରୁ ଏନ୍. ଏସ୍. ଫଡ଼୍‌କେ, ଭି. ଏସ୍. ଖଣ୍ଡେକର ଦୈନନ୍ଦିନ ଜୀବନ ସମ୍ପର୍କୀୟ ସାଧାରଣ ବିଷୟମୂଳକ ପ୍ରବନ୍ଧ ରଚୟିତା ଭାବରେ ସୁବିଖ୍ୟାତ । ଏଥିରେ ଆବେଗ, ହାସ୍ୟରସ, ବୁଦ୍ଧିର ଦୀପ୍ତି, ପ୍ରକୃତି ପ୍ରୀତି, ସାଧାରଣ ବିଷୟରେ ଗଭୀର ମନଃସଂଯୋଗାଦି ଅଭିବ୍ୟକ୍ତି ଲାଭ କରିଅଛି । ଅନନ୍ତ କନେକର୍, ଦଣ୍ଡେକର,' ସାନ୍ତାରାମ, ସନ୍ତ ଯୋଷୀ

ତୋଡ଼କେ ଏହି ନୂତନ ଶୈଳୀର ପ୍ରବନ୍ଧ ରଚନା କରି ଏହାକୁ ଜନପ୍ରିୟ କରାଇ-ଅଛନ୍ତି ।

ବୈଦେଶିକ ମରାଠୀ ସାହିତ୍ୟରେ ବହୁ ଗବେଷଣାତ୍ମକ ଗ୍ରନ୍ଥ, ଜୀବନୀ, ଅପଜୀବନୀ ମଧ୍ୟ ରଚିତ ହୋଇଅଛି । ଲୋକମାନ୍ୟ ତିଲକଙ୍କ 'ଗୀତା ରହସ୍ୟ' ଏକ ଅଦ୍ୱିତୀୟ ଗ୍ରନ୍ଥ । ଐତିହାସିକ ଗବେଷଣାକ୍ଷେତ୍ରରେ ମରାଠୀ ସାହିତ୍ୟର ସମୃଦ୍ଧି ଭାରତୀୟ ସାହିତ୍ୟମାନଙ୍କ ମଧ୍ୟରେ ଉଲ୍ଲେଖଯୋଗ୍ୟ । ଶଙ୍କରପନ୍ତ ରାଣାଡ଼େ, ଆର. ଜି. ଭଣ୍ଡାରକରଙ୍କୁ ଏ ଦିଗରେ ଅଗ୍ରଣୀ ଭାବରେ ଗ୍ରହଣ କରାଯାଏ । ସେମାନଙ୍କ ଗ୍ରନ୍ଥ ଇଂରାଜୀରେ ଲିଖିତ ହୋଇଥିଲେ ହେଁ ତାହା ମରାଠୀ ଗବେଷଣାକୁ ଅନୁପ୍ରାଣିତ ତଥା ପରିପୁଷ୍ଟ କରିଅଛି । ମୋଗଲ, ମରାଠା ଓ ବ୍ରିଟିଶ ଶାସନକାଳ ସମ୍ପର୍କରେ ଜି. ଏସ୍. ସରଦେଶାଇ ବହୁ ମୂଲ୍ୟବାନ ଗ୍ରନ୍ଥ ରଚନା କରି ଯାଇଅଛନ୍ତି ।

ବିଷ୍ଣୁ ଶାସ୍ତ୍ରୀ ଚିପଲୁନକରଙ୍କର ଡକ୍ଟର ଜନସନଙ୍କ ଜୀବନୀ, ଜୀବନୀ ରଚନା କ୍ଷେତ୍ରରେ ନୂତନ ଆଦର୍ଶ ପ୍ରତିଷ୍ଠା କରିଥିଲା । ବି. ଏ. ଭିଡେ, ପନ୍‌ଗରକର, ଅକ୍‌ଗାଓଁକର ଏନ୍. ଆର. ଫଟକ ପ୍ରଭୃତି ସନ୍ଥ-ଜୀବନୀ ରଚନାରେ କୃତିତ୍ୱ ଦର୍ଶାଇ ଅଛନ୍ତି । ଏନ୍. ସି. କେଲକାରଙ୍କ, ତିଲକଙ୍କ (ତିଲକ ଚରିତ) ଜୀବନୀ ଏକ ଅତୁଳନୀୟ ଗ୍ରନ୍ଥ ଭାବରେ ମରାଠୀ ସାହିତ୍ୟରେ ଗୃହୀତ ।

ଅତୀତରେ ପେଶବା ଯୁଗରେ ନାନାଫଡ଼ନାବିସ ତାହାଙ୍କ ଆତ୍ମଚରିତ ରଚନା କରିଥିଲେ । ବ୍ରିଟିଶ ଶାସନର ବିଷ୍ଣୁଭୋଆ ବ୍ରହ୍ମଚାରୀ ଏ ଦିଗରେ ପ୍ରଥମ ଉଦ୍ୟମ କରିଥିଲେ । ପ୍ରଥମ ମରାଠୀ ଔପନ୍ୟାସିକ ବାବା ପଦ୍‌ମନ ଜୀ ମଧ୍ୟ ତାହାଙ୍କର ଏକ ଅସମାପ୍ତ ଆତ୍ମଚରିତ ରଚନା କରିଅଛନ୍ତି । ମରାଠୀ ସାହିତ୍ୟର ଆତ୍ମଜୀବନୀ ରଚନାକ୍ଷେତ୍ରରେ ରମାବାଈ ରାଣାଡେଙ୍କ ଗ୍ରନ୍ଥଟି ସର୍ବୋତ୍କୃଷ୍ଟ ବିବେଚିତ ହୋଇଥାଏ ।

ଆଧୁନିକ ଯୁଗରେ ମହର୍ଷି କାର୍ଭେ, ଧର୍ମାନନ୍ଦ କୋଶାମ୍ବୀ, ଲକ୍ଷ୍ମୀବାଈ ତିଲକ (କବି ନାରାୟଣ ଓ୍ୱାମନ ତିଲକଙ୍କ ପତ୍ନୀ), ସାବରକର ('କଳା ପେପ), କେଲକର, ('ଗତ ଗୋଷ୍ଠୀ') ପ୍ରଭୃତି ଆତ୍ମଜୀବନୀ ରଚନା କରି ମରାଠୀ ସାହିତ୍ୟକୁ ସମୃଦ୍ଧ କରିଅଛନ୍ତି ।

## ଆଧୁନିକ ମରାଠୀ ଉପନ୍ୟାସ—

ବାବା ପଦ୍‌ମନ୍ ଜୀଙ୍କ 'ଯମୁନା ପର୍ଯ୍ୟଟନ' (୧୮୫୭) ଉପନ୍ୟାସ ମରାଠୀ ସାହିତ୍ୟର ପ୍ରଥମ ଉପନ୍ୟାସ ଭାବରେ ଗ୍ରହଣ କରାଯାଏ । ହରି ନାରାୟଣ ଆପ୍ଟେଙ୍କ ପୂର୍ବରୁ ଯେଉଁ ଉପନ୍ୟାସ ରଚନା ହୋଇଥିଲା ତାହା ଅନୁବାଦ ବା ଅନୁକରଣ ମାତ୍ର ।

ଦୁରବସ୍ଥା ବିଷୟକୁ ଉପଜୀବ୍ୟ କରି ଏହି ଉପନ୍ୟାସଟି ରଚିତ । ଏହି ସମୟରେ କେତେକ ସଂସ୍କୃତ ସୁପଣ୍ଡିତ ଲେଖକ 'ବାଣଭଟ୍ଟ'ର ଭାଷାଶୈଳୀ ଅନୁକରଣରେ 'ମଞ୍ଜୁଘୋଷ' 'ଇନ୍ଦୁପ୍ରଭା' 'ବସନ୍ତ କୋକିଳ' ପ୍ରଭୃତି ଉପନ୍ୟାସ ରଚନା କରି-ଥିଲେ । ପାର୍ଶୀ ଓ ଆରବୀ ଭାଷାରୁ ବାଖର ନାମା ହାତିମ ତାଇ, 'ଆରବ୍ୟ ରଜନୀ' ପ୍ରଭୃତିର ମଧ୍ୟ ଅନୁବାଦ ହୋଇଥିଲା । ୧୮୭୦ରେ ମରାଠୀ ଭାଷାରେ ପ୍ରଥମ ଐତିହାସିକ ଉପନ୍ୟାସ ପ୍ରଣୀତ ହେଲା । ଗୁଞ୍ଜିକର ଶିବାଜୀଙ୍କ ଜୀବନର ପ୍ରଥମ ପର୍ଯ୍ୟାୟକୁ ଭିତ୍ତି କରି 'ମୋହନଗଡ' ନାମକ ଏକ ଉପନ୍ୟାସ ରଚନା କରିଥିଲେ ।

ଊନବିଂଶ ଶତାବ୍ଦୀର ଶେଷ ଦଶକରେ ଗୋଖଲେ, ଅଗରକର ତିଳକ ପଣ୍ଡିତଙ୍କ ପ୍ରଚାର ଫଳରେ ଯେଉଁ ଜାଗରଣ ଦେଖାଦେଇଥିଲା, ତାହାର ପ୍ରଭାବରେ ଅନୁପ୍ରାଣିତ ହୋଇ ହରି ନାରାୟଣ ଆପ୍ଟେ, ସାମାଜିକ, ଆଦର୍ଶବାଦୀ ଓ ଐତିହାସିକ ଉପନ୍ୟାସ ରଚନାରେ ବ୍ରତୀ ହୋଇଥିଲେ । ସେ ପ୍ରାୟ ୧୫ରୁ ଅଧିକ ଉଚ୍ଚାଙ୍ଗ ଉପନ୍ୟାସ ରଚନା କରି ମରାଠୀ ଉପନ୍ୟାସକୁ ଉନ୍ନତ ଓ ଜନପ୍ରିୟ କରାଇଥିଲେ । 'ଉଷାକାଲ', 'ସର୍ଯ୍ୟଗ୍ରହଣ', 'ମି', 'ଯଶୋବନ୍ତ ରାଓ ଖାରେ' ପ୍ରଭୃତି ତାହାଙ୍କ ସୁବିଖ୍ୟାତ ରଚନା ।

ଆପ୍ଟେଙ୍କ ପ୍ରଭାବରେ ଅନୁପ୍ରାଣିତ ହୋଇ ୱାରେରକର, ଡ. କେଲକାର ୱାମନ ମଲହାର ଯୋଶୀ ପ୍ରଭୃତି ଉପନ୍ୟାସ ରଚନାରେ କୃତିତ୍ୱ ପ୍ରଦର୍ଶନ କରିଥିଲେ ।

୧୯୨୦ ବେଳକୁ ମରାଠୀ ଭାଷାରେ ବହୁ ପତ୍ରପତ୍ରିକାର ପ୍ରଚଳନ ଓ ଶିକ୍ଷିତ ଗୋଷ୍ଠୀର ସମ୍ପ୍ରସାରଣ ଫଳରେ ଉପନ୍ୟାସ ସୃଷ୍ଟି ମଧ୍ୟ ଅଧିକତର ହୋଇଥିଲା । ନାରାୟଣ ହରି ଆପ୍ଟେ, ନାଥ ମାଧବ, ହଡ଼ପ୍, ଆଲ୍ତେକର, ତୁଲଜପୁର୍କର୍ ପ୍ରଭୃତି ଏହି ସମୟରେ ବହୁ ଜନପ୍ରିୟ ଉପନ୍ୟାସ ରଚନା କରିଥିଲେ ।

୧୯୨୦ରୁ ୧୯୪୦ ମଧ୍ୟରେ ଫଡ଼କେ, ପୁରୁଷୋତ୍ତମ ଯଶୋବନ୍ତ ଦେଶ-ପାଣ୍ଡେ, ଖାଣ୍ଡେକର, ମାଡ଼୍‌ଖୋଲକାର ପ୍ରଭୃତି ରାଜନୈତିକ ଓ ମନସ୍ତାତ୍ତ୍ୱିକ ଉପନ୍ୟାସ ରଚନାରେ ଆପଣାର କୃତିତ୍ୱ ଦର୍ଶାଇ ଯାଇଅଛନ୍ତି । ଖାଣ୍ଡେକରଙ୍କ 'ଉଲ୍‌କା' ଓ 'କ୍ରୌଞ୍ଚ ବଧ' ମରାଠୀ ଉପନ୍ୟାସର ଦୁଇଟି ଉଜ୍ଜ୍ୱଳ ରତ୍ନ ଭାବରେ ଗୃହୀତ ହୁଏ । ମାଡ଼ଖୋଲକରଙ୍କ 'ଚନ୍ଦନ ଭଦୀ' ଉପନ୍ୟାସଟି ନାଗପୁର ଶିଳ୍ପାଞ୍ଚଳର ଏକ ହରିଜନ କନ୍ୟାର ଜୀବନକୁ ଉପଜୀବ୍ୟ କରି ରଚିତ ।

ଏମାନଙ୍କ ବ୍ୟତୀତ ରଘୁବୀର ସାମନ୍ତ, ବୋକିଲ, କଓଥେକର୍ ମଧ୍ୟ ଏହି ସମୟର ଅନ୍ୟତମ କୃତୀ ଔପନ୍ୟାସିକ । ଔପନ୍ୟାସିକା ଭାବରେ ବିଭାବରୀ ଶିରୁରକର

ଓ ଗୀତା ସନେ ଉନ୍ନତ ସୃଷ୍ଟିଶୀଳ ପ୍ରତିଭାର ପରିଚୟ ଦେଇଅଛନ୍ତି । ତଥେ ଅଦିବାସୀ ଭିଲମାନଙ୍କ ଜୀବନକୁ ଉପଜୀବ୍ୟ କରି ଉପନ୍ୟାସ ରଚନା କରି ଖ୍ୟାତିପ୍ରାପ୍ତ ହୋଇଅଛନ୍ତି ।

ଇଂରାଜୀ, ବଙ୍ଗଳା, ଗୁଜରାଟୀର ବହୁ ଉପନ୍ୟାସ ମରାଠୀରେ ଅନୁବାଦ ହୋଇଅଛି । ମାମ ଓ୍ୱାରେରକର, କେ. ଆର. ମିତ୍ର, ଓ୍ୱ ସୁଦେଓ ଗୋବିନ୍ଦ ଆପ୍ଟେ ପ୍ରଭୃତି ଅନୁବାଦକ ଭାବରେ ସ୍ୱନାମଧନ୍ୟ । ଓ୍ୱାରେରଙ୍କର ଶରତଚନ୍ଦ୍ରଙ୍କ ସମସ୍ତ ଉପନ୍ୟାସକୁ ମରାଠୀରେ ଅନୁବାଦ କରିଅଛନ୍ତି ।

କ୍ଷୁଦ୍ରଗଳ୍ପ—

ହରିନାରାୟଣ ଆପ୍ଟେହିଁ ପ୍ରଥମେ ଯଥାର୍ଥ ଆଧୁନିକ କ୍ଷୁଦ୍ରଗଳ୍ପ ରଚନାରେ ମନୋନିବେଶ କରିଥିଲେ । ତାଙ୍କ ପରେ ଫଡ୍କେ, ଖାଣ୍ଡେକର, ଓ୍ୱାକର ବିଷ୍ଣୁ, କମଳାବାଈ ତିଲକ, ବିଷ୍ଣୁବାଇ, ବିଭାବରୀ ସିରୁରକର, ଲକ୍ଷ୍ମଣ ରାଓ ସରଦେଶାଇ, ନାରାୟଣ ହରି ଆପ୍ଟେ ପ୍ରଭୃତି ଔପନ୍ୟାସିକ ଗଣ ନାନା ବିଷୟକ କ୍ଷୁଦ୍ରଗଳ୍ପ ରଚନା କରି ମରାଠୀ ଗଳ୍ପ ସାହିତ୍ୟକୁ ସମୃଦ୍ଧ କରିଅଛନ୍ତି । ବିବିଧ ପରୀକ୍ଷା ନିରୀକ୍ଷାରେ ମଧ୍ୟ ସେମାନଙ୍କ କୃତିତ୍ୱ ଉଲ୍ଲେଖଯୋଗ୍ୟ ।

୧୯୪୦ ପରେ ରଚିତ କ୍ଷୁଦ୍ର ଗଳ୍ପ ମାନଙ୍କରେ ମନସ୍ତାତ୍ତ୍ୱିକ ବିଶ୍ଳେଷଣପ୍ରତି ଗୁରୁତ୍ୱ ପରିଲକ୍ଷିତ ହେଉଅଛି । ଏତାଦୃଶ ଗଳ୍ପ ରଚନାରେ ଅରବିନ୍ଦ ଗୋଖଲେ, ଗଙ୍ଗାଧର ଗାଡ୍‌ଗିଲ୍ ମାଡ୍‌ଗୁଲ୍‌କର୍ ପ୍ରଭୃତି କୃତିତ୍ୱ ଦର୍ଶାଇ ପ୍ରତିଷ୍ଠା ଲାଭ କରିଅଛନ୍ତି ।

ଆଧୁନିକ ନାଟକ—

ମରାଠୀ ଭାଷାରେ ପୌରାଣିକ ବିଷୟକୁ ଉପଜୀବ୍ୟ କରି ପ୍ରଥମେ ନାଟକ ପ୍ରଣୀତ ହୋଇଥିଲା । ବିଷ୍ଣୁଦାସ ଭାବେଙ୍କୁ ପ୍ରଥମ ନାଟ୍ୟକାର ଭାବରେ ଗ୍ରହଣ କରାଯାଏ । ୧୯ଶ ଶତାବ୍ଦୀର ମଧ୍ୟ ଭାଗରେ ସେ ପ୍ରାୟ ୫୦ଟି 'ଆଖ୍ୟାନ' ବା ଗୀତିମୟ ପୌରାଣିକ ନାଟକ ରଚନା କରି ଥିଲେ । ଏହାପରେ ସେକ୍‌ସପିଅରଙ୍କ 'ଅଥେଲୋ' (୧୮୬୧), 'ଟେମ୍ପେଷ୍ଟ' ଓ 'ଯୁଲିଅସ ସିଜର' (୧୮୭୨) ପ୍ରଭୃତି ନାଟକର ଅନୁବାଦ ମରାଠୀ ଲେଖକଙ୍କୁ ନୂତନ ଭାବରେ ନାଟକ ପ୍ରଣୟନ ଲାଗି ଅନୁପ୍ରାଣିତ କରିଥିଲା । ଖ୍ରୀ ୧୮୬୧ରେ କୀର୍ତ୍ତିକର ପ୍ରଥମେ ଯଥାର୍ଥ ମୌଳିକ ନାଟକ ପ୍ରଣୟନ କରିଥିଲେ । ତାହାଙ୍କ 'ପେଶବା ମାଧବ ରାଓଙ୍କ ମୃତ୍ୟୁ' ନାଟକଟି (୧୮୬୧) ଏକ ଐତିହାସିକ ନାଟକ

ଭାବରେ ସଫଳ ସୃଷ୍ଟି । ୧୮୭୧ରେ ମାଧବରାଓ ବାଳକୃଷ୍ଣ ଚତ୍ଲେ (ଭଟେକର)ଙ୍କ ଦ୍ୱାରା ପ୍ରଥମ ସାମାଜିକ ନାଟକ 'ମନୋରମା' ରଚିତ ହୋଇଥିଲା ।

ବଳୱନ୍ତ ପାଣ୍ଡୁରଙ୍ଗ ବା ଅନ୍ନାସାହେବ କର୍ଲୋସ୍କାରଙ୍କ 'ଶକୁନ୍ତଳା' (୧୮୮୦), 'ସୁଭଦ୍ରା' (୧୮୮୨), 'ରାମରାଜ୍ୟ ବ୍ୟାଯୋଗ' (୧୮୮୪) ମରାଠୀ ନାଟକକୁ ଦୃଢ଼ ଭିତ୍ତି ଉପରେ ପ୍ରତିଷ୍ଠିତ କରିଥିଲା । ଏହାପରେ ଜି. ବି. ଦେବଲ, ଏସ୍. କେ. କୋଲହଟ୍କର, କେ. ପି. ଖାଡ଼ିଲକର୍ ପ୍ରଭୃତି ନୂତନ ଧରଣର ନାଟକ ରଚନାରେ କୃତିତ୍ୱ ପ୍ରଦର୍ଶନ କରିଥିଲେ । ୧୨ଗୋଟି ହାସ୍ୟ ରସାତ୍ମକ ଓ ସାମାଜିକ ନାଟକ କୋଲହଟ୍କର୍ ରଚନା କରିଅଛନ୍ତି । ଖାଡ଼ିଲକାରଙ୍କୁ ଆଧୁନିକ ମରାଠୀ ନାଟକର ଶ୍ରେଷ୍ଠ ରଚୟିତା ଭାବରେ ଗ୍ରହଣ କରାଯାଏ । ହାସ୍ୟରସ ସ୍ରଷ୍ଟା ଭାବରେ ରାମ ଗଣେଶ ଗଡ଼କରୀ ଅପ୍ରତିଦ୍ୱନ୍ଦୀ ।

୧୯୧୫-୧୯୨୦ ମଧ୍ୟରେ ବହୁ ନାଟ୍ୟକାରଙ୍କ ଆବିର୍ଭାବ ଫଳରେ ମରାଠୀ ନାଟକର ଶ୍ରୀବୃଦ୍ଧି ସାଧିତ ହୋଇଥିଲା । ଏହି ସମୟରେ କେତେକ ଚରିତ-ନାଟକ ମଧ୍ୟ ପ୍ରଣୀତ ହୋଇଥିଲା । ନାରାୟଣ ଆପ୍ଟେ, ଏନ. ସି., କେଲ୍କାର୍, ଔଧ୍କର, ଟିପ୍ନିସ ୱାସୁଦେବ ଶାସ୍ତ୍ରୀ ଖାରେ, ପ୍ରଭୃତି ଏହି ସମୟରେ ବହୁ ଜନପ୍ରିୟ ନାଟକ ରଚନା କରିଥିଲେ । ଏହାର ଅବ୍ୟବହିତ ପରେ ମାମା ୱାରେରକର୍ ବାସ୍ତବତା ମୂଳକ ବହୁ ନାଟକ ରଚନା କରି ନାଟକ ରଚନା କ୍ଷେତ୍ରରେ ଯୁଗାନ୍ତର ସୃଷ୍ଟି କରିଅଛନ୍ତି । ନାଟକ ରଚନା ରୀତି, ଅଭିନୟ କଳା କ୍ଷେତ୍ରରେ ତାହାଙ୍କର ସଂସ୍କାର ଅତୀବ ଗୁରୁତ୍ୱ ପୂର୍ଣ୍ଣ । ସାମ୍ପ୍ରତିକ ନାଟ୍ୟକାର ଭାବରେ ପି କେ. ଅତ୍ରେଙ୍କୁ ମଧ୍ୟ ଅନ୍ୟତମ ଅଗ୍ରବର୍ତ୍ତୀ ମରାଠୀ ନାଟ୍ୟକାର ଭାବରେ ଗ୍ରହଣ କରାଯାଏ ।

'ନାଟିକା' ବା କ୍ଷୁଦ୍ର ନାଟକ ଓ ଏକାଙ୍କିକା ମଧ୍ୟ ସାଂପ୍ରତିକ ମରାଠୀ ସାହିତ୍ୟରେ ରଚିତ ଓ ଅଭିନୀତ ହୋଇ ଜନପ୍ରିୟତା ଅର୍ଜନ କରିଅଛି ।

## ଆଧୁନିକ ମରାଠୀ କାବ୍ୟ କବିତା—

ଇଂରାଜୀ କାବ୍ୟକବିତାର ଅନୁଶୀଳନ ଓ ଅନୁସରଣର ପରିଣତି ସ୍ୱରୂପ ମରାଠୀ କାବ୍ୟ କବିତାର ରୂପାନ୍ତର ଘଟିଲା । କୀର୍ତ୍ତିକର୍, ପ୍ରଧାନ, ଏମ୍ ଏମ୍ କୁନ୍ତେ ପ୍ରଭୃତି ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଏତାଦୃଶ କାବ୍ୟ ରଚନାର ଧାରା ପ୍ରବର୍ତ୍ତନ କରିଥିଲେ । କ୍ରମେ ଗୀତିକାବ୍ୟ, ସମ୍ବୋଧନ ଗୀତ, ଶ୍ଳୋକ ଗୀତ, ବ୍ୟଙ୍ଗ କବିତା, ଆଖ୍ୟାନ କାବ୍ୟ ପ୍ରଭୃତି ରଚିତ ହୋଇଥିଲା ।

କେଶବ ସୁତ, ଏନ. ଭି ତିଲକ, ବିନାୟକ ଚନ୍ଦ୍ରଶେଖର, ବି. ତାମ୍ବେ ପ୍ରଭୃତିଙ୍କ ରଚନାବଳୀ ମରାଠୀ କାବ୍ୟ ସାହିତ୍ୟରେ ଯୁଗାନ୍ତର ଆଣିଅଛି । ଏହି କବି-ମାନଙ୍କ ମଧ୍ୟରୁ ସର୍ବଶ୍ରେଷ୍ଠ ପ୍ରତିଭାଶାଳୀ କବି ହେଉଛନ୍ତି କେଶବ ସୁତ ବା କିଷନଜୀ କେଶବ ଦାମ୍‌ଲେ । ତାହାଙ୍କୁ ମରାଠୀ କବିତାର ନବଯୁଗର ପ୍ରବର୍ତ୍ତକ ଭାବରେ ଗଣନା କରାଯାଏ । କେଶବସୁତ ୧୮୮୫ରୁ କାବ୍ୟ ରଚନା ଆରମ୍ଭ କରିଥିଲେ । ପାରମ୍ପରିକ କାବ୍ୟ ରଚନାର ମୋହ ତ୍ୟାଗକରି ସେ ଆତ୍ମନିଷ୍ଠ ଓ ଚିନ୍ତାପୂର୍ଣ୍ଣ କବିତା ରଚନାରେ ମନୋନିବେଶ କରିଥିଲେ । ପ୍ରକୃତି, ଦେଶପ୍ରେମ, ସମାଜ ଓ ରାଜନୀତି ପ୍ରଭୃତି ବହୁ ବିଷୟକୁ ଉପଜୀବ୍ୟ କରି ସେ ଉଚ୍ଚକୋଟୀର କବିତା ରଚନା କରିଯାଇ ଅଛନ୍ତି ।

ଧର୍ମକବିତା ଏବଂ ଭକ୍ତିଭାବପୂର୍ଣ୍ଣ ଓ ପ୍ରକୃତି ପ୍ରୀତିମୂଳକ କବିତା ରଚୟିତା ଭାବରେ ଏନ୍. ଭି ତିଲକ ମଧ୍ୟ ଏ ଯୁଗର ଅନ୍ୟତମ କୃତି କଳାକାର । କେଶବସୁତଙ୍କ ଦ୍ୱାରା ସେ ପ୍ରଭାବିତ ହୋଇଥିଲେ ହେଁ ତାହାଙ୍କ ଚିନ୍ତାମୂଳକ କବିତା 'ଓ୍ୱନଓ୍ୱାରି ଫୁଲ' ଆଖ୍ୟାନ ମୂଳକ କବିତା 'ସୁଶୀଳା' ଉଚ୍ଚାଙ୍ଗ ରଚନା ଭାବରେ ଗୃହୀତ ହୋଇଥାଏ ।

ବିନାୟକ ମାଧବାନୁଜ ଦେଶପ୍ରେମମୂଳକ ଓ ଐତିହାସିକ କାବ୍ୟ ରଚନାରେ ଆପଣାର କୃତିତ୍ୱ ଦର୍ଶାଇ ଅଛନ୍ତି । ଏନ୍ ଏମ୍ ଗୁପ୍ତ (ବି) ସଂସ୍କୃତ କାବ୍ୟ ଶୈଳୀକୁ ଅନୁକରଣ କରି କାବ୍ୟ ରଚନା କରିଥିଲେ ହେଁ ତାହାଙ୍କ ପ୍ରେମ କବିତା 'ଚଫା' (ଚମ୍ପା), 'ବେଡ଼ ଗାଣେ' ଉଚ୍ଚକୋଟୀର ଆଧୁନିକ କବିତା ଭାବରେ ଗୃହୀତ ହୋଇଥାଏ ।

ଇଂରାଜୀ କାବ୍ୟକୁ ଅବଲମ୍ବନ କରି ନୂତନ କାବ୍ୟ ପ୍ରଣେତା ଭାବରେ ଚନ୍ଦ୍ରଶେଖର ଅପୂର୍ବ କୃତିତ୍ୱ ଦର୍ଶାଇ ଯାଇଅଛନ୍ତି । ତାହାଙ୍କ ଅଖ୍ୟାନ କାବ୍ୟ 'ଗୋସ୍ୱ ହୋ ଚମତ୍କାର' (କେଡ଼େ ଚମତ୍କାର) ଇଂରାଜୀ କାବ୍ୟ ଅବଲମ୍ବନରେ ରଚିତ ହେଲେ ହେଁ ତାହା ତାଙ୍କର କାବ୍ୟକୃତିର ଉତ୍କୃଷ୍ଟ ନିଦର୍ଶନ । ସ୍ୱପ୍ନବାଦୀ ଦାର୍ଶନିକ କବି ଭାବରେ ତାମ୍ବେଙ୍କ ନାମ ଉଲ୍ଲେଖଯୋଗ୍ୟ । କାବ୍ୟରେ ଗୀତିମୟ ସୁଲଳିତ ଶବ୍ଦଯୋଜନା, ଆଳଙ୍କାରିକତା ତାହାଙ୍କ କାବ୍ୟ ଶୈଳୀର ବୈଶିଷ୍ଟ୍ୟ ।

କେଶବସୁତଙ୍କ ପରେ ବିଶିଷ୍ଟତମ କବିଗଣରେ ରାମ ଗଣେଶ ଗଡ଼କରି ଓ ଥୋମରେ ଓରଫ 'ବାଲ କବି' ନାମ ଉଲ୍ଲେଖଯୋଗ୍ୟ । ୧୮୮୫-୧୯୨୦ ପର୍ଯ୍ୟନ୍ତ ଏହି ସବୁ କବିମାନଙ୍କ ରଚନା ମରାଠୀ କାବ୍ୟ ସାହିତ୍ୟକୁ ନୂତନ ରୂପ, ରସ ଓ ଭାବାବେଗରେ ସମୃଦ୍ଧ କରିଥିଲା । ଆଲୋଚ୍ୟ କାଳମଧ୍ୟରେ 'ପାଓଡ଼ା' ନାମକ ପାରମ୍ପରିକ କାବ୍ୟ ରୂପକୁ ଅନୁସରଣ କରି ମଧ୍ୟ କେତେକ କବି ବୀର ରସାତ୍ମକ

କାବ୍ୟ ରଚନା କରିଥିଲେ । ଏମାନଙ୍କରୁ ଗୋବିନ୍ଦାଗ୍ରଜ ସଂଉଟକେରଙ୍କ 'ବାଳ-ପ୍ରଭୁ' 'ଜାନାଜା' ନାମକ ଦୁଇଗୋଟି ପାଓଡ଼ାର ନାମ ଉଲ୍ଲେଖଯୋଗ୍ୟ ।

୧୯୨୦ରୁ ଜନସାଧାରଣଙ୍କର ବିଶେଷତଃ ମଧ୍ୟବିତ୍ତ ଜୀବନର ଆଶା-ଆକାଙ୍‌କ୍ଷା, ଆବେଗ-ଅନୁଭୂତି, ସୌନ୍ଦର୍ଯ୍ୟଲିପ୍‌ସା ପ୍ରଭୃତିକୁ ଉପଜୀବ୍ୟ କରି କବିତା ରଚନାର ସୂତ୍ରପାତ ହେଲା । ଏତାଦୃଶ କବିତା ରଚୟିତା ଭାବରେ ରବି କିରଣ ମଣ୍ଡଳ, ଯଶୋଓ୍ୱନ୍ତ, ଗିରୀଶ ଓ ମାଧବ ଜୁଲିଅନ (ମାଧବ ଜୁଲିଅନ)ଙ୍କ ନାମ ଉଲ୍ଲେଖ-ଯୋଗ୍ୟ । ଯଶୋଓ୍ୱନ୍ତ ଓ ଗିରୀଶ କବିତା ଅବୃତ୍ତିକୁ ମହାରାଷ୍ଟ୍ରରେ ଏକ ଜନପ୍ରିୟ ଚଳଣୀରେ ପରିଣତ କରିଯାଇ ଅଛନ୍ତି । ମରାଠୀ କବିତାର ଭିତ୍ତିଭୂମିକୁ ପ୍ରଶସ୍ତତର କରିବା ବିଷୟରେ ରବିକିରଣ ଅଗ୍ରଗଣ୍ୟ । ରବିକିରଣଙ୍କ ସମକାଳୀନ ହେଲେ ହେଁ ଭିନ୍ନ ଦୃଷ୍ଟିକୋଣସମ୍ପନ୍ନ ତରୁଣ କବି ଭାବରେ ଅନନ୍ତ କାନେକର୍‌ଙ୍କ କୃତି ବୈଶିଷ୍ଟ୍ୟ-ସମ୍ପନ୍ନ ଛବିଳ ପ୍ରକୃତି ବର୍ଣ୍ଣନା, ସୁଲଳିତ ଶବ୍ଦଯୋଜନା ଯୋଗୁ କବି ବୋର୍‌କର୍‌ଙ୍କ କବିତାର ବୈଶିଷ୍ଟ୍ୟ ମଧ୍ୟ ଉଲ୍ଲେଖଯୋଗ୍ୟ । ଏତଦ୍‌ବ୍ୟତୀତ ଏହି ସମୟର ଅନ୍ୟାନ୍ୟ ସୁପ୍ରତିଷ୍ଠିତ କବିମାନଙ୍କ ମଧ୍ୟରୁ ବି. ଏସ୍. ପଣ୍ଡିତ, ଜି. ଏଚ. ଦେଶପାଣ୍ଡେ ପଟିଲ, ପାଠକ, ଏନ୍. ଜି. ଯୋଶୀ ପ୍ରଭୃତି ଅନ୍ୟତମ ।

ମରାଠୀ ସାହିତ୍ୟରେ ମୁକ୍ତ ଛନ୍ଦର ପ୍ରୟୋଗକାରୀ ଭାବରେ ତଥା ସୁକବି ଭାବରେ ଅନିଲ (ଏ. ଏସ୍. ଦେଶପାଣ୍ଡେ) ସୁନାମଧନ୍ୟ । ଅଧୁନିକ ମରାଠୀ କବିତାରେ ଏହା ଆଜି ବ୍ୟାପକ ଭାବରେ ଅନୁସୃତ ହେଉଅଛି । ଗଭୀର ମନସ୍ତାତ୍ତ୍ୱିକ ଓ ସମାଜ-ଚେତନାମୂଳକ କବିତା ରଚୟିତା ଭାବରେ ମଧ୍ୟ ଅନିଲଙ୍କ କୃତିତ୍ୱ ସ୍ୱୀକୃତିଲାଭ କରିଅଛି । ମୁକ୍ତ ଛନ୍ଦରେ ରଚିତ ତାହାଙ୍କ 'ଭଗ୍ନ ମୂର୍ତ୍ତି', 'ପ୍ରେମ ଅନି ଜୀବନ' (ପ୍ରେମ ଓ ଜୀବନ) 'ନିର୍ଓ୍ୱାସିତ ଚୀନି ମୁଲସ' (ନିର୍ବାସିତ ଚୀନ ସନ୍ତାନ ପ୍ରତି) କବିତା-ଗୁଡ଼ିକ ତାହାର ପ୍ରକୃଷ୍ଟ ନିଦର୍ଶନ । ଅନିଲଙ୍କୁ ସାମ୍ପ୍ରତିକ ମରାଠୀ କବିତାର ନବ-ପ୍ରବର୍ତ୍ତକ ଭାବରେ ଗ୍ରହଣ କରାଯାଇଥାଏ ।

ଜାତୀୟତା ଓ ସ୍ୱାଧୀନତା ସଂଗ୍ରାମର ତଥା ରାଜନୈତିକ ଚେତନାର କବି ଭାବରେ କୁସୁମାଗ୍ରଜ, କାନ୍ତ ଅଗ୍ରଗଣ୍ୟ । ଏତଦ୍‌ବ୍ୟତୀତ ସଞ୍ଜୀବନୀ ମାର୍ଥେ, ପଦ୍ମା, ଇନ୍ଦିରା ସନ୍ତ ନାରୀକବି ଭାବରେ ପ୍ରତିଷ୍ଠା ଲାଭ କରିଅଛନ୍ତି ।

ମରାଠୀ କବିତାରେ ଉତ୍ତରବାସ୍ତବବାଦ ଓ ନୂତନ ରୂପକଳ୍ପ, ପ୍ରତୀକ ପ୍ରଭୃତିର ପ୍ରୟୋଗକାରୀ କବି ଭାବରେ ବି. ଏସ୍ ଦେଶପାଣ୍ଡେ ସୁନାମଧନ୍ୟ । ଏତଦ୍‌ବ୍ୟତୀତ ସାମ୍ପ୍ରତିକ କବିମାନଙ୍କ ମଧ୍ୟରୁ ବସନ୍ତ ବାପଟ, ମଙ୍ଗେଶ ପଡ଼୍‌ଗାଁଓକର୍, ଭାବେ, କରଣ୍ଡିକର୍‌ଙ୍କ କବିତା ସେମାନଙ୍କ ସ୍ୱକୀୟ ଗୁଣାବଳୀ ଯୋଗୁ ପ୍ରତିଷ୍ଠା ଲାଭ କରିଅଛି ।

## ସାହିତ୍ୟ ସମାଲୋଚନା—

ଊନବିଂଶ ଶତାବ୍ଦୀରେ ପତ୍ରପତ୍ରିକାର ପ୍ରଚଳନ କାଳରୁ ଆଲୋଚନାଧାରାର ସୂତ୍ରପାତ ହୋଇଅଛି । ବିଷ୍ଣୁରପନ୍ତ ରାଣାଡେ, ଚିପ୍ଲୁଣ୍କର, ଅଗରକର, ତିଲକ ପ୍ରଭୃତିଙ୍କୁ ଏହାର ମାର୍ଗ ପ୍ରଦର୍ଶକ ଭାବରେ ଗ୍ରହଣ କରାଯାଏ । ମାତ୍ର କୋଲହଟକରଙ୍କୁ ହିଁ ଯଥାର୍ଥତଃ ସାହିତ୍ୟ ସମାଲୋଚନାର ପ୍ରବର୍ତ୍ତକ ଭାବରେ ଗ୍ରହଣ କରାଯାଏ । ଚଳିତ ଶତାବ୍ଦୀର ପ୍ରଥମ ପାଦର ବିଶିଷ୍ଟତମ ସାହିତ୍ୟ ସମାଲୋଚକ ଭାବରେ ୱାମନ ମଲହାର ଯୋଶୀଙ୍କ ନାମ ଉଲ୍ଲେଖଯୋଗ୍ୟ । ପରବର୍ତ୍ତୀ କାଳରେ ଭି. ଏସ୍. ଖଣ୍ଡେକର, ଜୱାଦେକର୍, ଫଡ଼କେ ଏହି ଧାରାକୁ ପରିପୁଷ୍ଟ କରିଅଛନ୍ତି । ବିଶ୍ୱବିଦ୍ୟାଳୟ-ମାନଙ୍କରେ ଗବେଷଣା ବିଭାଗର ସକ୍ରିୟତା ଫଳରେ ଡି. କେ. କେଲ୍‌କାର୍, ଆର୍. ଏସ୍. ଯୋଗ, ୱାଟ୍‌ୱେ, ଜି. ଟି. ଦେଶ୍‌ପାଣ୍ଡେ ପ୍ରମୁଖ ଗବେଷକଗଣ ପ୍ରାଚ୍ୟ ପାଶ୍ଚାତ୍ୟ ସମାଲୋଚନା ପଦ୍ଧତିର ତୁଳନାତ୍ମକ ଆଲୋଚନା ତଥା ସାହିତ୍ୟକୃତିର ଗୁଣାତ୍ମକ ବିଚାର କ୍ଷେତ୍ରରେ କୃତିତ୍ୱ ଦର୍ଶାଇ ଅଛନ୍ତି ।

---

# ପରିଶିଷ୍ଟ

୧ । **ଗୁଜୁରାଟୀ ପଦ୍ୟର ନମୁନା**—୧୬ଶ ଶତାବ୍ଦୀର କବି ନାକରଙ୍କ ବିରଚିତ ପର୍ବର କିୟଦଂଶ—

ତାହାରେ ପୂଂଇ ହୁଂ ଆବୁଂ ଛୁଁ, ଅଯୋଧ୍ୟା ଗୃହ ମାଂହେଁ;
ତ ହୁଂ ତାଂ ବିଷ୍ଣୁ ଲାଗୁ, ଲକ୍ଷ୍ମୀଇ ସାହ୍ୟ ବାଂହେଁ ।
ମହ୍ ଘର ଜୈ ପାଟରାଣୀ ପ୍ରେମଦା, ତେହ୍ନ କଉଂ ରୂହ୍ ଦାସୀଓ;
ଜେହ୍ନ ବିତାଂ ଦେଖୁ ତେ ଫରଣି, ଦେହ୍ନିଶି ଉମାରହ ପାଣିଆଂ;
ସ୍ୱାଂ ଡୋଳା—ଖାଟି ବଛଠାଂ କାବୁଲାଲା ମଣିମୟ ମୁହ୍ ଅବାସଜା;
ହରଣ ଭର୍ଯା ବଲ୍ ସ୍ୱା ତେପାଣ୍ଡୁ; ପୂହୁଣ ସଧଲା ଅସଜା ।
ପଲ୍ଲଇ କୈଇ ମନ୍ଦର ସଜ କାଧଂ; ତୂଅ ଚନ୍ଦନ ଛାଟକା ବାଜା;
ଚନ୍ଦୂଆ ବାଂଧ୍ୟା ; ତୂ୍ୟହୁ ଦଣ୍ଡି, ଚମର ଫୂଲ ଲଟକା ଖାଜୀ ।
ଅବୀର, ପୁଷ୍ପ, ଗୁଲାଲ ପଅରାଖାଂ ; ମୋତୀ ଚୂକ ଖଡ଼କା ବାଜୀ;
ଅଗର ଧୂପ ଉବେଖୀ ମାଂହ, ଗୟା ବାର ଅଡ଼କା ବାଜୀ;
ଗାଢ ପଡ଼ୀ, ଭଡ଼ ଖାମ ହଜ ଅସ୍ୱା; ବୀଣଇ ସେଲ ଧଲ୍ଲବାଜୀ;
ଖୀଲ୍ୟାଂ ପଟକୂଲ ପିହ୍ନଖା ପୋଢ, ମାଗୀ ସୂଆର ସବ ଲାବାଜୀ ।

୨ । ପଦ୍ମନାଭଙ୍କ ବିରଚିତ 'କହ୍ନଡ଼ଦେ ପ୍ରବନ୍ଧ'ର କିୟଦଂଶ—

(ଏଥିରେ ସୋମନାଥ ମନ୍ଦିରର ପତନରେ କବି ବ୍ୟଥିତ ହୋଇ ଲେଖି-
ଅଛନ୍ତି—)

ବିରୂଇ ବାତ ବରତେବା ଲାଗୀ, କଲିଯୁଗ କରଇ ବିଳାସ ।
ପୃଥିବୀ ତଣଉଁ ପୀଠ ମେହ୍ଲୀ ନଇ, ଦେବ ଗୟା କୈଳାସ ॥
ଅଲୂଖାନ ଏହବୁଂ ପୁଂର ମାଣ୍ଡୁଂ, ମଢ଼ ଉହାବର୍ତ୍ତ ସୂନଉ ।
ଠୀଲୀ ଭଣୀଭୂତ ଚଳାବଉ, ଉହାଂ କରେସ୍ୟୁଂ ଚୂନଉ ॥
ବାଲ୍ୟାଂ ଗାମଦେସ ଉଜାଡ଼ର୍ୟା, ଘଣାଂ ନଗର ବିଧ୍ୱସ୍ୟାଂ ।
ସୋରଠ ମାଂହ କୋଲାହଲ କୀଧଉ, ଲୋକ ତଣାଂ ଧନ ଲୂସ୍ୟାଂ ॥
ସା ହସ୍ତା ଲୋକ ବନ୍ଦି ନଇ ବାଲକ, ନାରୀ ବର୍ଣ୍ଣ ଅଢାର ।
ଆଲେ ବା ଧ୍ରେ ହାଲସଂ କାଧାଂ, ବାନ ନ ଲାଭଇ ପାର ॥ (୧୪୫୬)

୩ । ନରସିଂହ ମେହେତାଙ୍କ ରହସ୍ୟବାଦୀ ପଦ୍ୟର ଦୃଷ୍ଟାନ୍ତ—

(ନରସିଂହ ମେହେତା (୧୪୧୪—୧୪୮୦) ସମସ୍ତାନୁକ୍ରମେ ଗୁଜୁରାଟୀ ସାହିତ୍ୟର ପ୍ରଥମ କବି ନୁହନ୍ତି । ମାତ୍ର ସେ ଗୁଜୁରାଟୀ ପଦ୍ୟର ଜନ୍ମଦାତା ରୂପେ ଲୋକପ୍ରିୟ ।)

ନୀରଖନେ ଗଗନ ମାଂ କୋଣ ଘୁମୀ ରହ୍ୟୋ ? ତେଜ ହୁଂ
ତେଜ ହୁଂ ଶବ୍ଦ ବୋଲେ
ଶ୍ୟାମନା ଚରଣ ମାଂ ଇଚ୍ଛୁଂ ମରଣରେ, ଅହୀଂ ଯାଂ କୋଇ ନଥୀ କୃଷ୍ଣ ତୋଲେ
ଶ୍ୟାମ ଶୋଭା ଘଣୀ ବୁଦ୍ଧି ନାଶକେ କଲୀ ଅନଂତ ଓଚ୍ଛବ ମାଂ ପଂଥ ଭୂଲୀ
ଜଡ଼ ଅନେ ଚୈତନ ରସ କରୀ ଜାଣବୋ ପକଡ଼ୀ ପ୍ରେମ ସଜୀବନ ମୂଲୀ
ଝଲହଲ ଜ୍ୟୋତ ଉଦ୍ୟୋତ ରବି କୋଟମାଂ, ହେମନୀ କୋର
ଜ୍ୟାଂ ନୀସରେ ତୋଲେ
ସଚ୍ଚିଦାନନ୍ଦ ଆନନ୍ଦ କ୍ରୀଡ଼ା କରେ ସୋନାନା ପାରଣାଂ ମାହିଂ ଝୂଲେ
ବତ୍ତୀ ବିନ ତେଲ ବିଣ ସୂତ୍ର ବିଣ ଜୋ ବଲୀ ଅଚଳ ଝଲକେ
ସଦା ଅନଲ ଦୀବୋ,
ନେତ୍ର ବିଣ ନୀରଖବୋ ରୂପ ବିଣ ପରଖବୋ ବିଣ ଜିହ୍ୱାଏ ରସ ସରସ ପୀବୋ
ଅକଲ ଅବିନାଶୀ ଏମ ନା ଜ ଜୀଏ କଲସ୍ୟୋ ଅରଧ ଦୀ ମାଂ ହେ ମହାଲେ,
ନରସୈଂୟା ସ୍ୱେ ସ୍ୱାମୀ ସକଲ ବ୍ୟାପୀ ରହ୍ୟୋ ପ୍ରେମନା
ତଂତ ମାଂ ସନ୍ତ ଝୀଲେ ।

୪ । 'ଭାଲଣ'

(ଭାଲଣଙ୍କ କୃତି ସମୂହ—କାଦମ୍ବରୀ, ଦଶମ-ସ୍କନ୍ଧ, ନଳାଖ୍ୟାନ, ରାମବାଲ ଚରିତ ।)

ବାଣଭଟ୍ଟଙ୍କର ମୌଳିକ କାଦମ୍ବରୀର ପ୍ରଧାନ କଥାବସ୍ତୁ ସହ କେତେକ ସ୍ଥାନୀୟ ପ୍ରକୃତି ବର୍ଣ୍ଣନା ଓ ସ୍ଥାନୀୟ ଲୋକ ବ୍ୟବହାର ଆଦିର ମିଶ୍ରଣରେ ଭାଲଣଙ୍କର କାଦମ୍ବରୀ ରଚିତ । ଉକ୍ତ ଗୁଜୁରାଟୀ କାଦମ୍ବରୀର କିୟଦଂଶ—

ଅଚ୍ଛୋଦ ନାମି ସରୋବର ଏଟଲ୍ ଦୀଠ୍ ଅଶ୍ୱାରୂଢ଼
ଉପର ତରୁବର ତାଲ ତମାଲ ଦ୍ରାକ୍ଷ୍ୟ ଛତ୍ରାକାର ରସାଲ
ମଣିଶିଲ ସିଲ୍ଲ ଦଲ୍ଲି ଗଜଦନ୍ତ ପୀତରେଣୁ ଦାସି ତଟପ୍ରାନ୍ତ

ପାଷାଣ ଭେଦତଣୀ ମନ୍ତ୍ରସ୍ର ଠାମି ଠାମି ଜାଣୀ ନୋତସ୍ର
ହଂସ କାରଂଡବ ଚକୀ ବହୁ ଅନନ୍ଧ ନୀଡ଼ ପଂଖୀ ସହୁ,
ଜାଣୀସୁଂ ସିମଜାନୁଂ ହାସ୍ୟୁ ସରୋବର ରୂପି ପରକାସି
ଅଢସି ନର୍ମିଲତା ଶୀ ହଣୁ ? ଜାଣୀ ମଂନ ମହାମଣି ତଣୁଂ ।

## (୫) ଆଖୋଙ୍କର ଷଡ୍‌ପଦୀ—

(ଆଖୋ ପ୍ରାୟ ସାତଶହ 'ଛପା' ବା ଷଡ୍‌ପଦୀ ଲେଖିଥିଲେ । ଏଗୁଡ଼ିକ ଧର୍ମ, ଦର୍ଶନ ଓ ସମାଜ ଆଦ ବଭନ୍ନ ବଷୟରେ ରଚତ । ଏଗୁଡ଼ିକ ବ୍ୟଙ୍ଗାତ୍ମକ)

ଘଣୁଂ ପଂଡ଼ିତ ତାହ୍ୟା ଗୁଣପାନ ନ୍ୟାସ୍ତେ ପାରଷୁଂ ସଙ୍ଗୀତ ଗାନ
ଅଷ୍ଟବଧାନୀ ପିଂଗଳ କବ ମନ୍ତ୍ରଭେଦ ଔଷଧ ଅନୁଭବୀ
ଅଖା ଏଟଲେ ନୋ ହଶ ନବ ଟଟ୍ୟୋ ତୋ ଭୋଳପଣଥୀ
ଅଧୋଗଣେ ବଟ୍ୟୋ ?

ବୈଷ୍ଣବ ଭେଖ ଧାସ୍ରନେ ଫରେ
ପଚ୍ଚୋଦ ଟାଣେ ପଗା ବଳାଂ ଭରେ
ସ୍ୱାଂଘାଂ ଧାନ ବଖାଣତା ଜାୟ
ଜେମ ପରବସେ ତେମ ଝାଁଝାଂ ଖାୟ,
କର୍ତ୍ତିନ ଗାୟନେ ତୋଡ଼େ ତୋର,
ଅଖୋ କହେ ଜ୍ଞାନୀନୁଂ ଜୋର ।

## (୬) ସାମଲଙ୍କର ଛାପ୍‌ପା—(କୃଷି ସଙ୍ଗୀତ)

ବାଧଥୀ ବଳଦ୍ୟୋ ବଳଦ, ପୃଥ୍ୱୀନୋ ଭାର ଉପାଡ଼େ
ବାଗହଣେ ଛେଜୀବ, ବଳଦ ତୋ ଜଗତ ଜିବାଡ଼େ
ସ୍ରଷ୍ଟା ଏ ରଚୀ ସୃଷ୍ଟି ପ୍ରଥମ ତୋ କଣାବୀ କ୍ଷ ଧୋ,
ଧୋସ୍ରୀ ସରଜ୍ୟୋ ଧୀର ବନ୍ଦେନ ତ୍ୟାଂ ବରଧୀ ଧୋ,
ଉପାଡ଼ୋ ଭାର ଅବନୀ ତନୋ, କରେ କାମ, ଖଡ଼ ଅନ୍ତ ଜାମୋ,
ଛନପଢ ଅଦ୍ଧା ସୌ ଭ୍ରେକଗ୍ରା, ମା ମା ଅଇ ଭୁଖଲ୍ ଉମୋ ।

# କନ୍ନଡ଼ କବିତା

(୧) "ସୋହମସ୍ମି !"—କେ. ଭି. ପୁଟ୍ଟାପା ଜ ୧୯୦୪ (ଜ୍ଞାନପୀଠ ପୁରସ୍କାର ବିଜେତା)

"ଅହମସ୍ମି, ଅହମସ୍ମି, ଅହମ୍ ଅସ୍ମି !"
ଆଶୀର୍ବଦିସୁ ତ୍ତୈତନ୍ଦନୈ ମହର୍ଷି,
ବୈଶାଖ ହଦୟ୍ସ ଦିନମାଣି ଅରଣି ।
ଦେବଧୈର୍ଯ୍ୟାମୃତଭ ଜୀବଲୋକ ବେ୍କରେଦୁ
ମର୍ତ୍ତ୍ୟକେ ଅମର୍ତ୍ତ୍ୟଦ ଗବାକ୍ଷମମ୍ କୋରେଦୁ,
କେଂଗେଂଡ଼ ଦୁଂଡ଼େଯ୍ଲୋଲ
ଦିବ୍ୟାଗ୍ନି କୁଂଡ଼ଦୋଲ୍
ଦେବତେର୍ ପ୍ରତ୍ୟକ୍ଷ ବୁଂଡ଼ ଦୋଲ୍
ମୂଡ଼ିଦନ୍"

ଓଡ଼ିଆ ଅନୁବାଦ—

"ଅହଂ ଅସ୍ମି, ଅହଂ ଅସ୍ମି, ଅହଂ ଅସ୍ମି,"
ଆଶୀଷ ଦେବାଲାଗି ଆଗତ ମହର୍ଷି
ବୈଶାଖ ପ୍ରଭାତର ସୂର୍ଯ୍ୟ ।
ଦୈବିକ ଧୈର୍ଯ୍ୟାମୃତକୁ ଜୀବଲୋକରେ କର ବର୍ଷା
ମର୍ତ୍ତ୍ୟ ଲାଗି ଅମର୍ତ୍ତ୍ୟର ଗବାକ୍ଷକୁ ଚର
ଲାଲ ଅଂଗାର ସଦୃଶ
ଦିବ୍ୟାଗ୍ନି କୁଣ୍ଡ ସଦୃଶ
ଦେବତାଙ୍କର ପ୍ରତ୍ୟକ୍ଷ ସମାବେଶ ସମ
ଉଦିତ ହୋଇଛନ୍ତି"

(୨) "ନବୋଦୟ"—ବି. କୃ. ଗୋକକ (ବିନାୟକ) ଜ—୧୯୦୯

"ଓ ! ତରୁଣ ଏଦେ୍ଦଳୁ
ନନ୍ନ ମୋରେୟଲ୍ଲି ହୁମ୍ମାସ୍ସିଦେ
ନନ୍ନ କଣ୍ଣିନଲ୍ଲି ଅସାଧାରଣ ତେଜସ୍ସିଦେ ।
ନନ୍ନ ହଣେୟଲ୍ଲି ଭବ୍ୟତେୟିଦେ;

ଚନ୍ଦ୍ରଦ କୃତ୍ତିସ୍ୱଲ୍ଲି ଡବ୍ୟତୋସ୍ତିଦେ ।
ଉକ୍ତିସ୍ୱ ଉଦସ୍ସାଲ୍ଲି ଆବେଶବଦେ;
ନଞ୍ଚଦୋଲଗଲାଲ୍ଲି ନବଖଣ୍ଡବନ୍ଦେ ଭୁଜ୍ଜବ ବଲବଦେ ।
ଅଞ୍ଜସ୍ୱାଲ୍ଲି ବଞ୍ଚୁଗଞ୍ଚେସ୍ତିଦେ
ଓ ! ତରୁଣ ! ଏ ଦେଦକ୍କୁ !
ନନ୍ନ ଗୃକ୍ୟବାକ୍କୁ"

ଓଡ଼ିଆ ଅନୁବାଦ—

ହଠ ହେ ତରୁଣ
ବଶ୍ୱାସର କାନ୍ତି ତୁମ ମୁଖର ଉପରେ
ନୟନରେ ଅସାଧାରଣ ତେଜ ।
ଲଲାଟରେ ଭବ୍ୟତା;
ଚବୁକରେ ଉଦ୍‌ବ୍ୟତା ।
ଅଧରରେ ଆବେଶ;
ଶକ୍ତି ଅଛି ଏଇ ଦୀର୍ଘ ଭୁଜଦ୍ୱୟେ,
ତୋଳନେବ ନବଖଣ୍ଡ ।
ଉନ୍ମୁକ୍ତ ଅଟଇ ତୁମ ଚରଣ
ହଠ ହେ ତରୁଣ
ଆପଣାର ଗୃକ୍ୟକର"

# ତାମିଲ କବିତା

"କୋଡ଼ ପରକ୍‌କୁଦୁ"—ନାମକ୍‌କଲ ବ. ରାମଲିଂଗମ୍, ପିଲ୍ଲଇ (୧୮୮୮)

"କୋଡ଼ ପରକ୍‌କୁଦୁ ! କୋଡ଼ ପରକ୍‌କୁଦୁ !
କୋଡ଼ ପରକ୍‌କୁଦୁ ପାରଡ଼ା ।
କୋଣଲନ୍ଦ୍ର କୋଲ୍ଲଲ୍ ଏଠଗଲ
କୋଡ଼ ପରକ୍‌କୁଦୁ ପାରଡ଼ା ।
ଶିରୈ କଡ଼ନ୍ଦୁ ଉସ୍ୱରଡୈନ୍ଦ ଦେଶ ଭକ୍ତର ନଟ୍ଟଦୁ
ଧୀର ଶାର ଶ୍ରବନ ଦୈବ ଭକ୍ତର ତୋଟ୍ଟଦୁ
ମୁରୈ କଡ଼ନ୍ଦୁ ଉନ୍‌ବମ୍ ବନ୍ଦୁ ମୁଣ୍ଡୁକ୍କ ପୋଦଲ୍ଲୁମ୍
ମୁନ୍ନି ଦୁନ୍ଦ୍ ପିନ୍ନିଡାମଲ କାକ୍‌କେଣ୍ଡ ମ୍ ନାମ୍ଦୈ ।"

ଓଡ଼ିଆ ଅନୁବାଦ—

ପତାକା ଫର ଫର ହୁଏ ରେ
ପତାକା ଫର ଫର ହୁଏ
ପତାକା ଉଡୁଛି ଦେଖ
ଦୃଢ଼ଷ୍ଟବେ ଖମ୍ବ ପରେ
ପତାକା ଉଡୁଚି ଦେଖ ।
ଜେଲ ଗଲେ, ହସ୍ତ ହେଲେ ଦେଶଭକ୍ତ ବୀରଗଣ
ରାମ ନାମ ପ୍ରେମୀ ଗଣ
ଧୀର ଆଉ ଶତ ଗଣ
ଗୋପିଲେ, ପରସ୍ତି ଗଲେ, ପାଳଲେ ଓ ପୋଷିଲେ ।”

# ମାଲୟାଲମ୍ କବିତା

୧—“ମୁଟନ୍ତନ୍ କୁରୁ କନ୍ନାର”—ଜି, ଶଙ୍କର କୁରୁପ (ଜ ୧୯୦୧—)

(ନାଲୁ)

ଓରୁ କବୟୁଟେ ଶବକୁଟୀରତ୍ତ
ନ୍ନରୁକିଲକ୍କୋଲ୍ ନଉଲବନେଭବେ,
କଟିଆଣ୍ ବେଚ୍ଛି ଛୁ ପିଟି ଛୁ କୋଣ୍ଟବନ୍
କଶଙ୍କୁଡରଯ୍ଡେ ଯଟା କ୍କନ୍ନ ର୍ଭି ନାନ୍ ।
ଇଟିବାନ୍ତୁଂ କା ଲ୍ଲଲ୍ କଡୁଂ କାଟଟ୍ଟୁ ମାନ୍ନ୍
ପଟ୍ଟୁ କୃଟଟନ୍ ରକ୍ତ ମଙ୍ଗମୂକିଲ୍ ପୋଲେ
ଉଲ୍ଲକନେ ଇଟଟ୍ଟୁ ବିରପ୍ପି କୁନ୍ନୋର—
ଖଲଣ୍ଟେ ଦର୍ଶନଂ ସହ୍ୟ ପ୍ପଟେ ତଂଡ଼ନେ
ମରଣ ଭିନ୍ ଦୃଢ଼ ସ୍ପର୍ଶଂଗ୍ରନ୍ଥା ଶ୍ଳେଷ
ଭରକଲୀନନାଯ୍ଯୁ କଷ୍ଟିଷାନୁଂ
ଭସ୍ମ ମଣ୍ଡସ୍ମ'ଣ୍ଡ କବ ମୁଖ ଉ ନ୍ନ—
ନ୍ନୁ ସ୍ୱନ୍ନୁ ପୋଲ୍ ଷେଞ୍ଚୁଂ କଣ୍ଠି ତମାଂ ଗାନଂ ।

ଓଡ଼ିଆ ଅନୁବାଦ—

ଛୋଟାଣିଆଳ (ଟେନ୍ନିସନ୍‌ଙ୍କ ଲକ୍ଷ୍ୟ କରି)

(ଚତୁର୍ଥ)

କବି ଜଣକର ସମାଧି ପାଖରେ
ଡାକୁନେତା ପହଁଚିଲା ଯେବେ
ଲଗାମ ଧରି ତାର କାଳ ଘୋଡ଼ାଟିକୁ
ଅକସ୍ମାତ୍ ବନ୍ଦ କରି ସେଠି
ପାଦରେ ତାର ଥିଲା ତୋଫାନର ବେଗ
ଆଉ ଅସିରେ ବଜ୍ରୀଭୂତର ଝଲକ ।
ରକ୍ତ ବର୍ଣ୍ଣ ମେଘ ଖୁବ ଘାଂର ନାମେ
ଧସ୍ତ କମ୍ପୁଥିଲା
ସେ ଦୃଶ୍ୟକୁ ଦେଖି,
—ମୁଖସ୍ପର୍ଶରୁ ବି କବି ଉତ୍ଥାତ୍ତି ହେଲେ
ମୁହଁରେ ତାଙ୍କର ହୃଦୟସ୍ଥ ଶିହରଣକାରୀ ସଙ୍ଗୀତ

୨—ନିଶ୍ୱାସଡଂଡଂଳ—ଖୁଲଥୋଲ (୧୮୭୮-୧୮୧୮)

ପ୍ରାଣନାୟକ, ଉବାନେ ତୋରୁଦ୍‌ଦିଲ ମୃତ୍ଥଂ
ବାଣରୁ କ୍ଷୁନ୍ନ୍ ତଣ୍ଡେ ଦାସିସ୍ୟେ ସୁଶନ୍‌କାତେ ?
ଏନ୍ କର୍ଣ୍ଣିଲ୍ ଝନ୍ନୀ ବର୍ଣ୍ଣ ମେଣ୍ଟେଲେ କଭିଷ୍‌ବାରପ୍
ନ୍ତକଲେ ମରସ୍ କୁନ୍ନ କାରମୁ କଲ୍‌ନ ରସ୍ୟେତୋ ?

ଓଡ଼ିଆ—

## ନିଃଶ୍ୱାସ

ହେ ପ୍ରାଣେଶ୍ୱର, କେଉଁ ଦେଶେ ଲୁଚ
ଅପଣା ଦାସୀର ସ୍ମରଣ ବିନା ?
ସଂସାରେ ମୋର ମୋହନ—ଚଂଦ୍ର ବମ୍ବ
କଏ ମେଘମାଳା ଛପାଏ ତାହାକୁ ଦିନା ?

# ତେଲୁଗୁ କବିତା

୧—ନାନାୟ୍ୟା

'ପରଗ ନାକାରଣ ମୁନା ନଛି ଦୁଃଖ
ଭାରମ୍ଭୁ ଦାଲ୍‌ଚେ
ନଶଗେ ନହାଣ ଦର୍‌କୁନକୁ ନ ଅନୁଜ—
ଡାନଲ ବେଗ ମୁନା ।

(ମୋ ଯୋଗୁ ଏତେ ଦୁଃଖ ଭାର ବହିବାକୁ ହେଲା । ତୋର ବଡ଼ ଭାଇ ଈଶାନ୍ୟ ଦିଗକୁ ପବନ ବେଗରେ ଯାଇଅଛି । )

୨—ତ୍ୟାଗରାଜ

ରାଗ—ସାରମତି । ଆଦିତାଳ

ମୋକ୍ଷମୁ ଗାଲଦା ? ଭୁବିଲୋ ଜୀବନ ମୁକ୍ତୁଲ୍‌କୁ—
କାନି ବାରଲକୁ ।୦।
ସାକ୍ଷାତ୍‌କାର ନୀସଦ୍ ଭକ୍ତ ସଙ୍ଗୀତଜ୍ଞାନ ବହୀନୁଲକୁ ।୧।
ପ୍ରାଣ ନଲ ସଂଯୋଗମୁ ଓ୍ବାଲ ପ୍ରଣବନାଦମୁ ସପ୍ତସ୍ୱରେ ମୂଲୈ
ବରଗେ ବୀଣା ବାଦନ ଲୋଲୁଡ଼ାଉ
ଶିବ ମନୋବଧ ମେରୁ ଗରୁ
ତ୍ୟାଗ ରାଜ ବିନୁତା ।୧।

(ପୃଥିବୀରେ ଯେଉଁମାନେ ଜୀବନ୍ମୁକ୍ତ ହୋଇନାହାନ୍ତି ସେମାନେ ମୋକ୍ଷ ପାଇବେ କି ? ସଦ୍‌ଭକ୍ତ ବିହୀନ ସଙ୍ଗୀତଜ୍ଞମାନଙ୍କୁ ତୁମେ (ହେ ଈଶ୍ୱର) ସାକ୍ଷାତ ଦିଅ କି ?

ପ୍ରାଣ ଅଗ୍ନିର ସଂଯୋଗରୁ ଯେଉଁ ପ୍ରଣବ ମିଶି ସପ୍ତସ୍ୱର ରୂପରେ ଯାହା ପ୍ରକାଶିତ, ଓ ବୀଣାର ମଧୁର ସଙ୍ଗୀତ ଯେଉଁ ଶିବଙ୍କୁ ଆନନ୍ଦିତ କରାଏ, ଏହା ସଦ୍ ଭକ୍ତ ବିହୀନ ସଙ୍ଗିତଜ୍ଞଙ୍କୁ ଅଜଣା । ତ୍ୟାଗରାଜ ନମ୍ରତାର ସହିତ ଏହା କହୁଛନ୍ତି । )

## ସହାୟକ ଗ୍ରନ୍ଥ ଓ ପ୍ରବନ୍ଧାବଳୀ—

୧ । Contemporary Indian Literature—
Sahitya Akademy
୨ । Encyclopaedia of Literature—Vol I—Shipley.
୩ । Indian Literature—Ed-Dr. Nagendra
୪ । History of Maithili Literature—Dr. J. K. Misra
୫ । Linguistic survey of India—Vol V—Grierson
୬ । ହିନ୍ଦୀ ସାହିତ୍ୟ କୋଷ—ଡ. ଧୀରେନ୍ଦ୍ର ବର୍ମା
୭ । ହିନ୍ଦୀ ସାହିତ୍ୟକା ସରଳ ଇତିହାସ—ପ୍ରେମନାରାୟଣ ଟଣ୍ଡନ
୮ । ଅସମିଆ ଭାଷା ଓ ସାହିତ୍ୟ—ନରସିଂହ ପୂଷ୍ଟି
୯ । ଅସମିଆ ସାହିତ୍ୟର ଚନେକ—(କଲିକତା ବିଶ୍ୱବିଦ୍ୟାଳୟ)
ସ—ହେମଚନ୍ଦ୍ର ଗୋସ୍ୱାମୀ
୧୦ । ଭାରତୀୟ କବିତା (୧୯୫୪-୫୫)—ସାହିତ୍ୟ ଏକାଡେମୀ
୧୧ । ଭାରତର ଶକ୍ତିସାଧନା ଓ ଶାକ୍ତ ପଦାବଳୀ—ଶ୍ରୀ ଶଶିଭୂଷଣ ଦାସଗୁପ୍ତ
୧୨ । ବାଁଲା ସାହିତ୍ୟର କାହିନୀ—ନରେନ୍ଦ୍ର ଗୁପ୍ତ
୧୩ । Modern Urdu writings in India—
Hyder Ali Khan
୧୪ । Modern Punjabi Literature—Harbhajan Singh
୧୫ । Modern Assamese Literature—Mohendra Bora
୧୬ । The Contemporary Punjabi Literature—
Gurmukh Singh Jeet
୧୭ । Modern Trend in India Literature—G. K. Mitra
୧୮ । Modern Indian Literature—G. K. Pillai
୧୯ । Indian Tradition & Modern Impact—M. G. Adiga
୨୦ । Urdu an Indian Language—M M. Hasan